# ନୀତିପୂର୍ଣ୍ଣ

# ଲୋକନାଥ ଗ୍ରନ୍ଥାବଳୀ



**ଲେଖକ – ଡ଼ା. ଲୋକନାଥ ମିଶ୍ର**

ପୂର୍ବତନ-ଏମ୍. ଏଲ୍. ଏ

**ମହାତ୍ମାଗାନ୍ଧି ରୋଡ଼**

**ପୋ: ଆସିକା – ୭୬୧୧୧୦**

ଜି:—ଗଞ୍ଜାମ

ଓଡ଼ିଶା (ଭାରତ)

ମୂଲ୍ୟ – **୭୫** ଟଙ୍କା

# ଭୂମିକା

ଏଥିରେ ପ୍ରକାଶ ପାଇଥିବା ସବୁତକ ଲେଖା ପୂର୍ବରୁ ପ୍ରକାଶିତ ହୋଇଅଛି ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀକୁ ଖଣ୍ଡିଏ ଲେଖାଏଁ କପି ମଧ୍ୟ ପଠାଯାଇଅଛି । ଏକତ୍ରୀକରଣ ଉଦ୍ଦେଶ୍ୟରେ **ନୀତିପୂର୍ଣ୍ଣ ଲୋକନାଥ ଗ୍ରନ୍ଥାବଳୀ** ପ୍ରକାଶ କରିବାକୁ ବାଧ୍ୟହେଲି, ସମାଜରେ ଦୁର୍ନୀତି ଦିନକୁ ଦିନ ବଢ଼ିଚାଲିଥିବାରୁ ଜନସାଧାରଣଙ୍କୁ ଉପଦେଶ ଦେବା ଉଦ୍ଦେଶ୍ୟରେ ହିଁ ନୀତିଗୁଡ଼ିକ ବର୍ଣ୍ଣନା କରାଯାଇଅଛି । ପାଣ୍ଡବ ବନବାସର ଦୁଃଖମୟ ଘଟଣା ଗୁଡ଼ିକ ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଥିବା ଏବଂ ଯମକ, ଅନୁପ୍ରାସ, ଉପଧା, ଉପମା, ଉପମେୟ ପ୍ରଭୃତି ସାହିତ୍ୟର ଯାହା ଆବଶ୍ୟକ ଏହି ଗ୍ରନ୍ଥାବଳୀରୁ ପାଇବେ । ଅନ୍ୟାନ୍ୟ ଗ୍ରନ୍ଥାବଳୀ ଏବଂ ଏ ଗ୍ରନ୍ଥାବଳୀ ଭିତରେ ପାର୍ଥକ୍ୟ ଅନେକ ରହିଅଛି । ସାହିତ୍ୟିକ ମାନେ ପଢ଼ି ହୃଦ୍‌ବୋଧ କରି ନିଜ ଜୀବନକୁ ସେହି ଭାବରେ ଗଢ଼ିବାକୁ ଯତ୍ନଶୀଳ ହେବା ଉଚିତ ମନେ କରେ ।

**ଆସିକା** **ପ୍ରଣେତା — ଡା. ଲୋକନାଥ ମିଶ୍ର**

# ସୂଚୀ

### ନୀତିପୂର୍ଣ୍ଣ

# ଲୋକନାଥ ଗ୍ରନ୍ଥାବଳି

## ଭା ବ ନା

### ସ୍ତୁତି

ଅଜ୍ଞାନ ତିମିର ବିନାଶି
ଦେବି ! ବସ ମୋ ଗଳେ,
ମାତୃଭାଷା ସେବା କରିବା
ପାଇଁ ମାନସ ବଳେ ।
ତବ କୃପା ବିନା ଲେଖନୀ
ଚଳେ ନାହିଁ କାହାର,
ବଞ୍ଚନା ନ କର ଜନନି !
ଦେବ କୃପା ଉଲ୍ଲାସ ।
୧ ଧରଣି ଧରନ୍ତୁ ଲେଖନୀ
କରି ଅତି ଭରସା,
ତବ ପ୍ରସାଦରେ ଲେଖିବି
ମନେ କରଏ ଆଶା ।
ଶ୍ରେଷ୍ଠ କବି ନାମେ ଜଗତେ
ପରିଚିତ ବାଲ୍ମୀକି,
ବିନା କରୁଣାରେ ତସ୍କର
କେବେ କବି ହେବ କି ?

( ୧ ସାହାସ କର )

ମୂର୍ଖ କାଳିଦାସ ଆଶ୍ରିତ
ହୋଇ ଦାସ ଲକ୍ଷିତ,
କବିକୁଳ ଟେକ ରଖିଲେ
ପାଇ କରୁଣାମୃତ ।
ତବ ପଦ-କଞ୍ଜ ପ୍ରସନ୍ନ
ବାରେ ହୁଅ ପ୍ରସନ୍ନ,
ଜିନମାନ୍ତି ପାଇ ପ୍ରସାଦ
ଲୋଇବ ଲେଖନୀ ।
ରଚନା ଶକତି ନାହିଁ ମୋ
ରଚିବାକୁ କବିତା,
ଅନୁକୂଳ ହେଲେ ମଞ୍ଜିବ
ଧୀରେ ମୋ ଆଶା-ଲତା ।
କୃପାମୟି ! ଦୟାକର ଗୋ
ଆଜି ଏ ମୋ ମାଗୁଣି,
ଦେଖାଅ ଦେଖାଅ ଦେବି ଗୋ !
ବିବେକ-ସରଣୀ ।

*****

## ଗରିବ କୁଲି

ପାଟି ଅଛି ମୋର କଥା କହିବାକୁ
ଭାର ବୋହିବାକୁ କାନ୍ଧ,
କଲମ ଧରିବା ଶିକ୍ଷା ନ ଥିବାରୁ
ଆଖି ଥାଇ ଥାଇ ଅନ୍ଧ ।
ମୁଣ୍ଡ ଝାଳ ଟୋପୁ ଦିନ ସାରା ଖଟି
ପେଟକୁ ନ ମିଳେ ପୂରା,
ଅବା କରସିନି ଖୋଜିବ କାହିଁକି
ମୁଣ୍ଡତ ସଦା ଲୁଖୁରା ।
ବୋଲି କେ ପାରିବ ମୋତେ ଅଳସୁଆ
ପିଲଟି [illegible],
ଫେରି ମୁଁ ଆସଇ କୁଡ଼ିଆକୁ ଯେବେ
ଅଜଳା ରହିଥାଏ ଚୁଲି ।
ମୋ ବାଟକୁ ଜଗି ରହିଥାନ୍ତି ଘରେ
ଆକୁଳ ନୟନେ ପିଲେ,
କା ହୃଦ ବିଦାରି ନ ହେବ ପୁଣି ଏ
"**ହା ଅନ୍ନ**" ନାଦ ଶୁଣିଲେ ।
ଚାଉଳ ଅବା କାଞ୍ଜି ଯା ମିଳେ କରମେ
ମଣି ଥାଏ ଗଣ୍ଠି ଧନ,
ତରକାରି ଅବା ଖୋଜିବ କେଉଁଠୁ
ନ ମିଳେ ତ ଲଙ୍କା ଲୁଣ ।
ଘସ ଜାଳ ଦେଇ ସିଝାଏ ମୁଠାକ
ବଞ୍ଚା ମୋହର କାଳ,
ସାରା ଜୀବନଟା ସହିଥାଏ ଦୁଃଖେ
ପ୍ରଖର କିରଣ ଜାଳ ।
ଶୀତ ଲୁଗା ଅବା ପାଇବ କେଉଁଠୁ
କଟିକୁ ନ ମିଳେ କନା,
କରମ ଆଦରି ଜାଡ଼େ ଧାଇଁଥାଏ
ଲେଖା ଏ ମୋ ବିଡମ୍ବନା ।
ରୋଗ ଯେବେ ହୁଏ ଔଷଧ ନ ପାଏ
ବହୁ ଦିନ ଶୁଖି ଶୁଖି,
କରମରେ ଥିଲେ ବଞ୍ଚି ଯାଏ ବା
ବୁଜିଦିଏ ବେନି ଆଖି ।
ଧୋବ ଧାଉଳିଆ ଦେଖିଲେ ମୁଁ ଡରେ
ଖଟାନ୍ତି ବା କେତେ ବେଠି,
ନ ରଖେ ଗୁହାରି ଶୁଣୁଛି କିଏରେ
ବସିଲେ ପିଠିରେ ଲାଠି ।
ମୋ ରକତେ ଗଢ଼ା କଳ କାରଖାନା
ଶସ୍ୟଶାଳୀ ଜମିବାଡ଼ି,
ଗୁଡିକ ପଠାଏ ଦେଶ ପାଇଁ ଆଗେ
ଶୁଣିଲେ ମୃତ ମୋର ରଡ଼ି ।
ଟଙ୍କାକୁ ନ ଦେଇ ପିଠିକୁ ମାରିବା
ପ୍ରଭୁ ପଣେ ଅଭାଜନ,
ଚନ୍ଦ୍ର ପକ୍ଷ ସୁଖ ଦୁଃଖ ପୁରୁ ଅଛି
ସର୍ବ ନିୟତି ଅଧୀନ ।

*****

## କୋଣାର୍କ ବାରତା

କୃତୀ କଳା ପୂର୍ଣ୍ଣ ଭଗ୍ନ ଦେବାଳୟ
ବିଦ୍ୟମାନ କୋଣାର୍କେ,
ଓଡ଼ିଆ ପୁଅକୁ ଦେଖିଦେଲେ ବାରେ
ଧୀରେ ଧୀରେ କହେ ଶୋକେ ।
"ତୋ ପୂର୍ବ ପୁରୁଷେ କେତେ ଉତ୍ସାହରେ
ଦିବସ ରଜନୀ ଖଟି,
ଭବେ ଅନୁପମ ମୋ ତନୁ ଗଢ଼ିଲେ
ଧନ୍ୟ ଓଡ଼ିଶାର ମାଟି ।
ଆଳସ୍ୟ ତେଜିଛ କେତେ ଦିନ ଆଉ
ଶୋଇଥିବ ଆଖି ବୁଜି,
ଦେଖୁ ଉନ୍ମାଦନା ଓଡ଼ିଆ ରକ୍ତରେ
ଉଠ ଜନନୀ ଗରଜି ।
ଯଥା ସମୟରେ ରୋଗୀକୁ ଔଷଧ
ନ ମିଳିଲେ ଯାଏ ପ୍ରାଣ,
ଶୁଣିଛ କି କାହିଁ ପିଲା ନ କାନ୍ଦିଲେ
ମାତା କରେ କ୍ଷୀର ଦାନ ।
ବେଳୁଁ ନ ଚେତିଲେ ସଢ଼ିଯିବ ରକ୍ତ
ହାତ ଗୋଡ଼ ଯିବ ପଡ଼ି,

ଶୋଇଲା ପୁଅର    ଘର ଯାଏ ବୁଡି
ଟଷ୍ଟାଟେ ନ ଶୋଷେ ଭୂଇଁ ।
ଉପଯୁକ୍ତ ସାରେ    କ୍ଷେତ୍ର ସସ୍ୟଶାଳୀ
ବୃଷ୍ଟି ବିହିତ ଜଳ ଦାନେ,
ତର୍ଷଣ ନିବୃତ୍ତି    ଲଭଇ ସତତ
ପିପାସିତ ଜଳ ପାନେ ।
ମାଟିକି ଖୋଳିଲେ    ଝରେ ସିନା ଜଳ
ବେଳେ ହୁଅ ହୁସିଆର,
ତର୍ପଣ ଆଶାରେ    ଚେଷ୍ଟିଛୁ ଜନମ
କରିକରି ପ୍ରତିକାର ।
"ମୋ ଦେଶ ଉନ୍ନତ"    ବୋଲି ଅବଶ୍ରାନ୍ତ
ନାଚ ଉଠୁ ଯୁବା ପ୍ରାଣେ,
ଫୁଟିବ ଗୋଲାପ    ଯୁଇ ଯାଇ ମଲ୍ଲୀ
ଏଣୁ ଜନମ-କାନନେ ।"

*****

ନିଜ ସଦନକୁ ବାହୁଡ଼ି    ଯେବେ ଗଲେ ସବିତା,
କୋଳେ ଧବଳ ଜ୍ୟୋତ୍ସ୍ନା    ବାଣ୍ଟେ ଚନ୍ଦ୍ର ଦେବତା ।
କ୍ଷୀଣୁ କ୍ଷୀଣତର ହୋଇ    ଅସିତରେ ତା କାନ୍ତି,
ଶୁକ୍ଳ ପକ୍ଷରେ ବଢଇ    କ୍ରମେ ରଜତ ଜ୍ୟୋତି ।
ଚଉପାଶେ ଘେରି ଯାହାଙ୍କ    ନଭେ ତାରକା ରାଜି,
ତା ଶୋଭା ଦର୍ଶନେ ଶିଶୁଏ    ଯାନ୍ତି ଆନନ୍ଦେ ମଜି ।
ଯାହାର ଆଦେଶ ପାଳଇ    ଅବିରତ ଚନ୍ଦ୍ରମା,
ମାନସେ ଧିଆନ ରହୁ ମୋ    ସଦା ତାଙ୍କ ମହିମା ।
ନିଦାଘ ପ୍ରାବୃଟ-ଶରଦ-    ଶୀତ-ବସନ୍ତ ପୁଣି,
ନିଜ ନିଜ ବଳ ଦେଖାଇ    ଗୁଡ଼ିଯାନ୍ତି ଧରଣୀ ।
କେବେ ବା ନୀରସ ସରସ    ଧରାବକ୍ଷ ହୋଇ,
ବନ-ଉପବନ-ତଡ଼ାଗେ    ପୁଷ୍ପ ଫଳ ଶୋଭଇ ।
ଋତୁ ପରେ ଋତୁ ଆସଇ    ଯାହାଙ୍କର ବିଧାନେ,
ସେ ପରମ ପିତା ଚରଣେ    ସଦା ରହୁ ମୋ ମନ ।

*****

## ପ୍ରଭାତ

ବନ୍ଧୁଲୀ କୁସୁମ ବିବରଣେ    ଜଣି ପରାଚୀ ଆଶା,
ଆବାହାନ କରେ ଖମଣି    ପିନ୍ଧି ଲୋହିତ ଭୂଷା ।
ନବ ପ୍ରାଣ ଲଭି ବିହଙ୍ଗେ    ପୁଲକିତ ଅନ୍ତର,
କୂଜନେ ବିନ୍ଧିଲେ ମିହିର    ନିନାଦିତ ଅମ୍ବର ।
ଖେଚର-ଭୂଚର ଶବଦେ    ପୁଣି କମ୍ପିତ କ୍ଷିତି,
ସନ୍ଧ୍ୟାବଳୀ ଗଣ ଲୁଚିଲେ    ଦେଖି ମୟୂଖ ଗତି ।
ଊଷା ବେଶ ଛାଡ଼ି ଚଣ୍ଡାଂଶୁ    ଧୀରେ ବିସ୍ତାରେ କର
ପ୍ରଖର ତାପରେ ଦଗଧ    ଏବେ ପ୍ରାଣୀନିକର ।
ଊଷାକାଳ ପ୍ରଭା ଦର୍ଶନେ    ମନୁ ତୁଟଇ ଖେଦ,
ନିମିଷ ଦର୍ଶନ ହୁଅଇ    ଏବେ ବଡ଼ ଦରଦ ;
ବାସବ କୋଦଣ୍ଡ କେବେ ବା    ଦିଶେ ପଶ୍ଚିମାକାଶେ,
ନୀରଦ ମଧ୍ୟରେ ସେ ଶୋଭା    ଦେଖି ନେତ୍ର ଉଲ୍ଲସେ ।
ଦିନକର ତେଜ କ୍ରମେ    ହେଲା ଅପସାରିତ,
ଜଗ ଜ୍ୟୋତି ବିଳୀନ ହେଲା    ଏକ ବିଧି ବିହିତ ।
ଯାହାର ଆଦେଶ ପାଳଇ    ସଦା ଦେବ ଭାସ୍କର,
ସେ ଆଦି କରତା ଚରଣେ    ରହୁ ମତି ମୋହର ।

## ମରୀଚିକା

ଜୀବନକୁ ଧରି ନିଜ ମଞ୍ଜୁଷ ଭିତରେ,
ରଖିବା ପ୍ରୟାସ କେତେ କରୁଛନ୍ତି ନରେ ।
ଦୟା-ଧର୍ମ-ସତ୍ୟ-ଶାନ୍ତି ମାନସୁ ବିସ୍ମୃତ,
ଲୋଭ-କ୍ରୋଧ-ମୋହେ ଦିନୁ ଦିନ ଆସକତ ।
ଜନମ ମରଣ କାଳେ ସର୍ବେ ଶୂନ୍ୟପାଣି,
ଏଇ ଶାଶ୍ୱତ ବିଧାନ ଅଛି କେ ନ ଜାଣି ।
ପଲକେ ପଲକେ କେତେ ଅଳୀକ ବାସନା,
ମାନସମନ୍ଦିରେ ଉଙ୍କି ନ କରି ଭାବନା ।
ପ୍ରତିଦିନ ଦୃଷ୍ଟିପଥେ ଆଲୋକ, ତିମିର,
ଖେଳ ଦେଖାଉଛି ଆହା ଭବଟି ନଶ୍ୱର ।
ସୁଖ ବୋଲି ମଣି ଯାହା ବିଳାସ ବ୍ୟସନ,
ହେଲା ପ୍ରାପ୍ତ ତା ଗତି ପ୍ରତ୍ୟକ୍ଷ ପ୍ରମାଣ ।
ଅନନ୍ତ ଗଗନପଟେ ଭ୍ରମେ ଶୀତକର,
ବଢ଼ିବା ଛିଡ଼ିବା ରୂପ ଦେଖ ନିରନ୍ତର ।
ପ୍ରାକୃତିକ ପଦାର୍ଥରେ ନଶ୍ୱରତା ଚିହ୍ନ,
ଦେଖାଇ ଦିଅନ୍ତି ସଦା ପ୍ରଭୁ ଭଗବାନ ।
ରୋଧିଛି କେ ରୋଧିବ ବା ଜୀବନ ପ୍ରବାହ,

ତଳକୁ ନ ଚାହିଁ ଧାଇଁ ଥାଏ ଅହରହ ।
ଗ୍ରହ୍ମାବତ ସହଗାମୀ କାଳ ଚିରକାଳ,
ଜାଣି ଧନେ ଅର୍ଥଲୋଭୀ ନିରତ ସକଳ ।
କୁହୁଡ଼ିରେ ସନ୍ତରଣ ଦେଖିଛ କି କାହିଁ,
ସାଧନାବଳେ ସଞ୍ଜାତ ଆତ୍ମା ମୁକ୍ତି ଯାହିଁ ।
କାଦମ୍ବିନୀ କୋଳେ ଖେଳେ ଚପଳା ଯେସନ,
ବୈଭବର ଗତି ସଦା ଏ ଭବେ ତେସନ ।
ଅନନ୍ତ ପଥେ ପଥିକ ହୋଇବ ତ ଦିନେ,
ନିଷ୍ଠୁର ନିଷ୍ଠୁର ଏହା ପାଞ୍ଚଥାଅ ମନେ ।
ଲୋଡ଼ାହେବ ନାହିଁ ଗାଡ଼ୀ, ଘୋଡ଼ା, ଅବା ହାତୀ,
ନଥିବେ ପଥରେ କେହି ପରିଜନ ସାଥୀ ।
ଲିଭି ଯାଇଥିବ ମାନସର କ୍ଷୁଧା-ତୃଷା,
କେବଳ ହିଁ ଜଗଦୀଶ ହୋଇବେ ଭରସା ।
ନେତ୍ରବାଟେ ପୁଞ୍ଜି ପୁଞ୍ଜି ଦେଖ ଯାଉଛନ୍ତି,
ଆବାଳବୃଦ୍ଧବନିତା ଦହଇ ଗରାସି ।
ରାଜପୁତ୍ର ବୁଦ୍ଧଦେବ ସାରତତ୍ତ୍ୱ ଶିକ୍ଷି,
ତେଜିଥିଲେ ସିଂହାସନ ଇତିହାସ ସାକ୍ଷୀ ।
ଦାମ୍ପତ୍ୟ-ପ୍ରଣୟ ପ୍ରତି ଦେଇ ଜଳାଞ୍ଜଳି,
ନିଶୀଥେ ଚଳିଲେ ମୁକ୍ତି ମାର୍ଗ ଅନୁସରି ।
ଅର୍ଦ୍ଧମର୍ତ୍ତ୍ୟ ଜଡ଼ମର୍ତ୍ତ୍ୟ ଦେଖ ଲଡ଼ି ଲଡ଼ି,
ନିର୍ବାଣେ ଫେରନ୍ତି ରାଜଦ୍ୱାରରୁ ବାହୁଡ଼ି ।
ଗୌରବ କି ବାଳିବନ୍ଧେ ଶର ସ୍ରୋତସ୍ୱିନୀ ?
ବୃଥା ଗର୍ବ ଅନ୍ଧ କରୁ ନ ବଳାଅ ମନ ।
ପୁରାଣେ ଶୁଣିଛ ମହାରାଜା ଯୁଧିଷ୍ଠିର,
ମୋହ ତେଜି ହରାଇଲେ କ୍ଷତି ବଲ୍ଲଭର ।
ଶଙ୍ଖରୂପ ସମରୂପ ଲାବଣ୍ୟ ଯୌବନ,
କର୍ଣ୍ଣ ବକଳାଙ୍କ ଲଭି ବ୍ୟାଘ୍ର ଆମନ୍ତ୍ରଣ ।
ଉଦକ ସଂଯୋଗେ ବାଳିବୋଲାଙ୍କ ସମଦଶା,
ମାନବ ଜୀବନ ଜଡ଼ କରୁଛେ ସହସା ।
ମେଘରକା ସମ ଧନ-ଯୌବନ-ଖ୍ୟାତି,
ଦୂର କର ମାନସରୁ ଲାଳସା ପ୍ରବୃତ୍ତି ।
ବ୍ୟାଧି ଗ୍ରସ୍ତ ଯାକ ହେଉନ୍ତି ଲୋଏ ବଳନ୍ତ,
ଧର୍ମଜ ରାଜତ୍ୱ ତେଜନ୍ତି ଦୁଃଖ ପାପଛେଦ ।

୦୦୦

## ପ୍ରଭାତ

୧ ଚରଣାୟୁଧର ଡାକ ଶୁଣି ନେ ସମ୍ପୁଟକ ୨
ଧରି ପରାଚୀ ନଗରୀ ଉଭା ଏ କାଳେ ।
ବ୍ରହ୍ମାଣ୍ଡ ଆଲୋକଦାତା ଦେବାଗ୍ରଗଣ୍ୟ ସବିତା
ସ୍ୱର୍ଣ୍ଣ ସିଂହାସନେ ବସେ ଉଦୟାଚଳେ ।
ସତେ କି ସୁବର୍ଣ୍ଣ ନଗର
ନିମିଷେ ପାଲଟି ଦିବ ରଜତପୁର ! ।
୩ ବଳପୃଷ୍ଟ ଜୀବଶ୍ରେଣୀ ଚେତନା ଲଭେ ଧରଣୀ
ଉପବନ ଗୁଣୁ ଗୁଣୁ ଅଳି ଗୁଞ୍ଜନେ ।
ନୀରଦ ନାଦ ଶ୍ରବଣେ ୧ ସାରଙ୍ଗ ଉଷତପହେ
ଘଟୋର୍ଦ୍ଧିରେ ସରସିଜ ଦଶଇ ତତକ୍ଷେ ।
ଦରଶନ ଲଭି ତମିର
ଲୋଏ ଯେସନ ମୃଗ ଦେଖି ଶାର୍ଦ୍ଦୂଳ ।
କଜଳପାନ୍ତି ମରାଳ ଶୁକ ସାରସ କୋକିଳ
କାକଳୀ ରବେ ପୂରିତ ଧରା ଉଷାରେ ।
ଗୃହଶାଳୀ ଅଭିମୁଖେ ବାଳକେ ଯାଆନ୍ତି ସୁଖେ
ଅବଗାହି ବଧୂ ଲକ୍ଷ୍ମୀ ଫେରନ୍ତି ଘରେ ।
ବିକଶିତ କୁସୁମାବଳୀ,
ଲୋଡ଼ା ଧରି ଧାବନ୍ତି ଚୟନେ ମାଳୀ ।
ବନ୍ଦୀ କି ବଳେ ଜାମ୍ବବ ଶୁଣି ବିହଙ୍ଗମ ରବ
ଗୁହା ମୁଖେ ଧାବମାନ ତରତରରେ ।
ରାତିରେ ଚଉକିକ ୧ ଭୁଞ୍ଜନ୍ତି ଅତି ଭାବୁକ
ସତେ କି ଲୁଚନ୍ତି କାହିଁ ତପୀ ବେଶରେ ।
ପୌଷ ମାସ କାହା କପାଳେ,
କେଯୁଣି ଭୁଞ୍ଜାଇ ଦୁଃଖ କରମ ଫଳେ ।
ସୁଲୁ ସୁଲୁ ବହି ବାତ ହରଇ ମାନବ ଚିତ୍ତ
ବିପ୍ରଙ୍କର ଉଷାସ୍ତୁତି ପଡ଼େ ଶ୍ରବଣେ ।
ପ୍ରତ୍ୟୁଷୁ ଜାଗି ଆହିର ଗୋ ଦୋହନେ ତତପର
କୃଷକ କେଦାରେ ଧାଏଁ ହରଷ ମନେ ।
ପ୍ରତିଦିନ ଏପରି ନାଟ
ଦେଖି ମନେ ମନେ କି ଜନକ ଅବୋଧ ରହେ ?

---

୧ କୁକୁଡ଼ା, ୨ ଫରୁଆ, ୩ କାକ ।
୧ ଚାତକ, ୨ ଚଢ଼େଇ ।

ଆଶା ତରଣୀଟି ଭବ-ପାରାବାରେ
ବଲମ୍ବ ନ ଭଜ ଖସେ,
ଅଳ୍ପ ଧନ ପାଇଁ ରହିଥାଏ ସିନା
ଆଉ ଯା ନୟନେ ଦରଶ ।
ରାଜ୍ୟ ବିସ୍ତାର ପାଇଁ ଛତ୍ରପତି
ବଳିଦିଏ କେତେ ନର,
ଜୀବନ ଦୁଏ ଘୃଣା ଜୀବନ୍ୟ ପିପାସା
ଦେଖିଲେ କୋଟିପତିର ।
ଅନ୍ଧ ବାପୁଡାଟି ଅଶ୍ରାନ୍ତ ଅଶ୍ରାନ୍ତ
ବୁଲଇ ମୁକତି ପାଇଁ,
ଜରାଜୀର୍ଣ୍ଣ ଏବେ ବ୍ୟସନ ଆଶାରେ
ଏଣୁ ତେଣୁ ଭ୍ରଷ୍ଟ ଥାଇ ।
କଣ୍ଠାଗ୍ରତ ପ୍ରାଣ ହେଲେ ହେଁ ଉନ୍ମତ
ମନୁ ନ ଛୁଟଇ ଆଶା,
କେତେ ଦେବତାଙ୍କୁ ଯାଚଥାଏ ଏଣେ
ନାଙ୍ଗି-ଛତ୍ର-ଗ୍ରାସ ପୋଷା ।
ଗଳିତ ବ ଜାତ ନାହିଁ ମନେ କ୍ଷଣେ
"ଯାଉ ମୋର ପ୍ରାଣ" ବୋଲି,
ପ୍ରାଣ ବିକଳରେ ମାଗଇ ଗୋଷ୍ଠାନି
ଦ୍ୱାରେ ଦ୍ୱାରେ ବୁଲି ବୁଲି ।
ବୁଦ୍‌ବୁଦ୍ ନିବସୁ କ୍ଷଣିକ ଏ ଆଶା
ରହୁ ନାହିଁ କେହୁ ଥିର,
ଆଶା-ସିଂହାସନେ ବୃଥା-ବସିବାକୁ
ଚେଷ୍ଟିତ ସନ୍ତତ ନରେ ।
ଆଶାର ଅନୁଗ ନ ହେଉ ଜୀବନେ
ଆଶାର ଅସୀମ କଷ୍ଟ,
ଜାଣି ସାପଗାତେ ହାତ ପୂରାଇଲେ
ଘଟିଥାଏ ସର୍ବନାଶ ।

*****

## ମୃତ୍ୟୁଦେବ

କେତେ ବେଶ ଧରୁ ଧନିକ ମଧ୍ୟରେ
କରିବୁ କେ ତା କଳନା,
କେତେ ଦେଖିଲେ ହେଁ ତୋ ବିକଟ ରୂପ
ସଦା ତୁ ଭବେ ଅଚିହ୍ନା ।
ପ୍ରବଳ ତୋଫାନେ ଦେଖାଦେଇ ଆଜ
ସାଗରେ ମାନବ ଅଗ୍ରେ,
ବିନାଶ ନଶୁଣି ଟାଣି ନେଉଥାଉ
ଉଦଧି ଗର୍ଭକୁ ବ୍ୟଗ୍ରେ ।
ରଣଭୂମେ ଯାଉ କରେ ଶସ୍ତ୍ର ଧରି
ସାଜି ସଇନିକ ବେଶ,
ଘନ ବନସ୍ତରେ ଥରେ ଥରେ ତୁହି
ଦେଖାଉ ରୂପ କୁଳଶ ।
ଅଜାଡ଼ ଜଙ୍ଗଲେ ବ୍ୟାଘ୍ର ରୂପେ ମୁଖ
ବ୍ୟାଦାନେ କମ୍ପାଉ ହୃଦ ।
କେବେ ବା ହାତରେ ରକ୍ତ ଖଣ୍ଡେ ଧରୁ
କିଏ ଜାଣେ ତୋ ଶବଦ ।
ହଇଜା-ବସନ୍ତେ ତୋ ରୂପ ଦର୍ଶନେ
କାହାକୁ ନ ମାଡେ ଡର ?
କହ ଆହେ ଦେବ ! ଏ ଭବେ କେ ତୋର
ନୁହଇ ଚିର କିଙ୍କର ।

****

## ଶ୍ରୀପଞ୍ଚମୀ

ବରଷର ଧର୍ମ ମାସ ନାତି ଶୀତ ମାଘ ମାସ
ସିତ ପକ୍ଷ ଶ୍ରୀପଞ୍ଚମୀ ନାମେ ପ୍ରଥିତ ।
ଚରଣ ପଙ୍କଜ ସେବା ମାନସେ ଭକତ ଲକ୍ଷ
ଆସ ଆଜ ଭାରତି ଗୋ ! ହୋଇ ଉଦିତ ।
୧. ଘନସାର ସହ ଚନ୍ଦନ
ଦେନ ଅର୍ଘ୍ୟ ନାରିକେଳ ମାଳ ସୁମନ ।
ପୁଷ୍ପାଞ୍ଜଳି ୨. ଘନରସେ ପୂଜିବା ଚିନ୍ତା ମାନସେ
ଅନନ୍ୟ ତବ ପଦେ ଶିର ଆନତ ।
ସେନ ଏ ଉପଢ଼ୌକନ ହୁଅ ଭକତେ ପ୍ରସନ୍ନ
କରୁଣା ଭଣା ନ କର ହର ଦୁରିତ ।
୩. ବନଜୀବନ କାସାରେ ମୀନ
ପରାୟେ ଜଣାଏ ଦେନ ଏ ନିବେଦନ ।

( ୧. କର୍ପୂର, ୨. ଜଳ, ୩. ଜଳ )

ଅଜ୍ଞାନ ତମିର ନାଶ ଦିବ୍ୟାଲୋକ ପରକାଶ
ପାଇଁ ଚରଣ-କମଳେ କରୁଛୁ ଆଶା ।
ତବ କରୁଣା ଅଭାବେ ଅନ୍ଧକାର ସବୁ ଭବେ
ବିଦ୍ୟା ପ୍ରଦାୟିନି ମାତା ! ଦିଅ ଭରସା ।
କୋଟି କୋଟି ଅଧମ ଶୃଷ୍ଟ
ଦେଖାଅ ଦେଖାଅ ମା ଗୋ ! ସୁମନ୍ତ-ବାଟ ।



## ବସନ୍ତ ଭାବନା

ନିଷ୍ଠୁର ବିଧାନେ ନିର୍ବାସିତ ଶିଶିର
ଦେଖି ଆଗମ ବସନ୍ତ,
ଦୀନ ଅକିଞ୍ଚନେ ଯାତନା ଦେଇଣ
ଭବଧାମୁଁ ତିରୋହିତ ।
ଦକ୍ଷିଣ ଦିଗରୁ ଦିଅଇ ବାରତା
ସ୍ନେହ ମଳୟ ଅନିଳ,
ସୌନ୍ଦର୍ଯ୍ୟ-ପେଟିକା ଦେଖାଇବା ଆଶେ
ପ୍ରକୃତି ରାଣୀ ଆକୁଳ ।
ସହକାର ତରୁ ବଉଳିତ ବେଶେ
ହରଇ ମାନବ ମନ,
ପୁଲକେ ନାଚନ୍ତି ଶିଶୁ ଏ କୋକିଳ
ଶୁଣି ପିକ କୁହୁତାନ ।
ସରସୀ ଶୋଭିତ ନବୀନ କମଳେ
ଦେଖିଣ ମିଳିନ୍ଦ ଏଣେ,
ତଥା କାଳେ ପୁଣି ବାହାର ହେବରୁ
ଚୁମ୍ବଇ ଗୁଞ୍ଜନ ସ୍ୱନେ ।
ବନେ ଉପବନେ ପାଦପ ସକଳ
ନବ ପଲ୍ଲବିତ ବେଶେ,
ଧରାପୃଷ୍ଠ ଶୋଭା କରେଣ ବର୍ଦ୍ଧନ
ଦର୍ଶକ ଚିତ୍ତ ଆକର୍ଷେ ।
ଗୋଲାପ, ବକୁଳ, ନିଆଳୀ, ବାସନ୍ତୀ୧.
ମଲ୍ଲୀ, ବାରଣକେଶ୍ୱର, ୨.
ସେବତୀ, ମାଧବୀ, କାମିନୀ, କେତକୀ
ଉପବନେ ବିକସିତ ।

(୧. ଜୁଇ, ୨. ନାଗେଶ୍ୱର)

ଅଶୋକ କଳିକା ଦେଖିଣ ଯୁବତୀ
ଖେଦେ ଭାଷଇ ଏସନ,
"ସତେ କି ଜାନକୀ ଏ ଅଶୋକ ବନେ
ଶୋକେ ଯାଉଥିଲେ ଦିନ" ।
ପରିମଳମୟ ମଳୟ ପବନ
ପରଶି କୁସୁମଚୟେ,
ଧୀରେ ଧୀରେ ବହି ବାସ ବିତରଣେ
କରଇ ଆନନ୍ଦମୟ ।
ଶୋଭାହୀନ ତନୁ ବସନ୍ତ ପବନେ
କମନୀୟ କାନ୍ତି ସାଜ,
ଦେଖାଇ ଦିଅଇ ନିଷ୍ଠୁର ରହସ୍ୟ
ନବୋଦ୍ଭିନ୍ନକୁଳେ ଆଜି ।
ମଧୁମାସ ଶେଷେ ପ୍ରବେଶି ମର୍ତ୍ତ୍ୟରେ
ଦାରୁଣ ନିଦାଘ ଏଣେ,
ବସନ୍ତ ବିରହ ଭଗ୍ନିଣ ଚେତନା
ଦିଅଇ ମାନବ ପ୍ରାଣେ ।



## ଗୋପବନ୍ଧୁ

ଜନନୀର ପେଦତଳେ ନତକରି ଶିର,
ବାଲ୍ୟକୁଳ ନେହେ ସେବୁଥିଲେ ଯେଉଁ ବୀର ।
ସାଂସାରିକ ସୁଖ ଦୁଃଖ ଦେଇ ଜଳାଞ୍ଜଳି,
ପୋଛୁଥିଲେ ନେତ୍ରନୀର ମନଃପ୍ରାଣ ଢାଳି ।
ଦୀନ ଅକିଞ୍ଚନଙ୍କର; ପିନ୍ଧିଣ କୌପୀନ,
ନାହାନ୍ତି ଆଜି ସେ ଗୋପବନ୍ଧୁ ପୁଣ୍ୟବାନ ।
ଶାନ୍ତ ନମ୍ର ଯୋଗ୍ୟତମ ଜନନୀସେବକ,
କେ ଶୁଣିବ ଆଉ ଏବେ ଜନନୀର ଡାକ ।
କେ ବା ଶୟନ-ସ୍ୱପନେ-ବେହରଣ କାଳେ,
ଜନନୀ ଜନନୀ ବୋଲି ଡାକକ ଆକୁଳେ ।
କର୍ଣ୍ଣଧାର ବିହୁନେ ବା ଭୀମ ପାରାବାରେ,
ତରିବାକୁ କା ଅକାଳ ଘୂର୍ଣ୍ଣି ମଧ୍ୟରେ ?
କେ ଶୁଣିବ ଆଉ ତାର କରୁଣ କ୍ରନ୍ଦନ,
ବନବାସିକି ଜନନୀର ପୋଛୁବ ଚରଣ ?

ବିଚ୍ଛିନ୍ନ ଜନନୀ ଅଙ୍ଗ ଏକତ୍ରୀ କରଣେ,
ଚେଷ୍ଟିତ ଅନବରତ ଉତ୍କଳୀୟର ମନ ।
ଯା ପାଇଁ କ୍ରନ୍ଦନ କରେ ଶତ ଶତ ପ୍ରାଣ,
ଅକାଳେ ପୁଣ୍ୟାତ୍ମା ଆହା ! ସ୍ୱରଗେ ପ୍ରୟାଣ ।
ନିବେଦନରେ ଭରା ଆଜ ଜନନୀ ମାନସ,
ଋଷିପ୍ରାଣ ସୁତ ତେଜ ଝୁରେ ଅହର୍ନିଶ ।
୧. ଷଷ୍ଠୋର୍ଦ୍ଧ୍ୱେଁ ସାର ଭବେ ନକର ବେଦନ,
ଯେ ମିଶେ ମାଟିରେ ତାର ନମିଳେ ଦର୍ଶନ ।

*****

## ପରିଣତି

ବର୍ଷା ହେବ ବୋଲି ବାରୁଣୀ ଯେମା,
ଦେଖାଉଛି ଭାଲେ ଅବା ସୁଷମା ।
ସୁନେଲି ଫୋପାଟି ଶିରରେ ରାଜିତ,
ଜିଷ୍ଣୁ ଦର୍ଶକ ହରଇ ଚିତ୍ତ ।
ବଳାକା ନିକର ତୋରଣ ଗଢ଼ି,
ଉଡ଼ୁଛନ୍ତି ନଭେ ଧାଡ଼ିକ ଧାଡ଼ି ।
ବଣଦେଶ ଦଶେ ଅଳକ ପରି,
ବାନ୍ଧିକେ ପାରିବ ଛବି ମାଧୁରୀ ।
ଚଞ୍ଚଳ ଚମର ଧରି ମରୁତ,
ମନ୍ଦେ ମନ୍ଦ ବହି ହୋଇ ଉଦ୍‌ଗତ ।
ପାଦପେ ସଜାଡ଼ି ଅତି ଯତନେ,
ଭେଟନ୍ତି କୁସୁମ ହରଷ ମନେ ।
ମାଡ଼ି ଫେରୁଛନ୍ତି ବିହଙ୍ଗାବଳୀ,
ହୁଳ ହୁଳି ସମ କରି କାକଳୀ ।
ବାରତା ପାଇଣ କୃଷକ ଭାଇ,
ଗୀତ ଗାଇ ଗାଇ କ୍ଷେତ୍ରୁଁ ଫେରଇ ।
ଗୋରୁ ହମ୍ବାରଡ଼ି ମସ୍ତକ ଟୀପା,
ବାଇଦ ଶଙ୍ଖରେ ଝିଲ୍ଲୀଙ୍କ ଟୋପା ।
କଅଁଳ ବାଛୁରି ଆନନ୍ଦ ମନେ,
ନାଚି ମାଆ ପାଖେ ମିଳେ ସଘନେ ।
ବଂଶୀ ବଜାନ୍ତି ଗୋପାଳକୁଳ,
ଶ୍ରବଣେ ଉପୁଜେ ମୋଦ ଅତୁଳ ।
ସ୍ୱରୂପ ପ୍ରତିବିମ୍ବ ସରସୀ ଜଳେ,
ଦେଖି ସୀମନ୍ତିନୀ କୁଳ ଏକାଳେ;
ବନ୍ଦାପନା ଦୀପ ପ୍ରାଙ୍ଗଣ କରେ,
ସନ୍ଧ୍ୟା ଆସନ୍ତି ଅତି ସଙ୍କୋଚେ ।
ଦେଖାଇ ଜଗତେ କ୍ଷଣିକ ଶୋଭା,
ମିଶିଲ ଅନ୍ଧାରେ ବାରୁଣୀ ବିଭା ।
ମୁଖେ ହୁଳି ଦେଇ ଶିବା ବାହାରି,
କ୍ଷଣେ ଦାଉ ଦାଉ କ୍ଷଣେ ଅନ୍ଧାରି ।

*****

## ଗାନ୍ଧୀ

ବୀର ପ୍ରସବିନୀ ଭାରତ ମାତା
କ୍ରୋଡେ ଥାଇ ଦର୍ପେ ଟେକଇ ମଥା
ବାଢ଼ଇ ଆଶେ ସ୍ୱାଧୀନତା-ତୃଷା
ଚେତାଇଲ ସକଳ ଯୁବ ଲାଳସା ।
ଦେଖାଇଛ ବୀର ପଣେ,
ତବ ପୂଜା ପାଇଁ ସଜାଡ଼ୁଛି କଟି
ଦେବାକୁ ଏ ଅକିଞ୍ଚନ ।
ଉଦ୍ଦାମ କୁଞ୍ଜର ଦର୍ପମୂ ନର
ପଦ ପାଇଁ ଏତେ ହୁଏ ଆକୁଳ ।
ଭୋଗ୍ୟା ପେଟ ମାରି ସଞ୍ଚଇ ଧନ
ନିମିଷ ନଭାବେ ଏ ସବୁ ଧନ ।
ଶିଖାଇଲ ଯା ଜୀବନେ
କୋଟି କୋଟି କଣ୍ଠ ବାହାରିବ ଧନେ
ତବ ମହିମା କୀର୍ତ୍ତନେ ।
ଅହିଂସା-ଆୟୁଧ ଧରଣ କରେ
ଉଭା ହୋଇଲ ଆସି ରଣଭୂମିରେ ।
ଅଜେୟ ଶତ୍ରୁଙ୍କ ଦେଖି ଡରିଲେ
ବିନା ରକ୍ତପାତେ ଦେଶ ଛାଡ଼ିଲେ ।
ତବ ସେନାପତି ପଣେ,
ଭବିଷ୍ୟତ ଇତିହାସ ମୁକ୍ତ କଣ୍ଠେ
କରୁଥିବ ଯଶଗାନ ।
ପର୍ବତ କନ୍ଦରେ ତବ ବାରତା
ବଜାଉଣି ଘୋଷୁଅଛି ଜନତା ।

(୧. ସତ୍ୱସ୍ଥିତା)

ଯନ୍ତ ବେଶଧର ପଲ୍ଲୀ କୋଳେ
ଲାଗି ଦେଉଥିଲ ଦୀନ ମଙ୍ଗଳେ
ନ ଡ଼ରି ବରଷା ଖରା,
ଗ୍ରାମେ ଗ୍ରାମେ ବୁଲି ସତ୍ୟର ମହିମା
ପ୍ରଚୁରିଲ ଦେଶ ସାରା ।

ସାମ୍ୟଭାବ ମାତ ଧରିଣ ମନେ
ଯାପିଲ ଜୀବନ ଦେଶୀ କୌପୀନେ;
ସାରା ଦୁନିଆଁଟି ଦେଖି ଏ ଶାନ୍ତ
ମହାତ୍ମା ବୋଲାଣ କରିଲେ ସ୍ତୁତ ।
ଚାଳଶୋଟିବ କଏ ମନ୍ତ୍ର,
ତବ ନାମ ପୁଣି ଏ ଭାରତ ଭୂମେ
ଯାବତ ଆକାଶେ ଭାନୁ ।

ଏକତା ଅଭାବ ଭାରତେ ଦେଖି
ହରିଜନ ପ୍ରତି ଢେଉଁଲ ଆଖି;
ସମାଜ ସଂସ୍କାରେ ମନ ବଳାଇ
ଅସ୍ପୃଶ୍ୟତା ଦୋଷ ଦେଲ ଲିଭାଇ ।
ଥୋକେ ରହିଲେ ବିରାଗେ,
ହରିଜନ ଗଣ ତବ ପୁଣ୍ୟ ନାମ
ଗାଉଥିବେ ଯୁଗେ ଯୁଗେ ।

ବାଳକେ ବୋଲନ୍ତି ସତ୍ୟ ଯୁଗରେ
ରାବଣ ମରିଣ ରାଘବ କରେ ।
ଦ୍ୱାପର ଯୁଗରେ କୃଷ୍ଣ ପ୍ରକାଶ
ଘଟାଇବା ପାଇଁ କଂସ ବିନାଶ ।
ଗବର୍ଣ୍ଣମେଣ୍ଟକୁ ଗାନ୍ଧୀ
କଳିଯୁଗେ ହଟାଇଲେ ବିନା ଅସ୍ତ୍ର
ଦେଶୀ କଉପୀନ ପିନ୍ଧି ।

କାହିଁ ଘୁଞ୍ଚିଛନ୍ତି ଲୋଭ ମାନବେ
ଜାଣି ଅନିଶ୍ଚିତ ସବୁ ଏ ଭବେ ।
କାଲୁ ବଡ଼ିଲେ ଧନ ସମ୍ପତ୍ତି
ସଦା ଦେଖାଇଣ ନିର୍ଲୋଭ ମତି ।
ସତେ ଦିବ୍ୟଲୋକୁ ଆସି,
ଜନମ ହୋଇଲ ଏ ଭାରତ ଭୂମେ
ଦିବ୍ୟଜ୍ୟୋତି ପରକାଶି ।

ଦିବ୍ୟଲୋକେ ଥାଇ ଦିଅ ଆଶିଷ
ତବ ଅଭିପ୍ରେତେ ଚଳୁ ଏ ଦେଶ ।
ତବ କୃପାବଳେ ଦୀନ ରଙ୍କୀଏ
ପେଟକୁ ପାଆନ୍ତୁ ଅନ୍ନ ମୁଠିଏ ।
ଦୂରହେଉ ଦରିଦ୍ରତା,
ନିବେଗ ହୁଅନ୍ତୁ ଭାରତ ସନ୍ତାନ
ଅଚିରେ ଆସୁ ଏକତା ।

*****

## ପ୍ରକୃତି

ତାରାବଳୀ ମଧ୍ୟ ସ୍ୱର୍ଗ ସିଂହାସନେ
ବିରାଜେ ତାରା ରମଣ,
କାନନ ପ୍ରାନ୍ତର ଜନପଦ ପୁଣି
ଶୁଭ୍ରାଲୋକେ ପରିପୂର୍ଣ୍ଣ ।
ଉଲ୍ଲାସେ ଉତ୍ଫୁଲ୍ଲ ମହାସିନ୍ଧୁ ପ୍ରାଣ
ଦେଖି ସେ ରଜତ ଜ୍ୟୋତ୍ସ୍ନା,
ମାତା କ୍ରୋଡ଼ାସୀନ ଶିଶୁ ମନେ ହୁଏ
ଅତୁଳ ମୋଦ ଉତ୍ପତ୍ତି ।
କ୍ଷେତେ ଚକ୍ରଶାଳୀ ଦର୍ଶନେ କୃଷକ
ପୁଲକେ ନାଚଇ ପ୍ରାଣ,
ଅବନତ ଆମ୍ର ତରୁ ଫଳଭାରେ
ହରଇ ଦର୍ଶକ ମନ ।
ସହସା ପ୍ରକୃତି ନମସ୍ତବେଶ ସାଜି
ଆବରଇ ଇନ୍ଦୁ ଦ୍ୟୁତି,
ଝାଡ଼ ୧. ପିକ ବଧୂ ଭସାଇ କେଦାର
ଟାଳଇ ଦର୍ଶକ ଧୃତି ।



## ବାଳ ବିଧବା

ସୁଗନ୍ଧ ତଇଳେ ଲେପି ଚିକୁର,
ବେଣୀ ଲମ୍ବାଇଣ କଟି ଉପର,
ଖଞ୍ଜି ନାନାପୁଷ୍ପ ତହିଁ ଝୁଲଇ,
ଉଷା ଆସି ଯେବେ ବାଳୁକା ଚମକରେ,

( ୧. ଆମ୍ବଗଛ )

କାଞ୍ଚନା ସେ କିଶୋରୀ,
ନାନା ଅଳଙ୍କାରେ ବିଭୂଷିତା ତନୁ
ଦିଶିଥାଏ ହତଶିରୀ ।
କେତକୀ ବରନା, କୁନ୍ଦ ରଦନା,
ଡାଳିମ୍ବ ଦଶନା, ପଦ୍ମ ନୟନା ।
ଗୁରୁ ବିମ୍ବାଧରୀ ପଟ୍ଟବସନ
ପରିଧାନ କରି ସଖୀ ମେଳନ ।
କାଞ୍ଚନା ସେ କିଶୋରୀ,
ନାନା ଅଳଙ୍କାରେ ବିଭୂଷିତା ତନୁ
ଦିଶିଥାଏ ହତଶିରୀ ।
ଅତି ଦୟାବତୀ ଅବୋଧା ବାଳୀ
କପଟ ରହିତା ଅତି ସରଳା,
ଜନକ ଜନନୀ ପ୍ରତି ଭକତି
ପ୍ରଦର୍ଶନେ ପୁଣି ସଦା ତା ମତି ।
କାଞ୍ଚନା ସେ କିଶୋରୀ,
ନାନା ଅଳଙ୍କାରେ ବିଭୂଷିତା ତନୁ
ଦିଶିଥାଏ ହତଶିରୀ ।
ଧିକ ଧିକ ଏହି ବ୍ରାହ୍ମଣ ଜାତି
ଆହା ! କିଶୋରୀର ଏ କି ଦୁର୍ଗତି ।
ପୁଂଷ ଦେଣପୁ ଇଚ୍ଛା ଅଧୀନ
କି ବିଚିତ୍ର ପୁଣି ଶାସ୍ତ୍ର ବିଧାନ ।
କେଉଁ ପାପଫଳେ ଆଜ,
ବୈଧବ୍ୟ ଯନ୍ତ୍ରଣା କିଶୋରୀ ରତନ
ଭୋଗଇ ଶଙ୍କରେ ଭଜି ।

*****

## ବୃକ୍ଷର ତିରସ୍କାର

"ଛି ! ଛି ! ଏକି ମାନବରେ କରୁଛୁ ଅନୀତି,
ତସ୍କର ପରାୟେ ହରିନେଲୁ ମୋର ଭୃତି ।
ଅପରର ସମ୍ପତ୍ତିରେ ଦେଇ ହସ୍ତାହୃତ,
ଏହି କି ମାନବିକତା ବଢ଼ାଉ ସମ୍ପତ୍ତି ?
ଖୋଜ ତୁ ଔଷଧ ପୁଣି କଳ୍ପିତ ଆଘାତେ,
ମୋ ତନୁ ତୋ ନଖାଘାତେ ସମ୍ପୃକ୍ତ ଶୋଣିତେ ।
ନିର୍ଦ୍ଦୋଷିକୁ ଏ କି ଦଣ୍ଡ ବିଦ୍ଧ ଅକାରଣେ,
ଘେନିଛୁ ମୋ ତନୁ ଗତା ଅନ୍ୟ ଉପାଦାନେ ।
ମେଧାବୀ, ବଳୀ, କୌଶଳୀ, ବୋଲାଉ ଜଗତେ,
ଦୟାନାହିଁ ଦେଖିଲି ମୁଁ କଣ୍ଟକେ ତୋ ଚିତ୍ତେ ।
କେତେ ସ୍ନେହ ପାଳିଥିଲା କୋଳେ ମୋ ସନ୍ତତି,
ବଳେ ଛଡ଼ାଇ ନେଲୁ ଏକି, ରେଭ ସ୍ଥିତି ।
ତସ୍କର ଦଣ୍ଡିତ ଯିନା ବିଚାରାଳୟରେ,
ସମୀଚୀନ ଦଣ୍ଡ ତୋର ଧର୍ମଙ୍କ ଦୁଆରେ ।
ସନ୍ତାପିତ ହୃଦ ଆଜି ଜଳେ ଶୋକାନଳେ,
କିଏ ନିଭାଇବ ପୁଣି ଏ ମହୀମଣ୍ଡଳେ ?
ଆମରଣ ଲୁଚିକରି ଜନନୀ-ଜଠର
ସନ୍ତତି ବିରହେ ନିର୍ବାଣ ଅଗୋଚର ।
ଲୁବ୍ଧକ କି ବୁଝେ କେବେ କୁରଙ୍ଗୀର ଶୋକ,
ବଳେ ଧରି ନଏ ଯେବେ ତା ଶିଶୁଶାବକ ।
କୁକୁରର ଧ୍ୟାନ ଯଥା ଉଚ୍ଛିଷ୍ଟ ପତ୍ରରେ,
ପରସ୍ୱ ହରଣେ ତଥା ପରଶ୍ରୀକାତରେ ।
ବାତ୍ସଲ୍ୟ ପ୍ରେମରେ ଭବେ ସର୍ବେ ଜଡ଼ୀଭୂତ,
କି କଷଣ ତା ବିରହେ ବାକ୍ୟ ଅବର୍ଣ୍ଣିତ ।
ଅନୁଭବୀ ଯିନା ଜାଣେ ବାଧା ବିରହର ।
ଅପରର ବିବେଚନା କଳ୍ପିତ ମାତର ।
ସହିଲି ବରଷା, ଖରା, ଦାରୁଣ ଶିଶିର,
ବଢ଼ାଇଲି ଅତିପ୍ରେମେ ଜାଣୁ କି ପାମର ?
ଭାବିଥିଲି ସୁନାମିକୁ ଜଗତେ କେବଳ,
ମାତ୍ର ତୋ ଦ୍ୱାରେ ମହତ୍ତ୍ୱ ଏ ଭବେ ବିରଳ ।
ସ୍ୱାର୍ଥପର ଅନ୍ଧତ୍ୱେ ଘୃଣିତ ନିନ୍ଦିତ !
ସମାଜେ, ତଥାପି ତୁହି ସ୍ୱାର୍ଥେ ଜର୍ଜରିତ ।
ସ୍ଥିର ପାଦପ ପ୍ରତି ତୋ ଏକି ଅତ୍ୟାଚାର !
ଅପର ସମ୍ପତ୍ତି ବଳେ କଲେ ଅଧିକାର ।
ଧର୍ମନୁହେ ଧର୍ମନୁହେ ଏହାରେ ପାଷାଣ୍ଡ,
ଅବିମୃଷ୍ୟକାରିତା ତୋ ନିଶ୍ଚେ ହେବ ଦଣ୍ଡ ।
ଆତ୍ମକାର୍ଯ୍ୟ ସାଧନ ହିଁ ବେଉସା ତୋହର,
କପଟ ବା ହେବ ମନେ ଧରମ ସଞ୍ଚାର ।
ଯା ପିଠିରେ ବାଜି ନାହିଁ ବିଷାଦ ପ୍ରହାର,
ବିଳାସର ଅନୁଚର ସଦା ତା ଅନ୍ତର ।
କେ ବୋଲଇ ସତ୍ୟବନ୍ତ କେହି ବା ଧାର୍ମିକ,
ନିର୍ଦ୍ଦୋଷ ଉପରେ ଏଣେ ବସାଇ ବନ୍ଧୁକ ।

ଅନ୍ୟାୟର କରବାଳ ଧାରଦେଲେ ଘାଚ,
ଛଡ଼ାଇବ ନୂଇକାଳ ଟହୁ ଧକ୍‌କା ଦେଇ ।
ଜୀବନାନ୍ତେଁ ଫିଟିବାକୁ କା'ର ତା ଆଗରୁ,
କର୍ମ ଅନୁଯାୟୀ ଦଣ୍ଡ ଦିଏ ଲଘୁ ଗୁରୁ ।
ଚିତ୍ତ ଶୁଦ୍ଧି କେବଳ ହିଁ ଭକ୍ତି ଉପହାର,
ଝିଁଟକେ ସତତ ସତ୍ୟ-ସ୍ନାତ କଳେବର ।
ତରିବାକୁ ଶ୍ରେଷ୍ଠ ପନ୍ଥା ସଂସାର-ଜଳଧି,
ପରସେବା ତେଣୁ ହେଉ ଜୀବନ ସମାପ୍ତି ।
ପରେ ପୀଡ଼ ନ ଲଗାଅ ଚରଣେ କାଳିମା,
ନଶ୍ୱର ଜୀବନ ଘୋଷୁ ଶାଶ୍ୱତ ମହିମା ।
ଭ୍ରମେ ପଡ଼ ହରିଲୁ ଯେ ସୁମନ ସୁଷମା,
୧. ସମାପ୍ତରେ ବୁଝିବୁ ଏ କାହାର ମହିମା ।
ଜାଣୁ ତୋ ମୋ ଜନ୍ମଦାତା ଜଣେ ଏ ମନ୍ଦିରେ,
ତୋର ବାସ ଥୁଇ ଚଳେ ମୋ ବାସ ଖବରେ ।
ପ୍ରତିଦିନ ଭକ୍ତିରେ ମୁଁ କୁସୁମ ସୌରଭ,
ଅର୍ପେ ପରମେଶ ପଦେ ନଜାଣେ ମାନବ" ।

*****

## ଗ୍ରୀଷ୍ମ ଭାବନା

ଗତେ ଜଗତ ବସନ୍ତ    ଧରାଧାମୁ ତିରୋହିତ
ଚଣ୍ଡବେଶେ ଉପଗତ ନିଦାଘ କାଳ,
ବହ୍ନି ସଙ୍ଗେ ଯୁଗ୍ମାପତି ୨.    ବଢାଇଲେ ଦୁରଗତି
ଖେଚର-ଭୂଚରଗଣ ଅତି ଆକୁଳ,
ଧନ୍ୟ ଧନ୍ୟ ସଂସାର ଲୀଳା !
କେବେ ଗଲେ ଫୁଲମାଳା କେବେ ପୋହାଳା ।
ବେନ୍ଦ୍ରିବଳ ଉଷ୍ଣ ଖର    ଦିଅଇ ସନ୍ତାପ ଘୋର
ଅଥୟ ଅସ୍ଥିର ମାର ପ୍ରାଣୀ-ଜୀବନ ।
କୃଶତନୁ ପୁଷ୍କରିଣୀ,    କୂପ, ଘାଟ, ତରଙ୍ଗିଣୀ
୩. ବ୍ରତତି ପାଦପ ଶ୍ରେଣୀ ପଲ୍ଲବହୀନ ।
ନ ସହି ମହିଷ ଆତପ
୪! ଜମ୍ବାଳେ ଲୋଟନ୍ତି ମନ୍ଦ ନିଦାଘତାପ ।

(୧. ଧାନ)

(୨. ସୂର୍ଯ୍ୟ ୩. ଲତା ୪. ପଙ୍କ)

୫. ଧନଞ୍ଜୟ ଜନପଦେ    ଖେଳଇ ଅତି ପ୍ରମୋଦେ
ଅଧିବାସୀ ଅତିଖେଦେ ନିନ୍ଦେ କରମ ।
ତୃଷାରେ ହୋଇ ଆକୁଳ    ପ୍ରଦୋଷେ ଖୋଜନ୍ତି ଜଳ
ମୃଗ ଶୂକର ଶାର୍ଦ୍ଦୂଳ କରି ବିଭ୍ରମ ୬ ।
ଅକିଞ୍ଚନ ରସାଳ ଫଳେ
ଜୀବନ ରଖନ୍ତି ଏହି ଗ୍ରୀଷମ କାଳେ ।
ନିରନ୍ନ ନଗର ଖର    ଝାଳପୋଛୁ ଦିନସାର
ସ୍ୱକର୍ମେ ନିଯୁକ୍ତ ପରଚଣ୍ଡ ଝାଞ୍ଜିରେ ।
ଦାବାନଳେ ମ୍ରିୟମାଣ    ବନ୍ୟଚର ଜନ୍ତୁଗଣ
ବିପନ୍ନ କୁମ୍ଭୀର ମୀନ ବକ-ଧୀବରେ ।
୭. ଉଶୀର ୮. ପୟର-ଚନ୍ଦନ,
କା ଭାଗ୍ୟେ ଘଟଇ ପୁଣି ଦେଖେ ନୟନ ।

*****

## ସଭ୍ୟତା

କାହିଁ ଅଇଲୁ ଏ ସଭ୍ୟତା ଦୂତ,
ହରି ତେଜ-ଓଜ-ମାନ ମହତ ।
ତା ରୂପ ଦର୍ଶନେ ମାଡ଼ଇ ଡର,
ଭାବନା-ନିକଟ ହୁଏ ଅନ୍ତର ।
ସଭ୍ୟତା-ନାଗରୀ କରଇ ରଙ୍ଗ,
ଦଶନ ଚଳଇ ଅକାଳେ ଭଙ୍ଗ ।
ଶିକୁର ପକ୍ୱତା ଭଜେ ଅକାଳେ,
ଯେହୁ ନିବେଶିତ ସୁଗନ୍ଧ ତୈଳେ !
ଛାଡ଼ ଦନ୍ତକାଷ୍ଠ ଦନ୍ତ ଘର୍ଷଣେ,
ଅପବ୍ୟୟ ଅର୍ଥ କୃତ୍ରିମ ଚୂର୍ଣ୍ଣେ ।
ଛାଡ଼ି ପଦଯାନ କୃତ୍ରିମ ଯାନ-
ଆରୋହୀ କରଇ ମୃତ୍ୟୁବରଣ ।
ଏହି କି ଅଟଇ ସଭ୍ୟତାଚିହ୍ନ,
ହାତେ ସିଗାରେଟ ବଦନେ ପାନ ।
ସଭ୍ୟତା କେତନ ଯହିଁ ଉଡଇ,
ସମର ହୁଙ୍କାର ତହିଁ ଶୁଭଇ ।
ନିରୀହ ମାନବ ଶମନାଳୟ,
ଅଜାଣତେ କରଥାନ୍ତି ଆଶ୍ରୟ ।

(୫. ଅଗ୍ନି ୬. ଭ୍ରମଣ ୭. ବେଣାଚେର ୮. ଘଇଡ଼ ଜଳ)

ସହରରେ ପଶିଣ ସଭ୍ୟତା ବେଗ,
କେତେ ଅସାଧୁତା କରଇ ସାଙ୍ଗ ।
ନର୍ଦ୍ଦମା ଅଟଇ ବ୍ୟାଧି ଆକର
ଯହିଁ ଅପ୍ସରସ ବିହାର କର ।
ଇସ୍ତିରି ବସନ ପରେ ଆଦର,
ମାସେ ବା ଦ୍ୱିମାସ ଆୟୁଷ ତାର ।
ହୋଟେଲ ଭୋଜନେ ଅନେକ ମନ,
ରୋଗ ଆମନ୍ତ୍ରଣ ଅର୍ଥ ଦୋହଣ ।
ତୁଳସୀମଞ୍ଚମା ଦାଣ୍ଡରେ ଉଭା,
ମନେ ଦେଖିବାକୁ ସୁ ତୁଚ୍ଛ ଶୋଭା ।
ଦେଖିଛ କି କାହିଁ ପଲ୍ଲୀ-ପଙ୍କାଳେ,
ମରଣ ଲଭେ କେ ପ୍ରସବ କାଳେ ।
କେବେ ଲୋଡ଼ିଛନ୍ତି ଭିଟାମିନ କି,
ଚେଷ୍ଟିତ ଭଲ କାଳ ଯାଇଛି ।
ଦେଖ ଦେଖ ତାଙ୍କ ଦୃଢ଼ ଶରୀର,
କର ସଭ୍ୟତାକୁ ଦୂରୁ ଜୁହାର ।
ଯେତେକ ସଭ୍ୟତା ଆସଇ ପଶି,
ଦରିଦ୍ରା ରୋଗ ଦିଅଇ ଗ୍ରାସି ।
ସୁବିଶାଳ ତନୁ ପୂର୍ବ ପୁରୁଷେ,
ସଭ୍ୟତା ନ ଥିଲା ଯେବେ ଏ ଦେଶେ ।
କେତେଗୁଣେ ତାଙ୍କଠାରୁ ଅଧିକ,
ଭାବ ଭାବ ହଜି ଗଲା ବିବେକ ।

*****

## ନଶ୍ୱରର ଭ୍ରୂକୁଟୀ

ସ୍ୱାର୍ଥର ଦୋକାନ ବସିଛି   ଆଜି ହାଟ ବାଟରେ,
ନିରଙ୍କୁଶେ ଖେଳେ ମୃତ୍ୟୁ   ଦେଖି ହୃଦୟ ଥରେ ।
ହାହାକାର ଉଠେ ଶୁଭୁଛି   ଅବିରତ ଜଗତେ,
ନୈରାଶ୍ୟ-ବତାସ ବହୁଛି   ଆହା ! ନିରତ ଶତେ ।
ଜନକ ଜନନୀ ବଚନେ   ଏଡ଼ି ଦେଉଛି ସୁତ,
ପୂର୍ବ ଗୁରୁଶିଷ୍ୟ ସମ୍ବନ୍ଧ   ଏକାବେଳକେ ଲୁପ୍ତ ।
ଶିରା କାଟିବାକୁ ତିଆର   ସାଉକାରକୁ ଚାର,
ନଉକର ଏବେ ଗୋପନେ   କରେ ଧର୍ମ ଅନ୍ତର ।
ଶାଶୁ ଶ୍ୱଶୁରଙ୍କୁ କେ ଅବା   ପରିହାସେ ତତ୍ପର,
ସ୍ନେହ-ଭକ୍ତି-ଦୟା ପୀରତି   ମନେ ନାହିଁ କାହାର ।
ହସି ଯାଉଛି କି ଜଗତୁ   ପଡ଼ୋଶୀ ସମ୍ବନ୍ଧ,
ଦିନୁଁ ଦିନ କାଳସ୍ରୋତରେ   ଚିର ବନ୍ଧି ନିର୍ବନ୍ଧ ।
ହଣାହଣି କେତେ ଚଳାଛି   ନିଜ ନିଜ ମଧ୍ୟରେ,
ନାସ୍ତିକତା ଭାବ ଖେଳୁଛି   ମାନବର ହୃଦରେ ।
ପୁରାଣ ଗୀତାର ଉପଦେଶ   କେବା ବୁଝୁଛି ଏବେ,
ନାସ୍ତିକତା ପଛେ ନ ଭାବି   ଧାଇଁଛନ୍ତି ସଭିଏ ।
ଭ୍ରାତୃହିଂସା ଗତି ପ୍ରବଳ   ଏବେ ଦିନକୁ ଦିନ,
ଅଳଲ୍ଡ଼ା ବରଷା କରଇ   କ୍ଷେତ୍ରୁଁ ଶସ୍ୟ ପ୍ଲାବନ ।
ଲାଗି ରହିଅଛି ମଡ଼କ   ମହୀ ବୁଜନେ ଭରି,
ହୋଇ ସହୋଦର କାନ୍ଥାର   ଦହୁଅଛି ସଂସାରି ।
ନାହାନ୍ତି ଅଶୋକ ଶଙ୍କର   ବୁଦ୍ଧ ଚୈତନ୍ୟ ଆଜି,
ଆସ୍ତିକ ହୃଦୟେ ଅବନୀ   ଉଠନ୍ତା ଗରଜି ।
ନିସ୍ତୃତ ସଙ୍ଗରେ ଲଢ଼ିବ   ଅବା କେହୁ ମନ୍ତ୍ରରେ,
ନଶ୍ୱର ଭ୍ରୂକୁଟୀ ଏ ପରି   ଉଦେ ହୁଏ ମନରେ ।

****

## ସ୍ତବ

କରୁଣାମୟ ଶ୍ରୀହରି   ଦୟାବ୍ରଜ ମୁକ୍ତି-ଉକାସି
କରୁଣା-କଣା ନିକର ଡାକେ ଆରତେ,
ସାଥି ଭବ-ପାରାବାରେ   ପ୍ରକାଶ ଦିନ ତମିରେ
ବିରାଜ ବିରାଜ ହୃଦ ପଟେ ନିରନ୍ତେ,
ଦୁଃଖୀ ସିନା ବୁଝେ ମହିମା,
ପ୍ରାଣେ ଛୁଇଁ ଯେବେ ଦୁଃଖ କାଳିମା !

ହସି ଉଠେ, ସରୋବରେ   ତବ ମହିମା ପ୍ରସୂନେ
ନିଶାନ୍ତେ ନଳିନୀ ଲଭେ ମିତ୍ର ଦର୍ଶନ,
ପୁଣି ଶରଦ କୈରବ   ଲଭେ କୁମୁଦ ବାନ୍ଧବ
ପ୍ରାବୃଟେ ଚାତକ କରେ ଘନ ବାଷଣ,
ବସନ୍ତ ଆଗମେ କୋକିଳେ,
କୁହୁ କୁହୁ ତାନେ ବସି ରସାଳ ଡାଳେ ।

ଅଗ୍ରଜ ଅଜ୍ଞାରେ ଦୁଃଶା   ହୃଦେ ଲଭି ତବ ଭୂଷା
ଦ୍ରୌପଦୀ ବସ୍ତ୍ରହରଣେ କଲା ପ୍ରୟାସ,
ଦୁଃଖିନୀ ବାଣୀ ଶ୍ରବଣେ   ଶୂନ୍ୟ ପଡ଼ିଲା ଚକ୍ଷେଣେ
ଅସୀମ ନିର୍ଦ୍ଦେଳ ଶେଷେ ଦୁଃଶା ନିରାଶ,

ବାଙ୍ଗଣ ନକ୍ରର ମୁଖରୁ,
ମୁକତି ଲଭିଲ ପୁଣି ତବ କୃପାରୁ ।

ଫେଡ଼ ତବ ପଦଧୂଳି    ଅହଲ୍ୟା ଗଲ ମୁକୁଳି
ଧ୍ରୁବ ପ୍ରହ୍ଲାଦ ପାପ କଲ ମୋଚନ,
ପାଣ୍ଡବଙ୍କ ହୋଇ ସଖା    ସକଳ ବିପଦୁଁ ରକ୍ଷା
କରିବାରୁ ହେଲ ତବ ସଙ୍କୀର୍ତ୍ତନ,
ସ୍ଥାବର ଜଙ୍ଗମ ସର୍ବେ,
କୃପା ବିହୁନେ ଲଭନ୍ତି ପ୍ରଳୟ ଜବେ ।

ଧରାପୃଷ୍ଠେ ଜୀବାବଳୀ    ତରୁଲତା ଅଶୁଂମାଳୀ-
ହିଂଶୁମାଳ ତାରକା ପ୍ରକର ଆକାଶେ,
ଅଗଣିତ, ଅକଳ୍ପିତ;    ତୁମ୍ଭର ମହିମା ତତ୍ତ୍ୱ
ତଥାପି ନ ଦେନଇ ମାନବ ମାନସେ,
ଭଲ ଭଲ କୁହୁକ ବେଢ଼ି,
କେତେ ଦିନ ରହିବ ଏ ନଯାଇ ଛାଡ଼ି ।

କୋଟି କୋଟି ତାରାଗଣ    ଆଦିତ୍ୟ ତାରାରମଣ
କଙ୍କର ପରାୟେ ସଦା ତୋ ପଦତଳେ,
ବେଳା ନ ଲଙ୍ଘେ ତା ତଟ    ତବ ମହିମା ପ୍ରକଟ
ନଭେ, ସାଗରେ, ଭୂଧରେ, କନ୍ଦରେ ବଳେ
କୃପା କର ଅଧମେ ଆଶୁ,
ସତ୍ତ୍ୱ ଗୁଣ ହୃଦୟେ ମୋ ସଦା ବରଷୁ ।



## ଅଶାନ୍ତି

ଜବକର ବୋଲି ଯାହା ହୋଇଛନ୍ତି ସୃଜନ,
ନାହିଁ ତା ଶରୀର କେବେ ଶାନ୍ତି ନିକେତନ ।
ଅମରପୁରୀ ସମାନ ଯାହାଙ୍କ ନିବାସ,
ଯହିଁ କ୍ରୀଡ଼ନ୍ତି କମଳା ଶର୍ବରୀ ଦିବସ ।
ଶୟନେ, ସ୍ୱପନେ ଅବା ଜାଗରଣ କାଳେ,
ଦ୍ରୁତବାୟୁ ସମ ଘୂରେ ମାନସ ଚଞ୍ଚଳ ।
ଲକ୍ଷ୍ମୀଙ୍କ କେବଳ ତାଙ୍କ ବିଭୂତି ସମୀପେ,
ଅକୁଣ୍ଠିତେ ତଣ୍ଡିଥାନ୍ତି ଅଧମନ୍ତ୍ରୀ ଆପେ ।
ମୁକୁଟଧାରୀ ଜବନ ପରରାଜ୍ୟ ଆଶ,
ତେଣୁ ଅବିରତ ଚିନ୍ତା ଅନଳେ ବିବଶ ।
କେହୁ ସୀମନ୍ତିନୀ ଏଣେ ସନ୍ତତି ବିହୁନେ,
ସନ୍ତାପିତା ନିରନ୍ତର ଆକୁଳ ନୟନେ ।
ଆଳୟେ ପ୍ରବେଶ ଯେବେ ମୃତ୍ୟୁଦେବଙ୍କ ଛବି,
ଗର୍ବ, ଦମ୍ଭ, ଅଭିମାନ ଯାଇଥାଏ ଲିଭି ।
ମେକ ପ୍ରତିମା ନାରୀ ସଦା ପତି ପ୍ରାଣେ,
ଦାରୁଣ କଣ୍ଟକ ଦିଏ, ସ୍ୱଭାବ ବିହୁନେ ।
ଚିର ଦୁଃଖୀ ଭବେ ସିନା କୁଟୁମ୍ବୀ କେବଳ,
ଅହରହ ଶୁଭୁଥାଏ ଅଶାନ୍ତିର ରୋଳ ।
ଅଶାନ୍ତି-କାରାରେ ସଦା କ୍ଷୁଧିତ ରହୀଏ,
ପିଞ୍ଜରେ ଆବଦ୍ଧ ଶୁକ ଶାରୀକା ପରାୟେ ।
କୁପୁତ୍ର ଦିଅଇ ପ୍ରାଣେ ନିରତ ଯାତନା,
ନିର୍ଗୁଣା ହୁଅଇ ଯେବେ ସହୋଦରା-କନ୍ୟା ।
ରୋଗେ ପଡ଼ି ସଢ଼ୁଥାଏ ନିଭୃତେ ଜୀବନ,
ଦ୍ୱିଦାର ପରିଗ୍ରହରେ ତାପ ଅକଥନ ।
ଅନନ୍ତ କଳ୍ପନା-ରାଜ୍ୟ ଭ୍ରମି ଅନୁକ୍ଷଣେ,
ଲଭିଛି କେ ଶାନ୍ତି କାହିଁ ଦେଖିଛ କେତେନେ ।
କାହିଁ ଶାନ୍ତି ଏ ଜଗତେ ଦେଖିଛ କି ବୁଧେ ?
ଶାନ୍ତି ମିଳେ ଶାନ୍ତି ମିଳେ ବିଭୁଙ୍କ ସନ୍ନିଧେ ।



## ଶବର

ଦେଖି ଉଷା ଆଗମନ    ହରଷେ ତେଜି ଶୟନ
ବନାଭିମୁଖେ ଗମନ ପାଞ୍ଚ ଶବର,
ଧୃପଶର ଧରି କରେ    ପ୍ରଣମି ଦେବୀ ପୟରେ
ବାହାରିଲେ ତରତରେ ନିଧନ କୁମର,
ପେଟ ପାଇଁ ବୁଲି ବକଳେ
ଉପଗତ ଶେଷେ ଶାଳ ବନ ଗହନେ ।

ଦେଖି ଏକ ଶାଳ ଡାଳେ    ଉପବିଷ୍ଟ ଶୁକ ଦଳେ
ଉଡ଼ିଗଲେ ଚଞ୍ଚଳେ ବୃକ୍ଷ କୋଟରେ,
ଆପି ତଳେ ଧୃପଶର    ବୃକ୍ଷେ ଉଠିଲେ ତତ୍ପର
ଶୁକ ଦମ୍ପତି କାତର ଦେଖି ଶବର,
୧. ମେଧାବୀ ଶାବକ ଯୁଗଳ
ପାଇ କୋଟରୁ ଶବର ମୋଦେ ବାହୁଡ଼ିଲେ ।

---

( ୧. ଶୁକ )

ବୃକ୍ଷୁଁ ଅବରୋହି ଧୀରେ    ଫେରିଲେ ପିତାକୁମରେ
ଧରି ଶୁକ ଶିଶୁ ଘରେ; ଶୁକଦମ୍ପତି
କରି ଅତି ଉଚ୍ଚସ୍ୱର    ଗୋଡ଼ାଇଲେ ବହୁଦୂର
ଶେଷେ ନିରାଶେ ଫେରିଲେ ବଧୂରି ଅତି,
ଦୁର୍ବଳର କେ ସାହା ଭବେ
କରମ ଆଦରି ସବୁ ସହିବ ମାରିବେ ।

***

## ପିଞ୍ଜରସ୍ଥ ଶୁକ

"ଦେଖେ ନାହିଁ ଜଣେ କେହି ଏହି ରସାତଳେ,
ପର ଆତ୍ମା ଚିହ୍ନିବାକୁ ଜୀବନରେ ଭଲେ ।
ସ୍ୱାର୍ଥ ପଛେ ଧାଇଁଅଛି ମାନବ ସନ୍ତତି,
କ୍ଷୁଦ୍ର ପ୍ରାଣୀ ସ୍ୱାଧୀନତା ବଳେ ଅପହୃତ ।
ଶୁଣିବାକୁ ମୋର ରବ ନୁହେ ମୁଁ କୋକିଳ,
ପିଞ୍ଜରରେ କିନ୍ତୁ ମୋର ଜୀବନ ବିକଳ ।
ମାସେ ବା ବରଷେ ନୁହେ ପ୍ରାଣଥିବା ଯାଏ,
ରୁଦ୍ଧ ପିଞ୍ଜରରେ ଆହା ! ଜୀବନ କଟାଏ ।
ସୂଚିକ୍‌କଣ କାରାଗାର ଇଷ୍ଟକ ନିର୍ମିତ,
ଯଥାକାଳେ ମିଳେ ଯହିଁ ପେଟ ପୂରି ଭାତ ।
ତଥାପି ନିଃସ୍ୱକୁ ନରୁଚଇ କାରାବାସ,
ଛାଡ଼ି ପରିଜନ ଘରେ ଝୁରଇ ଅହର୍ନିଶ ।
ମାତୃସ୍ନେହ ଭାବେ ସିନା ଅମୂଲ୍ୟ ରତନ,
ହରାଇ ଜନନୀ ବାତ୍ସଲ୍ୟ ଦଗ୍‌ଧ ଶିଶୁପ୍ରାଣ ।
ନିଜ ନିଜ ମାତାସଙ୍ଗେ କେତେ ଶିଶୁ ପକ୍ଷୀ,
ଖଣ୍ଡି ଉଡ଼ା ଶିଖୁଛନ୍ତି ସ୍ୱ ଆହାର ଭକ୍ଷି ।
ନ ଜାଣିଲି ମାତୃସ୍ନେହ ସ୍ୱାଧୀନ ବିହାର,
ପୂର୍ବକୃତ ପାପେ ବୃଥା ଜୀବନ ମୋହର ।
ପୂର୍ଣ୍ଣିମାସେ ବନ୍ଧାଥିଲେ ନ କରେ କି ଧ୍ୱନି ?
ଫିଟାଇ ଦେବାକୁ ଗୋଡ଼ୁ ବେଢୁଁ ଉଦ୍‌ବାହିନୀ ।
ମୂହର କି ତୃପ୍ତ କେବେ ଲଭି ଘୃତାହାର ?
ନରପକ୍ଷେ ଆହାର ମୋ ଜାଣିବା ଦୁଷ୍କର ।
ନହୁଏ ହଜମ ଖାଦ୍ୟ ବିନା ପରିଶ୍ରମେ,
ପିଞ୍ଜରେ ମୋ ଦିନ ଯିବ ଲେଖା କି କରମେ ।
ଆହା ! କେତେ ବିହଙ୍ଗମେ ଉଷା ଆଗମନେ,
ମୋଦଭରେ ବନ୍ଦୁଛନ୍ତି ଭାସ୍କର ଚରଣେ ।
ସ୍ୱାଧୀନତା ସ୍ୱାଧୀନତା ଚଉଦିଗେ ଶୁଭେ,
ପକ୍ଷୀ ସ୍ୱାଧୀନତା ଥରେ ନ ଭାବେ କେ ଭବେ ।
ଭ୍ରମୁଛି ହରଷେ ଅଳି ପ୍ରତ୍ୟହ ସ୍ୱାଧୀନେ,
ମୋ ଦେଖା ବାରତା ଦେବୁ ମାତାକୁ କାନନେ ।
ମୋହପାଇଁ ଝୁରି ଝୁରି ଶୁଖିଥିବ ତନୁ,
ସନ୍ତତି ବିରହ କିଏ ପାଶୋରିବ ମନୁ ।
ଉଡ଼ୁଛନ୍ତି ବିହାୟସେ କେତେ ପକ୍ଷୀ ହର୍ଷେ,
ସ୍ୱାଧୀନ ବିହାରେ କା'ର ଆନନ୍ଦ ନ ଆସେ ?
ସ୍ୱାଧୀନ ହେବାକୁ କା'ର ନ ବଢ଼େ ଲାଳସା ?
ଆମରଣ ଭୋଗେ କପାଁ ପିଞ୍ଜରେ ଏ ଦଶା ।
ଖେଳିବାକୁ ଶିଶୁଗଣ ନୁହେ ମୁଁ ଖେଳନା,
ଜଣକର ଆମୋଦ ହିଁ ଅନ୍ୟର ଯାତନା ।
ଅମୃତ ସୃଷ୍ଟିରେ ଏ କି କର୍ମ ଅବିହିତ !
ନାହିଁ କି ହେ ପ୍ରଭୁ ଏଥି କିଛି ପ୍ରାୟଶ୍ଚିତ୍ତ !
କଳୁଷେ ମାନବ ଜନ୍ମ ନ ହେଉ ଅସାର,
ନହୁଅ ମଉନ ଶୁଣି ଦୁର୍ବଳ ଚିତ୍କାର ।
ଅପରର ଧନ ପ୍ରତି ନ ବଢୁ ଲାଳସା,
ଦରିଦ୍ର ଶୋଣିତେ କଦା ନ ମେଣ୍ଟୁ ପିପାସା" ।

***

## ଓଡ଼ିଆ ପୁଅ

ଉଠରେ ଉଠରେ ଓଡ଼ିଏ ଉଠ,
ବେଳତ ଯାଉଛି ନ କରି ମଠ,
କେତେ ଦିନ ଆଉ ଭୋକ ଉପାସେ,
ପରର ଖଟିବ ଦେଶେ ବିଦେଶେ,
ଦେଖି ଦୁରଦଶା ଏହି
ସମ୍ମାନ ପାରିବ    କିଏ ଏ ଉତ୍କଳେ
ନଯୁନ୍ତି ମାନ ନ ବ୍ୟାହି ।
କାହିଁ ବା ଉତ୍ତରେ କାହିଁ ଦକ୍ଷିଣେ
ପେଟ ବିଖଣ୍ଡିକ ପାଇଁ କଷଣେ,
ଖଟେ ଦିବା ନିଶି ଓଡ଼ିଆ କୁଳି,
ଶେଷରେ ବୋଲଏ ଅତି କାଙ୍ଗାଳି,
ଶୁଣି ଏ କଠୁ ବଚନ

କର୍ମଫଳ ବୋଲି    ଭାବବାଏ ଯିନା
ନୁହେ କି ଶ୍ରେଷ୍ଠ ମରଣ ।
ଉତ୍କଳ ଗରଭେ ଜନମ ହୋଇ,
କୁଳ ଗଉରବ ଦେଲ ଲିଭାଇ,
ଲଜ୍ଜା ଅପମାନେ ମୁଣ୍ଡ ନୁଆଇଁ,
ପଡ଼ୋଶୀ ଗଞ୍ଜଣା ଖଟିଲ ସହି,
ଯାଦେଶ ଚନ୍ଦ୍ରଶେଖର
ଜନମି ସାଧିଲେ    ବିନା ଯନ୍ତ୍ରେ ଗ୍ରହ
ଜଗତେ ହେଲେ ଅମର ।
କଳା ଗୁରୁଗାରେ ଭରି ଏ ଦେଶ,
କୋଣାର୍କ ଦେଉଳ ବାର ବରଷ,
ଲଗି ନିର୍ମାଇଲେ ବର୍ଦ୍ଧକିକୁଳ,
ଭବେ ଅନୁପମ ଆହାର ତୁଳ,
ଯହିଁ ନୀଳାଚଳ ସାଇଁ,
କୋଟି କୋଟି ଯାତ୍ରୀ    ଦୂର ବିଦେଶରୁ
ଆସନ୍ତି ଦର୍ଶନ ପାଇଁ ।
କୀର୍ତ୍ତିମାଳ ରାଜେ ଭୁବନେଶ୍ୱରେ,
ମନ ଲାଗିଥାଏ ଦେଖିଲେ ଥରେ,
ଓଡ଼ିଆ ପାଇକେ ଲଢ଼ି ସମରେ,
ଟେକି ରଖିଥିଲେ ରଣ ଭୂମିରେ,
ନୁହେଁକି ଓଡ଼ିଆ ବୀର ?
ନାବିକ ବନ୍ଧନ    ତରଣୀଟି ଯିନା
ଡୋଳିଥାଏ ଥର ଥର ।
ଅକ୍ଷୁଣ୍ଣ ମର୍ଯ୍ୟାଦା ରଖି ରାଜନେ,
ସିଦ୍ଧହସ୍ତ ଏଣେ ରାଜ୍ୟ ଶାସନେ,
କିଏ ନ ଜାଣଇ ଓଡ଼ିଆ କବି,
ଯା ମେଳରେ ଯାଏ ହୃଦୟ ଦ୍ରବି,
ଅଛି କି ତା ପଟାନ୍ତର ?
ଭାବିଛି କି ଥରେ    କରିବାକୁ ସେବା
ତବ ଉତ୍କଳ ମାତାର ।
କବି ଯଦୁମଣି, ଉପେନ୍ଦ୍ର ଭଞ୍ଜ
ଗଢ଼ିଛନ୍ତି ଯେଉଁ କବିତା-କୁଞ୍ଜ,
ଅକ୍ଷୟ ରତନ ଜ୍ଞାନ ଭଣ୍ଡାରେ,
ଥିବ ଚିରକାଳ ସ୍ମୃତି ପଥରେ,
ଯହିଁ କବି ଗୋପବନ୍ଧୁ
ଆଜୀବନ ପଣ    ତାରିବାକୁ ପୁଣି
ଓଡ଼ିଆଙ୍କୁ ଦୁଃଖସିନ୍ଧୁ ।
କେତେ ସଜାଇଛୁ ପ୍ରକୃତି ରାଣୀ,
ଦେଖଣାହାରିଙ୍କ ଦୁଃଖ ହାରିଣୀ,
ପାଇଛୁ କି କରି କେ ତା କଳନା,
ମାନସେ ଥରେ କି କର ଭାବନା ?
ମାଳନ୍ତୁ ଚିଲିକା କୂଳେ
ସମ୍ପଦ କୁସୁମ    ଚଳାଇ ଦିଅନ୍ତି
ସତେ ଲକ୍ଷ୍ମୀ ତବ ଗଳେ ।
ଆହା ! ସ୍ୱର୍ଣ୍ଣପ୍ରସୂ ଉତ୍କଳ ମାତା
ଦେଖୁନାହିଁ କେତେ ଅବହେଳିତା,
ମାତା ସେବା ଠାରୁ ବଳି ଧରମ,
କିଛି ନାହିଁ ଜବ ଲୋକେ କରମ,
ମନେ ରଖି ଆପ୍ତ ବାଣୀ
ପ୍ରସାଦନେ ପେଉ    ଉତ୍କଳ ମାତାର
ଭକ୍ତି ଭରେ ଯୋଡ଼ି ପାଣି ।

***

## ଶୋକ

କେତେ ମୋ କୋଳରୁ    ଚାଲିଗଲେ ଧୀରେ
କା ପାଇଁ କାନ୍ଦିବି ଅବା,
କୋଟିକେ ଗୋଟିଏ    ଦେଖୁନାହିଁ ଏବେ
କରିବାକୁ ମୋର ସେବା ।
ଡାକ ଡାକ ମୋର    ଗଲା ବସିଲାଣି
ନ ପଡ଼େ ଶ୍ରବଣେ କା'ର,
ବିପଦ ସାଗରୁ    ତାରିବାକୁ ମୋତେ
ନାହାନ୍ତି କେ କର୍ଣ୍ଣଧାର ।
ବଞ୍ଚାଇଲି ପ୍ରାଣେ    ଯୋଗାଇ ଆଧାର
ସହି ନାନା କ୍ଲେଶ ଦୁଃଖ,
ବଢ଼ାଇ ଆଦରେ    ପଢ଼ାଇଲି ପାଠ
ନ ଶୁଣେ ଏବେ କେ ଡାକ ।
ଲେଖି ଯାଇଛନ୍ତି    ଗୁରୁଜନ ଗଣ
"ଜନନୀ ସେବାହିଁ ବଡ଼",

କିଏ ନ ଜାଣଇ ସେତିକ ବାଡ଼ଇ
ଗୋଦରିକୁ ଯେତେ କୋଡ଼ ।
ଉନ୍ମୀଳିତ ନେତ୍ରେ ଦେଖି ଚଉଦିଗେ
ସ୍ମୃତିବେଣୀଏ ଆବେଗେ,
ଦିବା କିବା ରାତି ଖଟିବାରୁ ଜରେ
ଉଠୁଛି ଜନନୀ ରଙ୍ଗେ ।
ମୋ ଗର୍ଭୁ ଜାତ କୁମର ଯେତେକ
ଚିରଋଣୀ ମୋ କୁହରେ,
ମୋ ଅଙ୍ଗ ଅପାଙ୍ଗ ଦେଖି ନିରେଖି
ରହୁଛନ୍ତି ମାରିବାରେ ।
ପୂର୍ବଠାରୁ ବଳି ଟାଇଥିଲି ଯେବେ
ଫୁଲିଥିଲି ମୋର ଅଙ୍ଗ,
ନିଜପେଟ ଚିନ୍ତା ପାଠୁଆ କି ଏବେ
ଜାଣି ସହୁଛନ୍ତି ବଙ୍ଗ ।
ଜାଗରେ ଜାଗାରେ ମୋ କୋଳ କୁମରେ
ତେଜି ଆଳସ୍ୟ ଚଞ୍ଚଳ,
ଅରଣ୍ୟ ରୋଦନ ପରାୟେ ନ ହେଉ
ମୋର କ୍ରନ୍ଦନ ବିଫଳ ।

***

## ମହାଜନ

ବିଦଳିତ ଯା'ର ପଦେ ହେଲା ଅହଂକାର,
ପର ଦୁଃଖ ଦେଖି ଯେହୁ ସତତ ବିଧୁର ।
ଭ୍ରାତୃଭାବ ବନ୍ଧନେ ପରସେବା ବ୍ରତ,
ବିନମ୍ର ବଚନେ ସଦା ହରେ ଜନମନ ।
ସମ୍ପଦ ବା ବିପଦରେ ସମଭାବାପନ୍ନ,
ଆତିଥ୍ୟ-ସତ୍କାରେ ଆଜୀବନ ଯତ୍ନବାନ ।
ପର ସ୍ତ୍ରୀ ଦର୍ଶନେ ନିଜ ମାତୃତୁଲ୍ୟ ଭକ୍ତି,
ଅପର ସନ୍ତତି ପ୍ରତି ଥାଏ ଅନୁରକ୍ତି ।
ପରିହାସ ଛଳେ କେଭେ ନ ଦିଏ ପ୍ରଶ୍ରୟ,
ଅନୃତ ଯେ ହେତୁ ହୃଦ ସଦା ପାପମୟ ।
ତୃଣପରି ମଣିଥାଏ ଏ ମାୟା ସଂସାର,
ଆଳସ୍ୟ ବା ବିଳାସର ନହୁଏ କିଙ୍କର ।
ଜଗତ ମଙ୍ଗଳ ଅର୍ଥେ ସର୍ବଦା ଭାବୁକ,
ଆତ୍ମବଳୀ ଦେବାପାଇଁ ନୁହେ ପରାଙ୍ମୁଖ ।
ପୁଲକିତ ପ୍ରାଣେ କର୍ମେ ରତ ଆଜୀବନ,
ନିଷ୍କାମ ହୃଦୟେ ଚିନ୍ତେ ପ୍ରଭୁ ଅନୁକ୍ଷଣ ।
ସାର୍ଥକ ଜୀବନ ତାର ସେହି ମହାଜନ,
କାଳେ କାଳେ ପୂଜ୍ୟ ସେ ବା ଲଭିଲେ ମରଣ ।
ଅଭିତର ରାଜବଂଶେ ତେଜି ରାଜଗାଦି,
ପ୍ରପଞ୍ଚ ବନ୍ଧନ ମନ-କୁଠାରରେ ଛେଦି ।
ନିଦ୍ରାଦେବୀ ଅଙ୍କେ ଘୋର ତାମସୀରେ ତେଜି,
ବାହାରିଲେ ଶାକ୍ୟସିଂହ ମୁକ୍ତିମାର୍ଗ ଖୋଜି ।
କେ ନିକଟରେ ଖ୍ୟାତି ଦେଖି ରାଜ ବିଳାସିକା,
କେ ବା ବାହାରେ ନିର୍ଜନ ନିଶୀଥରେ ଏକା ?
କୁହରିତ ଧରାପୃଷ୍ଠ ବୃକ୍ଷେ କଉଶିକେ,
ଯୁବକ ବୈରାଗୀ ବେଶେ ଗମନ୍ତି ନିଃଶଙ୍କେ ।
ଗନ୍ତବ୍ୟ ପଥରେ ଯେତେ ହିଂସ୍ର ଜନ୍ତୁଗଣ,
ବାଟ ଛାଡ଼ି ଦେଉଛନ୍ତି ନ କରି ଦଂଶନ ।
ଶକ୍ତି କା'ର ଅଛି ଭବେ ରୋଧିବାକୁ ପଥ,
ପ୍ରଭୁଚରଣ ଦର୍ଶନେ ଧାଇଁଛି ଯା ଚିତ୍ତ ।
ଶବଳିତ ପ୍ରାଚୀ ଆଶା ଉଷା ଆଗମନେ,
ହସୁଅଛି ବନସ୍ଥଳୀ କାକଳୀ-ନିଃସ୍ୱନେ ।
ନାହିଁ ମନ କେଉଁଥିରେ ଏକାଗ୍ର ମାନସେ,
ପ୍ରବେଶିଲେ ଶାକ୍ୟସିଂହ ବନେ ପରିଶେଷେ ।
ପରମାତ୍ମା ଦରଶନ ଲଭି ତପସ୍ୟାରେ,
ଅହିଂସା ପ୍ରଚରି କଲେ ଭାରତ ଉପରେ ।
କଠୋର ସାଧନା ଭାଇ, ନ ହୁଏ ବିଫଳ,
ଦିଅନ୍ତି ଦର୍ଶନ ପ୍ରଭୁ ଭକ୍ତେ ଅବିରଳ ।

***

## ପରିଶ୍ରମ

ପ୍ରବାହ ପରାୟେ ଧାବମାନ ଖରେ
ମାନବ ଜୀବନ ଭବେ,
୧. ଅନସ୍ୟୁ କର୍ମେ ଅବିଶ୍ରାନ୍ତ ମୂଢ଼
ଲଗିପଡ଼ି ଶ୍ରମୀ ଜବେ ।

( ୧. ନିଦ୍ରାଶୂନ୍ୟ )

କର୍ମେ ରତ ଥିଲେ     କୁପ୍ରବୃତ୍ତିଚୟ
ପଶି ନପାରନ୍ତି କଦା
ଯହିଁ ବୃହିଁ ତହିଁ     ଅନଳସ ନର
ମଥା ପରେ ସଦା ଛତ୍ର ।
ଆଳସ୍ୟ ସେବକ     ଭବେ ବୁଭୁକ୍ଷିତ
ଦୃଶ୍ୟମାନ ନିରନ୍ତର,
ବ୍ୟାଧି-ନିକେତନ     ସତତ ଶରୀର
ପରିଶ୍ରମେ ଯେ କାତର ।
ସରେ ନଦୀ ବାଲି     ଆଳସ୍ୟ ସ୍ରୋତରେ
ବହିଯାନ୍ତି ଯେଉଁ ନରେ,
ଦେଶର ଉନ୍ନତି     ଜାତିର ଗୌରବ
ବିଦଳିତ ତା ପଦରେ ।
ମଧୁକର ଭଳି     ପିପିଲିକା ଶ୍ରେଣୀ
ବାୟୁ ବିହଙ୍ଗ ଅନିଶ,
ସୁଖ ଉପଭୋଗ     କରନ୍ତି ଜୀବନେ
ନୋହି କର୍ମେ ଅନଳସ ।
ସ୍ୱକର୍ମ ସାଧନ     ମାନବ ଧରମ
କର୍ମମୟ ଏ ଜୀବନ,
ବୃଥା ପାଟିକର     ବସିଲେ ନମିଳେ
ଲକ୍ଷ୍ମୀଙ୍କର ଆଲିଙ୍ଗନ ।
ଦେଖିଛକି କାହିଁ     ବୃକ୍ଷମୂଳ ଶୁଷ୍କ
ଦିଅ ଯେତେ ନିତି ଜଳ,
ମନ ରଖ ଭାଇ     ଓଦା ରହିଥାଏ
ସଦା ପରିଶ୍ରମ ମୂଳ ।
ସ୍ୱକର୍ମ ସାଧନେ     ଇତର ପ୍ରାଣୀଏ
ଅବିରତ ତତ୍ପର,
ଅର୍ବାଚୀନ କିନ୍ତୁ     ମାନବ କ୍ଷେତ୍ରେ
ହେବା ଆଳସ୍ୟ କିଙ୍କର ।

***

## ଉପେନ୍ଦ୍ର ଭଞ୍ଜ

ହେଉ ନମ୍ର ପ୍ରଣତି     ହେ ଭଞ୍ଜ ନୃପତି
ଉପେନ୍ଦ୍ର କବି ବର,
କବିତା-କୁସୁମ     ଯା ଗୁନ୍ଥିଲ ବସି
ଅଛି କି ତା ପଟାନ୍ତର ?
ଉତ୍କଳର ସୁଧୀ     ସାହିତ୍ୟ ପ୍ରେମିକେ
କରୁଥିବେ ଗଳାମାଳ,
ସାହିତ୍ୟ ଆକାଶେ     ଜ୍ୟୋତିଷ୍କ ପରାୟେ
ରାଜୁଥିବ ଚିରକାଳ ।
ରାଜକୁଳେ ବଢ଼ି     ବିଳାସକୁ ଦଳି
ଯୋଗ୍ୟ ବାଣୀ ଉପାସକ,
ହେଲଟି ଅମରତ୍ୱ     ଲଭିଛ ଜଗତେ
ଧନ୍ୟ ଉତ୍କଳ କୁମର ।
ସାଧନା ବୃତ୍ତିର     ଭାଷାର ମାଧୁର୍ଯ୍ୟ
ନଚୁଏ ଉତ୍କଳ ପ୍ରାଣ,
ଧରିବ ତବ ନାମ     ଓଡ଼ିଆ ଗୌରବ
କେବେ କି ହେବ ମଳିନ ?

***

## ନଶ୍ୱରତା

ରହିଛି କି କାହିଁ ତୋ କେଶ କୁଞ୍ଚିତ ?
ସୁଗନ୍ଧ ତଇଳେ ସଦା ଯା ଲେପିତ ।
ପାଉଡ଼ର ବୋଳା ତୋ ଚନ୍ଦ୍ର ବଦନ,
ଆଖି ପିଛୁଳାକେ ଲଭିଛୁ ମଳିନ ।
ଚକୁର ଉଲମ୍ବ ମଞ୍ଜୁଳ ଦଶନ,
ଝଡ଼ିଇ ଦେଉଛି ପତର ଯେସନ ।
ବାହୁବଳେ କହୁ କେତେ ନିଶ ମୋଡ଼ି,
ହାତେ ନ ଥିଲେ ହେଁ କଣାଏ କଉଡ଼ି ।
ତୋ ଗୁଣେ ଡରାଉ ପ୍ରତିବେଶୀ ଲୋକ,
ଜାଣି ଏ କାଳକୁ କମ୍ପିତ ମାତର ।
ଧନେ ଭୋଳ ହୋଇ ପରର କାମିନୀ,
ହରିବାକୁ ଭାଳୁ ଦିବସ ରଜନୀ ।
କି ଗୃହ ସଉଧ କି କୁଟୀର ପର୍ଣ୍ଣ,
କାଳ ବାତ୍ୟା ବହି ଭଜେ ସବୁ ଲୀନ !
କେତେ ଆଶାକୁଞ୍ଜ ଗଢ଼ିଛୁ ଜୀବନେ,
ନିମିଷେ ମିଶିଛୁ ଅନନ୍ତ ଗଗନେ ।
ବାଡ଼ିବାକୁ ମନ ସୌନ୍ଦର୍ଯ୍ୟ ପସରା,
ନ ଭାବୁ ତଳେହେଁ କ୍ଷଣସ୍ଥାୟୀ ଧରା ।

ଶୟନେ ଭାବନ୍ତୁ ଯେତେ ଯେତେ କଥା
ଦିବାସ୍ୱପ୍ନ ପରି ହୁଅଇଟି ବୃଥା ।
ସୁମଧୁର ପକ୍ୱ ଫଳଟି ଆଦରେ,
ଧରୁ ଯା କାଳକ ଫୋପାଡ଼ୁଛୁ ଦୂରେ ।
ସୁଗନ୍ଧ ଚନ୍ଦନ ଆଜର ସୁମନ,
ଦେଖାଇ ଦିଅଇ ନଶ୍ୱରତା ଚିହ୍ନ ।
ଭବର ଭଙ୍ଗୁର ଲୀଳା ଏହିପରି,
ଅଧମ ମାନବ ଦେଉଛୁ ପାସୋରି ।
ଏପରି ଘଟଣା ଦେଖି ଶତ ଶତ,
ତଥାପି କପଟେ ଭୁଲୁ ଛୁ ଶାଶ୍ୱତ ।

***

## ଶ୍ମଶାନ

ଏହିକି ! ସେ ଶାନ୍ତ ଭୂମି ଯାର କ୍ରୋଡ଼େ ଶତ,
ଶତ ନରନାରୀ ପୁଣି ଜନଗଣ ଶାୟିତ ।
କୋମଳ କୁଞ୍ଚିତ କେଶ ଉଡ଼େ ଫର ଫର,
ମଳିନ କୁଣ୍ଠିତ ଜ୍ୟୋତି ରମ୍ୟ ଅଧରର ।
କି ବିକଟ ଦିଶୁଅଛି ନୟନ ଯୁଗଳ,
ଯେ ପୁଣି କବିଙ୍କ ଥିଲ ଉପମାର ସ୍ଥଳ ।
ପଡ଼ିଛି ଭୂତଳେ ଦନ୍ତ ଶୋଭାମୟ ମଞ୍ଜୁଳ,
ଭ୍ରମୁଛନ୍ତି ଚଉପାଶେ ଶ୍ୱାନ ଶିବାକୁଳ ।
ଭୁଲ ନାହିଁ କବି ଯାକୁ ଦେବାକୁ ଉପମା,
ଦେଖ ଉକ୍ତି କାଳଚକ୍ର ଛଡ଼ାଏ ବଡ଼ିମା ।
ଭେଦାଭେଦ ଭାବ ନାହିଁ ଏ ମଶାଣି ଭୂମେ,
ମୁଖରିତ ସଦା ଯହିଁ ଶିବାଙ୍କ ନିଃସ୍ୱନେ ।
କହେ ଯହିଁ କାଳ ବସି ଅଟଇ ପ୍ରବଞ୍ଚକ,
ବିଡ଼ମ୍ବନା ଶୋଭାମୟ ଏ କି କାଳ ଯାକ ?
କାହିଁ ସେ ରସିକ ଏଣେ ପଡ଼ୁଛି ନୟନ,
ଆକିଞ୍ଚନ ଧ୍ୟାନ ଯାଇ ଗଣିକା ଚରଣ ।
ଡାକ ଡାକ ମହର୍ଷିକୁ ବାରେ ଦରଶନ,
କର ଏ ମଶାଣି ଭୂମି ଲକ୍ଷ୍ୟ ଦିବ୍ୟାଞ୍ଜନ ।
ନିଗ୍ରହ ଖାତକ ଶୋଣିତ ସ୍ୱାଦକାର ଦଳ,
ଲଭୁଥିଲେ ସୁଖ, ଏଥି ବହନ ପଟଳ ୧. ।

( ୧. ପରିଚ୍ଛଦ )

ଲଗାଇ କଳଙ୍କ ଯେ ବା ଲୁଣ୍ଠୁଥିଲେ ଅର୍ଥ,
ଏ ଶ୍ମଶାନ ଭୂମେ ତାର ମନୋରଥ ବ୍ୟର୍ଥ ।
ଜ୍ୟୋତିଷୀ, ଭିଷକବୃନ୍ଦ ରଜା ଅବା ରଙ୍କୀ,
ଆଚଣ୍ଡାଳ, ବୁଧ, ମୂର୍ଖ, ଅହଙ୍କାରୀ, ଦୁଃଖୀ ।
କପଟୀ, ନିର୍ଧନ, ଧନୀ, ସାଧୁ, ବଗବ୍ରତୀ,
ପ୍ରବଳ, ଦୁର୍ବଳ, ଏକ ସଙ୍ଗେ ଭୂମିଶାୟୀ ।
ଲୋଡ଼ା ନାହିଁ ତୁଳତଳ୍ପ ପର୍ଯ୍ୟଙ୍କ ଆସନ,
ସମଭାବେ ଦେଖୁଛନ୍ତି ଯହିଁ ପଞ୍ଚାନନ ।
ଭବର ଭଙ୍ଗୁର ଲୀଳା ଦେଖି ଅହରହ,
ତଥାପି ନ ଛୁଟେ ନର ସଂସାରର ମୋହ ।

***

## ବର୍ଷା ମଙ୍ଗଳ

କର ଧର ଦରବେଶ ୧.   ନିଦାଘ ହୋଇଲା ଶେଷ
୨. ବ୍ୟୋମରେ ମେଘମାନ କଲେ ପ୍ରବେଶ,
ପରିଚଣ୍ଡ କର ରୁଢ଼   ବରଷା ଆସଇ ମାଡ଼
ଧରିବେ ବସୁମତୀ ନୂତନ ବେଶ
ଦୁଃଖ ମଧ୍ୟ ସୁଖ ନିହିତ
ହସାଇବା, କନ୍ଦାଇବା ବିଧି ବିହିତ ।
୩. ସାରଙ୍ଗ ହରଷଭରେ   ଚାହିଁ ବରଷାନୀର
କହଇ ଧରଣୀ ଦଦୁର ରବରେ,
୪. କେକାବଳ ଶିଖୀଟେକି   ଉଲ୍ଲାସେ ଜଳଦ ଦେଖି
କେକାରବେ ନାଚେ ଏବେ ଗିରି ଦେଶରେ,
ଜଳଧର ଲୁଚାଇଲା ଭାନୁ
୫. ବୃଷଦଂଶ ଦର୍ଶନେ ଇନ୍ଦୁର ପରାୟେ ।
ବସୁମତୀ ସୁଶ୍ୟାମଳା   ଖେଳଇ ଘନ ଚପଳା
କେଦାର, ସରସୀ, ପାଟ ପୟରେ ଭରି,
ଶବରୂପ ଶୋଭେ ନାଚେ ୬.   ବାଟ ଘାଟ ପୁଣ୍ଡରୀକ
ବହନ୍ତି ଦୁଃଖୀଏ ଦେଇ ବରଷାଧାର,
ପ୍ରଭଞ୍ଜନ ଦେଖାଏ ବଳ
ପୁଲକେ ବିହ୍ୱଳ ଜଳଚର ସକଳ ।

୧. ଫକୀର   ୨. ଆକାଶ   ୩. ଚାତକ
୪. ମୟୂର   ୫. ବିରାଡ଼ି   ୬. ଆକାଶ

୧. ବିଭାବସୁ ଓଷଧୀଶ ୨. ଦିଗନ୍ତ ବ୍ୟୋମ ଦେଶ
ତାମସୀ ଛାୟା ଘୋଟିଛି ଜଗତରେ,
ବାରିବାହ ବର୍ଷି ବାରି    ନିଅଇ ସନ୍ତାପ ହରି
ବାରି ବିନା କେ ବଞ୍ଚିଛି କହ ସଂସାରେ,
ଅତି ମୋଦଭରେ କାସରେ ୩.
ବିଧୁ ପ୍ରକାଶ ଦର୍ଶନେ ଯଥା ଚକୋର ।
ବେଳେ ବେଳେ ବଜ୍ରନାଦ    ଚମକାଏ ପ୍ରାଣିହୃଦ
ବର୍ଷାଧାରା ସହ କେବେ ଖସେ କରକା,
କାଦମ୍ବିନୀ ଅନ୍ତରାଳେ    ଲୁଚିଲେ ଇନ୍ଦୁ ଏକାଳେ
ବିରହ ବାଧାରେ ସଙ୍କୁଚିଲେ ତାରକା,
ସତେ କି ସହିବ ଉତ୍କଣ୍ଠେ
କ୍ଷଣପ୍ରଭା ସମ ମିଳିଣ ପ୍ରିୟ ନିକଟେ ।
କଦମ୍ବ ଯୋ, ମାଳତୀ ...    ଫୁଟି ଦିଗନ୍ତ ଶୋଭାଅତି
ଶୁଭଇ ଗୀତ ଲହରୀ ବୃନ୍ଦୀର ଏବେ,
ନିର୍ଝରିଣୀ କଳନାଦେ    ବହଇ ଶତେକ ପଦେ
ମୋଦ ଭରେ ବନକୁଞ୍ଜେ ଡାହୁକ ରବେ,
ଧନ୍ୟ ପ୍ରଭୁ ତବ ବିଧାନ
ତୋ ଅଧମ ସୁତେ ଦିଅ ତବ ଶରଣେ ।

***

## ସମୁଦ୍ର ପ୍ରତି

କେତେ ଥର ଯାଇଛି ଦେଖି ତୋ ତଟେ,
ଲଖିଛି ତୋ ଶୋଭା ମୋ ନୟନ ପଟେ ।
କ୍ଷଣେ ଉଠଇ ଊର୍ମି ପଡ଼ଇ କ୍ଷଣେ,
ଜଣାଉ ସମଦଶା ମାନବ ପ୍ରାଣେ ।
କେତେ ରତନ ଭରା ତୋ ବକ୍ଷଦେଶେ,
ମହତ ଗୁଣ ସିନା ତୋର ପ୍ରକାଶେ ।
ପାନ୍ଥ ସକଳ ବହୁଦୂରୁ ଆସଇ,
ତେଜଇ ପଥଶ୍ରମ ଦର୍ଶନ ପାଇ ।
ସାଦର ଅଭ୍ୟର୍ଥନା ଗାଇ ସକଳ,
ଭକ୍ତି ଗଦ୍‌ଗଦ ଚିତ୍ତେ ପଦଧଉତ ।
ଅନନ୍ତ ତୋ ଶକତି ଅନନ୍ତ ବାରି,
ଅତୁଳ ଶ୍ରୀ ପୁଣି ରତନ ଭରି ।
ବୃକ୍ଷଲତା ନିକର, ପଶୁବିହଙ୍ଗ,
ମାନବ, ଜଳଚର, ତୃଣ ପତଙ୍ଗ, ।
ପାଂଶୁଭିବ କଏ ତୋ ଅମୃତ ଦାନ,
ମରୁଭୂମି ତୋ ବିନା ହବ ସୃଜନ ।
ବେଦପୁରାଣେ ଉକ୍ତ ସତ୍ୟ ମହିମା,
ଦେଖାଉ ତୁ ପ୍ରତ୍ୟକ୍ଷେ ନ ଲଂଘି ସୀମା ।
ବର୍ଷାକାଳେ ନଦୀ ସମୀପେ ଆସି,
ଢାଳଇ ହରଷରେ ତା ଜଳରାଶି ।
ମାତ ଉଦଧି ତୁମ୍ଭ ଗର୍ବେ ନ ଫୁଲି,
ଜଣାଉ ମାନବଙ୍କୁ ଏ ତୁଚ୍ଛ ବୋଲି ।
ପୌର୍ଣ୍ଣମାସୀ ନିଶିରେ ଦେଖି ଶଶୀଙ୍କି,
ଉଲ୍ଲାସେ ତୋ ପରାଣ ନାଚେ ନାହିଁ କି ?
ମାଡି ଉଠଇ ଦେଖି [illegible] ବିଭବ,
ବାଣିଜ୍ୟରେ, ତୋ ବିନା ଏ ଅସମ୍ଭବ ।
ମହନ୍ତ ଜନ ଲଭି ତୋହର ଦର୍ଶନ,
ମହତ ଗୁଣ ମୋଦେ କରେ ଗ୍ରହଣ ।
ଅତଳସ୍ପର୍ଶୀ କାହିଁ ଗୁଣ ମାନବ,
ପର ଉପକାରିତା କାହୁଁ ବୁଝିବ ।

***

## ଦୂତ

କେଉଁ ରାଜ୍ୟରୁ    ଆସିଛ ହେ ଦୂତ
ମୋ ଆଗେ ଫେଡ଼ିଣ କହ,
ଶୁଭ କି ଅଶୁଭ    ଆଣିଛ ସନ୍ଦେଶ
ମନେ ନରହି ସନ୍ଦେହ ।
ତବ ଦରଶନେ    ମୋ ଅନ୍ତର ଦେଶ
କମ୍ପଇ କମ୍ପା ସଘନେ,
ନ ଜାଣେ ମୁଁ ଏଥି    କାରଣ ବିଶେଷ
ପଡ଼ି ଏ ମୋହ ବନ୍ଧନେ ।
ପହୁଞ୍ଚିଲ ଯେବେ    ଆଗମନ ହେତୁ
କହୁଛି ନିର୍ଭୟେ ଏବେ
ପ୍ରଭୁଙ୍କ ଆଦେଶ    ଅଳ୍ପ ଦିନେ ଭବୁ
ଫେରିବ ନ ରହି ଲବେ ।
ଦୁଲଣିଆ ବୋଲି    ବୋଲୁଛ ଯାହାକୁ
ସେତ ଗୃହିଣୀ ନୁହଇ,

୧. ସୂର୍ଯ୍ୟ ୨. ଚନ୍ଦ୍ର ୩. ମହିଷ

ଅଜ୍ଞାତ ସଦନେ ଚଢ଼ିବାକୁ ପୁଣି
ପ୍ରଥମ ସୋପାନ ସେଇ ।
ଦେଖି ଦିନୁ ଦିନ ଶିଥିଳ ଶରୀର
ଦନ୍ତ ବିହୀନ ବଦନ,
ତବ କୃଷ୍ଣକେଶ ଗୁଚ୍ଛ ପକ୍ୱ ଏବେ
କାଳବକ୍ଷେ ହେବ ଲୀନ ।
କେତେ ଦମ୍ଭ ଭରେ ସାଧୁ ବେଶ ଦାଉ
ଫେରୁଛ ଅତି ହରଷେ,
ଅନ୍ତର ଆବରଣ ପଦେ ବିଦାରିତ
ନ ଭାବ ଭୁଲେ ମାନସେ ।
କପଟ, ଗରବ ଲୋଭ, କ୍ରୋଧ ଆଦି
ନିଜ ଶରୀର ବଇରୀ,
ଏତେରେ ଶାସନ ଧିକ ଧିକ ନିଜ
ମାନବ ଶାସି ନ ପାରେ ।
ହେବ କି ତବ ଅସାଧୁ କରମ
ଗୋପନେ ଭାବୁଛ ମନେ,
ଜୀବନ ପ୍ରଦୀପ ଏବେ ମିଞ୍ଜି ମିଞ୍ଜି
ଲିଭିଯିବ ଏକ୍ଷଣେ ।

***

## କୃଷକ

ନିଦାଘ ସୌର-କରେ ହୋଇ ତାପିତ,
ଅନଳସ କୃଷକ କେଦାରେ ରତ ।
ଘରମେ ସିକ୍ତ ତନୁ ଏକାଗ୍ରଚିତ୍ତ,
କ୍ଷଣେ ନ ଛାଡ଼ଇ ଏଣେ ଲଙ୍ଗଳ ହାତ ।
ପଶୁପକ୍ଷୀ ନିକର ପାଦପ ଛାଇ,
ଆଶ୍ରିଲେଣି ଏକାଳେ ଆକୁଳ ହୋଇ ।
"ଛାଇକୁ ଆସ" ବୋଲି ନିଃସ୍ୱନ ଛଳେ,
ନ ସହଇ ତା ଦୁଃଖ ଡାକନ୍ତି ବଳେ ।
ଯେ ବୁଝିଛି ଯା କାମ ଛାଡ଼ି କେତେକ,
ହେବ ଅନ୍ତର ପୁଣି କ୍ଷଣକ ସୁଖ ।
ସମୟର ଗୁରୁ ଏ ବାଲ୍ୟ କାଳରୁ,
ମନେ ରଖିଛି ଶିଖି ତା ପିତା ଠାରୁ ।
ତେଣୁ ସ୍ୱଳ୍ପ ଉତ୍ତରେ ଅଶ୍ରାଏ ହଳ,
ଭ୍ରୂକ୍ଷେପ ନ କରଇ କଠିଣ କାଳ ।
ଏପରି ସହି କେତେ ବରଷାଧାରା,
କେଦାରେ ବିତାଇ ଗଲା ଦିବସ ସାରା ।
ଜାଣେ କର୍ମିତ ତନୁ ତେଜି ଆଳସ୍ୟ,
ଦିବାନିଶି ନିଯୁକ୍ତ ଆବାଦେ ଶସ୍ୟ ।
ତା ତନୁ ଆମ ପରି ଚମ କଙ୍କାଳେ,
ଗଢ଼ା, କିନ୍ତୁ ସହୁଛି ଅଭ୍ୟାସବଳେ ।
ଉତ୍ପାଦକ ନାନାଶସ୍ୟ ଯା ପରିଶ୍ରମେ,
ସେ ପୁଣି ସହେ କେତେ ଝଞ୍ଜା ମରମେ ।
ତାପରେ ଉପକାରୀ କିଏ ଏ ଭବେ,
ତାହାଙ୍କ ଥରେ ପୁଣି କିଏ ନ ଭାବେ ।

***

## ସତ୍ୟ ମିଥ୍ୟା କଳି

ସତ୍ୟ ମିଥ୍ୟା ଦେବ ସହୋଦରୀ । ଦିନେ ଲାଗିଲେ କଳି,
ଏକକୁ ଆରେକ ତର୍ଜନେ । ଶେଷେ ଗଲେଣି ବଳି ।
ଏସନ ଭାଷଇ ସଦର୍ପେ । ମିଥ୍ୟା ସତ୍ୟ ଅଗ୍ରତ,
ଧରଣୀ ଜୀବିକା ମେଣ୍ଟାଇ । ମୋହି ମନ୍ତ୍ର ସତତ ।
ଅତୀତରେ ଆଗତ ଜୀବେ । ଅନୁକମ୍ପା ଲୋଚନେ,
ତେଣୁ ଧୂର୍ତ୍ତବଳ ଖେଳଇ । ସଦା ବର୍ଣ୍ଣିକ ମନେ ।
କଳା ଧଳା ନୀତି ପ୍ରବଣା । ସଦା ରାଜ ଦୁଆରେ,
ଚପଳ ଉଜ୍ଜ୍ୱଳ ଫେରନ୍ତି । ନରେ ମିଥ୍ୟା ବଳରେ ।
ବାରବିଳାସିନୀ ଭୃଣ୍ଡରେ । ବଢ଼େ ମୋହର ପ୍ରୀତି,
ନ ବୁଝି ରସିକ ମୂର୍ଖ । ତହିଁ ଭୁବନ ତା ମତ ।
ବୃଷ୍ଟ ତୁଷ୍ଟି ଦିନା ଜଗତେ । ଲଭେ ରାଜ ଆଦର,
ଅଟଳ ହେମଳ ଜୀବିକା । କରିଲ ମୋତେ ଅନ୍ତର ।
ଅଗ୍ନି ସମ ତେଜ ଉଠିଲା । ଶୁଣି ସତ୍ୟ ଏ ଗୀତି,
ମୋ ବିନା କ୍ଷଣେକ ଦେଖିବ । ଜୀବଲୋକ ଅନ୍ଧାର ।
କନକ ସଙ୍ଗେ କି ଲୌହକୁ । କେବେ ଉପମା ଦେବା,
ପୃଥ୍ୱୀର ଦୁଇଟି ଧାତବ । ଦ୍ରବ୍ୟ ହେଲେହେଁ ଅବା
ବଉକନା ବଣା ମନ୍ତ୍ରୀ । ବଳା ସତ୍ୟ ରକ୍ଷକେ,
ଅଚ୍ଛେଦ୍ୟ ଅଭେଦ୍ୟ ସଗର୍ବୀ । ଅମରେଣ ଉଦରେ ।
ଘୋରେ ବେ ଗରଜ ଆସଇ । ଉର୍ମି କଲ୍ଲୋଳ ମାଳ,
ଅବଜ୍ଞା ନଜରେ ସତ୍ୟକୁ । ଫେରେ ନ ଲଙ୍ଘି ବେଳା

ଗ୍ରହ ନକ୍ଷତ୍ରାଦି ସବୁରେ । ରହିଛନ୍ତି ସମ୍ଭବ,
ଦୃଷ୍ଟାନ୍ତ ପ୍ରମାଣ ଜଗତେ । ଯହିଁ ସତ୍ୟ ନିହିତ ।
ସତ୍ୟ ପରଂବ୍ରହ୍ମ ଶ୍ରୀରାମ । ଧରି ତପସ୍ୱୀ ବେଶ,
ଚଉଦ ବରଷ ଭ୍ରମିଲେ । ଛାଡ଼ି ଅଯୋଧ୍ୟା ଦେଶ ।
ନଳ-ଦମୟନ୍ତୀ, ସାବିତ୍ରୀ- । ସତ୍ୟବାନ ଚରିତ,
ସତ୍ୟ ପରାକାଷ୍ଠା ଦେଖାଇ- । ବାରୁ ନରେ ଘୋଷିତ ।
ଭବ-ପାରାବାର-ତରଣୀ । ସତ୍ୟ ସଦା କେବଳ,
ସନ୍ଥ ଜନହୃଦ କୁହାପି । ପାପେ ନୁହେ ଆବିଳ ।
ମାୟାର ଛଳନା ନ ବୁଝି । ଯେଣୁ ଘଟେ ଅନୃତ,
ମହାପାପୀ ଭବେ ସେ ଜିନା । ଗଣ୍ୟ ବେଦେ କଥିତ ।
କଲ୍ୟାଣ-ନାଗର ଶୁଭେଇ । ସତ୍ୟ ତଳ ଅଟେ,
ଶକ୍ତି, ଶାନ୍ତି ମିଳେ ମାନବେ । କଲେ ମୋତେଆଦର ।

***

## ଅଭିସାର

ଚଉଦିଗେ ଜନମନେ ତ୍ରାସ ପ୍ରବଳ,
ଶୁଭୁଅଛି ଅହରହ ବିଗ୍ରହ ରୋଳ ।
ଏକୁ ତାରେ ସହାୟକ କଦଳୀ ଭେଳା,
ବୃଥା ଘଟାଉଛ ବସି ତାଣ୍ଡବ ଲୀଳା ।
ମକରନ୍ଦ ଆଣେ ପୁଷ୍ପ ଅଳି ଆଦରେ,
ମୃଗତୃଷ୍ଣା ସମ ଏବେ ମନ-ବିକାର ।
ରାଜ୍ୟଲୋଭୀ ବଳୁଆଙ୍କ ବୃଥା ପ୍ରୟାସ,
ନିଶ୍ଚୟ ନିଶ୍ଚୟ ହେବ ଅଚିରେ ନାଶ !
ଲକ୍ଷ ଲକ୍ଷ ନିରୀହଙ୍କ ପରାଣ ଲୋଟି,
ବୋଲଉଛ ଧରାପୃଷ୍ଠେ ଅତି ପ୍ରତାପୀ ।
ନରହବ ଶଭଦନ ପିଶାଚ ବୃତ୍ତି,
ସମୁଚିତ ପ୍ରତିଶୋଧ ଲଭିବ ସ୍ଥିତି ।
ବାର୍ତ୍ତାବହ ହେବ ଗୁପ୍ତ ଶୋଣିତ ଧାର,
ଚେତାଇବ ସୁପ୍ତ ନର ଧରି ଚପୁର ।
ଜାଣେ କି ଅଟଇ ଭବେ ସେହି ବସୁଧା,
ଚିନ୍ତା କେବେ ନ ଦେଖେ ଯେ ବିଗ୍ରହ ଛବି ।
ସତ୍ୟବନ୍ତ ବୀରଶ୍ରେଷ୍ଠ ଧୂର୍ତ୍ତର ପଣେ,
କାଳଚକ୍ର ଘେରିଥିଲା ଯୁଦ୍ଧ ପ୍ରାଙ୍ଗଣ ।
କୌରବ ପାଣ୍ଡବ ଈର୍ଷାସାରେ ପୂର୍ବେ,
ସ୍ୱୟଂ କେଶବ ସାରଥି ହେଲେ କି ଲଭେ ।
ଜ୍ଞାତି ବନ୍ଧୁ ହରାଇଣ ପାଣ୍ଡବ ନୃପ,
ଚିନ୍ତା-ସାଗରେ ବୁଡ଼ିଲେ ପାଇ ସନ୍ତାପ ।
ଈର୍ଷାପରାୟଣ ଯୁଦ୍ଧ ବୀଜ ବଚନେ,
କରି ଚରଣାନ୍ତେ ସଦା ଲଭେ ନିର୍ବାଣ ।
ନରହିଂସା ଧୂର୍ତ୍ତ ଭେଦର ରାଷ୍ଟ୍ର ନାୟକ,
ସଦା ପରିଚିତ ଭବେ ଦେଶକଣ୍ଟକ ।
ଯୁଦ୍ଧେ କେଉଁଦେଶ କେବେ ଜିଣେ କି ଟେକ,
ଚିରନ୍ତନ ନିରାଜନ ଯୁଦ୍ଧ କାମୁକ ।
ସମଦୃଷ୍ଟି ସମଭାବ ଦେଖାଅ ନରେ,
ଜାଗି ଉଠୁ ମୈତ୍ରୀଭାବ ସଦା ମନରେ ।
ଖେଳ ଶେଷେ ନ ରହନ୍ତି ଷଣ୍ଢ ମାନବେ,
ସମ୍ବରଣ କର ଈର୍ଷା ଭଜ କେଶବେ ।

***

## ଭାବନା

ଭବ ରଙ୍ଗାଳୟ କି ଛଳନାପୂର୍ଣ୍ଣ
ଦେଖୁଅଛୁ ଅବିରତ,
କା ଘରେ ଶୁଭଇ ଉତ୍ସବର ଧ୍ୱନି
କା ଘରେ କ୍ରନ୍ଦନ ରୋଳ ।
କି ବେଗରେ ଆହା ! ସ୍ରୋତ ଜୀବନଟି
କାଳ ସ୍ରୋତେ ଭାସି ଭାସି,
ଟିକେ ନ ବୁଝି ପହଞ୍ଚ ଯାଇଛୁ
ଭବ-ପାରାବାରେ ଆସି ।
ପେଟପାଇଁ ଦାନା କଟିପାଇଁ କନା
ନ ଥିଲା ଭାବନା ମନେ,
ପଠନାନ୍ତେ ଯାଇ ସହପାଠୀ ସଙ୍ଗେ
କଟାଉଥିଲି କ୍ରୀଡ଼ନେ ।
ଅଧ୍ୟୟନ କାଳେ ଉପଦେଶ ବାଣୀ
ଗୁରୁଙ୍କଠାରୁ ଶୁଣି ଶୁଣି,
ଅତି ଯତନରେ ଭରି କରୁଥିଲି
ହୃଦୟେ ମାନସ ମୂର୍ତ୍ତି ।
ନ ଥିଲା ଆଳସ୍ୟ ନ ଥିଲା ବିଳାସ
ଗରବ ନ ଥିଲା ଲେଶ,

ଧୀରେ ଧୀରେ ଗମୁ- ଥିଲା ମନୋରାଜ୍ୟ
ଦେଖି ପ୍ରକୃତି ବିଭବ ।
ନାହିଁତ ଇପ୍ସୁତ୍ସ କେତେ ଯେ ବାଜଇ
ପିଠିରେ ଦାରୁଣ ଧକା,
ଭବ-ପାରାବାରେ ପଡ଼ନ୍ତେ ଯେକାଳେ
ମାନସ ଜାଣଇ ଏକା ।
ଦୁଃଖ ତାପ ଶୂନ୍ୟ ମାନସ ନିକୁଞ୍ଜ
ଯାଇଛି ଧୀରେ ମଉଳି,
ଲୋଭ-କ୍ରୋଧ-ମୋହ ତାମସ ମାତ୍ସର୍ଯ୍ୟ
ରିପୁକୁଳେ ହୋଇ ଦଳି ।

***

## ସ୍ଥବିରର ଅନୁତାପ

ଜୀର୍ଣ୍ଣ ମୋର କଳେବର୍‌ ଛୁଇଁ ବାରୁ ଜରା,
କେତେ ମୋର ସଙ୍ଗୀ ଏବେ ଛାଡ଼ିଲେଣି ଧରା ।
ଭ୍ରମି ଭ୍ରମି ମନୋରାଜ୍ୟେ କ୍ଳାନ୍ତ ଅବସନ୍ନ,
ଶରୀରର ରୁଚିରତା କ୍ରମେ କ୍ରମେ ମ୍ଳାନ ।
ଅନ୍ତିମର ପ୍ରତୀକ୍ଷାରେ ବସିଛି ନୈରାଶ୍ୟେ,
ବିଚଳିତ ଚିତ୍ତ ଅବା କାଳ ଉପହାସ୍ୟେ ।
ବିସୋରି ପରାଣ ଦାତା ମାତିଲି ଯୌବନେ,
ଧର୍ଷିତ ହୃଦୟ ଚମ-ଈର୍ଷା-ପ୍ରଲୋଭନେ ।
କେତେବେଳେ ତୃପ୍ତ ଅବା ଲକ୍ଷ୍ମୀ ଆଲିଙ୍ଗନେ,
ମୁଖ-ଜ୍ୟୋତି ନିମିଳିତ ଚଞ୍ଚଳା ବିହୁନେ ।
ବାରମ୍ବାର ପଲ୍ଲବିତ ପାଦପ ଯେସନ,
ଭାବଥିଲା ମୋ ଶରୀର ହୋଇବ ତେସନ ।
ବିବେକ-ପ୍ରହରୀ ଜାଗି ନ ଥିଲି ଯେ କାଳେ,
ଖେଳୁଥିଲି କେତେ ରଙ୍ଗେ ବସି ତୃଷା କୋଳେ ।
ବିସୋରିଲି ଅଶୋକଙ୍କ ମୃତ୍ତିକା ଆସନ,
ଯେ ପୁଣି ଅନ୍ତିମେ ଦିଏ ନିଜ ବକ୍ଷେ ସ୍ଥାନ ।
ଅର୍ନିଶ ସଂଯମ ହାନି ବାକ୍ୟ ବିନିମୟେ,
ଉଗ୍ରମୂର୍ତ୍ତି ଧରୁଥିଲି ବଡ଼ିମା ଉଦୟେ ।
କୃପଣତା ଦେଖି ଲୋକେ କରୁଥିଲେ ଥଟା,
ଭଗ୍ନ ମନୋରଥ ଏବେ ଦେଖି କାଳଛଟା ।
ଜୀବନ-ପ୍ରଦୀପ ମିନା ସନ୍ଧ୍ୟତା କେବଳ,
ଏ ଛାର ଜୀବନେ ପୁଣି ମିଥ୍ୟା କଳିସାର ।
ସ୍ୱାର୍ଥକୁ ସାରଥିକରି କଟାଇଲି କାଳ,
କିଏ ବା ଚିନ୍ତିତ କେବେ ଏସବୁ ନିଷ୍ଫଳ ।
ଅଭିରାମ ପରିଚ୍ଛଦେ ସଜାଇଲି ଅଙ୍ଗ,
ପ୍ରାଣ ଛାଡ଼ିଗଲେ ଆହା ! କରନ୍ତି ଉଲଙ୍ଗ ।
ଦିଗମ୍ବର ଦିଗମ୍ବର ବୋଲିବ ଜଗତ,
ଅପ୍ରତିଶୀ ବୋଲି ଆହା ! ହେବ ଉଚ୍ଚାରିତ ।
ସରିଛି ତଇଳ ତେଣୁ ନିର୍ବାପିତ ଦୀପ,
ବୁଝୁଥା ଯେସନ ପ୍ରସୂତିର ମନସ୍ତାପ ।
ପୁଚ୍ଛିଥିଲେ ମଧୁକର ଦେଇଥାନ୍ତା ମନ୍ତ୍ର,
କରନ୍ତି ହୁଅନ୍ତା ନାହିଁ ଏବେ ହୃଦଯନ୍ତ୍ର ।
ମାତୃଗଣଙ୍କ ଆମୃତ୍ୟରା ଦୁଅନ୍ତି ସରବେ,
ମହାଜନ ବାକ୍ୟ ଏଡ଼ି ଯୌବନେ ଗରବେ ।
ରକ୍ତମାଂସ ମଳମୂତ୍ରେ ଏ ଶରୀର ପୂର୍ଣ୍ଣ,
ତେଜି ପ୍ରପଞ୍ଚ ଭଆଣ ଧନ୍ୟ ଋଷିପ୍ରାଣ ।
ଊର୍ଣ୍ଣନାଭ ଜାଲେ ପଡ଼ି ମକ୍ଷିକା ଯେସନ,
ଛଟପଟ ମାୟାଜାଲେ ମୋଚିତ ତେସନ ।
ଜୀବନର ପୂର୍ଣ୍ଣଚ୍ଛେଦ ଆସୁଛି ଘନେଇ,
ରଖିବ ଯତନେ କେହି ଉତ୍ତର ସଜାଇ ।

***

## ଶିଶିର

ହେମନ୍ତ ଅନୁଗ ଶିଶିର ଜଗତେ
ପ୍ରବେଶିଲ ଧୀରେ ଧୀରେ,
କାନନ ପ୍ରାନ୍ତର ପୁରୀ ଜନପଦ
ଭସାଇ ଦେଲା ନୀହାରେ ।
ଜାଡ଼େ ବିକମ୍ପିତ ସ୍ଥଳଚର ସବେ
ବିଶୁଷ୍କ ରୁଚିର କାନ୍ତି,
ଧନବନ୍ତ ଘନ- ଙ୍କର ବଢ଼ିଗଲା
୧. ସବିତା ୨. ଜନଧା ପ୍ରୀତି ।
ଦିଗ୍‌ଭ୍ରାନ୍ତ ଜନ୍ମାଏ କୁହୁଡ଼ି ଆହ୍ଲାଦ
କେ ଘଡ଼ି ଖାଲି ହାବୁଡ଼ି,
କାନନ ପଥରେ ବ୍ୟାଘ୍ର ଉପଦ୍ରବେ
ଶଗଡ଼ିଆ ନିଭୋଳା ବୁଲେତି ।

( ୧. ସୂର୍ଯ୍ୟ ୨. ଅଗ୍ନି )

ବାସର ହ୍ରାସତା ରଜନୀ ଦୀର୍ଘତା,
ବାଧା ଦିଏ ଜିନ ଦୁବେ,
ପ୍ରଧାନ ସମ୍ବଳ ଧାନ୍ୟ ଆଦାୟରେ
ରତ ନରେ ଜନପଦେ !
ପ୍ରାଣ ରକ୍ଷାକାରୀ ସଳିଳ ପବନ
ସୁଖ ନ ଲାଗଇ ଏବେ,
ନିଶ୍ଚିତ ତାଡନେ ଜବା ପ୍ରତିକାର
କେ ବା ନ ସମ୍ଭବ ଭବେ ।
ତାରକା, ଚନ୍ଦ୍ରମା ଅମ୍ବରକରର
ନିଜ ନିଜ ଜ୍ୟୋତି ହ୍ରାସ,
ନିଶ୍ଚିତ ଅଲକ୍ଷ୍ୟେ କରୁଛି କି ସତେ
ଜନତାକୁ ଉପହାସ ।
ଇକ୍ଷୁ ରସେ ଭୋଳ ଭଲ୍ଲୁକ-ଜମ୍ବୁକ ୧.
ଯେସନ ମଦ୍ୟପ ନର,
ଇକ୍ଷୁ ଛିନ୍ନାବସ୍ଥା ଦେଖିଣ କୃଷକ
ମୁଣ୍ଡେ ମାରି ବସେ କର ।
ସର୍ଷପ କୁସୁମେ ୨. ଚାମୀକରମୟ
ଦିଶଇ କେଦାର ଶୀତେ,
ସୋମ, ଶତବର୍ଗ ପୁଷ୍ପ ପ୍ରସ୍ଫୁଟିତ
ସର୍ବ ସୃଷ୍ଟି ଜନ ହିତେ ।

***

## ଅଳସୁଆ

ଅର୍ଜିଛି ବାପା ମୋର ଖାଉଅଛୁ ବସି,
ଯାଉଅଛି ସୁଖେ କାଳ ଏବେ ଦିବାନିଶି ।
କର୍ଣ୍ଣପାତ ନ କରଇ ପିଲଙ୍କର ଗୋଳେ,
ମନଖୁସି କାରବାର ସଦା ମୋର ଚଳେ ।
ସତ୍ୟ, ଧର୍ମ, ନ୍ୟାୟ ସଙ୍ଗ ନାହିଁ ମୋ ମାନସେ,
ମିଥ୍ୟା ପଛେ ଧାଇଁଅଛି ଠିକକେ ଭରସେ ।
ଜାଣଇ କଲମ ଧରି ମାତ୍ର ବୁଦ୍ଧିହୀନ,
ଦୋଷ ଦାଉଛନ୍ତି ତେଣୁ ମୋର ପରିଜନ ।
ଅନେକେ ଦୋଷୁଁ ଦାନ୍ତୁ ନିତ କରେଣ ଗାଳି,
ଅସନ୍ତି କାଳ ପରି ଅମଙ୍ଗଳ ଭାଳି ।
ଦେଖାନ୍ତି ମୁଁ ଯେବେ ମୋର କଲମର ଛଟା,
ନ ସହନ୍ତି ଏ ଜୀବନେ ପ୍ରତିବେଶୀ ଅଟା ।
ପ୍ରଭୁ ଅନୁରୂପ ମିଳିଅଛି ଅନୁଚର,
ପ୍ରତାଡଣା କରିବାକୁ ସତତ ତିଆର ।
ବେଙ୍ଗ ବୋଲେ ବେଙ୍ଗୁଲୀକି ଘଡ ଘଡ଼ ଆନ,
ଏ ଜଗତ," କେତେ କଥା ଦେଖେ ଏ ନୟନ ।
ମନେ ରଖି ଆଜଠାରୁ ହେବ ହୁସିଆର,
ନ ପଡ଼ିବ ଆଖି ଯେବେ ସରିବ ଭଣ୍ଡାର ।
ହାତ ଗୋଡ଼ ବଳଅଛି କରିବାକୁ କାମ,
ଡ଼ରିବ କମାଇ ପୁଣି କରିବାକୁ ଶ୍ରମ ।

***

## ଭାଗ୍ୟ

ଭୁଲି ଚରଣ-ଦେବତା ସମ୍ପଦ କାଳରେ,
ମାନବ ସକଳ ରତ ବିଷୟ-ଭୋଗରେ ।

ଲିଭିଯାଏ ମାନସରୁ ହିତାହିତ ଜ୍ଞାନ,
ଜୀବକାଳି ଏକ ମାତ୍ର କୁକର୍ମ ସାଧନ ।

କେ ବୁଝୁଛି ସମ୍ପଦ ହିଁ ପୋଷକାର ବେଳ,
ଥାପିବାକୁ ଦାତାଠାରେ ବିଶ୍ୱାସ ଅଟଳ ।

ବେଳ ଆସେ ଉଡ଼ିଯାଏ ରତନ ଭଣ୍ଡାର,
ଅଟ୍ଟାଳିକା ବାସୀ ଆଜି ପଥର ଫିକାର ।

ଲକ୍ଷ୍ମୀ ଆବରଣ କାଢି କରକୁ ପ୍ରସାର,
ଅପର ଦ୍ୱାରସ୍ଥ ହୁଏ କରମ ଧିକ୍କାର ।

ପ୍ରଭୁ ନାମ ଧରି ବୁଲେ କରି କରି ରଡ଼ି,
ନ ଶୁଣେ କେ ଯାଏ ଶେଷେ ନିରାଶେ ବାହୁଡ଼ି ।

ଲାଗିଛି ସତତ ଭବେ ଉତ୍ଥାନ-ପତନ,
ପ୍ରତିକୂଳ ହେଲେ ଭାଗ୍ୟ କେ କରେ ଖଣ୍ଡନ ।

ଭାଗ୍ୟଦେବୀ ଅନୁକୂଳ ଦୀନ ଅକିଞ୍ଚନ,
ଲଭି ଅପାର ସମ୍ପଦ ପୁଲକିତ ମନ ।

ବୁଝିବାକୁ କେ ବା କ୍ଷମ ବିଚିତ୍ର ସୃଜନ,
କ୍ଷଣେ ସୁଖ କ୍ଷଣେ ଦୁଃଖ ଏ ସାରା ଜୀବନ ।

***

( ୧. ବିଲୁଆ ୨. ସ୍ୱର୍ଣ୍ଣମୟ )

## ଉତ୍ସାହ

ପ୍ରେମ ଗଦ ଗଦ ଜନକ-ଜନନୀ
ଆବର ଭାଇ-ଭଉଣୀ,
ଶ୍ରବଣ-କୁହରେ ଚଢ଼ିଗଲେ ବାରେ
ଶିଶୁ ଦନ୍ତସ୍ଫୁଟ ବାଣୀ ।
ନାଲି, ନେଳୀ, କଳା ଖେଳନା ବୀକ୍ଷଣେ
ଶିଶୁଗଣ କୁତୁହଳୀ,
ଖେଳଇ ଉଲ୍ଲାସ କୃଷକ ମାନସେ
ଦେଖି କ୍ଷେତ୍ର ଶସ୍ୟଶାଳୀ ।
ସମର ପ୍ରାଙ୍ଗଣୁ ଫେରେ ସଇନିକ
ଅରାତିକୁ ଦଳି ମୁଦେ,
କୃତୀ ସ୍ୱଦେଶ ବାଳକ ବାଳିକା
ପାଇ ନାଚନ୍ତି ଆମୋଦେ ।
ବାଳକେ କ୍ରୀଡ଼ାରେ ହଟାଇ ବିପକ୍ଷ
ଫେରନ୍ତି ଆହ୍ଲାଦେ ଅତି,
ବନ୍ଧ୍ୟା ଲଳନାର ନବୀନ କୁମର-
ପ୍ରସବେ ବଢଇ ପ୍ରୀତି ।
ଘନ ଗମ ଦେଖି ନାଚେ ଶିଖୀଗଣେ
କଳାପୀ କାନନ ଦେଶେ,
ରଥାଙ୍ଗଦମ୍ପତି ତରଣି ବୀକ୍ଷଣେ
ହରଷଭର ଆଶ୍ଲେଷେ ।
ହସଇ ଧରଣୀ ବସନ୍ତ ସୌନ୍ଦର୍ଯ୍ୟ
ବର୍ଷାଗମେ ଜଳଚର,
ଶଶଧର ହସ— ଶତେନ ବୀଚିମାଳା
ପଦ୍ମ ଲଭି ଭ୍ରମର ।

***

## କଳଙ୍କ ?

ବ୍ରାହ୍ମଣ ବେଶରେ ଶଶୀ ଶଶା ଦୁଆରେ ପ୍ରବେଶି
ମାଗିଲେ ଆଧାର ହସି ହସି ସେ କାଳେ,
ଅତିଥିର ସତ୍କାରେ ଶଶକ ହରଷଭରେ
ଅରପିଲା ନିଶାକରେ ତନୁ ବଳେ ବଳେ,
ଅଙ୍କେ ଶଶା ଲଭିଛି ସ୍ଥାନ,
ଏନୁହେ ଚନ୍ଦ୍ର ଶରୀରେ କଳଙ୍କ ଚିହ୍ନ ।
ଜଟା ଆବରଣ ଗ୍ରନ୍ଥି ଛିନ୍ନ କୃଷ୍ଣବର୍ଣ୍ଣ ଶାଢ଼ୀ
ଧରିଲେ ଚନ୍ଦ୍ରଙ୍କୁ ଉଡ଼ି କାନ୍ତା ରୋହିଣୀ
ମୁକୁଳ କୃଷ୍ଣ ଚିକୁର ଗଢିବାକୁ ଫରଫର'
ସିତେ ଅତି ମନୋହର ରମଣୀମଣି,
ଆଚ୍ଛାଦିଛି ଦେବର ଅଙ୍ଗ,
ଚନ୍ଦ୍ରଙ୍କ ଶରୀରେ ଏ ତ ନୁହେ କଳଙ୍କ ।

***

## ବିଚିତ୍ରତା

କା ପତ୍ରରେ ପଡ଼ି ଘୃତପକ୍ୱ ଅନ୍ନ
କା ପତ୍ରେ ପଡ଼ି ଖାଲି,
ତୁଳତଳ୍ପ ପରେ କେ ଦୋଳେ ପୁଲକେ
କା ଶେଯ ଉନ୍ମୁକ୍ତ ବାଲି ।
କା କଟିରେ ଲାଗେ ଭଲ ଭଲ ବାସ
କା କଟିରେ କଉପୀନ,
କା ପିଠିରେ ପଡ଼େ ଜରିପକା ଶାଲ
କା ପିଠିଟି ଉଲଗନ ।
ରୁଚିର ପ୍ରସାଦ ତଳେ ବହୁଛି
କେ ବା ଦିନରାତି ସୁଖେ,
କେ ବା ଗଛତଳେ ବୁଜିଦିଏ ଆଖି
ପେଟକୁ ନପାଇ ଭୋକେ ।
ନ ଲଭି ସନ୍ତାନ କେ ବା ଛଟପଟ
ସନ୍ତାନ ମାଳ କା ଘର,
କେତେବେଳେ କାହା ପିଠିରେ ବାଜୁଛି
ଅଲକ୍ଷ୍ୟ ବିଧି ପ୍ରହାର ।
ବେତସ ପାଦପ ଦୋହଲୁଛି ମୁଦେ
ନଦୀ ବକ୍ଷେ ଦେଖି ବଢ଼ି,
ବୁଡ଼ିଯାଏ ଭେକ ପାର୍ଶ୍ୱ ପାଦପଙ୍କ
କାହିଁ ଶୁଭେ ଆର୍ତ୍ତିରଡ଼ି ।
ସଳିଳ ସମାଧି ଲଭି ଜନପଦ
ବୁଲେ ସ୍ରୋତ ଅନୁସରି,
ଛୁଡ଼ିପଡେ ଆହା . ପଲକେ ପଲକେ
ଶତ ଶତ ଭାଗ୍ୟ ଡୋରି ।

ନ ବୁହିଁ କଳସ ଅବା ପୁତ୍ରକନ୍ୟା
ରଖିବାକୁ ନିଜପ୍ରାଣ,
ଭାସମାନ ନର ବଢ଼ାଏ କରକୁ
ଧରିବାକୁ ପାର୍ଶ୍ୱ ତୃଣ ।
କେ ଜାଣେ ଏପ୍ରାଣ ଚନ୍ଦ୍ରାନନ ପାଇଁ
କେତେବେଳେ ଯାଏ ଉଡ଼ି,
ଉଦ୍‌ବେଳିତ ବୃଥା ଚେଷ୍ଟମାନ ନର
ଅଧର୍ମିକା ଜାଲେ ପଡ଼ି ।
ଚିତ୍ତହୁଏ ଭ୍ରମ ଦେଖି ଏ ବୈଷମ୍ୟ
ଘର ଘର ମଧ୍ୟେ ଅତି,
ବିଚିତ୍ରତା ପୂର୍ଣ୍ଣ ପ୍ରପଞ୍ଚ ସୃଜନ
ବୁଝିବାକୁ କା ଶକତି ।

***

## ବିକ୍ରମ ଦେବ ବର୍ମ୍ମା

ନ ଚଳେ ଲେଖନୀ ଅବା ନ ସ୍ଫୁରେ ବଚନ,
ଶୁଣିଲି ଯେବେଳରୁ ବିକ୍ରମଙ୍କ ତିରୋଧାନ ।
ଉଦାରାତ୍ମା, ଦାନ ବୀର ନୃପତି ଲଲାମ,
ସାହିତ୍ୟ ଭଣ୍ଡାରେ ଥୋଇ ବିଭୂତି ଅସୀମ ।
ସତତ ପ୍ରଣିଧି ଯାର ସୌଜନ୍ୟ ନମ୍ରତା,
ରଜୁଥିଲ ଲପନେରେ କ୍ଷମା ସହିଷ୍ଣୁତା ।
ଜାତିଭାଷା ଦେଶପାଇଁ କାନ୍ଦେ ଯା ଅନ୍ତର,
ପୁଣ୍ୟାତ୍ମା ସେ ତେଜଚନ୍ଦ୍ର, ମରି କଳେବର ।
ଶୋକୋଚ୍ଛ୍ୱାସ ଉଠୁଅଛି ଉତ୍କଳୀ ହୃଦରୁ,
ଶୀତେବ ପଶୁ-ପତଙ୍ଗ-ବିହଙ୍ଗମ-ତରୁ ।
ଜନନୀ ନୟନୁ ଆଜ ଝରଇ ଲୋତକ,
କ୍ଷମ କଏ ଏଡ଼ିବାକୁ ନିୟତିର ଡାକ ।
ଆଜନମୁଁ ପ୍ରାଣୀମାନେ ମରଣ କିଙ୍କର,
ସାଧ ନାହିଁ ଭବେ କା'ର ଦେବାକୁ ଉତ୍ତର ।
କାହୁଁ ଆସି କାହିଁଯାଏ ପରାଣ ଜୀବର,
ମୋହେ ଜଡ଼ି ନାହିଁକାର ଭାବିବାକୁ ତର ।

***

## କାଳ

କି ନିର୍ମମ ହୃଦୟ ନ ଶୁଣୁ କା ବାଣୀ,
କଲେହେଁ ଜୁହାର କୋଟି କୋଟି ପ୍ରାଣୀ ।
ଅଗଣିତ ଜୀବ ତୋ ମୁଖେ ଶିକାର,
ତଥାପି ଭୋକିଲି ସଦା ତୋ ଜଠର ।
ଖେଚର ଭୂଚର, ଅବା ଜଳଚର,
ତୋ କବଳୁଁ କେହି ନ ଲଭେ ନିସ୍ତାର ।
କରୁଛୁ ତୋହର ନିଜ ଇଚ୍ଛାମତେ,
ନ ହୁଏ ଉତ୍ତର କିଏ ଏ ଜଗତେ ।
ତୋ ଆସିବା ବେଳ ନ ପାରେ କେ ଉଣ୍ଡି,
ନାହିଁ କା ଶକତି ସାହି ହେବ ଭଣ୍ଡି ।
କରିଦେଉ ପଣ୍ଡ ପ୍ରବଳଙ୍କୁ ବଳ,
ଶଠତା-ଆସନ ତୋ ଦର୍ଶନେ ଟଳେ ।
ଦେଖି ତୋର ରୂପ ଉପୁଜଇ ଭୀତି,
ଟେକାପଡ଼େ ଖରେ ଦାମ୍ଭିକର ଛାତି ।
ସବୁ ଜୀବାବଳୀ ତୋ ନେତ୍ରେ ସମାନ,
ଭବେ ଅଗୋଚର ତୋ ପୂଜ୍ୟ ବିଧାନ ।
ରହିବାକୁ ଲୁଚି ନାହି କାହିଁ ଠାବ,
ନିମିଷକେ ଦଳୁଁ ମାନବ ବିଭବ ।
ତୋ ଯୋଗୁଁ ଜଗତେ କ୍ରନ୍ଦନର ରୋଳ,
ରଜା ପ୍ରଜା ଘରେ ଶୁଭେ ଅବିରଳ ।
ଦୁର୍ବଳ ଉପରେ ସଭିଙ୍କର ଟାଣ,
ତୋ ଆଗରେ ତିଳେ ନ ଥାଏ କା ପଣ ।
ତୋ ମାନସ କ୍ଷମା ଶିଖି ନାହିଁ ଲବେ,
ସଭିଙ୍କ ହାକିମ ସଦା ତୁ ଏ ଭବେ ।
ତୋଷିବ କେ ତୋତେ ହାତେ ଦେଇ ଲାଞ୍ଚ,
ନିମିଷେ ନାଶଉ ପ୍ରପଞ୍ଚ ପ୍ରପଞ୍ଚ ।
ମହାକାଳ ସମ ଏ ମେ କୁଟୀର,
ତୋ ବିନା କାହାର ନାହିଁ ଅଧିକାର ।
ଗନ୍ଧାଦର କଞ୍ଚ ନେବାକୁ ସଙ୍ଗରେ,
ନ ଦେଉ କାହାକୁ ଅନୁମତି ବାରେ ।
ତୋଠାରୁ ନିଚିତ ଲଭେ ଫୁଲମାଳ,
ପର ସେବା ବ୍ରତୀ ମାନବ କେବଳ ।

( ପ୍ରପଞ୍ଚ—ସଂସାର ପ୍ରପଞ୍ଚ—ମାୟା )

## ବୃକ୍ଷର ଶୋକ

ହାତଗୋଡ଼ ଭାଙ୍ଗି ପଡ଼ିଛି
ନାହିଁ ଶକତି ଆଉ,
କେତେକାଳ ଅବା ବଞ୍ଚିବି
ସହିବି ପବନ ଘାଉ ।
ପତ୍ର ପ୍ରଶଂସା ଶ୍ରବଣେ
ନ ସହେ ତା ଅନ୍ତର,
ଚୂର କରିବାକୁ ମୋ ଶିର
ଅବିରତ ତତ୍ପର ।
ଯେ ପାଖେ ଅନିଷ୍ଟ ଲଭେ ସେ
ମୋଠୁଁ ଆଦର ଅତି,
କେଉଁ ପାପଫଳେ ଜଗତେ
ଭୋଗେ ଏ ଦୁରଗତି ।
ପର ଉପକାରେ ଜୀବନ
ସାରା ବିତୁଛି ମୋର,
ନିର୍ଦ୍ଦୋଷ ପିଠିରେ ପ୍ରହାର
ବାଜେ ଥରକୁ ଥର ।
ନିରତ ଭକତି ଅନ୍ତରେ
ଗୁରୁଜନଙ୍କୁ ପୂଜ,
ସୁଖ ଅବା ଦୁଃଖ ଭୁଞ୍ଜିଲ
ନିଜ କରମ ତେଜ ।
ମୋ ଦାନେ ଜଗତୁ ଲିଭିଛି
ହାହାକାର ଶବଦ,
ବୃଥା ଉନ୍ମତ୍ତ ପବନ
ପିଇ ହରଷା-ମଦ ।
ନୁହେ ମୁଁ କାହାର ଭଗାରି
ଲଭିବାକୁ ତାଡ଼ନା,
ସଦା ସହି ଖରା, ବରଷା
ସାଧେ ପର ବାସନା ।
ହିଂସାର ଶାସନ ଚଳିଛି
ଦାବାନଳି ଏ ଭବେ,
ବଳେ ଦଉଡ଼ାଇ ଦେଉଛି
ଉପକାରକୁ ଜବେ ।

***

## ବୁଢ଼ା

ଧିକ ଧିକ ବୁଢ଼ା-ବୟସ ଏତେ ଦୋଷ,
ଦୂର-ଦିନ ବାଳ ଭାଙ୍ଗିବ ତୋ ବାସ ।
ଶୁକ୍ଳ ବରନ ହୋଇ ବାଳଆର,
ଭଲମନ୍ଦ ଜ୍ଞାନ ବିହୀନ ଅନ୍ତର ।
ଗଡ଼ିଲାଣି ବେଳ ଆସୁଛି ଅନ୍ଧାର,
ହାତେ ନାହିଁ ଯାପ ମାଡ଼ିବ ତ ଡ଼ର ।
ବାଜୁଅଛି କଣ୍ଠ ଅଣବାଟେ ପଶି,
ନ କହେ କେ ବାରେ କଥା ପଦେ ହସି ।
ଡାକୁଛି ପରାଣ ଛୁଡ଼ନାହୁଁ ଆଶ,
ଚଉପାଶେ ଘେରି ରହିଲେଣି ଖଣ୍ଡ ।
କେତେ ତାମସାରେ ଖେଳୁ ବସି ଖେଳ,
କଳା ପଡ଼ି ମୁହଁ ଫିଟିଗଲେ ତାଳ ।
ଉଠୁନାହିଁ ଅଣ୍ଟା ଧଇଲାଣି ବାଡ଼ି,
ପଡ଼ିଲାଣି ଦାନ୍ତ ପାଚିଲାଣି ଦାଢ଼ି ।
ଆଖିର ପିତୁଳା ଗଲାଣି ତ ଛାଡ଼ି,
ନାହିଁ କା ଶକତି ଉଠିବାକୁ ଉଡ଼ି ।
ଥରିଲାଣି ହାତ ନାହିଁ ଲେଖେ ଚିନ୍ତା,
ତେବେ ମିଥ୍ୟା ଗିରେ ବନ୍ଧା ତୁ ଅହନ୍ତା ।
ସରିଛି ଏକତ ଅଛି ହାଡ଼ମାଳ,
ଚମ ଧୁଡୁଧୁଡୁ ନାହିଁ ବାହୁବଳ ।
ବଞ୍ଚିଲୁ ଜୀବନ ଯୋଡ଼ିନାହୁଁ ହାତ,
ପ୍ରଶଂସା ହେଲା ଜୀବନ ସଙ୍ଗାତ ।
ଶୂନ୍ୟ ଶୂନ୍ୟ କାହିଁ ଲଗାଉ ତୁ ନିଆଁ,
ଦେଖି ତୋର ଛଟା ହସୁଛି ଦୁନିଆ ।
ଜାଣୁ ଅଛୁ ବୃଥା ଧେଆନରେ ମତି,
ଶତାନନେ କାଲି ହୋଇବୁ ଛୁଟି ।

***

## ରଣଚଣ୍ଡୀ

ଲହ ଲହ କରି ଜିଭ ଆସୁଅଛି ଧାଇଁ,
କି ବେଗରେ ରଣଚଣ୍ଡୀ ପଛକୁ ନ ଚାହିଁ ।
ସମ୍ମୁଖେ ଆହୁତି ହେବେ ଲକ୍ଷ ଲକ୍ଷ ବୀର,
ଶତ ଶତ ଜନପଦ ହେବ ଛାରଖାର ।

ଦୁର୍ବଳକୁ ଗ୍ରାସିବାକୁ ସଂସାରେ ପ୍ରବଳ,
ବସିଥାଏ ଅନ୍ତରେ ଜଗି କାଳ ବେଳ ।
ଘାରୁଥାଏ ମାନବକୁ ସଦା ସ୍ୱାର୍ଥାଶା,
ଜୀଇଥିବା ଯାଏ କା'ର ନ ମେଣ୍ଟଇ ତୃଷା ।
ରଣଶ୍ରେଣୀ ସମ୍ଭବର କାମ୍ନାର ସତତ,
ଶୋଷନ୍ତି ଉଭୟେ ମିଶି ନିରୀହ ରକତ ।
ଜୟ ପରାଜୟ ଜଣେ ନ ଥାଏ କା' ହାତେ,
ସ୍ୱାର୍ଥେ ବୃଥା ମତୁଆଳ ମାନବ ମରତେ ।
ରକ୍ଷିବାକୁ ନିଜ ପ୍ରାଣ ନାହିଁ ଯା' ଶକତି,
ପରପ୍ରାଣ ନାଶେ କିମ୍ପା ବଳେ ତା ପ୍ରବୃତ୍ତି ।
ସ୍ୱାର୍ଥାନ୍ଧ କି ଲଭେ ତୃପ୍ତି ନରମେଧ ଦେଇ ?
ବାସନାର ଅବସାଦ କେ ଦେଖିଛି ଭାଇ !
ଜ୍ୱଳନ୍ତ ଦୃଷ୍ଟାନ୍ତ ମିଳେ ଗ୍ରନ୍ଥ ଇତିହାସେ,
ଯିଏ ଯାହା ବୁଣେ ନିଜେ କାଟେ ପରିଶେଷେ ।
ବେଳ ଥାଉଁ ଚିହ୍ନି ରଖ ସ୍ୱାର୍ଥାନ୍ଧକୁ ଜବେ,
ଶାନ୍ତି ପଥ ଦେଖାଇବ ଏତିତାହିଁ ଭବେ ।

***

## ହାଟ

ବସିଅଛି ହାଟେ ବିବିଧ ପସରା,
ନଗ୍ନର ହଂସା ଫୁଟାଏ ଠାକରା ।
ଆସ୍ଫାଳନ ନାଚେ ନିଷ୍ଠୁର ସମୀପେ,
ଅସଂଯମ କାଳ ଯାପଇ ସନ୍ତାପେ ।
ଉଣ୍ଡି ପ୍ରତାରଣା ମେଣ୍ଟାଏ କାମନା,
ନିନ୍ଦା ଗପିବାକୁ ନ ହାରେ ରସନା ।
ହସୁଅଛି ମିଥ୍ୟା ସତ୍ୟତାକୁ ଚଢ଼,
ତାବଦା ଶ୍ରବଣ ଶୁଣି ସ୍ୱାର୍ଥ ରଡ଼ ।
ଅବକାଶ ନାହିଁ ଔଚିତ୍ୟକୁ ଲବେ,
ଦେଖୁଅଛି କାଳ ଗୋପନେ ନିରବେ ।
ଛନ୍ଦାଛନ୍ଦ ଲୋଭମୋହ ପରସ୍ପର,
ଖୋଜୁଥାଏ ବେଳ ଖେଳ ନିରନ୍ତର ।
କେତେ ସାମଗ୍ରୀରେ ସଜାଡ଼ି ବିଳାସ,
ମୋହୁଅଛି ସଦା ଯୌବନ ମାନସ ।
ସାରିଣ ସଉଦା କିଏ ଯାଏ କାହିଁ,
ଜାଣିବାକୁ ତିଳେ କା ଶକତି ନାହିଁ ।

***





# ଗୁଣ୍ଡିଚା-ଭାବନା

## ଗୁଣ୍ଡିଚା-ଭାବନା

ଶରଣ ବତ୍ସଳ ହରି ଦୀନ ଜନ ତାପହାରୀ
ଶଙ୍ଖ ଚକ୍ର ଗଦାଧାରୀ ହେଲେ ମାଗୁଣି,
ବୋଲାଅ ଜଗତ ତାତ ବାଞ୍ଛା ସଦା ଜୀବହିତ
ଦୁଷ୍ଟଗଡ଼ ଟାଳ ସନ୍ତ, ଜ୍ଞାନ-ସରଣୀ
ଦେଖାଇ ଅଧମ ମାନବେ,
ପ୍ରକାଶ ଦିବ୍ୟ ଆଲୋକ ସଦା ଏ ଭବେ ॥
ଧନ୍ୟ ବିନ୍ଧାଣି ପଣିଆ ନିମିଷକେ ନୂଆ ନୂଆ
ଦେଖାଅ ନୋହନ ହାଲିଆ ବିବିଧ ଛବି;
ଝଲସଇ ଜନ ଆଖି ଭକ୍ତମନ ଯାଏ ଲାଖି
ଇତର ପ୍ରାଣୀଏ ସୁଖୀ ଉଷତ କବି
ଅଜ୍ଞାନ ମାନବ ସମାଜ,
ଜାଗିଉଠୁ ଜବେ ଲଭି ଶ୍ରୀପଦ ରଜ ॥
ଗର୍ବହିଂସା ଅଭିମାନ ଖେଳେ ଭବେ ପ୍ରତିଦିନ
କଳୁଷିତ ନର ପ୍ରାଣ ପରକୁ ପୀଡ଼ି,
ଆଖି ଆଗେ ଦେଖି ନିତି ନଶ୍ୱର ଭବପୀରତି
ତଥାପି ରହିଛି ମତି ସତତ ଜଡ଼ି
ଫିଟାଅ ଏ କୁହୁକ ବେଡ଼ି,
ବର୍ଷର ହେଲେକ ଅବା ନଶୁଭେ ରଡ଼ି ॥

***

ମହୋଦଧି କୂଳେ ରାଜେ ଶ୍ରୀକ୍ଷେତ୍ର ନଗର,
ଧନଧାନ୍ୟ ପରିପୂର୍ଣ୍ଣ ସଦା ତା ଭଣ୍ଡାର ।
ଜଗତେ ଉତ୍କଳର ବଢ଼ାଇ ଗୌରବ,
ଶିଖାଉଛି ଜଗତକୁ ସତତ ଆର୍ଜବ ।
ଲକ୍ଷ ଲକ୍ଷ ଯାତ୍ରୀଙ୍କର ସଦା ସମାବେଶ,
ମୁଖରିତ ହେଉଅଛି ପୁରୀ ଦିବାନିଶ ।
ଧବଳିତ ଅଟ୍ଟାଳିକା ଜନମନ ଲୋଭା,
ବେଳାଜଳେ ପ୍ରତିବିମ୍ବି ବଢ଼ାଉଛି ଶୋଭା ।
ନରେନ୍ଦ୍ର ମାର୍କଣ୍ଡ ଇନ୍ଦ୍ରଦ୍ୟୁମ୍ନ ଆଦିସର,
ପିନ୍ଧିଛନ୍ତି ଅବା ଏକେ ଏକେ ଶ୍ୟାମାମ୍ବର ।
ରାଜପଥ ଦୁଇପାର୍ଶ୍ୱେ ଆପଣିକ କୁଳ,
ବିଭିନ୍ନ ପଣ୍ୟ ଦରବ କରନ୍ତି ଠୁଳ ।
ଜନହିତେ ପାଠଶାଳା ମାରବାଡ଼ି ଜାତି,
କରମାରି ସ୍ଥାନେ ସ୍ଥାନେ ଅର୍ଜିଛନ୍ତି ଖ୍ୟାତି ।
ଶିକ୍ଷାର ଉନ୍ନତି କଲେ ମଠ ଅଧୀଶ୍ୱର,
ଖଞ୍ଜି ବୃତ୍ତି ସାଧୁଛନ୍ତି ପର ଉପକାର ।
ନଭସ୍ପର୍ଶୀ ଦେବାଳୟ ଅତି ମନୋହର,
ଦୁଃଖୀ ଅବସାଦ ମନୁଁ କରୁଛନ୍ତି ଦୂର ।
ମୁକତି ମଣ୍ଡପ ଲଭି ଗୌରବେ ପ୍ରଖ୍ୟାତି,
କରୁଅଛି ଲେଖା ବେଳେ ସନ୍ଦେହ ନିଷ୍ପତ୍ତି ।

ମନ୍ଦିରର ଦକ୍ଷିଣକୁ ଗଲେ କିଛୁ ଦୂର,
ଦରଶନ ମିଳେ ପୂତ ସରଗ ଦୁଆର ।
ମାଟି ଆସ୍ୱାଦନ କରି ମତ୍ତ କୁଢ଼ କୁଢ,
ବାଉଁଶ ଖଣ୍ଡିରେ ଝାଇ ଥରେ ଥରେ ମାଡ଼ ।
ହେଉଛନ୍ତି ପୋଡ଼ା ଲଦ ବୁକେ ନିଆଁ ରଡ଼,
ଜଣାଯାଏ ନାହିଁ କିଏ ସାନ କିଏ ବଡ଼ ।
ମାଲ ଭାଇ ଟଂଝା ପଂଝା ହୋଇ ଚଉପାଶେ,
ଶ୍ମଶାନ ବୈରାଗଭାବ ଆଣନ୍ତି ମାନସେ ।
ଅଙ୍ଗୁସ୍ପୃ ବରଗ କେତେ ଚକ୍ଷୁଁ ମାର ତେଜ,
ବିଷାଦ ଅଗ୍ନିରେ ଏଣେ ହେଉଛନ୍ତି ଭାଜ ।
ଭବର ଭଙ୍ଗୁର ଲୀଳା ଦେଖି ନିରନ୍ତର,
ଶିଖେନାହିଁ ପଦେ ହେଲେ ମାନବ ଅନ୍ତର ।
ସ୍ୱାର୍ଥପାଇଁ ବ୍ୟସ୍ତ ସଦା ନ ବୁଝେ ଆନ ।
ଧନ୍ୟ ଧନ୍ୟ ଜଗନ୍ନାଥ ଧନ୍ୟ ତୋ ବିଧାନ,
ଚାରିବାର ଗରଜନ କମ୍ପାଏ ନଗର,
ଭେଦିବାକୁ ନାହିଁ ବଳ ମନ୍ଦିର ପ୍ରାଚୀର ।
ହର୍ଷଭରେ ମହାଙ୍କର ନୋଳିଆ ବାଳକ,
ବୁଡ଼ୁଛି ପାରାବାରେ ସମ ଜଳକାକ ।
ଉତ୍ତାଳ ତରଙ୍ଗେ ପ୍ରତ୍ୟକ୍ଷ କ୍ରୀଡ଼ା ତାର ଦେଖି
ବଳେ ବଳେ ଲାଖି ଯାଏ ଦରଶକ ଆଖି ।
ଲହରି ଦୋଳାରେ ଦୋଳି ଅମିତ ଚଢ଼ାଉ,
କରୁଛନ୍ତି ସଜ ଉର୍ତ୍ତି ରାଜବେ ଚଢ଼ାଉ ।
ପ୍ରତି ଗଳି ଯେଗା ଘରେ ପ୍ରଦୋଷେ ବାଳକେ,
କୁସ୍ତି କସରତ ଆଦି ଶିଖନ୍ତି ପୁଲକେ ।
ନାରିକେଳ ତରୁମାଳ ଚଉପାଶେ ଘେରି,
ବାଣ୍ଟୁଛନ୍ତି ନିରନ୍ତର ସୁଶୀତଳ ବାରି ।
ନଗର ପ୍ରାନ୍ତରେ ସୁଶୋଭିତ ଉପବନ,
ବଢ଼ାଇ ସୁଷମା ହରେ ସଦା ଜନମନ ।
ବର୍ଣ୍ଣଶ୍ରେଷ୍ଠ ବିପ୍ର ଏଣେ ଭୁଲି ଜାତିଭେଦ,
ଚଣ୍ଡାଳ ହାତରୁ ନେଇ ଖାଉଛି ପ୍ରସାଦ ।
ବିଶ୍ୱପିତା ସମ୍ମୁଖରେ ଏକଜାତି ବୃନ୍ଦ,
ତେବେ କାହିଁ ଭାରତରେ ନିତି ଜାତି ଦ୍ୱନ୍ଦ ।
ପୁରବାସୀଙ୍କର ସଦା ପ୍ରଫୁଲ୍ଲ ବଦନ,
ଜଗତ ପିତାଙ୍କୁ ଲଭି ନିତି ଦରଶନ ।
ନିଅନ୍ତି ଆଶ୍ରୟ ଯେତେ ନିସ୍ୱଃ ପରିବାର,
ଉଦର ପୋଷଣେ ଚିନ୍ତା ନଥାଏ କାହାର ।
ମୂକ ସାକ୍ଷୀ ଏ ନଗର ଅବା ଓଡ଼ିଆର,
ଅତୀତ ଗୌରବ ସଦା କରୁଚି ପ୍ରଚାର ।

***

କ୍ରମେ କ୍ରମେ ଝାଞ୍ଜି    ଦହିଲା ଜଗତ
ଶୁଖାଇ ନଦୀ ପୋଖରୀ,
ପୋଡ଼ୁ ଦେଲକରେ    ଦାରୁଣ ନିଦାଘ
ଅଗ୍ନି ଧରପୃଷ୍ଟ-ଶିଖା ।
ମାଖେ ଅଙ୍ଗେ କେହି    କର୍ପୂର ଚନ୍ଦନ
କ୍ଷଣସ୍ଥାୟୀ ସୁଖ ପାଇଁ
ଜଠର ଦାହରେ    ଦୀନ ଜନଙ୍କର
ଅଶ୍ରୁଗଳେ ଧୀରେ ଲଈଁ ।
ଗର୍ଜିହୁଏ ହାଣ୍ଡି    ତୃଣାହାରୀଙ୍କର
ଉଦୁ ଉଦିଆ ଖରାରେ
ଧକେଇ ଧକେଇ    ବିହଗ ନିକର
ଆଶ୍ରିଲେ ଯେଝା ନିଡ଼ରେ ।
ଉଠେ ହୁଙ୍କି କରି    ଅମ୍ବ ତୋଟା ମାଳେ
ଡାଳେ ଡାଳେ ନାଚି କପି,
ଧ୍ୱଂସିଲା ରସାଳ    ଯଥା ଲଙ୍କାପୁର
ଅଶୋକ ବନରେ ଛପି ।
ଆପଣା ପ୍ରତାପ    ଦେଖାଏ ପାବକ
ଜାଳି ବନ ଜନ ପଦ,
ଦବାନଳ ଏଣେ    ଦରିଦ୍ର କୁଟୀରେ
ଶୁଭଇ କରୁଣ ନାଦ ।
ସରିଯାଏ ଖେଳ    କେତେ ପ୍ରାଣୀଙ୍କର
ଧନ ତା କବଳେ ଜଳେ,
ନିଷ୍ଠୁର ଚଡ଼କ    ପଡ଼େ କେତେବେଳେ
କେହି ନ ଜାଣଇ ଲବେ ।
ଆତୁରେ ସକଳେ    ପାଣି ଅସରାକୁ
ଚାହିଁଥାନ୍ତି ଅନୁକ୍ଷଣ,
ସାଞ୍ଜ ସୁଶୀତଳ    ଜଳଦ ଝଡ଼
ଟାଣେ ଧନବାନ ମନ ।

ଗରଜି ପବନ ଆସେ ବେଳେ ବେଳେ
ଦେଖାଇ ଆପଣା ବଳ,
ଦେଖାଇ ଦୃଷ୍ଟାନ୍ତ ଯଥା ଫୁଲପଣ
ଜଗତେ ସଦା ସକଳ ।
ସରେ ବୁଢ଼ାଚନ୍ଦ୍ର ବାଳକେ ଆନନ୍ଦେ
କରି କୌତୁକ ଆଳାପ,
ଯଥା ଦେବଗଣ ସ୍ୱର୍ଗେ ଖେଳୁଥାନ୍ତି
ନସହି ନିଦାଘ ତାପ ।
ହେଉଅଛି ଲୋଡ଼ା ବ୍ୟଜନ ସତତ
ପାଣି ଗାମୁଛାରେ ଶ୍ରଦ୍ଧା,
ରାତରେ ସକଳେ ଗଡ଼ୁଛନ୍ତି ଦାଣ୍ଡେ
ନ ସହି ଗରମ ବାଧା ।
ଥପ ଥପ ଝାଳ ନିଗିଡ଼ି ପଡ଼ୁଛି
ଜ୍ୟେଷ୍ଠ ପୂର୍ଣ୍ଣିମା-ଝାଞ୍ଜିରେ,
ସାରିଲେ ସ୍ନାହାନ ଜଗତର ନାଥ
ଭାଇ ଭଉଣୀ ସଙ୍ଗରେ ।
ଧୀରେ ଧୀରେ ତାପ ଉଠିଲା ଦେହରୁ
ଛାଡ଼ିଲେ ଅନ୍ନ ପ୍ରସାଦ,
ଦେଖି ଦୁରବସ୍ଥା ମହାଲକ୍ଷ୍ମୀ ଏଣେ
ଗଣିଲେ ମହା ପ୍ରମାଦ ।
ବାଛି ଚଉଦଗେ ରଜତ ଜୋତ୍ସ୍ନା
ସଙ୍ଗୋଳିଲେ ତାର ସାଇଁ,
ବୁଝାଇଲେ ଅବା ନେବାକୁ ବିଶ୍ରାମ
ରହିଲେ ଦୁଆର ଦେଇ ।
ଡାକିଲେ ଗୋଟିଏ ପୁରୁଖା ବଇଦ
ଆଣାଇଲେ ଠାକୁରାଣୀ,
ପେଣ୍ଟଲୁନଧାରୀ ଡାକ୍ତର ବାବୁ
ଡରନ୍ତି ଯା ନାମ ଶୁଣି ।
ପାଚନ ପାଣିକ ଭରି ଚଳାଇଲ
ପନ୍ଦର ଦିନରେ ଜ୍ୱର,
'ବୁଲାଯିବେ ରଥେ' ବୋଲି ଜଗନ୍ନାଥ
ହେଲା ଭାରତେ ପ୍ରଚାର ।
ଲାଗି ଦିନ ରାତି ଟେକିଦେଲେ ରଥ
ହରଷେ ବଢ଼େଇ କୁଳ,
ନୀଳାଚଳ ଧାମେ ହଜାର ହଜାର
କ୍ରମେ ଯାତ୍ରୀ ଦଳ ଠୁଳ ।
ଲୋକାଳୟ ମଧ୍ୟେ ଶୋଭେ ଦେବାଳୟ
ତାରା ପୁଞ୍ଜେ ଯଥା ଇନ୍ଦୁ,
କଲ୍ଲୋଳ ସଙ୍ଗୀତ ଗାଇ ଅହରହ
ଖଞ୍ଜୁଅଛି ପଦ ସିନ୍ଧୁ ।
ଜନତାର ଭିଡ଼ ଦେଖି ସରକାର
ବେଳୁଁ ହୁସିଆର ସଦା,
ମାଟିକିଏ ଲାଭ ଭଡ଼ାଦିଆ ଘର
ପଣ୍ଡା ପୁଅ ହାତ ଉଦା ।
ଭୁଲାଇବା ପାଇଁ ଗରାଖର ମନ
ବେପାରୀଏ ପୁଞ୍ଜି ପୁଞ୍ଜି,
ହୋଇ ମେଳାଦେଲେ ରାଜପଥ ପାର୍ଶ୍ୱେ
ନିଜ ପସରାକୁ ରଞ୍ଜି ।
ଧନ୍ୟରେ ସହର ସଜାଡ଼ିଚି କେତେ
ଅତିଥି ପୂଜାକୁ ଚିଜ,
ଅବା ଅସରନ୍ତି ଏ ପୁଣ୍ୟ ତୀର୍ଥରେ
ଦେଖାଇ ଓଡ଼ିଆ ଓଜ ।
ଘର ବାହ୍ନକୁଁ ତ ନଥାଏ ଠିକଏ
ନାକ ପୋଛିବାକୁ ଚିଜ,
ବୋହି ବୋହି ଯାତ୍ରୀ ଏଣେ ତେଣେ ଝାଳେ
ହୋଇଚନ୍ତି ସର ସର ।
ଯାତ୍ରୀ ବୋହିବାରେ ଅସମର୍ଥ ରେଳ
ଚାଲିଅଛି ଦିନରାତି,
କ୍ରମେ କ୍ରମେ କାହିଁ ହେଲେ ରୁଣ୍ଡ ବହୁ
ସ୍ୱେଚ୍ଛା ସେବଦଳ ମାତି ।
ସେବା ପାଇଁ ଜନ୍ମ ମାନବ ଜଗତେ
ସେବାତ ପରମ ଧର୍ମ,
ପରଦୁଃଖେ ଚିତ୍ତ ତରଳେ ଯାହାର
ବର୍ଷେ ତା ଶିରେ କୁସୁମ ।
କୁଆଳର ଫୁଟି- ଲାଣି ପ୍ରାଚୀ ପଟେ
କୁକୁଡ଼ା ଦେଲାଣି ଡାକ,
ମହୋଦଧି ଜଳେ ସାରିଲେ ସ୍ନାନ
ଦଳ ଦଳ ଦରଶକ ।

ଚାହାନ୍ତି ପଛକୁ ଉଠିଲେ ନସବକେ
ପଡ଼େ ନାହିଁ ତଳେ ଗୋଡ଼,
ମଣ୍ଡି ଦେବ ଦେବୀ ବିବିଧ ଭୂଷଣେ
ପହଣ୍ଡି କି ଧଡ଼ପଡ଼ ।
ଚଉତର ହୋଇ ଧଣ୍ଡାମାଳ ସଜ
କରି ବୁଢ଼ୀ ମାଳଆଣୀ,
ପହଞ୍ଚାଇ ଦେଲ ନ ବାହାରୁଁ ବେଳ
ସେବକ ସମୀପେ ଆଣି ।
ଆନନ୍ଦ ସଙ୍ଗୀତ ଗାଇଲେ ପକ୍ଷୀଏ
ମିଶାଇ କାହାଳି ତାନ,
ଆରମ୍ଭିଲେ ବିପ୍ର ମୁକତି ମଣ୍ଡପେ
ଉଚ୍ଚସ୍ୱରେ ବେଦ ଗାନ, ।
ସଂକୀର୍ତ୍ତନ ସଙ୍ଗେ ବାଜିଲା ବାଜଣା
ଘଣ୍ଟ ଶଙ୍ଖ ଭେରି ତୁରୀ,
ପ୍ରତିଧ୍ୱନି ଛୁଟେ କହୁଥାଏ ଅବା
"ବାହରି ଦେଖି ଯାଅ ତରି" ।
ବୁର ଦୁଆରରେ ଦେଉଳ ପାଇକେ
ଉହ୍ୱାଲେ ସକାଳୁ ଛକି,
ଅଣ୍ଟା ଖୋଷା କଚ୍ଛ ପାଇବାକୁ ପର୍ବ
ସଜ ଉଣ୍ଡୁଥାନ୍ତି ଠାକ ।
ପିପୀଲିକା ଶ୍ରେଣୀ ପରାଏ ଦର୍ଶକେ
ସ..ରି ଆସିଲେ ମାଡ଼ି,
ଛୁଟିବାକୁ ବାଟ ଦେଉଳକୁ ଠିକେ
ଆତୁରେ ଛୁଟନ୍ତି ଗଡ଼ି ।
ସଜେଉଣ୍ଡି ଥୋକେ ପଶନ୍ତି ଦେଉଳେ
ଆପଣା ମହତ ରଖି,
ଯା ମନ ଧାଇଁଛି ମୁକତିର ପଥେ
କିଏ ତା ପାରିବ ରୋକି ।
ବସୁଛି ପିଠିରେ ଗୁଆପଟେ ମାଡ଼ି
ଦେଉଳ ପ୍ରବେଶ କାଳେ,
ନାହିଁ ଦୁଃଖମନେ କାହାର କଷ୍ଟେତ
ଧାଉଁଛି ଭକତ-ବତ୍ସଳେ ।
ବସିଲେ ପ୍ରହାରି ଫଳାଏ ବା ଉରି
ଶସ୍ତରୁ କଲୁଷ ରାଶି,

ପ୍ରବଳ ଦୁର୍ବଳ ଦେଖାନ୍ତି ପିଠିକି
ଜନତା ଗହଳେ ପଶି ।
ଲଗାଏ ଭେଣ୍ଡାକ ଏଣେ ପଣ୍ଡା ଭାଇ
ପଇସା ନେବାକୁ ଛୁଟି,
ଦୂର ବିଦେଶର ନବ ଆଗନ୍ତୁକ
ପଡ଼େ ତା କବଳେ ହଟି ।
ଘିଅ ଦୀପ ଧରି ଗୁଞ୍ଜୁଅଛୁ କିଏ
କେ ଗୁଞ୍ଜାଇ ପୁଷ୍ପ ହାର,
ନିଜ କଳ୍ପମତ ଦେଖାଇ କିଏ ବା
ହେଉଅଛୁ ପର ପର ।
ତୈଲଙ୍ଗୀ ବଙ୍ଗାଳି ପଞ୍ଜାବୀ ବିହାରୀ
ମାରୱାଡ଼ି ଆଦି ଜାତି,
ବେଢ଼ା ଗୃହପଟେ ପ୍ରଦକ୍ଷିଣ କରି
ଦେଖନ୍ତି ମହା କୀରତି ।
ପଂକ୍ତି ପଂକ୍ତି ହୋଇ ହରିଜନ ଭାଇ
ପଶିଥିବେ କେତେ ଏଥି,
ଜନତା ଗହଳେ ନ ଜାଣିଲେ ପରା
ନ ଯାଏ କାହାର ଜାତି ।
ଧିକ ବୁଝାବଣା ଧିକ ଭେଦ ଭାବ
କିଏ ସେ ସମ୍ଭବ ଆଜ,
ଏକତାର ଆଗେ ଲଇଁଚିବ ମଥା
ସାହା ହେବେ ମହାବାହୁ ।
ଦେଉଳ ଉପରେ ପାରାବତ ମାନେ
ଦରଶନ ପାଇଁ ଅବା,
ଘୁଙ୍ଗୁରି ଘୁଙ୍ଗୁରି ଅତି ମୋଦଭରେ
ଦେଉଅଛନ୍ତି ଟେକି ଗ୍ରୀବା ।
ଶିଖରେ କେତନ ବାତାହତେ ଏଣେ
ଉଡ଼ୁଅଛୁ ଫର ଫର,
ଅନଭ୍ୟସ୍ତ ନର ଚାହିଁଲେ ଟିକିଏ
ଘୁଙ୍କି ଦେଉଥାଏ ଶିର ।
କିଏ ଏ ବନ୍ଧାଣି ଗତି ଦେବାଳୟୁ
ଦେଉଛି ସୁଷମା ଢାଳି,
ଆଣି ଥୋଇଛନ୍ତି ଇନ୍ଦ୍ର ଭୁବନକୁ
ଅବା ଦେବତାଏ ମିଳି ।

ରୁଖିଲେ ପ୍ରସାଦ    ବଳେ ବଳେ ଉଦେ
ହୁଏ ମାନସେ ଭକତି,
ନାସ୍ତିକ କି ବୁଝେ    ମହିମା ଏହାର
ବାଦେ ତ ଅଯଥା ଯୁକତି ।
ଭକ୍ତ ସିନା ଜାଣେ    ଭକତି-ମହିମା
ଚଷାପୁଅ କୃଷି ଖନ୍ତି,
ରୋଗୀକି ବୁଝିବ    ରୋଗ ପରାକ୍ରମ
ଲୋଡ଼ଇ ଅପଥ୍ୟ ନିତି ।
ଅପର ଭକତେ    ଯେବେ ଶରା ଥୋକେ
ଆସୁଚନ୍ତି ଧାଇଁ ଧାଇଁ,
ବୃଥା ଆଶା ପୋଷି    ଡାକନ୍ତି ଆରତେ
'ମୁକତି କର ଗୋସାଇଁ ।'
କେବା ଗାଏ ଗୁଣ    ଓଡ଼ିଆ ପୁଅର
ଦେଉଳର ଶୋଭା ଦେଖି,
କେ କରଇ ସ୍ତୁତି    ଭକତ ଅନ୍ତରେ
ଜଗନ୍ନାଥେ ଅକ୍ଷି ରଖି ।
ଚଢ଼ୁଅଛି ରଡ଼    ଚଉଦ ଭୁବନେ
ନିରେଖି ତକ୍ଷକ ଭ୍ରମେ,
ଡାକ ଡାକ ପ୍ରଭୋ    ବସିଲଣି ଭଣ୍ଡି
ନଗୃହଁ ଟଳେ ଅଧମେ ;
ସତ୍ତ୍ୱ ନାହିଁ ହଆ    ଠିକକ କଥାରେ
ଫିଟିଥିଲେ ଅକ୍ଷି ବେନି,
ପଡ଼ିଲେ ପଲକେ    ମାରିଥାନ୍ତି ତାଳି
କାହିଁ ଯାଏ କଣ୍ଠଧ୍ୱନି ।
ପ୍ରାଣରୁ ଅଧିକ    ଯେ କରେ ଆଦର
ଗୁଣ୍ଡିକେ କରି ପଥର,
ମୂର୍ଖେ ଦିଏ ନିଆଁ    ଗଡାଇ ପାଞ୍ଚୁଣେ
ବୁଝେ କେ କ୍ଷଣ ହୃଦର ।
କେବେ କାହା ହାତେ    ଧରାଉଚ ଲଡ଼ୁ
ନଖାଉଁ ନିଅ ଛଡାଇ,
କେତେ ପରକାରେ    ଲଗାଇଚ ନାଟ
ନ ବୁଝି ମଣିଷ ବାଇ ।
ଜଗତେ ସରବେ    ଆପଣା ବଡ଼ାଇ
ଦେଖାନ୍ତି ପଡିଲେ ପଟ,
ଜୀବନ-ସଂଗ୍ରାମେ    ମଜ୍ଜି ସ୍ୱାର୍ଥ-ଜଳେ
ମୁଦନ୍ତି ଧରମ ବାଟ ।
ଭକତ ମାରଗ    ଯାଉଛି କି ଲିଭି
ସ୍ୱାର୍ଥାନ୍ଧ ଜଗତ ସାରା,
ଧରମକୁ ତଡ଼ି    କରଇ ରାଜତ୍ୱ
ପ୍ରବଞ୍ଚନା ଏବେ ପରା ।
କେତେ ଧକ୍କା ଖାଇ    ରହିଛି ଜୀବନ
ନାହିଁତାର ପ୍ରତିକାର,
ବସୁନ୍ଧରା ଗର୍ଭରା    କ୍ଷଣେ ହୋଇ ଲୀନ
କାହୁଁ ଆସେ ଏ ମୁଁକାର ।
ଏ ଜଗତେ କେହି    କାହାର ନୁହନ୍ତି
ସକଳ ମାୟା ସୃଜନ,
ଅନେକ ଧନକୁ    ଭେଟି ପରସ୍ପରେ
ବୃଥା ଏତେ ଅଭିମାନ ।
ତୋ ଭକତ ଯୋଗୀ    ଲଭେ ତୋ ଚରଣ
ଅବଗାହି ଧର୍ମ ନୀରେ,
ସଂସାର ବାସନା    ମାୟାର ଛଳନା
ବୁଝି ଚେତନ ଅନ୍ତରେ ।
ରାଜୁଅଛି କରେ    ସାମ୍ୟ ଦଣ୍ଡ ଖଣ୍ଡି
ନିରେଖି ସଭିଙ୍କ ନୟନେ,
ଜଡ଼ ଲୋଭ ମୋହେ    ଦିଅନ୍ତି ପାଶୋରି
ଅଧମ ନରେ ଜୀବନେ ।
ନାହିଁ ପରିତ୍ରାଣ    ଭବ ପାରାବାରେ
ନ ଧରିଲେ ତୁମ ନାମ,
ପଡ଼ିଲଣି ଜଣା    ନାହିଁ ତ କରୁଣା
ଅଭାଗା କରମ ବାମ ।
କେ ଯେମନ୍ତେ ଛନ୍ଦି    କା ହାତେ ଆଳଟ
ଭ୍ରମଇ କାହାର ହାତେ,
ଅଣ୍ଡୋଭଡ଼ି କଏ    ଝିଅର ନେବାକୁ
ଦିଅନ୍ତି ମନ୍ଦର ରଥେ ।
ଜପୁ ନାଦ ମଧ୍ୟ    ଦୋହଲା ଭିମନେଁ
ହୋଇଲେ ପହଣ୍ଡି ବଜେ,
ସୁନା ପହରାରେ    ପାହାଡ଼ ଓଳାଇ
ଦେଖିଲ ଭୂପ ଏଣେ ନିଜେ ।

କାନ୍ତି-କୁସୁମ ଉଜ୍ଜ୍ୱଳ ରଜନେ
ଥୋଇଛନ୍ତି ଯାହା ଗୁନ୍ଥି,
ସଉରଭ ଚାର ଚହଟୁଛି ଭବେ
କିଏ ସେ ପାରିବ ମନ୍ଥି ।
ନଚୁଥେ କେ ଭବେ ରସନା ବଞ୍ଚନା
ହୁଏ ମତ୍ତ ଅନୁଚର,
କୁଦୁଆ କୁଦୁଆ ଅଭଡ଼ା ବେଗରେ
ଦିଶେ ପେଟ ମନୋହର ।
ବଳଦେବ ପଛେ ଭଗିନୀ ସୁଭଦ୍ରା
ପରେ ଶେଷେ ଜଗନ୍ନାଥ ।
ଗୋଟି ଗୋଟି ହୋଇ ବସିଲେ ପୁଲକେ
ଆରୋହି ଯେ ଯାହା ରଥ ।
ଚନ୍ଦନ କର୍ପୂର ମଣ୍ଡିତ ଅଙ୍ଗ
ବାସୁଅଛି ଭଣ ଭଣ,
ଗନ୍ଧବହ ଗନ୍ଧ ଅପହରି ଅବା
କଲା ଚଉଦିଗେ ଦାନ ।
ଅଗ୍ରଜ ବଳିଆ ଧୋବ ଧାଉଳିଆ
ଅନୁଜ କଜଳ କଳା,
ବ୍ରହ୍ମାଣ୍ଡ କର୍ତ୍ତା ଭକତ ଶରଣ
ଭବ ପାରିବାର ଭେଳା ।
ଦିଶେ ଜକ ଜକ ଭଗିନୀର ଅଙ୍ଗ
ହାଟକ କାନ୍ତିକି ଜିଣି,
ପଡ଼ିଗଲେ ଦୃଷ୍ଟି ଲଳନା ମାନସ
ନିମିଷକେ ନିଏ କିଣି ।
ଉଚ୍ଛ୍ୱାସିତ ବାତ୍ୟା କମ୍ପାଏ ନଗରୀ
ଜିଣି ସିନ୍ଧୁ ଗରଜନ,
ଉଚ୍ଚାଟନ ହୋଇ ଟାଣିନେଲେ ରଥ
ଧାନ୍ତେ ଚୁଣ୍ଡ ଅବାଜନ ।
ତରତର ହୋଇ ସାରି ଗୃହକାର୍ଯ୍ୟ
ପୁର କୁଳବଧୂ ଗଣ,
ପଖୋଳି ଚରଣ ଦରଶନ ଆଶେ
ଗବାକ୍ଷେ ନେଲେ ଶରଣ ।
ସଜ ହେଉ ହେଉ ରାଜ ପରିବାର
ଟଳିଗଲା ରଥ ଏଣେ,
ନ ଜଗିଲେ ବେଳେ ହଟ ହଟା ଯୋଗ
ମଣିଷକୁ ଅନୁକ୍ଷଣେ ।
ବିବିଧ ଭୂଷଣ ଭରି କଣ୍ଠ ଦେଶେ
ମନେ ମନେ ହୋଇ ଠେକ,
ଦେଖାଇ ହେବାକୁ ଆସୁଛନ୍ତି ପରା
ମେଳ ହୋଇ ପଂଥେ ଠୋକା ।
ପଲ୍ଲୀ ବାଳଗଣ ହୋଇଛନ୍ତି ଉଭା
ଶୃଙ୍ଗାଟକେ ମେଳ ବାନ୍ଧି,
ଘଣ୍ଟ ଗରଜନେ କମ୍ପୁଅଛି ପୁର
ଜନତାରେ ହୋଇ ରୁନ୍ଧ ।
କେ ବାନ୍ଧଇ ଜୁଡ଼ା କେ ଗୁନ୍ଥଇ ବେଣୀ
ମୁକୁଳା କାହାର ଚୂଳ,
ପରିହାସ ଛଳେ ଏକକୁ ଆରେକ
ବାହୁନିଲେ ମାଡ଼େ ଚଳ ।
ପଡ଼ନାହିଁ ଶିରେ ଓଢଣା କାହାର
ଗୁଞ୍ଜିଛନ୍ତି ଗାଲେ ପାନ,
ଜିଣିଛନ୍ତି ସତେ ଜବା କୁସୁମକୁ
ଅଧର ପଂକ୍ତି ଦଶନ ।
ଧନ୍ୟରେ ସଭ୍ୟତା ପଶି ପୁରପଲ୍ଲୀ
ସାଜୁ ନବ ନବ ବେଶ,
ଯାଉଛନ୍ତି ଭୁଲି ପୂରୁବ ଗୌରବେ
ସଜ୍ଜନେ ହୋଇ ତୋ ଦାସ ।
ଆପଣା ମହତ ଜଗି ନିତମ୍ବିନୀ
ସଉଧ ଉପରେ ବସି,
ଲଭି ଦରଶନ କଳା ଚକାଡ଼ୋଳା
ଯାଉଛି ହରଷେ ଭାସି ।
ହୁଏ ଛଟ ପଟ ଶାଖାମୃଗ ପରା
କରିବାକୁ ଦରଶନ ।
ସଦା କ୍ରୀଡ଼ାସ୍ଥଳ ଥିଲା ଯାର ଗୃହ
ହୋଇଛି ପ୍ରମଦା ପୂର୍ଣ୍ଣ ।
ଆକୁଳ ନୟନେ ଘୁଞ୍ଚିବାକୁ ଟିକେ
ଦେଖାଏ ଦାନ୍ତକୁ ଖରେ,
ପୋଷେ ସିନା ଲୁହ ଦୁର୍ବଳ ଗୁହାର
ଶୁଣୁଛି କିଏ ସଂସାରେ ।

ନାନାଆଭ୍ରୁ ବାଳ- ବିଧବା ଆସିଣ
ହୋଇଛନ୍ତି କେତେ ଠୁଳ,
କାହୁଦ ବଦାର ନହେବ ପୁଣି ଏ
ଧରଣି ବିଧବା କୁଳ ।
କପାଳକୁ ଠୁକି ଲଳନ ଓଢଣାଟି
ଟାଙ୍କି ଅଛୁ ଅତି ଖେଦେ,
ବାସିଫୁଲ ପରି ଝାଉଁଳେ ଚସ
ଶନ୍ତା-ଭଣି ବାଳ ହୃଦେ ।
ନାରୀ ସିନା ସହେ ସକଳ କଷଣ
ବୋଝ ଗର୍ଭର ଭାର,
ଫାଟେ ହିଆ ଦେଖି ବୈଧବ୍ୟ ଯନ୍ତ୍ରଣା
ନରକରେ କେ ପ୍ରତିକାର ।
ପ୍ରତିଧ୍ୱନି ଛଳେ ପାଇଲେ ବାରତା
ଅବା ନଭ ପ୍ରସ୍ଫୁଟିତ,
ଦର୍ଶକ ମାନଙ୍କ ବଢାଇଲେ ପ୍ରୀତି
ଲୁଚାଇ ଆପଣା ଜ୍ୟୋତି ।
ତଳେ ଚପିବାକୁ ନାହିଁ କା ଶକତି
ନ ଘୁଞ୍ଚିବା ଯାଏ ରଥ,
ନବଦୁର୍ଗ ଅବା ହୋଇଛି ଆବୃତ
ସୁବିସ୍ତୀର୍ଣ୍ଣ ରାଜପଥ ।
ଫୁଲାଇ ଗ୍ରୀବକ ଝୁଲାଛନ୍ତି ଥୋକେ
ମଳ ମୂର୍ତ୍ତି ଆକୁ ଦେଖି,
ମନେ ନାହିଁପରି ମିଶିବେ ମାଟିରେ
ଦନେ ହୋଇ ଜକା ଜକ ।
ନୁହେ କଚ୍ଛିତର ଏ ଜବନେ ଖାଇ
ଭବିଷ୍ୟତ ଅନ୍ଧକାର,
କେବେ ମିଳେ କୋଠା କେବେ ଗଛମୂଳ
ମଣିଷକୁ ଅଗୋଚର ।
ପଡ଼ିଛି ଓହଳ ଥୋଡ଼ିବା ଯାହାର
ଟାଣେ ଧରି ରଥ ଡୋରି,
ଅନୁସରେ ଅବା ମନେ ମନେ ମୋର
ହେଉ ଗନ୍ଧାଧର ଭରି ।
ରାଜା ମହାରାଜା ପୁଣି କୋଟିପତି
ଟାଣନ୍ତି ଧରି ଦଉଡ଼ି,
ଆଡମ୍ବର ଅବା ମହିମା ପ୍ରଭାବେ
ଚଳାଇଛି କାହିଁ ଘୁଡ଼ି ।
ଜନତାକୁ ତଡ଼ି କାତୁଅଛୁ ବାଟ
ଧୀରେ ରଙ୍ଗ ପଗଡ଼ିଆ,
ରଖୁଛନ୍ତି ଶାନ୍ତି ହରିହର ପରି
ଧନୁକରେ ହୋଇ ଠିଆ ।
ହିମାଳୟୁ ଠାରୁ କୁମାରିକା ଯାଏ
ଜଟାଧାରୀ କେତେ ଆସି,
ରଥ ଆଗେ ଆଗେ ସଂକୀର୍ତ୍ତନ କରି
ଯାଉଛନ୍ତି ପ୍ରେମେ ଭାସି ।
ବେଳେ ବେଳେ ବାଡ଼ି ଦିଏ ଡ଼ଗମାଳ
ସାରଥି ହାଲାଇ ବେତ,
ସକଳେ ମାରନ୍ତେ ଡେରନ୍ତି ଶ୍ରବଣ
ମନ ଅତି ପୁଲକିତ ।
ମନେ ପଡ଼େ ପରି ନଦାଦ ବିହାର
ନାରଦ ସରସୀ ଗୃହିଁ,
ଦୋହଲା ଦୋହଲ ଯାଇ ଖଟେ ଦୂର
ମୁହଁ ମୋଡ଼ି ଦେଲେ ତହିଁ ।
ଛେଦନ ଗହଳା ଦରଶନ କରି
ଲୁଟିଅଛି କାହିଁ ଡରି,
ତନୁଖାଳ ଅବା ପୋଛି ପକାଉଛି
ବାରିଦ ବରଷି ବାରି ।
ରହିଲେ ଅଟକ ମାଉସୀ ଦୁଆରେ
ବାଟରେ ହୋଇ ହାଳିଆ,
ଶ୍ରମଖାଳ ମାରି ବିଦା ହେଲେ ସେଠୁଁ
ସାରି ପୋଡ଼ପିଠା ଖିଆ ।
ତୃଷାରେ ଆତୁର ହୋଇ ଦରଶକେ
ଲୋଡ଼ନ୍ତି ଶୀତଳ ପାଣି,
ପଇଡ଼ ବରଫ ସରବତ ଚଳା
କା'ର ମନ ନିଏ ଟାଣି ।
ଗଳିତ ବଧିର ଅର୍ଥବ ପଳିତ
ଖଞ୍ଜ କୁବ୍‌ଜା ଅନ୍ଧ ଶ୍ରେଷ୍ଠା,
ଅର୍ଥ ଆଶେ ଏଣେ କରକୁ ପ୍ରସାରି
କରୁଛନ୍ତି କେତେ ହଠ ।

ଆଡପ ମଣ୍ଡପ ସମୀପେ କ୍ରମଶଃ
ହେଲା ରଥ ଉପଗତ,
ଦେବ-କଳେବର ପୁଷ୍ପାଳକେ ଅବା
ହେଲା ସିନ୍ଧୁ ଉଦ୍‌ବେଳିତ ।
ପ୍ରହରୀ ଲଲାଟ ଦିଶେ ଜକ ଜକ
ଟାଳୁଛିବା ପାଇଁ ସଜ,
ମେଳା ଗମ୍ଭୀରର ଧୀରେ ଧୀରେ ଆଣି
ଠୁକଲ୍ କେତେ ଜନ ।
ଧୀରେ ଧୀରେ କାହିଁ ବହୁ ଖଗେ ଆସି
ବନ୍ଦିଲେ କାକଳୀ-ରବେ,
ଜାଳିଲେ ମଶାଲ ଅବାଇନ୍ଦୁ ନଭେ
ଦରଶନ ପାଇଁ ଦେବେ ।
ମାଳ ମାଳ ହୋଇ ମେଘମାଳ ଅବା
ନାଚୁଥିଲେ କୁତୂହଳେ,
ଥିଲା କାହିଁ ଲୁଚି ସମୀରଣ ଆସି
ଦେଲା ଉଡ଼ାଇ ବାଦଳ ।
ଚାନ୍ଦୁରି ଦିଶିଲା ନୀଳ ଅନ୍ତରୀକ୍ଷ
ନ ଦିଶନ୍ତି ତାରା ରାଜି,
ରଥର ଉର୍ଦ୍ଧ୍ୱର ଶଙ୍ଖ ଶୁକ୍ତି ଅବା
ତଳକୁ ଆସିଲା ଖସି ।
କରାଳ ମୁରତି ଧରି ସନ୍ଧ୍ୟା ଅବା
ମେଲି ଦେଇ ତାର ପାଟି,
ପ୍ରକୃତି ଦେବୀଙ୍କ ସୌନ୍ଦର୍ଯ୍ୟ ପସରା
କ୍ଷଣକରେ ଦେଲା ଲୁଟି ।
ହଟ ହଟ ବୋଲି କରୁଅଛୁ ଉଚ୍ଚେ
ଛିବା କାହାଁ ବଣ୍ଟୁ ଭିଡ଼,
ଲଭିଲା ଦର୍ଶନ ଏକାନ୍ତରେ ଅବା
ଜନତାକୁ ଦେଇ ତଡ଼ି ।
ବଧାଧର ହେଲା ଆଡପ ମଣ୍ଡପ
ଭରିଲା ଆମ୍ଭ, ଦଣସ
ରହି ସାତ ଦିନ ପାଇ ଶିକ୍ଷା ହେବେ
ପୂର୍ଣ୍ଣ ଭକତ ମାନସ ।
ପ୍ରଭୃତ ଆନନ୍ଦ ଯାଇ ଅଛୁ ଲଭି
ନିଶବଦ ଚଉଦର,

ନିତି ଏହି ପରି ମାନବ ଜୀବନେ
ସମ୍ପଦ ବିପଦ ଯୋଗ ।
ଗୃହାଛନ୍ତି ସବେ ହସ୍ତେ ଧରି ଆମ୍ଭ
କଦଳୀ ଶାକର ଫେଣା,
ବାଟେ ଦରଶନ ଆଡପ ମଣ୍ଡପେ
ମୂଳେ ମୁକତି ଦକ୍ଷିଣା ।
ଏଭବେ ମାନବ ବଢ଼ାଇ ଉତ୍କୋଚ
କରନ୍ତି ସ୍ୱାର୍ଥ ସାଧନ,
ପାଞ୍ଚଟଙ୍କ ପର ଅଣ୍ଟା ଖୋଷା ଦେଲେ
ହୁଅନ୍ତି ଦେବେ ପ୍ରସନ୍ନ ।
ନପାଏ କେ ବର ଖଜା ଗଜା ଦେଇ
ଜାଣି ଜାଣି ବଣାନର,
ଚିତ୍ତ ଶୁଦ୍ଧି ବିନା ଭବେ ନାହିଁ କିଛି
ଗୁଡ଼ ଦେବ ଉପହାର ।
ଉଣ୍ଡି ବେଳ କାଳ ଖଚୁଆ ସନ୍ତତ
ସାଧେ ନିଜ ଅଭିଳାଷ,
ଠାକୁରାଣୀ ପୁରେ ପଡାଇଲା ମନ୍ତ୍ର
ଭାଙ୍ଗିବାକୁ ନିନ୍ଦଦୋଷ ।
ସହଜେ ଚପଳା ଅବଳା ପ୍ରକୃତି
ଶ୍ରବଣେ ଖଚୁଆ ବାଣୀ,
କ୍ରୋଧାନଳେ ଜଳି ହେରା ଦିନ ରଥ
ଭାଙ୍ଗିଦେଲେ ଠାକୁରାଣୀ ।
ମହାରାଜ ପଣ୍ଡା ବଢ଼େଇ ମାନଙ୍କୁ
ଦେଇ ଶାସ୍ତି ଠାକୁରାଣୀ,
ବାହୁଁ ଦେଇ ଟିକେ ମଣ୍ଡପେ ପ୍ରଭୁଙ୍କୁ
ମିଳିଲେ ହୋଇଲେ ପୁଣି ।
ମଉଛୁତର ପୁଷ ଭାସୁଛି ଏକାଳେ
ଖାଇବାକୁ ନାହିଁ ପେଟ,
ଇନ୍ଦ୍ରଦ୍ୟୁମ୍ନ ସରେ ପାଇ ନିତି କାଆ
ବତାଏ ଗଣ୍ଡି କମଠ ।
ସହରଆ ଭାଇ ଚଟାଇ ପାଚେକ
ହୋଇଣ ନିଶାରେ ଧାଉ,
ବୁଲୁଚନ୍ତି ରଙ୍ଗେ ଏପଟେ ସେ ପଟେ
ନାନାଭାବେ ଗଲ୍ପକରି ।

ନାହାନ୍ତି ଗୁଣ୍ଡିଗୃ    ଦେଖିବାକୁ ଜାତ
ରଖି ଯାଇଛନ୍ତି ସ୍ମୃତି,
ହିନ୍ଦୁ ଜାତିର ଏ    ଅପୂର୍ବ ମିଳନେ
ଫୁଲଏ ଓଡ଼ିଆ ଛାତି ।

***

## ସନ୍ଧ୍ୟା ଦର୍ଶନ "ପ୍ରାର୍ଥନା"

ବିଶ୍ୱର ଶାସନ ଦଣ୍ଡ ଅଛି ଯାର ହାତେ,
ସୃଜୁଛି ଯେ ମେଘାବଳୀ ସଦା ଜୀବହିତେ ।
କେବେ ବା ଶ୍ୟାମଳ କେବେ ପାଟଳ ବରଣ,
ବସନ ପିନ୍ଧାଇ ବୃକ୍ଷେ ହରେ ଜନ ମନ ।
ନିଦାଘ-ଆତପ-ସନ୍ତାପିତ ପ୍ରାଣୀ ଚୟେ,
ଦିଏ ଶାନ୍ତି ଧୀରେ ପ୍ରେରି ସୁଶୀତଳ ବାତେ ।
ସଂସାର ବନ୍ଧନୁ ଫିଟି ଶିଶୁ ଜ୍ଞାନ ହୀନ,
ଯାଁ ପ୍ରସାଦେ ଲଭୁଅଛି ଅମର ଭୁବନ ।
ଯା ଚରଣେ ଲୋଟୁଛନ୍ତି ଅମର ପଟଳି,
ସବିତା, ଚନ୍ଦ୍ରମା, କୋଟି କୋଟି ତାରାବଳି ।
ନବ ନବ ବେଶ ସାଜ ଋତୁ ଆବର୍ତ୍ତନେ,
ବନ୍ଦୁଅଛି ବସୁନ୍ଧରା ପୁଲକିତ ମନେ ।
ଜଳେ ସ୍ଥଳେ ଅନ୍ତରୀକ୍ଷେ ମହିମା ଯାହାର,
ହେ ଲୋକେ, ଶ୍ରୀପଦେ ତାର କୋଟି ନମସ୍କାର ।

***

ଅସ୍ତାଚଳ ଚୂଳେ ଉଠିଲେ
ଧୀରେ ଧୀରେ ଭାସ୍କର,
ସିନ୍ଦୂରିତ ହେଲା ଭୁବନ
ପଡ଼ି କନକ କର ।
ବଳାକା ନିକର ତୋରଣେ
ନଭେ ଉଡ଼ିଲେ ଗଢ଼ି,
କାନନ ଆଡ଼ରୁ ଶୁଭୁଛି
ଗାଈ ଗୋରୁଙ୍କ ରଡ଼ି ।
ମଳିନ ଦିଶିଲା ବାସର
କ୍ରମେ ବିହଙ୍ଗ ଶ୍ରେଣୀ,
ଆପଣା ଆପଣା ସଙ୍ଗୀତେ
କମ୍ପାଇଲେ ଧରଣୀ ।
ଚକୋର ଦମ୍ପତି ଚନ୍ଦ୍ରିକା
ପାନେ ବଳାଇ ମନ,
ନିଜ ନିଜ ବାସା ଖୋଜିଲେ
ଭୂମି ଆକାଶ ବନ ।
ସନ୍ଧ୍ୟା ଦରଶନ ବାରତା
ନଗେ ନାଗରେ ଯାଇ,
ବାହାରିଲେ ପୁର ପଲ୍ଲୀରୁ
ଯେଝା ବେଶ ପକାଇ ।
ପେଣ୍ଟଲୁନ ଧୋତି କଏବା
କାଇ ଉଡ଼ୁଛି ଫେର,
କଉପିନ ମାତ୍ର କଟିରେ
କେବା ଭସ୍ମେ ଧୂସର ।
ଶିରେ ନାହିଁ କେଶ କା'ରବା
ଅଣ୍ଡା ଯାଇଛି ଲାଇଁ,
ବାଙ୍କିବାଡ଼ି ଧରି କଏବା
ଦୂରୁ ଆସୁଛି ଧାଇଁ ।
ତେଲ ଜର ଜର କା କେଶ
କା'ର ପାଚିଛି ଦାଢ଼ି,
ଉଦ୍ଦାମ ଯୌବନେ କଏବା
ମଣି ଦେଉଛି ମୋଡ଼ି ।
କାହାର କାହାର ଅବୁଝା
ଭାଷା ପଡ଼ଇ ଶ୍ରବଣେ,
ଦରଶନ ପାଇଁ ଲୁଛାନ୍ତି
କେବା କଳି ଉଆଣେ ।
କେ ନାରୀ ପିନ୍ଧିଛି ହରିତ
କେବା ବାସ ଧବଳ,
କଏ ବାହାରିଛି ପୁଲକେ
ପିନ୍ଧି ରମ୍ୟ ଦୁକୂଳ ।
ଝଲସେ କାହାର ଲଲାଟେ
ପଟେ ଚୋପି ସିନ୍ଦୂର,
ମଥାମଣି ଶୋହେ ସୀମନ୍ତ
ପରେ କେଉଁ ଯୋଷାର ।
କେ ପିନ୍ଧିଛି କାଚ ହେମର
କେବା କାଚ କଙ୍କଣ,

କେବା ଝଞ୍ଜି ଅଛୁ ପଦକେ
ବହୁମୂଲ୍ୟ ରତନ,
ସୁବର୍ଣ୍ଣ କନକ ଭୂଷଣେ
କା'ର ପୂରିଛି ବେକ ।
ପ୍ରତିବିମ୍ବି ଶୋଭା ସଲିଳେ
ଦିଶେ ତା ଜକ ଜକ ।
ମୁକୁଳ କୁନ୍ତଳ କାହାର
କେବା ଗୁଡ଼ିଛି ବେଣୀ,
ଲକ୍ଷାରସ ବୋଲି ଚରଣେ
କେବା ଦେଖାଏ ଠାଣି ।
ବଦନେ ହଳଦୀ କୁଙ୍କୁମ
ଡୋଳେ ବୋଳି କଜଳ,
ସଜେଲି କୃଷ୍ଣଙ୍କ ବାଳାଏ
ଜନମ ହୋଇଲେ ଠୁଳ ।
କା'ର ଦୋଳାପ୍ଲୁତ କଷଣୀ
କା'ର ନାସିକା ଦଣ୍ଡୀ,
ବିବିଧ କୁସୁମ କବରୀ
ଖୋସା ଦେଇଛି ମଣ୍ଡି ।
ନାରିକେଳ ଆମ୍ର ନେଇ
ଆଦି ପୂଜା ସମ୍ଭାର,
ସହିତ କେତକୀ ପାଖୁଡ଼ା
ମଲ୍ଲୀ କୁସୁମ ହାର ।
ଘେରି ରୁଣ୍ଡ ହେଲେ ମଣ୍ଡପେ
କାମିନୀଏ ସରବେ,
ଆପଣା କାମନା ମନାସି
ଅବା ଫେରିବେ ଏବେ ।
ବାଜିଲା କାହାଳୀ ସଘନେ
ସନ୍ଧ୍ୟା ଆଳତି ପାଇଁ,
ନୟନ ପୂରାଇ ଦେଖିଲେ
କୋଟି ବ୍ରହ୍ମାଣ୍ଡ ସାଇଁ ।
ଆପଣା ଆପଣା ଭବନେ
ବାହୁଡ଼ିଲେ ସକଳେ,
ଲଭି ପ୍ରସାଦ ବୁଡ଼ାଇ
ପାପ ଧରମ ଜଳେ ।

***

## ବାହୁଡା

ପଶ୍ଚିମେ ଲଲାଟେ ରାଜିଲା
ସ୍ୱରୁ କୁଙ୍କୁମ ଟୋପି ।
ଶୋଭା ସଙ୍ଗେ ରବି ଆଲୋକ
ଅନ୍ଧକାର ବିଲେପି ॥
ପ୍ରେମଭରେ ଆସି ମିଶିଲେ
ଦ୍ୱିଜରାଜ ଦମ୍ପତି ।
ସରୋବରେ ହସି ଉଠିଲା
ଧୀରେ ପଦ୍ମିନୀ ସତୀ ॥
ଭେଟିଲେ ପାଦପେ କୁସୁମ
ଅତି ଭକତି ଭରେ ।
ବାଣ୍ଟିଲା ସୁଗନ୍ଧ ମରୁତ
ଧୀରେ ଚଉଦିଗରେ ॥
ନିଦ୍ରାଦେବୀ ଅଙ୍କେ ଢଳିଲେ
ଧୀରେ ଧୀରେ ସକଳ ।
ନିଜ ନିଜ ଥାନେ ବସିଲେ
ମୋହେ ଖେଚର କୁଳ ॥
ଆଖି ମିଳା ମିଳ ଗୁଞ୍ଜନ
ସ୍ୱନେ ମିଳନ୍ଦ ରାଜ ।
କୁସୁମ ସମୀପେ ପ୍ରବେଶ
ହେଲେ କୁମୁଦ ତେଜ ॥
ମକରନ୍ଦ ଆଶେ ଧାଇଁଲା
ମଧୁକର ବହନ ।
ବିଶ୍ୱର ବିଳାସ ଭାବୁଛି
ପର ପାଇଁ ଜୀବନ ॥
ଶାନ୍ତ ଦେବୀ ଧୀରେ ଗମିଲେ
ନିଜ ପୀଠକୁ ଏବେ ।
କୋଲାହଳମୟ ନଗରୀ
ହେଲା ବିବିଧ ରବେ ॥
ବାହୁଡ଼ା ବାରତା ନାଗରୀ
ଭେଦିଗଲା କାନନ ।
ଜଣାଇଲା ପୁରକନ୍ଦରେ
ବାତ ସମ ବହନ ॥

ବାହୁଡ଼ା ଉତ୍ସବ ଦର୍ଶନେ
ମାଡ଼ି ଆସିଲେ ଜନେ ।
ଉଚ୍ଛୁଳିଲା ସତେ ନଗରୀ
ଘଣ୍ଟ ଶଙ୍ଖ ନିଃସ୍ୱନେ ॥
ବଜାଇ ବିତାନ ସାରଦ
ଘୋଡ଼ାଇଲା ଅମ୍ବର ।
ଆସିଲା କି ସତେ ପବନ
ଧରି ଚଳ ଚାମର ॥
ବର୍ଷା ଜଳଧାରେ ଅଙ୍ଗକୁ
ଧୋଇ କାମିନୀ କେତେ ।
ଓଦା ସର ସର ଅଙ୍ଗରେ
ଉଭା ହେବେ ଅଗ୍ରତେ ॥
ମୃଦଙ୍ଗ ଝାଞ୍ଜର ଶବଦେ
ଫାଟେ ଅଟଡ଼ା କାନ ।
କାହାଳୀ ଶବଦ ଶୁଭିଲା
ଜଣି ବଜ୍ର ନିଃସ୍ୱନ ॥
ଉତ୍ତର ଦିଗରେ ପଡ଼ିଲା
ଅବା ଜାନ୍ଦ ବୋବାଳି ।
ସେ ଶବଦ ବାଜ ଦକ୍ଷିଣ
ଗଲା ହର୍ଷେ ଉଚ୍ଛୁଳି ॥
ମହାସମାରୋହେ ଫେରିଲେ
ପ୍ରଭୁ ଜନ ଗହଳେ ।
ନୀଳାଚଳ ଆଜ କର୍ମ୍ମ ଭୂମି
ଅତି ଆନନ୍ଦ ରୋଳେ ॥
ଘୋର ନିନାଦିତ ଦିବସ
ଧୀରେ ନେଲା ମେଲାଣି ।
ହୁକା ରଡ଼ି ଘୁଡ଼ି ଶୃଗାଳ
କମ୍ପାଇଲା ଧରଣୀ ॥
ଲୁହୁଁ ଲୁହୁଁ ଏଣେ ଚନ୍ଦ୍ରିକା
ମାଡ଼ି ଆସିଲା ଧଇ ।
ଗୋଟି ଗୋଟି ହୋଇ ଗଗନେ
ଏବେ ଫୁଟିଲେ ତାରା ॥
ଫୁଲଇ ଘୁନ୍ତିକେ ସ୍ୱାପଦେ
ବନୁ ହେଲେ ବାହାର ।
ବରଷ ବାଧାରେ ସନ୍ତୁଷ୍ଟ
ବୃକ୍ଷ ଡାଳେ ଚକୋର ।
ବାହାରିଲା କାହୁଁ ଖଦ୍ୟୋତ
ନିଜ ଜ୍ୟୋତି ଦେଖାଇ ।
ବାଦୁଡ଼ିଏ ଉଡ଼ି ବୁଲିଲେ
ବୃକ୍ଷୁଁ ଫଳ ଛିଣ୍ଡାଇ ॥
ବରଷେ ଶାନ୍ତି ନଗରୀ
ନିଦ୍ରା ଦେବୀ ଚରଣେ ।
ଉଚ୍ଚ ଉଚ୍ଚ କରି ଉଲୁକ
ଭବ ପ୍ରସଙ୍ଗ ଘୋଷେ ।

***

## ମେଘ

ମେଘ ବରଷିଲା    ଅସରେ ଅସରେ
ଏବେ ଏ ଆଷାଢ ମାସେ,
ଘଡ଼ ଘଡ ଶୁଣି    ରବି ଚନ୍ଦ୍ର ତାରା
ଲୁଚିଲେ ନଭ ତରାସେ ॥
ନୂଆ ପାଣି ପାଇ    ବେଙ୍ଗ ବେଙ୍ଗୁଲିଏ
ଚକାଇଲେ ହୁଳହୁଳି ।
ଚଷା ପୁଅ ଖୁସି    ଦେଖି ଧାନ ଗଜା
କମଳ ଗଲାଣି ମିଳି ॥
ମୁଠିଏଁ ନାହିଁ ପାଣି    ନଇତଳିଆଙ୍କ
ଆସିଟିବ କେବେ ବଢ଼ି ।
ପଡ଼ିଗଲେ ମୁହିଁ    ଠାଣି ନଏ ଖଟରେ
ଶହ ଶହ ଦର ଚାଡ଼ି ॥
କା' ମୁଣ୍ଡେ କଳଶ    ତାଳ ଦିଏ କେଇ
କା'କୁ କରେ ଶର ଖଣ୍ଡ ।
ଦାମ୍ଭିକର ଦମ୍ଭ    ଲୁଚିଯାଏ କାହିଁ
ଏଡ଼ିବାକୁ ବର୍ଷ କାଣ୍ଡ ॥
ତିନି ରଥ ଧୀରେ    ସିଂହ ଦୁଆରରେ
ଲାଗିଗଲା ସଞ୍ଜ ଆସି ।
ପୁହାଇଲା ନିଶି    ତହିଁ ତିନି ଦିନ
ମଧ୍ୟରେ କେହି ନ ପଶି ॥

ମଢରେ ଟିବାକୁ    ହେଲେ ସଜବାଜ
ଶୁଭିଲା ଘଣ୍ଟ ନିଃସ୍ୱନ ।
ସିଂହ ଦୁଆରରେ    ରୁଣ୍ଡ ହେଲେ ଜନେ
କରିବାକୁ ଦରଶନ ॥
ଶେଷେ ଜୟ ଜୟ    ହୋଇ ଠାକୁରାଣୀ
ରହିଥିଲେ ଗର୍ବୀ ଦନ ।
କବାଟ ଟକାଇ    ଜଗି ରହିଥିଲେ
ନ କହି କିଛି ବଚନେ ॥
ଶାସିବାକୁ ଯେବେ    ମନେ ରାଜ୍ୟେ ଆସେ
କ୍ରୋଧ ପରମ ବଢ଼ାଇ ।
ସଦ୍‌ଗୁଣ ନିଚୟ    କ୍ଷଣକ ମଧ୍ୟରେ
ପଳାନ୍ତରେ କାହିଁ ଡରେ ॥

ଜଗତେ କାହାକୁ    ଛାଡ଼େ ନାହିଁ କ୍ରୋଧ
ସକଳେ ତା ଅନୁଚର ।
ବସ୍ତାର ପ୍ରଭୁଙ୍କ    ଘଟାଏ ବିପ୍ଳବ
ଚଞ୍ଚଳରେ ନିରନ୍ତର ॥
ଭଉଣୀ ସହିତ    ବଡ଼ ଠାକୁରଙ୍କୁ
ଗୁଡ଼ିଚଦଲେ ବାଟ ଜାଣି ।
ଓଗାଳିଲେ ପଥ    ଜଗତ ନାଥଙ୍କୁ
ଭାଷିଣ ନିଷ୍ଠୁର ବାଣୀ ॥
ଅନ୍ତର ଦେବତା    ଜାଣି ଅନ୍ତର୍ଯ୍ୟାମୀ
ପ୍ରବୋଧିଲେ ହରଷରେ ।
ଫିଟିଲା କବାଟ    ପଶିଲେ ଦମ୍ପତ୍ତି
ବଡ଼ ଦେଉଳ ଭିତରେ ॥

*—*



# ତ୍ୟାଗବୀର

## ପ୍ରଥମ ସର୍ଗ

କୋଶଳ ନରେଶ ପଦେ ଅଭିଷିକ୍ତ
ହୋଇ ଦଶରଥ ରାଜା,
ପରଜାମାନଙ୍କୁ ପାଳି ସୁଯତନେ
ଉଡ଼ାଇଲେ ଯଶଧ୍ୱଜା ।
ପଦାନତ ହେଲେ ଶତ ଶତ ନୃପ
ଦେଖି ତାଙ୍କ ବାହୁ ବଳ,
ଦୟା, ଦାନ, କ୍ଷମା ଆଚରି ସତତ
ମୋହିଲେ ଦେବ ସକଳ ।
ଦଣ୍ଡଧର ପରି ନ୍ୟାୟ ଦଣ୍ଡ ଧରି
ଶାସିବାରୁ ପ୍ରଜାକୁଳ,
ଶସ୍ୟଶାଳୀ ହେଲ ସବୁଦିନେ ରାଜ୍ୟ
ଲକ୍ଷ୍ମୀ ହେଲେ ଅନୁକୂଳ ।
ତେଜେ ନିଶାପତି ବଢନ୍ତି ଯେସନ
ଶୁକ୍ଲପକ୍ଷେ ପ୍ରତିଦିନ,
ସତ୍ୟ, ଶମ, ଦମ, ତିତିକ୍ଷା ତେଜରେ
ବଢ଼ିଲେ ରାଜା ତେସନ ।
ଦୁର୍ବଳେ କରୁଣା ପ୍ରବଳେ ଦମନ
ଥିଲି ତାଙ୍କ ରାଜନୀତି,
ଦେବତାଏ ଯାଙ୍କ କର୍ତ୍ତବ୍ୟ ନିଷ୍ଠାରେ
ଲଭୁଥିଲେ ଅତି ପ୍ରୀତି ।
ବିପ୍ରଗଣେ ଭକ୍ତି ଦୁଃଖୀ, ରଙ୍କୀ ସେବା
ଦେବ ଦେବୀ-ପୂଜା କରି,
ନ ବାନ୍ଧି ଗରବ ଚଳନ୍ତି ସତତ
ଧର୍ମ୍ମପଥ ଅନୁସରି ।
ଧନ ଆଉ ବଳ ସଂଯୋଗେ ଜୀବନ
ହୋଇଥାଏ ସୁଖାବହ,
ଭାଗ୍ୟ ବଶେ ଲଭି ନରପତି କାଳ
କାଟୁଥିଲେ ଅହରହ ।
ଭାଗ୍ୟବାନ ବୋଲି ରାଜା ଦଶରଥ
ହୁଏ ଗାନ ଜନମୁଖେ,
କିନ୍ତୁ, ନରପତି ତନୟ-ବିହୁନେ
ଯାପନ୍ତି ଜୀବନ ଦୁଃଖେ ।
ଧନରେ ଭଣ୍ଡାର ହୋଇଥିଲେ ଭରି
ନଥିବଟି ଯେବେ ଯୋଗ,
ଦୁଃଖ-ବେଗ ଆସି କରେ କଲବଲ
ନପାରେ କେ କରି ଭୋଗ ।
କୁଳ ପୁରୋହିତ- ବଶିଷ୍ଠଙ୍କୁ ଦୁଃଖେ
ଡାକ ଆଣି ଭୂପ ଦିନେ,
ପୁତ୍ର ଲାଭ ଆଶେ କହିଲେ ବିଜୁର
ଅତି ବିଷଣ୍ଣ ବଦନେ ।

ଲଭି ପରାମର୍ଶ    ଆନନ୍ଦେ ନୃମଣି
ଲୋମପାଦ ରାଜ୍ୟ ଯାଇ,
ଋଷ୍ୟଶୃଙ୍ଗ ମୁନି    ଯେନି ସଙ୍ଗେ ତାଙ୍କ-
ରାଜ୍ୟ ଆଣିଲେ ମଗାଇ ।
ଋତୁ ଶିରୋମଣି-    ବସନ୍ତ ସଧୀରେ
ଶୋଭାର ପସରା ବାନ୍ଧି,
ଉପଗତ ହେଲ    ଧରାଧାମେ ଏବେ
ଶିଶିରକୁ ଖେଦେ ତଡ଼ି ।
ଅଶ୍ୱବଳି ଲାଗି    କୋଶଳ ନରେଶ,
ମନ ବଳାଇଲେ ଅତି,
ଛାଡ଼ିଥିଲେ ଏବେ    ନିଖୁଣ ଘୋଟକ
ପାଇ ମୁନି ଅନୁମତି ।
ଆରମ୍ଭିଲେ ହୋମ    ବଶିଷ୍ଠାଦି ମୁନି
ବେଦ ସ୍ମୃତି ଅନୁଯାୟୀ,
ବଳିଲା ବରଷେ    ବୁଲି ଧରା ଅଶ୍ୱ
ବାହୁଡ଼ିଲା ହୋଇ ଜୟୀ ।
ଯାବତୀୟ ଦ୍ରବ୍ୟ    ଜମା ହେଲା ଆସି
ଲୋଡ଼ା ହୁଏ ଯାହା ଯାଗେ,
ଘଟନ ହେଲା ପରା    ସୁଶ୍ୟାମଳ ଧରା
ପଠାଇ ଥିଲା ସବାରେ ।
ନାନା ରାଜ୍ୟରୁ    ନରପତି କେତେ
ହୋଇଥିଲେ ନିମନ୍ତ୍ରିତ,
ପହଞ୍ଚିଲେ ଆସି    ଯଥା ସମୟରେ
ଭେଟି ଧରି ରାଜୋଚିତ ।
ସୁନା ରୁପା ଆଦି    ବଣ୍ଟା ହେଲା କେତେ
କେ ତାହା ପାରିବ କଳି,
ଦୁଃଖୀ ରଙ୍କୀ ବିପ୍ର    ପୁଲକିତ ହୋଇ
ନବ ବାସ ଭଳି ଭଳି ।
ଋଷ୍ୟ ଶୃଙ୍ଗାଦେଶେ    ବାମଦେବ ଆଦି
ଆନନ୍ଦରେ ମୁନିଗଣ,
ବିଧି ଅନୁଯାୟୀ    ଦେଲେ ଅଶ୍ୱବଳି
କରି ମନ୍ତ୍ର ଉଚ୍ଚାରଣ ।
କେତେ ନାରୀନର    ନାନା ସାମଗ୍ରୀସ୍ତ
ଖାଉଥାନ୍ତି ବାରମ୍ବାର,
ରହିଥିବା ଲୋକେ    ନପାନ୍ତି ଟିକଏ
ନାକ ପୋଛିବାକୁ ତର ।
ମୁନିଗଣେ ଭକ୍ତି-    ହୃଦୟେ ପ୍ରଣମି
ଦଶରଥ ନରପତି,
"ପୁତ୍ର ଲାଭ ବର"    ଋଷ୍ୟଶୃଙ୍ଗ ମୁଖୁଁ
ଶୁଣି ଲଭିଲେ ଭୂପତି ।
ଋଷ୍ୟଶୃଙ୍ଗଙ୍କର    "ଇଷ୍ଟି" ହୋମ କାର୍ଯ୍ୟ
ସରୁ ନ ସରୁଣୁ ଏଣେ,
ସ୍ୱର୍ଗୀୟ ପୁରୁଷ    ଉଭାହେଲେ ଏକ
ପାୟସ ଧରି ସେ ସ୍ଥାନେ ।
ଲଭି ସେ ପାୟସ    ଦଶରଥ ଭୂପ
ନେଇ ହରଷିତ ମନେ,
କୌଶଲ୍ୟା କୈକେୟୀ    ଦୁଇ ରାଣୀ ମଧ୍ୟେ
ଦେଲେ ବାଣ୍ଟି ତତକ୍ଷଣେ ।
ବେନି ରାଣୀ ତହୁଁ    ନିଜ ନିଜ ଭାଗୁଁ
ସୁମିତ୍ରାଙ୍କୁ ଚରୁ ଅଂଶ,
କରିଣ ପ୍ରଦାନ    ନିରମଳ ମନେ
ସେବିଲେ ବହୁ ହରଷ ।
ଏଣେ ଦେବତାଏ    ଅଧୀର ହୋଇଣ
ରାବଣର ଉପଦ୍ରବେ,
ପଙ୍କଜଲୋଚନ    ଶ୍ରୀହରିଙ୍କ ପଦେ
ଦୁଃଖ ଜଣାଇଲେ ସ୍ତବେ ।
ଅଗ୍ନି ଦେବଙ୍କର    ସାହା ଲାଗି ଯଥା
ଅଗ୍ରସର ପ୍ରଭଞ୍ଜନ,
ଶୁଣି ଦଇତାରି    ପ୍ରସନ୍ନ ବଦନେ
ହସି କହିଲେ ଏମନ ।
"ଦୁଷ୍ଟ ନିଶାଚରେ    ବଧିବା ନିମିତ୍ତ
ମର୍ତ୍ତ୍ୟେ ଅଯୋଧ୍ୟା ନଗରେ,
ମହାରାଜ ଦଶ-    ରଥ ଔରସେ
ଜନମିବ ନିକଟରେ ।"
ଶ୍ରୀହରି ବଚନ    ଶୁଣି ସୁରଗଣ
ବାହୁଡ଼େ ଯେ ଯାହା ପୁରେ,
କିଛି କାଳ ପରେ    କପି ଋକ୍ଷ କୁଳେ
ଜନମିଲେ ମର୍ତ୍ତ୍ୟପୁରେ ।

ସମକାଳେ ତିନି- ରାଣୀ ଗର୍ଭବତୀ-
ହୋଇ ଶୋଭିଲେ ବିଶେଷେ,
ପୁଲକିତ ମନ ରଖିବାକୁ ନୃପ
ରହୁଥିଲେ ତାଙ୍କ ପାଶେ ।
କୌଶଲ୍ୟା, କୈକେୟୀ ଗର୍ଭେ ହେଲେ ଜାତ
ଏବେ ଏକ ଏକ ସୁତ,
ସୁମିତ୍ରା ଗର୍ଭୁଁ ଜନ୍ମି ଦୁଇ ସୁତ
କଲେ ଧରାତଳ ପୂତ ।
ମେଘ ଦେଖି କେକୀ, ଚାତକ ଯେସନ
ହରଷରେ ଉଦ୍‌ବେଳିତ,
ତଥା ପିତା ମାତା ପୁତ୍ର ଦରଶନେ
ହେଲେ ଅତି ଆନନ୍ଦିତ ।
ଇନ୍ଦୁ ଦେଖି ଯଥା ଚକୋର-ଚକୋରୀ
ଯା'ନ୍ତି ପ୍ରେମଭରେ ଭାସି,
ଏ ବାରତା ଲଭି ତଥା ମୋଦଭରେ
ଦେବ ଲୋକ ଭବବାସୀ ।
ଶୁଭିଲା ଦୁନ୍ଦୁଭି ବରଷିଲା ପୁଷ୍ପ
ସରଗୁଁ ସରାଗେ ଏଣେ,
ଶଙ୍ଖ ଭେରୀ ତୁରୀ ବାଦ୍ୟ ନାଦେ ପୁଣି
ମତ୍ତାଇଲ ପୁରଜନେ ।
ବଢ଼ଇ ଚନ୍ଦ୍ରମା ଯେସନେ ଦିନୁ ଦିନ
ତେସନେ, ତେସନେ ଚାରି ଭାଇ,
ବିଦ୍ୟା ଶିକ୍ଷା-ଅସ୍ତ୍ରେ ଲଭିଲେ ନୈପୁଣ୍ୟ
ବିନୟ ଗୁଣକୁ ବହି ।
ରାମଙ୍କୁ ଲକ୍ଷ୍ମଣ ଭକତି ଅନ୍ତରେ
ସେବୁଥାନ୍ତି ପ୍ରତିଦିନ,
ଭରତଙ୍କ ସଙ୍ଗ ଶତ୍ରୁଘ୍ନ ଏଣେ
ନ ଛାଡ଼ନ୍ତି କଦାଚନେ ।
ଲଭି ଦରଶନ ପ୍ରଶାନ୍ତ ବଦନ-
ରାମଙ୍କର ସର୍ବ ଜନେ,
"ବିଷ୍ଣୁ ଅବତାର ହୋଇଛନ୍ତି ବୋଲି
ଭାବୁଥିଲେ ମନେ ମନେ ।
ଦେଖାନ୍ତି ସେ ଭକ୍ତି ଗୁରୁଜନ ଗଣେ
ମନେ ଅନୁରାଗ ବହି,
ତୋଷୁଥିଲେ ମନ ସାନ ବଡ଼ଙ୍କର
ମଧୁର ବଚନ କହି ।
ଦୋଷ ଦେଖି କ୍ଷମା ଆଚରନ୍ତି ସଦା
ରହୁଥାଏ କ୍ରୋଧ ଦୂରେ,
ଶୟନେ ସ୍ୱପନେ ନିରନ୍ତର ମନ
ପରହିତ ପାଇଁ ଝୁରେ ।
ପୁତ୍ର ମୁଖ ଦେଖି ବୃଦ୍ଧାକାଳେ ରାଜା
ସୁଖେ କାଟୁଥିଲେ ଦିନ,
ସେ ସୌମ୍ୟ ବଦନ ଦଣ୍ଡେ ନ ଦେଖିଲେ
ମନ ହେଉଥାଏ ଛିନ୍ନ ।
ପହଞ୍ଚିଣ, ଦିନେ ଦଶରଥ ଆଗେ
(୧) ଗାଧିସୁତ ତପୋଧନ,
କହିଲେ,' ରାକ୍ଷସ ବିନାଶିବା ଲାଗି
ରାମ ଯିବେ ତପୋବନ ।
ଅଯୋଧ୍ୟା ନୃପତି ଶୁଣି ମୁନି ବାଣୀ
ସମ୍ମତି କଲେ ପ୍ରଦାନ,
ମୁନିବର ସଙ୍ଗେ ତପୋବନ ଦିଗେ
ଗମିଲେ ରାମ, ଲକ୍ଷ୍ମଣ ।
ଚାଲିଥାନ୍ତି ମୁନି ଆଗେ ଆଗେ ତାଙ୍କ
ପଛେ ପଛେ ଦୁଇ ଭାଇ,
ହରି ସେମାନଙ୍କ ମନ ଗିରିପଥ ବା
କାନନ ଶୋଭା ଦେଖାଇ ।
ରୁଚିର ପ୍ରାସାଦେ କାଟୁଥିଲା ଦିନ
ରାଜ କୁମାରଙ୍କ ନିତି,
ସରଯୂ କୂଳରେ ଗଛ ତଳେ ଆଜି
କଟାଇଲେ ଦୁହେଁ ରାତି ।
ନାନା ଅସ୍ତ୍ର ଶସ୍ତ୍ର- କଉଶଳ ମାନ
ଦଇତ ବିନାଶ ପାଇଁ,
ଶିଖାଇଲେ ରାମେ ଗାଧିଙ୍କ ନନ୍ଦନ
ହୃଦେ ଅତି ତୋଷ ବହି ।
ପଥ ଶ୍ରମ ବାଧା ନ ଲାଗିବା ଲାଗି
ଅନନ୍ତର ଋଷିବର,

୧—ବିଶ୍ୱାମିତ୍ର

ବଳା ଅତିବଳା — ମନ୍ତ୍ର କହିଦେଲେ
କର୍ଣ୍ଣେ ବେନି ଭାଇଙ୍କର ।
ଯାଇବାକୁ ରାତି — ନିତ୍ୟ କର୍ମ ସାରି
ରାଜ କୁମାରଙ୍କୁ ଧରି,
ବିଶ୍ୱାମିତ୍ର ଋଷି- — ବର ବାହାରିଲେ
ନିଜ ଲକ୍ଷ୍ୟ ଅନୁସରି ।
ବାଟେ ଗଲାବେଳେ — ନିରେଖି ଯତିଏ
ବେନି ଭାଇଙ୍କ ମୂରତି,
ଭୁଲି ଜପ ତପ — ଆହା ! କି ସୁଖରେ
ଲଭନ୍ତି ଅତି ପୀରତି ।
ଏ ସମୟେ ପୁଣି — ତାଡକା ରାକ୍ଷସୀ
ମରିଲା ରାମ ୧. ଇଷୁରେ,
ଜୟ ଧ୍ୱନି ସହ — ବରଷି କୁସୁମ
ପ୍ରଶଂସିଲେ ତାଙ୍କୁ ସୁରେ ।
ଦଶରଥଙ୍କର — ବେନି ସୁତ ସହ
ବିଶ୍ୱାମିତ୍ର ନିଜ ମଠେ,
ପ୍ରବେଶି ଦେଖିଲେ — ହୃଷ୍ଟମନେ ରତ
ଶିଷ୍ୟଗଣ ବେଦ ପାଠେ ।
କଲେ ଅଭ୍ୟର୍ଥନା — ମୁନି ଶିଷ୍ୟମାନେ
ସେମାନଙ୍କୁ ପ୍ରେମ ଭରେ,
ଯଜ୍ଞର କରମ — ଆରମ୍ଭିଲେ ଏବେ
ଯତିବର ଯଥା କାଳେ ।
ପଡ଼ିଲା ଏ କାଳେ — ଥପ ଥପ ହୋଇ
ରକ୍ତ ବିନ୍ଦୁ ବାରଂବାର,
ଦେଖି ଏ ଘଟଣା — ବେନି ଭାଇ ଏଣେ
ରୋଷେ ହୋଇଲେ ଜର ଜର ।
ଊର୍ଦ୍ଧ୍ୱେ ଚାହିଁ ରାମ — ଦେଖନ୍ତି ଆକାଶେ
ମାୟାବଳେ ନିଶାଚରେ,
ଯାଗ, ହୋମ ବନ୍ଦ — ଭିଆନ୍ତି ନିରତେ
ଥୋଇ କ୍ଷିପ୍ର ଅନାଚାରେ ।
ଟେକି ତୀକ୍ଷ୍ଣ ଶର — କ୍ରୋଧେ ବେନି ଭାଇ
ହେଲେ ନିଶାଚରେ କାଳ,

ପରାକ୍ରମ ଦେଖି — ବହୁ ପ୍ରଶଂସା
କଲେ ତାପସ-ଆବଳି ।
ଯାଗ ସମାପନେ- — କରି ଯତିବର
ଆଶିଷିଲେ ବେନି ଭାଇ,
ତଦନ୍ତେ ଜନକ — ନିମନ୍ତ୍ରଣ କଥା
କହିଲେ ସବୁ ବୁଝାଇ ।
ସେ ମହା-ଉତ୍ସବ — ଦେଖିବାକୁ ବେନି-
ଭାଇ ବଳାଇଲେ ମନ,
ଗଲେ ବିଶ୍ୱାମିତ୍ର — ଶ୍ରୀରାମ ଲକ୍ଷ୍ମଣ
ଦେଖି ଧନୁ ଟେକା ପଣ ।
ପତି ଅଭିଶାପେ — ଗଉତମ ପତ୍ନୀ
ପ୍ରସ୍ତର ରୂପିଣୀ ହୋଇ,
ପଡ଼ିଥିଲେ ପଥେ — ରାମ ପଦ ବାଜି
ଉଠିଲା ସ୍ୱରୂପ ପାଇ ।
ଗୌତମ ପ୍ରେୟସୀ — ଅହଲ୍ୟା ସୁନ୍ଦରୀ
ବନ୍ଦି ସେ ପଦ କମଳ,
ପତି ପଦତଳେ — ଲୋଟି ଗଲେ ଖରେ
ବୁହାଇ ଲୋତକ ଜଳ ।
ଗାଧିଙ୍କ ନନ୍ଦନ — ବିଶ୍ୱାମିତ୍ର ଋଷି
ଶ୍ରୀରାମ ଲକ୍ଷ୍ମଣ ଘେନି,
ପହଞ୍ଚିଲେ ଯାଇ — ମିଥିଳା ନଗରେ
ଜନକଙ୍କ ରାଜଧାନୀ ।
ବେନି ଭାଇଙ୍କର — ସେ ରୂପ ମାଧୁରୀ
ବିଦେହ କାମିନୀଚୟ,
ଚାହିଁଥାନ୍ତି ରହି — ପୁଲକିତ ମନେ
କରି ଦୃଷ୍ଟି ଏକଲୟ ।
ଶୁଣିଣ ଜନକ — ଆଗମନ ବାର୍ତ୍ତା
ବିଶ୍ୱାମିତ୍ର ଋଷିଙ୍କର,
ଆସି ତତକ୍ଷଣେ — ହରଷ ଅନ୍ତରେ
କଲେ ଅତି ସମାଦର ।
ପରିଚୟ ଲଭି, — ରାଜକୁମାରଙ୍କ
ଜନକ ହରଷ ଭରି,
ଦେଇ ବସାଘର — ବିଧି ଅନୁସାରେ
କଲେ ଅତିଥି ସତ୍କାର ।

୧—ଶରରେ

ତହୁଁ ଜନକଙ୍କୁ ପୁଲକିତ ମନେ
ନିବେଦିଲେ ଗାଧିସୁତ,
"ତବ ଶିବ ଧନୁ ଦେଖିବାକୁ ରାମ
ବଳାଇ ଅଛନ୍ତି ଚିତ୍ତ ।"
ଶୁଣି ନରମଣି ନିରାଶ ଅନ୍ତରେ
ଉତ୍ତରିଲେ ମୁନିବରେ,
"କେତେ ଧନୁର୍ଦ୍ଧର ବାହୁଡ଼ି ଗଲେଣି
ଲଜ୍ଜାଭରେ ନିଜ ପୁରେ ।"
ତହୁଁ ବିଶ୍ୱାମିତ୍ର କହିଲେ ସାନନ୍ଦେ
ରଘୁବର ପରାକ୍ରମ,
"ସମର୍ଥ କେବଳ ଟେକିବାକୁ ରାମ
ହରଧନୁ ଅନୁପମ ।"
ମିଥିଳା ଈଶ୍ୱର ଶୁଣି ମୁନିଙ୍କର
ବହୁ ଆଶ୍ୱାସ ବଚନ,
ମୋଦ ଭରେ ଆଦେ- ଶିଲେ 'ଧନୁ ଦେଖି-
ଯାନ୍ତୁ କୌଶଲ୍ୟାଙ୍କ ନନ୍ଦନ' ।
ଗିରିସମ ଗୁରୁ ସେ କୋଦଣ୍ଡ ଟେକି-
ଦେଲେ ଶ୍ରୀରାମ ସଘନେ,
ଯୋଡ଼ିଲେ ନୁଆଁଇଁ ତହିଁ ପରେ ଗୁଣ
ଚକିତ କରି ରାଜନେ ।
ଟାଣି ଝିଙ୍କିବାରୁ ଦୁଇଖଣ୍ଡ ହୋଇ
ପଡ଼ିଲା ଭାଙ୍ଗି କାର୍ମୁକ,
ଅନଳ ପରାଏ ଖେଳିଗଲା ପୁରେ
ଉଷତ ଅତି ଜନକ ।
ମୁନିବର ଆଗେ ବିନୟେ ରାଜନ
କହିଲେ, "ମୋର ତନୟା,
ଲକ୍ଷ୍ମୀ ସ୍ୱରୂପିଣୀ ଜାନକୀ ରାମଙ୍କ
ହେଲେ ଆଜଠାରୁ ଜାୟା ।"
ଏ ବାରତା ନେଇ ପୂଜ୍ୟ ସତାନନ୍ଦ
ଯାଇ ସାକେତ ନଗରେ,
ଅଯୋଧ୍ୟା ରାଜନ ଦଶରଥ ଆଗେ
ଜଣାଇଲେ ମୋଦଭରେ ।
ବିଜୁଳି ପରାଏ ଏ ଶୁଭ ବାରତା
ଭେଦିଗଲା ପୁରେ ପୁରେ,
ଦଶରଥ ଭୂପ ପରିଣୟ-ସଜ
ଯୋଗାଡ଼ିଲେ ସରାଗରେ ।
କେତେ ହାତୀ ଘୋଡ଼ା ହୋଇଥିଲା ଲୋଡ଼ା
କେ ପାରିବ ଗଣି ତାହା,
ଧରିଲେ ସଙ୍ଗରେ ଅଗଣିତ ସଜ
ମନେ ନ ପଡ଼ିଥିଲା ଯାହା ।
ଶୁଭ ଅନୁକୂଳେ କୋଶଳ ନରେଶ
ଅଭିମୁଖେ ମିଥିଳାର,
ବାହାରିଲେ ବହୁ ସାଧୁ ବିପ୍ର ସହ
ହୋଇ ଆନନ୍ଦେ ଅଧୀର ।
ଯଥା ସମୟରେ ବିଦେହ ନଗରେ
ଦଶରଥ ମହୀପାଳ,
ପହଞ୍ଚି, ଶ୍ରୀରାମ- ଲକ୍ଷ୍ମଣଙ୍କୁ ଦେଖି
ହେଲେ ଆନନ୍ଦରେ ଭୋଳ ।
ମହାସମାରୋହେ ରାଜକୁମାରଙ୍କ
ହେଲା ପରିଣୟ କଥା,
ବେନି ମହୀପାଳ ଯୋଗାଡ଼ିଲେ ସବୁ
ଧରି ଦେଶ କାଳ ପ୍ରଥା ।
ସୀତାଙ୍କ ସହିତ ରଘୁମଣିଙ୍କର
ଊର୍ମିଳା ସହ ଲକ୍ଷ୍ମଣ,
ଭରତ ଶତ୍ରୁଘ୍ନ କୁଶଧ୍ୱଜ ସୁତା
କରିଲେ ପାଣିଗ୍ରହଣ ।
କିଶୋର କିଶୋରୀ ମଧୁର ମିଳନ
ଦରଶ ରମଣୀୟ ଅତି,
ଯେ ଦେଖିଛି ଥରେ ନ ଭୁଲିବ କେବେ
ଆହା ! ସେ ରୁଚିର ଜ୍ୟୋତି ।
ସିନ୍ଧୁ ନାଦ ସମ ଗରଜେ ନଗରୀ
ଜନତାର କୋଳାହଳ,
ମେଲାଣି ଦେବାକୁ ବାହୁ ରାଜ-ଋଷି
ବର ବଧୂ ଯଥାକାଳେ ।
ଜଗି ବେଳକାଳ ଦେଇ ବେହେରା
ଯେବେ ଯାହା ପ୍ରୟୋଜନ,
ଯୋଗାଇ ଦିଅନ୍ତି ମନ ଅନୁସାରେ
କରି ସବୁ ଆୟୋଜନ ।

ଏଣେ ସଖୀଗଣ   ଲୁହାକୋହ୍ଳ ହେଲେ
"ସୀତା ଯିବେ ଶାଶୁଘର,"
ନ ଫିଟେ ବଚନ   କାହାରି ମୁଖରୁ
ବହୁଇ ଲୋତକ ଝର ।
ଆଦର କରିବା   ଲୋକ ଥାଇ କେତେ
ଡଗ ମେଲି ବୋଲେ ବୋଲେ,
ହସ'ଉ ଥାଆନ୍ତି   ରୁଣ୍ଡ ଥିବା ଜନେ
ଅବା ମନ ଦୁଃଖ କାଳେ ।
ନେମଲାଣି ଯୋଗାଡ଼   ସଜ ହେଉ ହେଉ
ଏଣେ ପାଇଗଲା ରାତି,
ଶୁଭ ଯୋଗ ଦେଖି   ବରଯାତ୍ରୀ ଗଣ
ହୁଅନ୍ତି ତତ୍ପର ଅତି ।
ଭୁବନ ବଦିତ   ରାଜର୍ଷି ଜନକ
ମହା ଆଡମ୍ବର କରି,
ପଠାଇଲେ ଏବେ   ବହୁତ ବଧାନେ
ତିନ କୁଅରି ସୁନ୍ଦରୀ ।
ଶ୍ରୀରାମ, ଲକ୍ଷ୍ମଣ,   ଭରତ, ଶତ୍ରୁଘ୍ନ
ଲଭି ବହୁ ସନମାନ,
ବିଦା ହେଲେ ଯେବେ   ପଡ଼ୁଥିଲା କେତେ
ହୁଳହୁଳି ଘନ ଘନ ।
ଆଗେ ଆଗେ ଚାଲି-   ଥାନ୍ତି ଦଶରଥ
ପଛେ ବିଦାୟ ସମ୍ଭାର,
ଅମଙ୍ଗଳ ଚିହ୍ନ   ଚଉଦିଗେ ଦେଖି
ଭୟରେ ହେଲେ କାତର ।
କ୍ଷତ୍ରିୟ ଅରାତି   ପରଶୁରାମ ଏବେ
କୁଠାରି ଧରି ହାତରେ,
ଓଗାଳିଲେ ବାଟ   ରଘୁମଣିଙ୍କର
ଅତି ରାଗ ଅହଙ୍କାରେ ।
ଝିଲମିଲ ବହ୍ନି   ଯଥା ଘୃତ ଯୋଗେ
ମହା ତେଜ ସଦା ଧରେ,
ତଥାପ୍ରାପ୍ତ ବେଶ   ଅହଂତା ସଂଯୋଗେ
ବଢ଼ଇ କ୍ଷଣକ ଭିତରେ ।
ଅନିଷ୍ଟର ମୂଳ   ହେତୁ ଅହଙ୍କାର
ଜାଣି ଜାଣି କେହୋ ନଚରେ,
ନିଜ ଗାତ ଜଳେ   ଖୋଳୁଥାନ୍ତି ସଦା
ଠାଣି ହୋଇ ମୋହ ଡୋରେ ।
ମହାବଳ ଯଥା   ହୋଇଣ ଧାଉଡ଼
କ୍ରୋଧାନଳେ ଯାଏ ଜଳି,
ସୁମିତ୍ରା ନନ୍ଦନ   ତଥା କ୍ରୋଧବଶେ
ଭାର୍ଗବଙ୍କୁ ଦେଲେ ଗାଳି ।
ଯେସନ ସମୀର   ଯୋଗେ ହୁତାଶନ
ଲଭଇ ନିର୍ବାଣ ଗତି,
ତେସନ ରାମଙ୍କ   ବଚନ କରିଲା
ଲକ୍ଷ୍ମଣଙ୍କ କ୍ରୋଧ ଶାନ୍ତି ।
କହିଲେ ରାମଙ୍କୁ   ଭାର୍ଗବ ଏସନ
"କ୍ଷତ୍ରିୟ ଲୋଡ଼ ମୋ ପଣ",
"ମୋ ଧନୁକୁ ଯେବେ   ନ ପାରିବ ଭାଙ୍ଗି
ଛଡ଼ାଇବି ବଡ଼ ପଣ" ।
ଶିଶିର ବିନ୍ଦୁକ   ଦିନକର ତେଜ
ଯେସନ ହୁଏ ନଷ୍ଟ,
ଶ୍ରୀରାମ ନୟନ   ପଡ଼ି ସେ କାର୍ମୁକ
ହେଲା ଏବେ ପ୍ରଭଞ୍ଜନ ।
ଭୃଗୁ ସୁତ-ବାଣୀ   ଶୁଣି ରଘୁମଣି
ବିନୟ ବଚନ କହି,
ଟେକି ଦେଇ ଚାପ   ଯୋଡ଼ିଲେ ସାୟକ
ଶାନ୍ତ ଭାବ ହୃଦେ ବହି ।
ପ୍ରଭଞ୍ଜନ ବେଗ   ନପାରି ସମ୍ଭାଳି
ଉପୁଡ଼ଇ ତରୁ ଯଥା,
ରଘୁମଣି ହସ୍ତ   ପଡ଼ିଣି ଭାଙ୍ଗିଲା
ଭାର୍ଗବଙ୍କ ଗର୍ବ ତଥା ।
ମାନବ ଜୀବନ   ଯାଉଅଛି ବିତି
କଳି ଗୋଟିକ ଜଡ଼ ନାନା,
ହେଜଟେଲ ତାଜଣା   ପଡ଼ନ୍ତା କିଏ ସେ
ଗର୍ବ ଦମ୍ଭ କରେ ଚୂନା ।
ଦେଖି ଏ ଘଟକୁ   ପରଶୁରାମ ବୀର
ଲାଜେ ଲାଜକୁଳି ପରି,
ଖ୍ୟାତିକ ଅଧୀରେ   ବିନୟ ବଚନେ
ସ୍ତୁତି କଲେ ପଦାଧରି ।

"ନଜାଣି ମୁଁ ଥିଲା କରୁଥିଲି ମିନା
ତୁମେତ ଜଗତ ପିତା,
ଲାବଣ୍ୟ ପ୍ରତିମା ଜନକ ନନ୍ଦିନୀ
ଲକ୍ଷ୍ମୀ ଏ ବାମାଙ୍ଗୀ ସୀତା ।
କେ ବୁଝି ପାରିବ ଏ ମର୍ତ୍ତ୍ୟମଣ୍ଡଳେ
ତୁମ କୌଶଳ ଲବେ,
ଏ ତୁଚ୍ଛ ପାମର ଜାଣିବ ବା କାହୁଁ
ଯାହା ନ ଜାଣନ୍ତି ଦେବେ ।
କରୁ ଅଛି ଅଳି, ଦୟାବନ୍ଧୁ ତବେ
ଦିଅ ଏ ଅଧମେ କ୍ଷମା,
ଆଦେଶିଲେ ଯିବି ସ୍ୱସ୍ଥାନକୁ ଏବେ
ପୋଡ଼ୁ ଭାର୍ଗବ ଗରିମା" ।
କ୍ଷଣକେ ଏସନ ପର୍ଶୁରାମ ବୀର
ଦୟାବନ୍ଧୁ ରାମ ଚରେ,
ଆଦେଶିଲେ ତାଙ୍କୁ, ପରଶୁ ଧରିସେ
ସ୍ୱସ୍ଥାନେ ଗଲେ ତୁରିତେ ।
ଦୟା ପରିପୂର୍ଣ୍ଣ ଦଶରଥ ରାଣ
ଏ ସବୁ ଘଟଣା ଦେଖି,
ପ୍ରଶଂସି ରାମଙ୍କୁ ଗମିଲେ ସଭିଁଏ
ହୋଇ ଏଣେ ଅତି ସୁଖୀ ।
ଯାତ୍ରେ ଛିଡ଼ିବା ପାଇଁ ସଚିବ ନିକର
ହୋଇଥିଲେ ଆଗୁଁ ସଜ,
ଗଗନ ମଣ୍ଡଳ ହେଲା ଧୂମାୟିତ
ଉଡ଼ିବାଜଖୁରିରଜ ।
ବାଜୁଛି ବାଜଣା ଫୁଟୁଅଛି ବାଣ
ପୁଅ ବୋହୂ ଧରି ଭୂପ,
ପୁର ଉପକଣ୍ଠେ ପହଞ୍ଚିଲେ ଆସି
ଫୁଟିଲା ଅସଂଖ୍ୟ ତୋପ ।
ହୁଳହୁଳି ଧ୍ୱନି ଗଜବାଜି ରବେ
ମିଶିଲା କାହାଳୀ ସ୍ୱର,
ନନ୍ଦନ କାନନୁ ପାରିଜାତ ଅବା
ପଡ଼ୁଥିଲା ବାରଂବାର ।

କେତେ ବାଡ଼ିଖେଳ ୧. ଫରିକାରି ଦଳ
ପଟୁଆର ଆଗେ ଆଗେ,
ନିଜ କର୍ମମନ୍ତ ଦେଖାଇ ମୋହନ୍ତି
ମାନସ ଅତି ସରାଗେ ।
ଗୃହକ ପରାଏ ଚଢ଼ିଥିଲେ ଗୃହୀଁ
ରାଜ ନଗରର ଲୋକ,
ନଗର ପାରୁଶେ ଦେଖି ବରକନ୍ୟା
ମନ୍ଦିଲେ ଅତି ପୁଲକେ ।
ବଶିଷ୍ଠାଦି ଋଷି ସଙ୍ଗେ ସଙ୍ଗେ ଆସି
କଲେ ହୋମର ଯୋଗାଡ଼,
ଦହି ମାଛ ଧରି ମାଆମାନେ ପରା
ହେଲେ ଏବେ ଧଡ଼ପଡ଼ ।
ମାଆମାନେ ଆସି ପୁଅ ବୋହୂ ନେଇ
ଗଲେ ନଅର ଭିତରେ,
ଅଳତା କଜଳ ଲଗାଇ ସାରିଲେ
ବନ୍ଦାପନା ପୁଲକରେ ।
ସୁମିତ୍ରା ନନ୍ଦନ ବଖାଣିଲେ ସବୁ
ଘଟିଥିଲା ଯାହା ଯାହା,
ମାତୃଗଣ ସହ ନଗର ବାସୀଏ
ଆଚମ୍ବିତ ଶୁଣି ତାହା ।
ବହୁ ଧନ ଲଭି ଦରିଦ୍ର ଯେସନ
ହୁଅଇଥାଏ ଆନନ୍ଦିତ,
ତେସନ ସୀତାଙ୍କୁ ବଧୂ ରୂପେ ପାଇ
ରାଜବଂଶ ପୁଲକିତ ।
କିଛି କାଳ ଅନ୍ତେ ଭରତ ଶତ୍ରୁଘ୍ନ
ଗଲେ ମାମୁଁ ଘର ଦେଶ,
ରଘୁମଣି ଏଣେ କଟାନ୍ତି ସମୟ
ରାଜନୀତି ନିତି ଶିଖି ।
ପ୍ରଜା ରଞ୍ଜନ ଶ୍ରୀରାମଙ୍କ ଗୁଣ
ଦେଖି ଏକାକାଳ ସରବେ,
ଭାବୁଥାନ୍ତି ମନେ ସତେ ପରଂବ୍ରହ୍ମ
ଆସି ଜନ୍ମିଛନ୍ତି ଭବେ ।

---

୧. ରାଜାମାନଙ୍କ ପଟୁଆରରେ ଖଣ୍ଡା ଢ଼ାଲ ଧରି ଆଗରେ ଯିବା ଦଳ ।

ସୁଖେ ଅବା ଦୁଃଖେ ସମଭାବ ବହି
ନିଃସହାୟେ ସଦା ସାହା,
ସାଧନେ ନିରତ ରହନ୍ତି ଅଟଳ
ବୀରେନ୍ଦ୍ର ମନେ ଯାହା ।

***

## ଦ୍ୱିତୀୟ ସର୍ଗ

ଦିନେ ମଧୁମାସେ ହରଷ ମାନସେ
କୋଶଳର ଅଧିପତି,
ରାଜ୍ୟ ସମର୍ପଣ କରିବାକୁ ରାମ
ଡାକିଲେ ସଚିବ ୧. ତତି ।
ରାଜ ଆଜ୍ଞା ପାଇ ଆସିଲେ ସେମାନେ
ସଭା ମଣ୍ଡପେ ସେକ୍ଷଣି,
ହୋଇ ମୋଦଭରେ କଲେ ସୀଉକାର
ରାମ ଅଭିଷେକ ଶୁଣି ।
ତହୁଁ ସୁମନ୍ତ୍ରଙ୍କୁ ରାମ ଆଣିବାକୁ
କହିଲେ ସେ ଖୁସି ମନେ,
ସେ ଆଦେଶ ପାଇ ଆନନ୍ଦ ମନେ ସେ
ଗଲେ ରାମଙ୍କ ଭବନେ ।
ପିତାଙ୍କ ଡାକରା ପାଇ ରଘୁମଣି
ଆସିଲେ ସୁମନ୍ତ୍ର ସଙ୍ଗେ,
ପ୍ରଣମି ପିତାଙ୍କୁ ବସି ନିକଟରେ
ଜାଣିଲେ କଥା ପ୍ରସଙ୍ଗେ ।
ଅଯୋଧ୍ୟା ମୁକୁଟ କରିବେ ଧାରଣ
ନିଶି ଅବସାନେ କାଲି,
ଆଦେଶ ନେଇଣ ଜନକଙ୍କଠୁଁ ଗଲେ
ନିଜ ଭବନକୁ ଚାଲି ।
ଏ ବାରତା ଦେଇ ଜନନୀଙ୍କ ଆଗେ
ଗଲେ ଜାନକୀ ନିକଟେ,
ସୁମିତ୍ରା-ନନ୍ଦନ ଆସି ପହଞ୍ଚିଲେ
ନଇଁ ହୃଦ କୁହାଟେ ।

୧. ସମୂହ

ଜଣାଇଲେ ମୋଦେ ଜନକ ନନ୍ଦିନୀ
ରାଜ୍ୟ-ଅଭିଷେକ ବାର୍ତ୍ତା,
ଚିନ୍ତା କଲେ ରାଜ୍ୟ ଶାସିବାର ମିତ
ଚିନ୍ତାଶୀଳ ସୀତା ଭର୍ତ୍ତା ।
ଯେସନ କାନନେ ଅତି ଉଲ୍ଲସିତ
ଘନଜାଳ ଦେଖି କେକୀ,
ତେସନ ସୁମିତ୍ରା ସୁମିତ୍ରା ନନ୍ଦନ
କୌଶଲ୍ୟା ସହ ଜାନକୀ ।
ଅପସରିଗଲା ଶିଶିର ଧୀରେ ଧୀରେ ଭୁବନୁ,
ବିମଳ ଦିଶଇ ଗଗନେ- ଶୋଭା ଚନ୍ଦ୍ରମା ତନୁ ।
ଉପଗତ ଏବେ ବସନ୍ତ- ଧରି ତା ଶୋଭା ପେଡ଼ି,
ଯୁବକ ଭ୍ରମର ଦଗଲ- କ୍ଷଣେ ପଙ୍କଜ ଗ୍ରୁତ ।
ନ ଦେଖିଲା ତଳେ ଭୁବନେ- ଶୀତ ଋତୁ ଗରିମା,
ବିଥିଲା ମଧୁ ସରାଗେ ଉତ୍ସବେ ମହିମା ।
କୁହୁକୁହୁ ରବେ କୋକିଳ ଚୂତ ଡାଳରେ ବସି,
ଦୋଳ ମଞ୍ଜରୀ ଚୁମ୍ବଇ ବହୁ ମହିମା ଘୋଷି ।
ଦକ୍ଷିଣ ଦିଗରୁ ବହଇ ମୃଦୁ ମଳୟାନିଳ,
ନବ ପଲ୍ଲବରେ ମଣ୍ଡିତ ଲତାପାଦପକୁଳ ।
ସ୍ଥାବର ଜଙ୍ଗମ ସରବେ ଧରି ଲବଣ୍ୟ ଶିରୀ,
ଉପହାସ କରେ ଶିଶିର କାଳ ଗତ ବିଚାରି ।
କନକ ବରଣ ଚମ୍ପକ- ସଙ୍ଗେ ସଖା ବକୁଳ,
ଆସି ମୋହିଲା ମାନସ ଅବା, ରସିକାକୁଳ ।
କେନିଭାଇ କଆ କେତକୀ ନାଗେଶ୍ୱରକୁ ଧରି,
ସରାଗେ ପୂଜିଲେ ଶଙ୍କରେ ଏଣେ ରାଜୀବ ପରି ।
ସଖାହୀନ ହୋଇ ଗମ୍ଭୂସ ଶିବେ ଭକତିଭରେ,
ପୂଜି ମହାନନ୍ଦ ଲଭଇ ରହି ତାଙ୍କ ଶିରରେ ।
ନାନା ବରଣର ଗୋଲାପ ମୃଦୁ ଗନ୍ଧ ବିତରି,
କାମିନୀଙ୍କ ମନ କିଣଇ ତାର ସ୍ୱଭାବ ଧରି ।
ନିଜ ରଙ୍ଗ ଧରି କିଂଶୁକ ଆଗେ ଦୁଅଇ ଛିଡ଼ା,
ନଥିବାରୁ ତାର ଆଦର ମନେ ଲଭଇ ବ୍ରୀଡ଼ା ।
ପେନ୍ଥାପେନ୍ଥା ହୋଇ ଅଶୋକେ ଝୁଲୁଥାଏ ତାକଢ଼ ।
ଠିଆ ହୋଇଛୁ କି ବନିତା ପିନ୍ଧି ପାଟଳ ଶାଢ଼ୀ !
ମାନସ ହରଣ କରଇ ବରକୋଳି, କଦଳୀ,
ସାପଟା, କମଳା, ନଡ଼ିଆ ଫଳ ଭଲ କି ଭଲି ।

ଦୂର କାନନରୁ ଭଲ୍ଲୁକ ଅଧରାତ୍ରରେ ଆସି,
ଦୋହଲାଇ ଫଳ ଖାଆନ୍ତି ବରକୋଳି କ ରସି ।
ଗୁଣୁ ଗୁଣୁ ସ୍ୱନେ ୧. ସରଘା ବୁଲି ଚଉଦିଗରେ,
ସାରାଦିନ ଖଟି ଆଣଇ ଫୁଲ ରସ ଯତନରେ,
ନିଜେ ବଞ୍ଚି ବାଣ୍ଟି ଦିଏସେ ଯେତେ ରଖେ ବଳକା,
ପର ଉପକାର ନିରତ ବୋଲି ପଡ଼ଇ ଡକା ।
କିନ୍ତୁ ମହାଜନ ବୋଲାଇ ଅହରହ ମଣିଷ,
ପରସ୍ୱ ହରଣେ ବଳାଏ ମନ ନମଣି ଦୋଷ ।
କେତେ କଉଶଳେ ସରଘା ବାନ୍ଧି ବସାନ୍ତି ସତେ,
ଏ ଶିକ୍ଷା କିଏ ଦେଇଚି କେହ୍ନେ ନ ଯତନେ ଚିନ୍ତେ ।
ଅଳସୁଆ ପଣ ନଥାଏ ଲେଶ ତାର ମାନସେ,
ନବଜଗତକୁ ଶିଖାଏ 'ଚଳ ମୋ ଆଦର୍ଶେ' ।
ଏ ଶୋଭାମଧ୍ୟରେ ରାମଙ୍କ ଅଭିଷେକ ଖବର,
ବିଜୁଳି ପରାଏ ବ୍ୟାପିଲା ଏବେ ପୁରେ ପୁର ।
ପୂର୍ଣ୍ଣିମା ନିଶିରେ ଆନନ୍ଦେ ସିନ୍ଧୁ ଉଚ୍ଛୁଳେ ଯଥା,
ଅଯୋଧ୍ୟାର ନର ନାରୀଏ ମୋଦେ ଲୋଟିଲେ ତଥା
ଭଜନ ପାଇଲେ ଶ୍ରୀରାମ "ପୁଷ୍ୟା ନକ୍ଷତ୍ର" ଯୋଗେ,
ଅଯୋଧ୍ୟାର ରାଜ ମୁକୁଟ ମଣ୍ଡି ହେବେ ସରାଗେ ।

ଶୋଭେ ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ ସହ
ମଙ୍ଗଳ ପତାକାଶ୍ରେଣୀ,
ରସାଳ-ପଲ୍ଲବ ତୋରଣ ସକଳ
ହରଇ ନୟନ କାନ୍ତି ।
ବେଦ ମନ୍ତ୍ରଧ୍ୱନି ଲଳିତ ସଙ୍ଗୀତେ
କମ୍ପୁଥାଏ ଜଳସ୍ଥଳ,
ପଶୁପକ୍ଷୀ ଆଦି ନିଜ ନିଜ ତାନେ
କରନ୍ତି ଆନନ୍ଦେ ରୋଳ ।
ଏ କାଳେ ମନ୍ଥରା କୈକେୟୀଙ୍କ ଦାସୀ
ଦେଖି ସକଳ ବେଭାର,
ବୁଝିଲା ଶ୍ରୀରାମ ଅଭିଷିକ୍ତ ହେବେ
ରାଜ ପଦେ ଅଯୋଧ୍ୟାର ।
ଶୁଣି ସମାଚାର ଦାସୀ ମନ୍ଥରାର
ମୁହଁ ପଡ଼ିଗଲା ଫିକା,
କୈକେୟୀ ନିକଟେ ଗଲାସେ ତୁରିତେ
ସ୍ୱାର୍ଥ ଯାହାର ଜୀବିକା ।
ଚେତାଇ ତାହାଙ୍କୁ ଅତି ରୋଷଭରେ
ଭାଷିଲା ଗିର ଏସନେ,
"ହେବେ ଅଭିଷିକ୍ତ ରାଜ ପଦେ ରାମ
ବସନ୍ତ ଅବସାନେ ।
ତବ ବଡ଼ପଣ ନ ରହିବ ଆଉ
ରାଜପଦ ନେଲେ ରାମ,
ଦାସୀ ପରେ ଖଟି ଦିନ ଯିବ ଏବେ
ସବୁ ସୁଖର ବିରାମ ।
ଶୁଣିଲା ବେଳରୁ ଏ ସମ୍ବାଦ ମନେ
ସୁଖ ନ ଲାଗଇ ଲେବି,
ଅନୁଭବୀ ବିନା ହୃଦୟ ଆବେଗ
ନ ବୁଝିବ କେହି ଭବେ ।
ତୋଷି ଥିଲେ ତୋର ମନ ସଦା ନୃପ
କହି ମଧୁର ବଚନେ,
କିଏ ଜାଣେ ଦିନେ ମହାକାଳ ହୋଇ
କରିବେ ତୋତେ ବର୍ଜନ ।
ସର୍ବ ଗୁଣାକର ଭରତ ତୋହର
ରାଜପଦେ ହକଦାର,
କେଉଁ ଗୁଣେ ଅବା ଭରତଙ୍କ ଠାରୁ
ରଘୁନାଥ ଜାଣିବାର ?
ନଜାଣି ହୃଦୟେ ପୋଷିତ ଭୁଜଙ୍ଗ
ବିଶ୍ୱାସ କରିଣ ମନେ,
ହାରିବ ପରାଣ ତା ବିଷ ଉଦ୍‌ଗାରେ
ବେଳୁଁ ରହ ସାବଧାନେ ।
ପ୍ରେମ ଫାନ୍ଦେ ପଡ଼ି ବୁଝି ନ ପାରିଲ
ନୃପ କଉଶଳ ଛଳେ,
ଠକି ଭରତଙ୍କୁ ପଠାଇଲେ ସେହି
ରାଜପଦ ରାମ ଗଳେ ।
କହ ଯାଇ ଥରେ ଦଶରଥ ପାଶେ
ଦିଅନ୍ତୁ ଗାଦି ଭରତେ,
ବେଳ ଅଛି ଏବେ କାହିଁ ନାହିଁ ହେଲ
ରଖ ସୁଯଶ ଜଗତେ ।

୧. ମହୁମାଛି

ରାଜା ହେବେ ରାମ ଶୁଣି କଇକେୟୀ
ହୋଇଣ ହରଷଭର,
ଦେଲେ ଉପହାର ମନ୍ଥରାକୁ ଏବେ
ମନ ଖୁସୀ ପାଇଁ ତାର ।
କୈକେୟୀର ମନ ଜାଣି ଦେବତାଏ
ଆଦେଶିଲେ ବୀଣାପାଣି,
"ମନ୍ଥରା କଣ୍ଠରେ ବସି କର ଚିନ୍ତା
ବନେ ଯାନ୍ତୁ ରଘୁମଣି" ।
ଦୁଃଶୀଳା ମନ୍ଥରା ତେଜ ଘୃଣାଭରେ
କୈକେୟୀଙ୍କ ଉପହାର,
କହେ ମାଡ଼ିଆସେ ବିପଦ ତରଙ୍ଗ
ନ କରୁ ମନେ ବିଚାର ।
ସଉତୁଣୀ ପୁଅ ରାଜା ହେବା ଶୁଣି
ନ କରିବ କିଏ ଦୁଃଖ,
ତୋ ଭଳି ଅବୁଝା ନାରୀ ନାହିଁ କାହିଁ
ଗୁଡ଼ୁଛୁ ପରମ ସୁଖ ।
ସୁଖ ଲଭି ଆଶେ ହୋନ୍ତି ଛଟପଟ
ସକଳ ଏ ଧରାତଳେ,
ରାଜପଦ ହିଂସ ଭରତ ପୁଅର
ହରାଉଚୁ ବଳେ ଛଳେ ।
ହିଂସଣ ପ୍ରାଣୀଏ ଏ ମେଦିନୀ ତଳେ
କରି ସନ୍ଦେହ ମାନବେ,
ମାରନ୍ତି ପୂର୍ବରୁ ଆତ୍ମରକ୍ଷା ଲଗି
ନ କରି ବିଳମ୍ବ ଲବେ ।
ମନ୍ଥରା ବଚନ ଶୁଣି କଇକେୟୀ
କହିଲେ ତାକୁ ବୁଝାଇ,
"ଭରତଙ୍କୁ କ୍ଳେଶ ନ ଦେବେ କେବେ ସେ
ରାମ ରାଜ ପଦ ପାଇ ।
ଜଗତେ ଦୁର୍ଲ୍ଲଭ ତାଙ୍କ ଭଳି ସୁତ
ପୁଣି ଜ୍ୟେଷ୍ଠ ସହୋଦର,
ମୋହନ୍ତି ଜଗତ ନିର୍ମଳ ହୃଦୟେ
ସର୍ବଙ୍କୁ କରି ଆଦର" ।
କହଇ ମନ୍ଥରା ଦୁଃଖ ପୂର୍ଣ୍ଣ ହୃଦେ
"ଦଶରଥ ନରପତି,

ତୁମ ପ୍ରେମେ ପଡ଼ି କୌଶଲ୍ୟା ରାଣୀଙ୍କୁ
କଲେ ହତାଦର ଅତି ।
ମିଳିଲେ ସୁଯୋଗ ସାଧି ଥାନ୍ତି ଦାଉ
ମହିଷୀ ଧରଣୀ-ତଳେ,
ରାମ ଅଭିଷେକ ହେଲେ କଉଶଲ୍ୟା
ପ୍ରତିଶୋଧ ନେବେ ବଳେ" ।
ଶୁଣି କଇକେୟୀ ମନ୍ଥରା ଯୁକତି
ଚିନ୍ତି ଏବେ ମନେ ମନେ,
ପୁଚ୍ଛିଲେ "କହ ତ କପରି ଭରତ
ବସିବେ ରାଜ ଆସନେ ?"
ଉତ୍ତରିଲା ସେହୁଁ "ଶମ୍ବର ଯୁଦ୍ଧରେ
ଦଶରଥ ନରତ୍ରାଣ,
ହେବାରୁ ଆହତ ତୁମେ କଉଶଳେ
ରଖିଲ ତାଙ୍କ ପରାଣ ।
ପରମ ସନ୍ତୋଷ ଲଭି ନରପତି
କରିଥିଲେ ଅଙ୍ଗୀକାର,
ଲୋଡ଼ିଲେ ତୁମକୁ ଦେବା ଲଗି ତୁମ
ଇଚ୍ଛା ମତେ ଦୁଇବର ।
କହ ଏବେ ତାଙ୍କୁ, "ଭରତ ହୁଅନ୍ତୁ
କୋଶଳ ଦେଶ ରାଜନ,
ନିଶି-ଅବସାନେ ଦଣ୍ଡକାଅରଣ୍ୟେ
ହେଉ ରାମଙ୍କ ଗମନ ।
କୁଡ଼ିଆରେ ରହି ଫଳ ମୂଳ ଖାଇ
ଜଟା କରି ଶିର ବାଳ,
ଛାଲ ବା ବକଳ ଆବୋରି ଯାପନ୍ତୁ
ଚଉଦ ବରଷ କାଳ ।
ହେଲଣି ସମୟ ଆସିବେ ସେ ଏବେ
ନ ଚାହିଁ ତାଙ୍କ ବଦନ,
ଶୋଇ ଥାଅ ଛଳେ ମୁହଁ ମାଡ଼ି ତଳେ
ନ କହି କିଛି ବଚନ ।
ସୁଜନ ରାଜନ କରି ଆଲିଙ୍ଗନ
ପୁଚ୍ଛିବେ ତ ଏକାରଣ,
କରାଇ ଶପଥ ରାମ ଅଭିଷେକ
କରିବ ଏବେ ବାରଣ" ।

ନିଦାଘେ ଶଷ୍ଟରେ ଚନ୍ଦନ ଲେପନେ
ଲାଗଇ ସୁଖ ଯେସନ,
ମନ୍ଥରା ବଚନେ କଇକେୟୀ ହୃଦେ
ଏକାଳେ ହୋଇଲା ତେସନ ।
ଅଶ୍ୱପତି ସୁତା (୧) ଶୁଣି ଏକ ମନେ
ମନ୍ଥରାର ଉପଦେଶ,
ପଡ଼ିଲେ ଏବେ ଭୂମି ପରେ ଯାଇ
ଛଳନା କରି ବିଶେଷ ।
ଅଭିଷେକ ଲାଗି ଯଥାବିଧି ସଜ
କରିବା ପାଇଁ ରାଜନ,
ସଚିବମାନଙ୍କୁ ଆଦେଶି ଆସିଲେ
ଏବେ କୈକେୟୀ ଭବନ ।
ଦେଖିଲେ କୈକେୟୀ ମ୍ଳାନ ବସ୍ତ୍ର ପିନ୍ଧି
ଶୋଇ ଛନ୍ତି ଭୂମି ପରେ,
ଉନ୍ମନା ହୋଇ ସେ ପଚାରିଲେ ତାଙ୍କୁ
କାରଣ ଅତି କାତରେ ।
"କହ କେ ଦେଇଛି ଅପମାନ ଅବା
ଲାଗଇ ଦେହ ଅସୁଖ,
ଫେଡ଼ ମୋ ଆରତି ସରାଗ ଦେଖାଇ
ତୋର ଦରହାସ ମୁଖ ।
ଅପୂରୁବ ଅବା କି ଅଛି ଜଗତେ
ଦଶରଥ ନରରାଣେ,
ଫିଟାଇ କହିଲେ ଯୋଗାଇବ ସବୁ
ଶକତି କିଏ ନଜାଣେ" ।
ଦଶରଥ ମତି ବୁଝି କଇକେୟୀ
ଲୋତକ ନେତ୍ରୁଁ ଗଡ଼ାଇ,
ପୁଚ୍ଛିଲେ ରାଜଶ୍ରୀ କାହାକୁ ଦେଉଛ
ମୋତେ ଠିକେ ନ ଜଣାଇ ।
ତା ବଚନେ ଶୁଣି ରାମ ନାମ ଧରି
କଲେ ଶପଥ ନୃପତି,
"ତୋ କାର୍ଯ୍ୟ ସାଧନେ ହେଉ ଆଗଭର
ଏ ମୋର ପୁତ୍ର ସମ୍ମତି" ।

(୧) କୈକେୟୀ

ଧିକ, କାମାତୁର ନ ଉଚ୍ଚର ଛଳେ
କରିବାକୁ ନୀଚ କର୍ମ,
କର ଯାଇ ଗୁରୁ ଶଙ୍କରଙ୍କୁ ଥରେ
ବୁଝିବ କାମର ମର୍ମ ।
ହୃଦେ ହଳାହଳ ଧରି ସୁଧା ମୁଖେ
ବଡ଼ ଦଶରଥ ମନ,
ଅଶ୍ୱପତି ସୁତା ସୁନ୍ଦରୀ କୈକେୟୀ
ଭାଷିଲେ ଚଢ଼ୁଁ ଏସନ ।
"ପିନ୍ଧିଣ ବକଳ ଚଉଦ ବରଷ
ରାମ ଏବେ ଯିବେ ବନ,
କୁଡ଼ିଆରେ ରହି ଫଳ ମୂଳ ଖାଇ
ଯାପିବେ ଯତି ଜୀବନ ।
ଏକାଳେ ଭରତ କରରେ ଧାରିଣ
ରାଜ ମୁକୁଟ ତୁମର,
ପଚାରିଥିଲ ଯା କହିଲ ଫିଟାଇ
ଦିଅ ଏହି ଦୁଇ ବର ।
ମୃଗୟୁ (୧) କବଳେ ପଡ଼େ ଯଥା ମୃଗ
ଶୁଣି ତା ଲଳିତ ଗାନ,
କୈକେୟୀ ବଚନେ ଛନ୍ଦି ହେଲେ ଏବେ
ତଥା ଦଶରଥ ରାଣ ।
"ରଖିବାରୁ ତୁମ ଜୀବନ ପୂର୍ବେ
କହିଥିଲ ଦୁଇ ବର,
ମୋର ଇଚ୍ଛା ମତେ ଦେବ ବୋଲି ଆହେ
ମହାମନା ନୃପବର ।
ରଖ ଏବେ ସେହି ତୁମ ସତ୍ୟ ବାକ୍ୟ
ନହୁଅ ସତ୍ୟ ଘାତକ,
ଏ ଇକ୍ଷ୍ୱାକୁ ବଂଶ ତୁମର ଏ ଭବେ
ନିରତ ସତ୍ୟ ରକ୍ଷକ" ।
ନୃପଙ୍କ ଶ୍ରୁତିକି ବଜ୍ର ସମ ବୋଧ
ହେଲା କୈକେୟୀ ବଚନେ,
ମାତୃହରା ଶିଶୁ ପରାଏ ନୃପତି
ହେଲେ ସନ୍ତାପ ମଗନ ।

(୧) ଶିକାରୀ

କ୍ଷଣେ ରହି ନୃପ ଭାଷିଲେ ପାପିନୀ
"ରାମ ଜଗତ ନୟନ,
କେଉଁ ଅପରାଧେ କହିବ କଏ ବା
ତାଙ୍କ କାନନ ଗମନ ।
ଧର୍ମ ଅବତାର ସ୍ନେହର ପ୍ରତିମା
ନୁହନ୍ତି କେବେ ନିନ୍ଦିତ,
ଆନନ୍ଦ ଦାୟକ ଦଶରଥଙ୍କର
ରାମ ଜଗତ ବନ୍ଦିତ" ।
"ଆରେ ! ପ୍ରତାରକ ମୋ ମାଗୁଣି ଯାହା
ଏକ୍ଷଣି କର ପୂରଣ,
ମୋର ମନୋରଥ ନହେଲେ ସଫଳ
ବରିବି ନିଶ୍ଚେ ମରଣ" ।
ହରିଣ-ଶାବକ [୧] ହରି-ମୁଖେ ପଡ଼ି
ହୁଏ ଜ୍ଞାନଭ୍ରଷ୍ଟ ଯଥା,
କୈକେୟୀ ବଚନେ ଦଶରଥ ରାଣ
ହେଲେ ବିଚଳିତ ତଥା ।
ବଜ୍ରପରି ନୃପ- ହୃଦେ ଭେଦିଗଲା
କୈକେୟୀ ବଚନ ବାଣ,
ହାରାମ ! ହାରାମ ! ବୋଲି ଭୂମି ପରେ
ପଡ଼ିଲେ ସେ ତତକ୍ଷଣ ।
ଛନେ ଛନେ ଚେତା ହୋଇ ନରତ୍ରାଣ
ବିନତେ କହନ୍ତି ଭାଷା,
ପଥର ହେଲେ ତ ଯାଆନ୍ତା ତରଳି
ଦେଖାନ୍ତା ବା ଲଭେ ଆଶା ।
ଯେତେ ପରିକାରେ କହିଲେ ହେଁ ନୃପ
ନକଲେ ସେ କର୍ଣ୍ଣପାତ,
କହୁଥାଏ ପିନା ଭୁହାଇ ଭୁହାଇ
"ରାଜା ହେଉ ମୋ ଭରତ" ।
ନିଶା ଅବସାନ ହେଲା କ୍ରମେ କ୍ରମେ
ଦେଲା ତାମ୍ରଚୂଡ଼ (୨) ଡାକ.
ନିଅନ୍ତି ମେଲାଣି ଗଗନୁଁ ତାରକା
କାଆ କାଆ କରେ କାକ ।

ଅଳତା-ସିନ୍ଦୂର ବୋଳା ହେଲାପରି
ଦିଶଇ ଏକାଳେ ଭାନୁ,
ସରୋଜନୀ ପାଇଁ ଆଣୁଥିଲେ କି ତା
ପଡ଼ି ବୋଲି ହେଲା ତନୁ ।
ରାଜ ପୁରୋହିତ ବଶିଷ୍ଠ ଏକାଳେ
ସରଯୂରେ କରି ସ୍ନାନ,
ହେଲେ ଉପନୀତ ଅଭିଷେକ ଲଗି
କରି ବେଦ ମନ୍ତ୍ର ଗାନ ।
ରାମ ଅଭିଷେକ ବେଳ ଜଗିଥିଲେ
ଯୁବକ ପରି ସରବେ,
କମ୍ପିଲା ଅଯୋଧ୍ୟା ନଗରୀ ଏକାଳେ
ବିହଙ୍ଗମଙ୍କର ରବେ ।
ଦଶରଥ ସଖା ସୁମନ୍ତ୍ର ଆସିଣ
ଯାଇ ତାହାଙ୍କ ସମୀପେ,
ହୁଅନ୍ତୁ ତତ୍ପର ବୋଲି ଜଣାଇଲେ
ମହାମନା ନରାଧିପେ ।
ସୁମନ୍ତ୍ରକୁ ଡାକି କହିଲେ କୈକେୟୀ
ଯାଇ ରାମପାଶେ ଖରେ,
ନକରି ବିଳମ୍ବ ଆଣ ତାଙ୍କୁ ଏଥି
ଦେଖନ୍ତୁ ରାଜନ ଥରେ ।
ଉତ୍ତରିଲେ ସଙ୍ଗେ ସଙ୍ଗେ ସୁମନ୍ତ୍ରର
ନପାଇ ରାଜ ଆଦେଶ,
ଯାଇ ପାରିବି କି ବିସ୍ମରି କହନ୍ତି
ନରଖି ସନ୍ଦେହ ଲେଶ ?
ସୁମନ୍ତ୍ରର ବାଣୀ ଶୁଣି ନରମଣି
ଦେଲେ ଆଜ୍ଞା ସୁମନ୍ତ୍ରକୁ,
ମୋ ଜୀବନ ଧନ ମୋ ସୁଖ ବର୍ଦ୍ଧନ
ଡାକି ଆଣ ଶ୍ରୀରାମକୁ ।
ପାଖେଇ ଆସିଲା ଅଭିଷେକ ବେଳ
ନବବାସ ନରନାରୀ,
ପିନ୍ଧି ସମବେତ ଧର୍ମ ବା ଗର୍ବ
ନହୁଏ ସହଜେ ବାରି ।
ଯେତେ ସାମଗ୍ରୀ ହୁଏ ଲୋଡ଼ା ସବୁ
ସରିଲାଣି ଆୟୋଜନ,

୧. ସିଂହ (୨) କୁକୁଡ଼ା

ରହିଁଥାନ୍ତି ସର୍ବେ ସତୃଷ୍ଣ ନୟନେ
ଶ୍ରୀରାମଙ୍କ ଆଗମନ ।
ନକରି ବିଳମ୍ବ ସୁମନ୍ତ୍ର ପୁଣି
ଯାଇ ଭେଟିଲେ ଶ୍ରୀରାମ,
ଆନନ୍ଦିତ ଅତି ତାହାଙ୍କର ଦେଖି
ସେ ମୂରତି ଅଭିରାମ ।
ଚଇତ୍ର ପୂର୍ଣ୍ଣିମା ନିଶିରେ ଯେସନ
ଶୋଭବନ ନିଶାପତି,
ଶଶୀ ତାର ପାଶେ ତଥା ମନୋରମେ
ସୀତା ପାଶେ ସୀତାପତି ।
ଭକ୍ତିଭରେ ବନ୍ଦି ସୁମନ୍ତ୍ର ରାମଙ୍କୁ
ଜଣାଇ ପିତୃ ଆଦେଶ,
ଧରି ତାଙ୍କୁ ସଙ୍ଗେ ଆଣିଲେ ରଥରେ
ନକରି ବିଳମ୍ବ ଲେଶ ,
ସତୃଷ୍ଣ ନୟନେ ରହିଥାନ୍ତି ରହିଁ
ଏବେ ଅଗଣିତ ଜନେ,
କଲେ ଜୟଧ୍ୱନି ପୁଲକିତ ମନେ
ଦାଶରଥି ଆଗମନେ ।
ଅଭିରାମ ମୂର୍ତ୍ତି ଦର୍ଶନେ ସକଳେ
ମାତିଲେ ଉଲ୍ଲାସେ ଅତି,
କେହି ଆଶୀର୍ବାଦେ କେ ବା ଜୟନାଦେ
କମ୍ପାଇଲେ ବସୁମତୀ ।
ସୀମନ୍ତିନୀଗଣ ହୋଇ ଦଳ ଦଳ
ସୁବାସ କୁସୁମ ନେଇ,
ପକାଉ ଥାଆନ୍ତି ରଘୁମଣି ଶିରେ
ମୋଦେ ହୁଳହୁଳି ଦେଇ ।
ବାଜଇ ବାଜଣା ବିବିଧ ରଙ୍ଗରେ
ଶୁଣି ଦିବେ ବିମୋହିତ,
ନାଚ୍ୟ ଦଳେ ଦଳେ କରି ଅଭିନୟ
ହରୁଥାନ୍ତି ପୁଣି ଚିତ୍ତ ।
ନିଜ କରାମତି ଦେଖାଇ ଏକାଳେ
ହର୍ଷେ ମାତୁନ୍ତି ସବାର,
ଆସନ୍ତି ଚଲାଇ ଅତି କଉତୁକେ
ଦନ୍ତାବଳ ଅଶ୍ୱ ସାର ।

ପିତାଙ୍କ ସମୀପେ ଯାଇ ରଘୁମଣି
ଦେଖି ତାଙ୍କୁ ଅଚେତନ,
ଚକିତେ ପୁଚ୍ଛିଲେ କୈକେୟୀଙ୍କୁ ଏବେ
ଜାଣିବାକୁ ଏ କାରଣ ।
ତହୁଁ ଲାଜ ତ୍ୟଜି କହିଲେ କୈକେୟୀ
"କଲେ ନୃପ ଅଙ୍ଗୀକାର,
ମୋର ସେବା ଫଳେ ତୋଷ ଲଭି ମୋତେ
ଦେବା ପାଇଁ ଦୁଇବର ।
କଲେ ସ୍ୱୀକାର ପାଳିବାକୁ ତୁମେ
ଭଲ ମନ୍ଦ ନ ବିଚାରି,
କହିବ ଫିଟାଇ ଧର୍ମ୍ମ ସାକ୍ଷୀ କରି
ଯେଣୁ ତୁମେ ସଦାଚାରୀ ।
ଶୁଣି ଏ କାହାଣୀ ଭାବନ୍ତି ଶ୍ରୀରାମ
ପିତାଦେଶ ରଘୁମଣି,
ଏଡ଼ିଦେବ ବୋଲି କରନ୍ତି ସନ୍ଦେହ
ସ୍ନେହମୟୀ ଏ ଜନନୀ !
ଏଣୁ କୈକେୟୀଙ୍କୁ ଚାହିଁ ସେ କହନ୍ତି
"ରାମ ସଦା ତତପରେ,
ପିତାଙ୍କ ଆଦେଶ ନୋହି ସଙ୍କୁଚିତ
ପାଳିବାକୁ ନିରନ୍ତରେ" ।
ତଦନ୍ତେ କୈକେୟୀ କହିଲେ ଶ୍ରୀରାମ
ଭରତ ହେଉ ରାଜନ,
ଯତି ବେଶେ ଏବେ ଚଉଦ ବରଷ
କରି କାନନେ ଗମନ ।
କଠୋର ବଚନ କଇକେୟୀଙ୍କର
ରାଜା ଦଶରଥ ଶୁଣି,
ଘୋର ସନ୍ତାପିତ ହେଲେ ମନେ ମନେ
ମୁଦି ନୟନକୁ ପୁଣି ।
ଏ ରାଜ ମୁକୁଟ ଜନ୍ମ-ଅଧିକାର
ରାମ ବିନା ନାହିଁ କା'ର,
ଅବନୀ ଆଗରେ ରାମେ ଦେବା ଲାଗି
କରିଅଛି ଅଙ୍ଗୀକାର ।
ବିମାତା ସନ୍ତାନ ଶେଷ ମୁହୂର୍ତ୍ତରେ
ନେବ ଏ ମୁକୁଟ ଆଜ,

ଯିବ ଘୋର ବନେ     ତେଜି ଦାଶରଥି
ଅତୁଳ ସମ୍ପଦରାଜ ।
ସୁଖର ଭବିଷ୍ୟ     ସୁଖମୟ ଆଶା
ଦେଇ ରାମ ଜଳାଞ୍ଜଳି,
କଲେ ସ୍ୱୀକାର     ବନେ ଯାଇ ଦିନ
ଯାପିବେ ଯତିଙ୍କ ଭଳି ।
ରାମ ଅଙ୍ଗୀକାରେ     କୈକେୟୀ ଆନନ୍ଦ
ବଚନେ ନହୁଏ କହି,
କହିଲେ ତାହାଙ୍କୁ     ଯିବାକୁ କାନନେ
ସେ ସ୍ଥାନେ କ୍ଷଣେ ନରହି ।
ଅନନ୍ତର ରାମ     କହିଲେ ହେ ମାତଃ !
ନ ଦୁଃଖର ଆନ ମନେ,
ଯାହା କହେ କାର୍ଯ୍ୟେ     ଦେଖାଏ ଜଗତେ
ମତ ମୋ ଧର୍ମ୍ମ ପାଳନେ ।
କାନନ ନିବାସୀ     ଯତିଙ୍କ ପରାଏ
ବିରାଗୀ ସଦା ରାଘବ,
ଧର୍ମ୍ମ ପଥ ହିତ     ଯାଏ ପାପେ ବୁଡ଼ି
କ୍ଷଣିକ ସୁଖେ ମାନବ" ।
ଏ ବଚନ ଶୁଣି     ରାଜା ଦଶରଥ
ସହସା ପଡ଼ିଲେ ତଳେ,
ସଙ୍ଗେ ସଙ୍ଗେ ଯାଇ     ରାଘବ ତାହାଙ୍କୁ
ଉଠାଇଲେ ବାହୁ ବଳେ ।
ଶୋକେ ଅଚେତନ-     ପିତା ଦଶରଥ
ନଦେଖୁଇଁ ରଘୁମଣି,
ଜନନୀ ଭବନେ     ହସ ହସ ମୁଖେ
ସେ ସ୍ଥାନୁ ଗଲେ ସେକ୍ଷଣି ।
ଏଣେ କଉଶଲ୍ୟା     ଉଜାଗର ରହି
ସ୍ନେହମୟୀ ପୁତ୍ର ପାଇଁ,
ଉପବାସ କରି     ସୁଦୀର୍ଘ ରଜନୀ
ପୂଜିଲେ ଜଗତ ସାଇଁ ।
ଦାଶରଥି ସଙ୍ଗେ     ସୁମିତ୍ରା ନନ୍ଦନ
ପହଞ୍ଚିଲେ ତାଙ୍କ ପାଶେ,
ଦେଖି ସେମାନଙ୍କୁ     ବସିବାକୁ ଦେଲେ
ଆସନ ସେ ସମୁଲ୍ଲାସେ ।

ନବସି ରାଘବ     କରଯୋଡ଼ି ନମ୍ରେ
କହିଲେ ଶୁଣ ଗୋ ମାତ !,
"ପିତାଙ୍କ ଆଦେଶ     ହୋଇଛି ମୁକୁଟ
ପିନ୍ଧିବେ ଭରତ ଭ୍ରାତ ।
ରାମ ଯିବ ବନ     ଚଉଦ ବରଷ
ହେବ ପୁଣି ଜଟାଧାରୀ,
ବଳ୍କଳ (୧) ଅଜିନ     କରିବ ବସନ
ହେବ ଫଳମୂଳାହାରୀ ।
ତେଣୁ ଯିବ ବନେ     ଏକ୍ଷଣି ଆନନ୍ଦେ
ପିତାଙ୍କ ବଚନ ପାଳି,
ନେଉଚି ମେଲାଣି     ଦିଅ ଆଶୀର୍ବାଦ
ହୃଦୟେ କଷ୍ଟ ନ ଘାଲି" ।
ଶୁଣୁ ଶୁଣୁ ଏହା     ଜନନୀ କୌଶଲ୍ୟା
ଶୋକେ ପଡ଼ିଲେ ଭୂତଳେ,
ସଙ୍ଗେ ସଙ୍ଗେ ରାମ     ଉଠାଇଲେ ତାଙ୍କୁ
ପୋଛି ଲୋତକ ଅଞ୍ଚଳେ ।
କହନ୍ତି ଜନନୀ     ଅଧୀରେ ତାହାଙ୍କୁ
"ଗଲା ମୋ ଲାବଣ୍ୟ ଛାଡ଼ି,
ପ୍ରତି ଅଙ୍ଗେ ଏଣେ     ଧୀରେ ଧୀରେ ଆସି
ଜରା ବସିଲାଣି ମାଡ଼ି ।
ଆଲୋକ-ବର୍ଦ୍ଧନ     ସଙ୍ଗେ ଅବସାନ
ଘଟଇ ଦିନର ଯଥା,
ଶରୀର-ଶକତି     ବୃଦ୍ଧି ସଙ୍ଗେ ହ୍ରାସ
ସଦା ମଣିଷର ତଥା ।
ପାଞ୍ଚିଥିଲି ମନେ     ଶେଷ ଜୀବନରେ
ନ ଭୋଗିବି ଦୁଃଖ ଆଉ,
ରାଜା ହେଲେ ରାମ     ନ ରହିବ ପୁଣି
ସଉତୁଣୀଙ୍କର ଦାଉ ।
ରୋପିଅଛି ଯାହା     କାଟିବି ତ ତାହା
ମୋ କରମ ବଡ଼ ମନ୍ଦ,
କିଏ ବା ଜୀବନେ     ଆପ୍ରାଣ ଯତନେ
ଫିଟାଏ ନିୟତି ଛନ୍ଦ ।

(୧) ଛାଲି

କ୍ଷଣେ ନ ଦେଖିଲେ ତୋ ସୌମ୍ୟ ବଦନ
ଅଥୟ ଅତି ହୃଦୟ,
ହେବି ଅନୁଗାମୀ ତୋ ସଙ୍ଗେ କାନନ
ଏତିକ ମୋ ଅନୁନୟ"।
ମାତାଙ୍କୁ ବୁଝାଏ ରଘୁମଣି ଏବେ
ଦିଅନ୍ତି କେତେ ସାନ୍ତ୍ୱନା,
କୋମଳ ହୃଦୟା ବନିତା କେବେ କି
ସହିପାରେ ଏ ବେଦନା।
ସୁମିତ୍ରାନନ୍ଦନ ବେଳେ ବେଳେ ରୋଷେ
ଅନ୍ୟାୟର ପ୍ରତିରୋଧ,
କରିବା ନିମିତ୍ତ ରାଘବେ କରନ୍ତି
ସାନୁନୟ ଅନୁରୋଧ।
ଧର୍ମପଥ ଛାଡ଼ି କୁକର୍ମରେ ବୁଡ଼ି
ସମ୍ଭୋଗ ଯେହୁ ଇଚ୍ଛନ୍ତି,
ଘୃଣ୍ୟ ସେ ଜଗତେ କହି ଦାଶରଥି
ଲକ୍ଷ୍ମଣଙ୍କୁ ପ୍ରବୋଧନ୍ତି।
"କହନ୍ତି ଜନନୀ ପାଟରାଣୀ ବୋଲି
ବାଜେ ଜଗତେ ଡିଣ୍ଡିମ,
ହେଲା ନାହିଁ ଦିନେ ନୃପଙ୍କ ଆକୃଷ୍ଟ
ଭୋଗିଲା ଦୁଃଖ ଅସୀମ।
ସତର ବରଷ ତଳେ ଏ ନୟନ
ଦେଖିଲା ତୋ ଚନ୍ଦ୍ରମୁଖ,
ଯାପୁଥିଲା ଦିନ ପୁଲକିତ ମନେ
ପାଶୋରି ଅତୀତ ଦୁଃଖ।
କରୁଥିଲା କେତେ ଉପବାସେ ରହି
ଦେବ ଦେବୀ ଆରାଧନା,
କାଟୁଥିଲା କାଳ ଉଜାଗର ରହି
କରି ତୋ ଶୁଭ କାମନା।
ସୁଖର ସପନ ଦେଖୁଥିଲା ନିତି
ପଡ଼ି ମମତା ଜଞ୍ଜାଳେ,
ତୁ ଗଲେ ବନକୁ କିଏ ମାଆ ସେବା
କରିବ ଅନ୍ତିମ କାଳେ।
ଜନନୀ କୁମାର ହେଲା ବେଳେ କଥା
ରୋଷେ କହନ୍ତି ଲକ୍ଷ୍ମଣ,
"ହେଲେ ଅନୁମତି ରୋଧିବି ଅନ୍ୟାୟ
ଲକ୍ଷ୍ମଣର ଏହି ପଣ।
ରାଜନ ଇଙ୍ଗିତେ ରାଜ୍ୟ ନେବ ଜଣେ
ଏକ ଅଯଥା ଯୁକତି,
ସାଗର ପରିଏ ନ ଲଙ୍ଘିଲେ ସୀମା
ଆସଇ ସିନା ଭକତି"।
କ୍ରୋଧେ ଜର ଜର ଦିଶନ୍ତି ଲକ୍ଷ୍ମଣ
ଅଧୀର ହୁଅନ୍ତି ଅତି,
ସନ୍ତାପେ ଜନନୀ ଦେଖିଲେ ରାଘବ
ସୁଖେ ଦୁଃଖେ ସମମତି।
"ପିତାଙ୍କ ବଚନ ପାଳନେ ତୁ କିପାଁ
ହେଉ ଆଜ ଆଗଭର,
ଯେ ଦେଇ ଜନମ ବଢ଼ାଏ ଆଦରେ
ପୂଜନ୍ତି ସେ ନିରନ୍ତର।
ମାଟି ପରେ ପଡ଼ି ମାଟି ପରେ ବଢ଼ି
ମାଟିରେ ମିଶିବା ଦିନେ,
କାନନ ନିବାସ ଅଧିକ ସରସ
ଜଞ୍ଜାଳେ ସଡ଼ନ୍ତି ଇନେ (୧)
ଅଧିକାର-ଧନ- ବିଳାସ-ବ୍ୟସନ
କେତେ ଦିନ ପାଇଁ ଭାଇ,
ବିଶ୍ରାମେ ଶୟନେ ବିରୁଜ ହୃଦୟେ
ଦେଖ ଥରେ ନେତ୍ର ଫେଇ।
ଯେତେ ମନୋହର ଦିଶୁ ଭବିଷ୍ୟତ
ନକର ବିଶ୍ୱାସ ତିଳେ,
ବିସୋରି ଅତୀତ କରୁଥିଲେ କର୍ମ
ପରମ ସମ୍ପଦ ମିଳେ।
ନୁହେ ସୁଖମୟ କାହାର ଜୀବନ
ଜନମି ଏ ଧରାତଳେ,
ଆଲୋକ ଅନ୍ଧାର ପରି କରେ ଗତି
ଭଲ ମନ୍ଦ କାଳ ଛଳେ।
ଯେତେବେଳେ ଯାହା ଘଟଇ ଜଗତେ
ନଜାଣେ କେ ପୂର୍ବୁ ଲବେ,

(୧) ରାଜାମାନେ

ଭ୍ରମବଶେ ଯିନା ଅନ୍ଧାର ଭିତରେ
ଦଉଡ଼ୁ ଥାନ୍ତି ସବୁବେ ।
ଭାଗ୍ୟର ଇଙ୍ଗିତେ କଇକେୟୀ ହୃଦ
ହୋଇଛି ପରିବର୍ତ୍ତନ ।
କହି ରଘୁମଣି ପ୍ରବୋଧନା ବହୁ
ଦେଲେ ଜନନୀ-ଲକ୍ଷ୍ମଣ" ।
ଘେନି ଆଶୀର୍ବାଦ ଜନନୀଙ୍କ ଠାରୁ
ଗଲେ ସେ ଜାନକୀ ପାଶେ,
ଦେଖି ସୀତା ତାଙ୍କ ବିଷର୍ଣ୍ଣ ବଦନ
ପୁଚ୍ଛିଲେ ଅତି ବିରସେ ।
"ମୋ ପରାଣ ଧନ ନକର ଗୋପନ
କହ କାହିଁକି ବିଷର୍ଣ୍ଣ,
ହଣଇ ଆଜଏ ମଙ୍ଗଳ ଉଷାରେ
ତବ ଚନ୍ଦ୍ରମା ବଦନ" ।
"ଉତ୍ତରିଲେ ରାମ ଅରଣ୍ୟ ନିବାସୀ
ହେବି ଚଉଦ ବରଷେ,
ଏ ରାଜ ମୁକୁଟ ଧରିବ ଭରତ
ହୋଇଛି ରାଜ ଆଦେଶ ।
ବହୁ ଦିନ ତଳେ କରିଥିଲେ ପିତା
କୈକେୟୀଙ୍କୁ ଅଙ୍ଗୀକାର,
ଲୋଡ଼ା ହେଲା ବେଳେ ଦେବା ପାଇଁ ତାଙ୍କ
ଇଚ୍ଛାମତେ ଦୁଇବର ।
ଜଣାଇ ତୁମ୍ଭଙ୍କୁ ଯିବି ଏବେ ବନ
ପାଳି ପିତାଙ୍କ ବଚନ,
କର୍ତ୍ତବ୍ୟ ପଥରେ ବୁଲୁଥାଏ ସଦା
ଜାଣିଛ ତ ରାମମନ ।
ଉଚ୍ଚ ପଦଧାରୀ ଅବା ଧନବାନ
ଅନ୍ୟ ପରଶଂସା ଶୁଣି,
ନ ସହନ୍ତି କେବେ, ସାବଧାନ ହେବ
ଅସିଲେ ଭରତ ଗୁଣୀ" ।
"ଶୁଣିଣ ଜାନକୀ ଦିଅନ୍ତି ଉତ୍ତର
ହେବ ସହଗାମୀ ସୀତା,
ଜାଣିଛ ତ ତୁମେ ପତି ବିନା ଭବେ
ସହାୟ ହିନା ବନିତା ।
ପତି ଭବେ ଯିନା ଆଶା ବା ଭରସା
ବନିତାର ଅହରହ,
ସୁଖେ ଅବା ଦୁଃଖେ ସମ ଭାଗିଦାର
ନ ଜାଣେ କିଏ ସେ କହ" ।
ଜାନକୀ ବଚନ ଶୁଣି ରଘୁମଣି
କହିଲେ ତାଙ୍କୁ ଏସନ,
"ଶଠଧାରେ ସେବା କର ଗୁରୁଜନେ
କଟାଅ ସୁଖେ ଜୀବନ ।
ବିଳାସ କୋଳରେ ବଢ଼ି ପିଲାଦିନୁ
ଯାପୁଅଛ କାଳ ସୁଖେ,
ଅଜଣା କାନନେ ସାଥି ହେଲେ ମୋର
କିପରି ଚଳିବ ଦୁଃଖେ" ।
ଏହା ଶୁଣି ସୀତା କାନ୍ଦି କାନ୍ଦି ଦୁଃଖେ
"କହନ୍ତି ଯିବି କାନନେ,
ଆପଦ ବିପଦ ନ ଜାଣିବି କିଛି
ହୃଦେ ଥିଲେ ଚନ୍ଦ୍ରାନନେ ।
କାଟିବି ଆନନ୍ଦେ କାଳ ଘୋର ବନେ
ଲଭି ତୁମ ଦରଶନ,
ହାରିବି ପରାଣ କରି ବିଷ ପାନ
ନ ନେଲେ ମୋତେ କାନନ ।
ମହୀରୁହ ପାଶେ ନିରତ ସହାୟ
ଲୋଡ଼ନ୍ତି ଯଥା ଲତାଏ,
ଯୁଗେ ଯୁଗେ ତଥା ପତିର ଆଶ୍ରୟ
ଲୋଡ଼ିଥାନ୍ତି ବନିତାଏ ।
ପତି ଠାରୁ ପତ୍ନୀ ରହିବା ଅଲଗା
ଶୁଣି ନାହିଁ ଜଗତରେ,
ପତିବ୍ରତା ଧର୍ମ ଆଚରି ନାରୀଏ
ପାଆନ୍ତି ସୁଖ ଲୋକାନ୍ତରେ" ।
ସତ୍ୟର ସେବକ ଜାନକୀରମଣ
ଜାଣି ବଇଦେହୀ ମନ,
ଅବଶେଷେ ତାଙ୍କୁ କଲେ ସ୍ୱୀକାର
ନେବା ପାଇଁ ସଙ୍ଗେ ବନ ।
ସୁମିତ୍ରାନନ୍ଦନ ରାମ ସୀତାଙ୍କର
ଶୁଣି କଥୋପକଥନ,

କଲେ ଅନୁନୟ ମୈଥିଳୀରମଣେ
ଯିବା ପାଇଁ ସଙ୍ଗେ ବନ ।
ରାଘବ ତାହାଙ୍କୁ ବୁଝାଇ କହିଲେ
'ଭାଇ ସଙ୍ଗେ ରହ ଘରେ,
ଜନକ ଜନନୀ ସେବା କରି ସଦା
କାଳ କାଟି ହରଷରେ' ।
ଏ ବଚନ ଶୁଣି, କହନ୍ତି ଲକ୍ଷ୍ମଣ
ରାମଙ୍କର ପଦ ଧରି,
"ଅଧିକ ଆନନ୍ଦ ଲଭିବି କାନନେ
ନିତି ତୁମ ସେବା କରି ।
ବାଲ୍ୟକାଳୁଁ ତୁମ ସେବା କରୁଅଛି
ସଙ୍ଗେ ରହି ଛାଇ ପରି,
କହ ତେବେ ଭାଇ ଆଜ ସେ ସେବାରୁ
ବଞ୍ଚିତ ହେବି କିପରି ?
ସଙ୍ଗରେ ନଥିଲେ ଲକ୍ଷ୍ମଣ ବନରେ
ଆଣିବ କେ ଫଳମୂଳ,
ରହିବେ କିପରି ଏକୁଟିଆ ସୀତା
ଯହିଁ ହିଂସ୍ରଜନ୍ତୁ ଠୁଳ" ।
ଲକ୍ଷ୍ମଣ ବଚନେ ଶୁଣି ତୋଷ ମନେ
କହନ୍ତି ଶ୍ରୀରାମ ପୁଣି,
'ଯିବ ବନେ ଯେବେ ଆସ ଖରେ ଏବେ
ଧରି ଧନୁଶର ତୂଣୀ' ।
ଆନନ୍ଦେ ବିଭୋର ଲକ୍ଷ୍ମଣ ଏକାଳେ
ପାଇ ରାମ ଅନୁମତି,
ଆସି ପହଞ୍ଚିଲେ ରାମଙ୍କ ସମୀପେ
ଧରି ଧନୁଶରତତି ।

****

## ତୃତୀୟ ସର୍ଗ

ଜାନକୀ, ଲକ୍ଷ୍ମଣ ସହ ଦାଶରଥି
ବାଣ୍ଟି ବହୁ ଧନ ରତ୍ନ,
ଯତିବେଶ ଧରି ହରଷେ କାନନ-
ଯିବା ପାଇଁ କଲେ ଯତ୍ନ ।
"ବ୍ରହ୍ମାଣ୍ଡର ଈଶ ଧରି ନର ବେଶ
ଜନମି ଏ ମେଦିନୀରେ",
ପୁଲକିତ ମନେ ବାହାରିଲେ ବନେ
ଧରି ପିତାଦେଶ ଶିରେ ।
ଅନୁକୂଳ କରି ଇଷ୍ଟଦେବ ସ୍ମରି
ଯେ କାଳେ ପିତା ନିକଟେ,
ଆସିଲେ ତିନିହେଁ ଚଉଦିଗେ ଏଣେ
ବିଶେଷ ଦୁଃଖ ପ୍ରକଟେ ।
ରାଜଦ୍ୱାର ଦେଖି ସୁମନ୍ତ୍ରେ ସହାସେ
କହିଲେ ଜାନକୀପତି,
ଜଣାଅ ଜନକେ କାନନ ଗମନେ
ଆସିଲେ ଶ୍ରୀରାମଯତି ।
ଦେଖି ସୁମନ୍ତ୍ରର ହୋଇ ଦୁଃଖଭର
ଜଣାଇଲେ ଧରାଧିପେ,
ଆସିଛନ୍ତି ରାମ ଯିବା ଲାଗି ବନ
ଉଭା ଦୁଆର ସମୀପେ ।
ସୁମନ୍ତ୍ରର ବାଣୀ ଶୁଣି ନରମଣି
ଡାକିବାକୁ ପତ୍ନୀଗଣ,
କହନ୍ତେ ଗଡ଼ିଲା ନୟନୁ ଲୋତକ
ଦିଶିଲା ମୁଖ ବିବର୍ଣ୍ଣ ।
ରାମଙ୍କ ଜନନୀ କଉଶଲ୍ୟା ରାଣୀ
ଧରି ତାଙ୍କ ସଉତୁଣୀ,
ପହଞ୍ଚିଲେ ଖରେ ସୁମନ୍ତ୍ର ସଙ୍ଗରେ
ରାଜାଙ୍କ ଆଦେଶ ଶୁଣି ।
ଅଶ୍ରୁନୀରେ ଅନ୍ଧ ହୋଇ ଦଶରଥ
ନପାରିଲେ ଦେଖି ରାମ,
ମୂର୍ଚ୍ଛେ କରି ମାତ ରୋଦନେ କହନ୍ତି
ବିଧାତା ମୋଠାରେ ବାମ ।
କାନ୍ଦିଲେ ସକଳ ନାରୀଏ ବିକଳେ
କି ହେଲା କି ହେଲା କହି,
ବାନ୍ଧିଲେ କି ହେବ ସେତୁବନ୍ଧ ଅବା
ପଳାଇଲେ ଜଳ ବହି ।
କହନ୍ତି ଶ୍ରୀରାମ ପ୍ରବୋଧି ଜନକ
"ଏଠାରୁ ଯିବି ଅରଣ୍ୟ,

'ଯାଉଛନ୍ତି ସୀତା ସୁମିତ୍ରା-ନନ୍ଦନ
କଲେ ହେଁ କେତେ ବାରଣେ ।
ଦିଅ ଆଶୀର୍ବାଦ ପରିତେଜି ଖେଦ
ରାମ ଯାଉ ଘୋର ବନେ,
ପାଳଏ ରାଇଜ ଆଉ କେତେ କାଳ
ରଖି ଯଶ ଏ ଭୁବନେ" ।
କହନ୍ତି ଜନକ ଖେଦଭରେ ଅତି
ଶୁଣି ଶ୍ରୀରାମ ଭକତି,
"କର ରାଜପଣେ ଆନନ୍ଦେ ଧରାରେ
ନନ୍ଦନ ଆଉ ସୁକୃତି" ।
ଦଶରଥଙ୍କର ବଚନ ଶ୍ରବଣେ
କହନ୍ତି ଶ୍ରୀରାମ ଏବେ,
ଆମୋଦ ପ୍ରମୋଦ ବିଳାସ ଐଶ୍ୱର୍ଯ୍ୟ
ଲୋଡେ଼ ନାହିଁ ରାମ କେବେ ।
ସ୍ୱେଚ୍ଛାଇ ପଥିକ ରାମ ନିରନ୍ତର
ଲୋଡେ଼ ନାହିଁ ଆନ ସୁଖ,
ପିତାଙ୍କ ବଚନ ପାଳନେ କେବେ ବା
ହୋଇଅଛି କି ବିମୁଖ ?
ନଦୀ ଗିରି ହ୍ରଦ ହରିବେ ବିଷାଦ
ଆନନ୍ଦେ ଯାପିବି ଦିନ,
ସୁମଧୁର ଫଳେ ସୁମଧୁର ମୂଳେ
କରାଇବି କ୍ଷୁଧା ଲୀନ ।
କଲ ଅଙ୍ଗୀକାର କୈକେୟୀ ସନ୍ନିଧେ
ଧର୍ମ ସାକ୍ଷୀ କରି ଯାହା,
ଅକ୍ଷରେ ଅକ୍ଷରେ ପାଳିବାକୁ ରାମ
କରିଛି ଶପଥ ତାହା ।
ଲୋଡା଼ ନାହିଁ ଧନ ଲୋଡା ନାହିଁ ସୈନ୍ୟ
ଲୋଡା ନାହିଁ ବାଜି କରୀ,
ପିନ୍ଧିବ ଶ୍ରୀରାମ ବକଳ ବସନ
ଦିଅ ଅନୁଗ୍ରହ କରି ।
ପଶୁ ଛାଲ ଅବା ଗଛର ବକଳ
କୋଳେ ହେବ ବସନ,
ପତର କୁଡ଼ିଆ ହେବ ବାସ ପୁଣି
କରିବି ତଳେ ଶୟନ" ।

କ୍ଷଣେ କୈକେୟୀ ଲାଜ ଛାଡ଼ି ତାଙ୍କୁ
ବକଳ ଦେଲେ ବଢ଼ାଇ,
ନେଇ ତାଙ୍କ ହସ୍ତୁଁ ଶ୍ରୀରାମ ଲକ୍ଷ୍ମଣ
ଅଙ୍ଗରେ ହେଲେ ଗୁଡାଇ ।
ଭବ ଲୋକ ଆଜି ସଡ଼ୁଛନ୍ତି କୋହେ
କଇକେୟୀ ମୋଦଭର,
ହସ ଆଉ କାନ୍ଦ ଖେଳେ ଲୁଚକାଳି
ଏ ଜଗତେ ନିରନ୍ତର ।
ଧିକ ଧିକ କହି ମହର୍ଷି ବଶିଷ୍ଠ
କୈକେୟୀଙ୍କୁ ଦେଲେ ଗାଳି,
ଦାରୁଣା ପାପିନୀ ପୁଣ୍ୟ ରବି ବଂଶେ
ଲଗାଇଲୁ ଏବେ କାଳି ।
ବାହାରି ସୁନ୍ଦର ଖଳ ପ୍ରକୃତିର
ମହାକାଳ ଫଳ ପରି,
ନ ପଡେ଼ ପ୍ରମାଦ ରହିଥିଲେ ଦୂରେ
ସଙ୍ଗତାର ପରିହରି ।
ଧନ୍ୟା ଲୋ ମନ୍ଥରା ବାଛି ବାଛି କିଏ
ଦେଇଥିଲା ତୋର ନାଆଁ,
ମନ୍ଥି ବସୁନ୍ଧରା ନ ପଡ଼ିଲୁ ଧରା
ଧନ୍ୟ ତୋହର ଦେଣିଆଁ ।
ଏ ଭବେ ମନିଷ ହରାଇ ବିବେକ
ସ୍ୱାର୍ଥକୁ କରଇ ଧ୍ୟାନ,
ଧିକ ତା ଜୀବନେ ପଡି ଅବିରଳ
ନ ବିଚାରେ ଲବେ ଆନ ।
ସ୍ୱାର୍ଥ ସିନା ହିଂସା ପ୍ରବଞ୍ଚନା ସଙ୍ଗ
ଲୋଡଥାଏ ସଦା ଭବେ,
ଅସାଧୁତା ବୀଜ ବୁଣିବାକୁ କେବେ
ଶଙ୍କା ନକରଇ ଲବେ ।
ଯୋକ ପରି ଲାଗି ରହିଥାଏ ମନ
ନିଜ ନିଜ ବୃଦ୍ଧି ପାଇଁ,
ବିଷୟ ମୋହରେ ପଡ଼ି ପରଛିଦ୍ର
ନିତି ଖୋଜି ବୁଲୁଥାଇଁ ।
ଚତୁର ପଣରେ କୋକିଶିଆଳ ଠାରୁଁ
ବେଳେ ବେଳେ ଯାଏ ବଳି,

ନିଜ ନିନ୍ଦା ଯେବେ କାନେ ଯାଏ ପଡ଼ି
ହୃଦ ଯାଉଥାଏ ଜଳି ।
ନହୁଏ ବିରତ ଖଳ ତୋଷାମଦୁଁ
ମିଛ ଦେଉଥାଏ ବଳି,
କୁଟିଳତା ପୂର୍ଣ୍ଣ ଅବନତ ହୃଦ
ପରହିତ ହଳାହଳ ।
କଳହ ସୃଷ୍ଟିର ହୁଅଇ କାରଣ
ଅନ୍ୟାୟର ଅଗ୍ରଦୂତ,
ଋଷି ଖୁସାମଦେ ହୁଏ ଜଳାଞ୍ଜଳି
କେବେ ବା ନିଜ ମହତ୍ତ ।
ନଥାଏ ତା ଖେଦ ଜନ ଅପବାଦ
କୃତଘ୍ନତା ସହଚର,
ଦେଖି ତା ଏସନ୍ତ ଜନମଇ ଘୃଣା
କରି ଶିରେ ଦେବା ସାର ।
ଉଣ୍ଡି ବେଳ କାଳ ନୀଚ କଉଶଳେ
ପଛରୁ ମାରଇ ଛୁରୀ,
ନିଜ ନଶ୍ୱରତା ଭୁଲି ବା ହେବଇ
ସାର୍ଥକ କାମନା ପୂରି ।
ଝରଇ ଲୋତକ ହୋଇ ଧାର ଧାର
ପାଖେ ଥିବା ଜନଙ୍କର,
କରିଲେ ଭର୍ତ୍ସନା କୈକେୟୀଙ୍କୁ ପୁଣି
ହୋଇ ଅତି ଦୁଃଖଭର ।
ଏ ଭବେ ମନୀଷ ନକର ବିଗୃର
ପଡ଼ିଲେ ପର ବୋଲରେ,
କୈକେୟୀ ପରିଏ ସହି ନିରନ୍ତର
ଜୀବନ ଯାଏ ଦୁଃଖରେ ।
ସୀତା ସହ ରାମ ସୁମିତ୍ରାନନ୍ଦନ
କରି ବକଳ ଧାରଣ,
ବାହାରିଲେ ଏବେ ଚିରକାଳି ବନେ
କଲେହେଁ ଯେମନ୍ତ ବାରଣ ।
"ପତିର ସମ୍ପଦେ ଦେଖାନ୍ତି ମାନବେ
ଅତିଶୟ ଅନୁରାଗ,
ପଡ଼ିଲେ ବିପଦ ମାଶୋର ଅଜ୍ଞାତ
ବହନ୍ତି ମନେ ବିରାଗ ।

ସ୍ୱର୍ଣ୍ଣ ଅଳଙ୍କାରେ ରହେ ମନ ଠାକ୍
ସୁବର୍ଣ୍ଣ ତାଙ୍କ ଦେବତା,
ଅହରହ ହୃଦ ଦେଉଥାଏ ଘାରି
ଯଉବନ ଚପଳତା",
ଭୁବନ ମୋହିନୀ ପତିବ୍ରତା ପତ୍ନୀ
ପ୍ରାଣକାନ୍ତ ସଙ୍ଗେ ବନ ।
ତେଜି ବାହାରିଲେ ସକଳ ସମ୍ଭୋଗ
ପିନ୍ଧି ବକଳ ବସନ,
ଦାରୁଣ ବଚନେ କୈକେୟୀଙ୍କୁ ରାଜା
ଧିକ୍‌କାରିଲେ ବହୁବାର,
ଯା ମନ ଧାଇଁଚି କଳ୍ପନା ପଛରେ
ଶୁଣେ କି କଥା ସେ କା'ର ।
ଯେଉଁ କଇକେୟୀ ପ୍ରିୟତମା ଥିଲି
ଆଜଯାଏଁ ଯାହାଙ୍କର,
କିଏ ଜାଣିଥିଲା ସେହି ପୁଣି ଦିନେ
ପିଆଇ ଦେବ ଜହର ।
"କହନ୍ତି ଶ୍ରୀରାମ ବିନୟେ ଜନକ
ଘେନ ରାମ ନିବେଦନ,
ଜନନୀ କୌଶଲ୍ୟା ଅବିରତ ତବ
ପଦେ ରଖିଥାଏ ମନ ।
ଏ ଅମିତ ଦୁଃଖେ ଶୁଣି ନାହିଁ ତାଙ୍କ
ମୁଖୁଁ ତବ ଅପବାଦ,
ସେ ହିତ ଭଗିନୀ କଉଶଲ୍ୟା ପ୍ରତି
ଥାଉ ତୁମର ପ୍ରସାଦ ।
ପବିତ୍ର ହୃଦୟା ଜନନୀଙ୍କ ପଦେ
ନୁଆଁଇ ରାଘବ ଶିର,
କରିବାକୁ ତାଙ୍କୁ ଜନକଙ୍କ ସେବା
ଭାଷିଲେ ବିନୟୀ ଗିର" ।
ବନ୍ଦି ମାତୃପଦେ ଲକ୍ଷ୍ମଣ କୁମାର
ବାହାରନ୍ତେ ବନବାସ,
କହିଲେ ଜନନୀ ଆଲିଙ୍ଗି ତାହାଙ୍କୁ
"ଥିବୁ ସଦା ରାମପାଶ ।
ପିତା ତୁମ୍ଭ ମଣି ରାଘବଙ୍କୁ ଏବେ
ମଣିବୁ ସୀତାଙ୍କୁ ମାତା,

କରୁଥିବୁ ସେବା ଦେବୀ ଜାଣି ପୁଣି
ହେବୁ ଜାନକୀଙ୍କ ଧାତା" ।
ପ୍ରବୋଧନ ଦେଇ କହନ୍ତି ସୁମିତ୍ରା
କଉଶଲ୍ୟାଙ୍କୁ ଅନାଇଁ,
"ବନବାସ ଡର ନାହିଁ ରାମଙ୍କର
ସେ ଯେଣୁ ଜଗତ ସାଇଁ ।
ନିରୁତ ଝଟକ ହରୁଥିବ କାନ୍ତି
ଚନ୍ଦ୍ରମା ଚନ୍ଦ୍ରିକା ଦାନେ,
ଚିତ୍ତ ବିନୋଦନ ହେବ ତାଙ୍କ ପୁଣି
କୋକିଳର କୁହୁତାନେ ।
ଦେବ ଦେବୀ ଯେତେ ଅଛନ୍ତି ଜଗତେ
କରନ୍ତି ତାଙ୍କ ବନ୍ଦନା,
ମହାତ୍ୟାଗୀ ଯିଏ ଜାଣିବ କି ତେବେ
କାନନ ବାସ ଯାତନା" ।
ଦୁଃଖୀ ବିନା କିଏ ଦୁଃଖର ବେଦନା
ନପାରଇ ଜାଣି ଭବେ,
ବାଂଝ କେଉଁକାଳେ ପ୍ରସବ ଯାତନା
ପାରଇ କି ଜାଣି ଲଭେ ।
କୁରଙ୍ଗ ପରିଏ ବିକଳେ ନାରୀଏ
କାନ୍ଦିଲେ ମେଲାଣି କାଳେ,
ବିହଙ୍ଗେ ଆରତେ କଲେ ରବ ଖେଦେ
ବସିଣ ପାଦପ ଡାଳେ ।
ଧନ୍ୟ ଧନ୍ୟ ରାମ ଉଦାର ହୃଦୟେ
ତେଜି ବିଭୂତି ସକଳ,
ଦେଖାଇ ଆଦର୍ଶ କଲେ ବନବାସ
ଅବୋଧ ହୁଲ ବିକଳ ।
"ଏବେ ଦେଉ ଲୋକ ଅତି ପୁଲକିତ
ସନ୍ତାପିତ ଧରାତଳ,
ଏ ମରମ ଅବା ଜାଣିବାକୁ ତଳେ
ଅଛି କି କାହାର ବଳ ?
ଦଶା ବିପର୍ଯ୍ୟୟ ଘଟେ ଏ ଜୀବନେ
କୁଲାଳ ଚକ୍ର ପରିଏ
ଜାଣି ଜାଣି ଏହା ଭୁଲୁ ଲୋଭ ଆଶେ
ଘାଣ୍ଟି ହୁଅନ୍ତି ପ୍ରାଣୀଏ ।

ଆମୋଦ ପ୍ରମୋଦ ପଛରେ ପ୍ରମାଦ
ଛୁଇପରି କରେ ଗତି,
ଜାଣି ଜାଣି ନରେ ପଡ଼ନ୍ତି ଖାଲରେ
ବିଷୟ ଲୋଭରେ ମାତି ।
କେ ଭବେ ସମର୍ଥ ଲଲାଟ-ଲିଖନ
କରିବାକୁ ଅବା ଆନ,
ଦେଖିବାକୁ କ୍ଷମ ଉଲୁକ କି କେବେ
ଲଭି ତପନ-କିରଣ ।
ସମୟର ଚକ ଘୁରେ ଅବିରାମ
ସମ୍ପଦ ବିପଦ ସହ,
ଚକ୍ରେ ପରାଏ ମାନବ ଜୀବନ
ଉଠେ ପଡ଼େ ଅହରହ ।
ଭୂପତି ଆଦେଶେ ଜାନକୀଙ୍କୁ ଏବେ
ଦିଆଗଲା ବହୁ ଧନ,
ସାରଥିଙ୍କୁ ଏଣେ ଆଦେଶିଲେ ରଥେ
ଯାଆନ୍ତୁ ତିନହେଁ ବନ ।
ସଜ କରି ରଥ ଆଣିଲେ ସାରଥି
ଜାନକୀ ହରଷଭରେ,
ଚଢ଼ିବାରୁ ରାମ ସୁମିତ୍ରାନନ୍ଦନ
ଆରୋହିଲେ ତହିଁ ପରେ ।
ପବନ ବେଗରେ ନେଲେ ରଥ ବାହି
ସୁମନ୍ତ୍ର ଦକ୍ଷିଣବନ,
ପଛେ ପଛେ ତାର ଧାଇଁଲେ ସଭିଏଁ
ବିକଳେ କରି ରୋଦନ ।
ବାହୁନି ବାହୁନି କାନ୍ଦି କାନ୍ଦି ଦୁଃଖେ
ପାଶୋରିଲେ ଭୋକ ଶୋଷ,
ପାପିନୀ କୈକେୟୀ ଶ୍ରୀରାମ ଗମନେ
ବହିଲେ ହୃଦୟେ ତୋଷ ।
ଦେଖନ୍ତେ ଶ୍ରୀରାମ ପିତା ମାତା ରଥ
ପଛେ ପଛେ ଧାବମାନ,
ଧୈର୍ଯ୍ୟ ଧରି ଅତି କହିଲେ ସୁମନ୍ତ୍ର
"ଚଳାଅ ସତ୍ୱରେ ଯାନ ।
ରଖ ରଖ ରଥ" କହି ଦଶରଥ
ଡାକୁଥାନ୍ତି ବିକଳରେ,

ଛଥାଙ୍ଗ ଯେସନ ରଥାଙ୍ଗୀ ବିରହେ
ନିଶିରେ ହୁଏ ଅଧୀର,
ସର୍ବ ଗୁଣ ନିଧି ଶ୍ରୀରାମ ବିହୁନେ
ତେସନ ଅଯୋଧ୍ୟାପୁର ।
ହେଲା ରାତି ଶେଷ ଏଣେ ଅବଶେଷ
ଅତିକ୍ରମି ନଦୀ ତୀର,
ଗଙ୍ଗା କୂଳେ କୂଳେ ଯାଇ ପହଞ୍ଚିଲେ
ସଞ୍ଜେ ଶୃଙ୍ଗବେର ପୁର ।
ନିଷାଦ ବଂଶୀୟ ଅଧିପତି ଗୁହ
ଶୁଣି ରାମ ଆଗମନ,
ଆସିଲେ ପାଶୁଟି ଫଳ ମୂଳ ଭେଟି
ଧରି ତାଙ୍କ ସନ୍ନିଧାନ ।
କରି ସମର୍ପଣ ଫଳ ମୂଳ ମାନ
କହିଲେ "ମୁଁ ତୁମ ଦାସ,
ହେ ନର ବରେଣ୍ୟ ! ଜଗତ ଶରଣ୍ୟ
କର ସୁଖେ ଏଥିବାସ ।
ଲଭି ଅତି ପ୍ରୀତି ଶ୍ରୀରାମ କହନ୍ତି,
ଅନ୍ୟଠାରୁଁ ଫଳମୂଳ,
କରିଅଛୁ ପଣ ନ ଘେନିବି ଦାନ
ତେଣୁ ନହୁଅ ଆକୁଳ ।
ତୁମ ଏ ସତ୍କାର ହୃଦେ ହେଲା ସାର
ନ ଭୁଲିବି ଏ ଜୀବନେ,
କୈକେୟୀ ଆଦେଶ "ଦଣ୍ଡକା ନିବାସ
ତେଣୁ ଯିବି ଘୋର ବନେ" ।
ପୁହାଇ ରଜନୀ ସୁଖେ ରଘୁମଣି
ଡାକି କହନ୍ତି ଲକ୍ଷ୍ମଣ,
"ଆଣିଲେ ତରଣୀ ଗଙ୍ଗା ତରଙ୍ଗିଣୀ
ପାରହେବା ଏହିକ୍ଷଣ" ।
ଏ ବଚନ ଶୁଣି ଗୁହ ସେହିକ୍ଷଣି
କଲେ ସଜ ଭେଳା ଗୋଟି,
ଦେଖୁ ଦେଖୁ ଏହା ସୁମନ୍ତ୍ର ମନରେ
ଆସିଲା ବିଷାଦ ଘୋଟି ।
ଦୁଃଖେ ନିବେଦିଲେ "ସଙ୍ଗେ ବନେ ଗଲେ
ସେବିବି ତୁମ ପୟର",
ଏକୁଟିଆ ଫେରି ନପାରିବି ଧରି
ଜୀବନ କ୍ଷଣେ ମାତର ।
ବହୁଦିନୁଁ ଜାଣି ରଘୁକୁଳେ ହେବ
ବୋଲି ତୁମର ଜନନ,
ସକଳ କରମ ଏଡଦେଇ ଏଣେ
ଶିଖିଲି ରଥ ଚାଳନ ।
ପଙ୍କଜନୟନ ଯାଚିଛି ଏମନ
ନକର ନିରାଶ ଲବେ,
ଦେଲେ ଅନୁମତି ଉଡ଼ିବ କୀରତି
ବାନା ଯୁଗେ ଯୁଗେ ଭବେ ।
ବହିଯିବ ଦିନ ବରଷ ଚଉଦ
ପ୍ରବାହିନୀ ସ୍ରୋତ ପରି,
ସେବି ଶ୍ରୀଚରଣେ ଫେରିବି ସ୍ୟନ୍ଦନେ
ପତିତପାବନ ଧରି" ।
ଉତ୍ତରିଲେ ରାମ ଶୁଣି ତାଙ୍କ କଥା
ବାହୁଡ଼ି ଯାଅ ବହନ,
ଭରତଙ୍କୁ ଯାଇ ଗାଦିରେ ବସାଇ
ଦିଅ ସର୍ବେ ଆଶ୍ୱାସନ ।
ଗୁହଙ୍କୁ ଅନାଇ କହନ୍ତି ଶ୍ରୀରାମ
"ବଟକ୍ଷୀର ପ୍ରୟୋଜନ,
କେଶ ଜଟା ପାଇଁ ଅନୁଗ୍ରହ କରି
କର ଏବେ ଆୟୋଜନ" ।
ଶୁଣି ଏ ବଚନ ଗୁହ ତତକ୍ଷଣ
ବଟକ୍ଷୀର ଅଣାଇଲେ,
ତାହା ବେନିଭାଇ ମଥାରେ ଲଗାଇ
ଜଟାମୁଖ ବାନ୍ଧାଇଲେ ।
ନଉକାରେ ବସି ପାରି ହେଲେ ଗଙ୍ଗା
ମେଲାଣି ମାଗି ଗୁହଙ୍କୁ,
ମତ୍ସ୍ୟ ଦେଶେ ଯାଇ କରିଲେ ଭୋଜନ
ମାରି ମୃଗ ବରାହଙ୍କୁ !
ଧନ୍ୟ ଧନ୍ୟ ଧନ୍ୟ ହେ ଜନକ କନ୍ୟା
ସ୍ୱହସ୍ତେ କରି ରନ୍ଧନ,
ଖାଇ ଖୁଆଇଲ ଭରତା ଦେବର
ରଖି କୀରତି କେତନ ।

କେତେ ଦାସ ଦାସୀ   ଖଟି ଦିବା ନିଶି
କରୁଥିଲେ ସେବା ଯାର,
ଚକ୍ଷୁ ପଲକେ ପଡ଼ି   ଭିଖାରୁଣୀ ପରି
ଏବେ ଯାପିଲେ ବାସର ।
ସଞ୍ଜେ ବେଳଘର   ପତରେ ଗୋଟାଇ
ବିଛାଇଲେ ମାଟି'ପରେ,
ତହିଁ ପରେ ରାମ   ଆଉଜି କହନ୍ତି
ଲକ୍ଷ୍ମଣଙ୍କୁ ଖେଦଭରେ ।
"ବିଷାଦେ ବିବଶ   ହୋଇଣ ନରେଶ
ଲେଉଟନ୍ତି ନିଦ ଏକାକେ,
ନ ଆସିବ ନିଦ   ଆଉ କଦାଚେ
ସଜନ୍ତି ମମତା ଜାଳେ ।
ସନ୍ତାନ ନିମିତ୍ତ   ଲଭନ୍ତି ଜନନୀ
ନାନା କଷଣ ଜୀବନେ,
ବଢାନ୍ତି ଆଦରେ   ସେବା ଲାଗି ସିନା
ବାର୍ଦ୍ଧକ୍ୟ ତା ପ୍ରତିଦାନେ ।
ଧିକ ମୋ ଜୀବନ   ମୋ ଭଳି ସନ୍ତାନ
ନକରୁ କିଏ ଜନମ,
ବଢ଼ାଇଲା ଖେଦ   ଜନନୀ ହୃଦୟେ
ତେଜି ଅପତ୍ୟ ଧରମ ।
ଘାଣ୍ଟି ହୁଏ ପ୍ରାଣ   ଭାବି ଏ କଷଣ
ନ ଦିଶଇ କିଛି ବାଟ,
ଧରମ ପାଶରେ   ପଡ଼ି ବନ୍ଧନରେ
ହେଉ ଅଛି ଛଟପଟ ।
କଇକେୟୀ ମୋହ   ନୃପେ ଅହରହ
କରଇ ଅଥୟ ଅତି,
ନ ରଖିଲା ପାଶେ   ଏ ବୁଢା ବୟସେ
ଏବେ ସ୍ନେହର ସନ୍ତତି ।
କଇକେୟୀ ରୀତ   ଦେଖି ଲାଗେ ଭୀତ
ଗଲାଣି ସେ ପାପେ ବୁଡି,
ରଜନୀ-ଶେଷରେ   ଅତି ମୋଦଭରେ
ଯାଅ ଅଯୋଧ୍ୟା ବାହୁଡ଼ି" ।
ଲକ୍ଷ୍ମଣ ଏକାକେ   ଉତ୍ତରିଲେ ତାଙ୍କୁ
"ନ କହ କଥା ଏସନ",
ଲୋଡେ ନାହିଁ ପିତା   ଲୋଡେ ନାହିଁ ମାତା,
ଲୋଡେ ମୁଁ ରାମ ଶରଣ ।
ଲକ୍ଷ୍ମଣ ବଚନ   ଶୁଣି ରାମ ମନ
ହେଲା ଖୁସୀ ଅତିଶୟ,
କଲେ ସେ ଶୟନ   ଅଝାଡ଼ କାନନ
ନ ହେଲା ହୃଦୟେ ଭୟ ।
ନିଶି-ଅବସାନେ   ଦଣ୍ଡକା ଅରଣ୍ୟେ
ବାହାରିଲେ ରଘୁମଣି,
ପ୍ରକୃତିର ହାଟ   ଦେଖି ବାଟେ ବାଟେ
ଯାଆନ୍ତି ରାମରମଣୀ ।
ଦଳ ଦଳ ଶୁକ   ଆସନ୍ତି ଆଗକୁ
ବନ୍ଦେଇବା ପାଇଁ ଶ୍ୟାମ,
ନାଲିଆ ଚଞ୍ଚୁରେ   ଜିଭ ଚିପି ଚିପି
ବୋଲିଲେ କି ରାମନାମ !
ଲୁଚି ଚୂତ-ଡାଳେ   ବସିଥିଲା ପିକ
ଚୁମ୍ବି ରସାଳ-ମଞ୍ଜରୀ,
କୁହୁ କୁହୁ ତାନେ   ବଜାଇଲା ବୀଣା
ଦେଖି ଜାନକୀ ସୁନ୍ଦରୀ ।
ଥିଲା କାହିଁ ଶାରୀ   ଘନ ବନ ଗିରି
ନିରେଖି ଆଲୋକମୟ,
ଏ କିଏ ଏ କିଏ   କହି ମଧୁ ସ୍ୱନେ
ହେଲାକି ଏବେ ତନ୍ମୟ ।
ପଲ ପଲ ହୋଇ,   ଅବା କୁରଙ୍ଗିଣୀ
ସଙ୍ଗରେ ଶାବକ ଧରି,
ଆସନ୍ତି ଦଉଡି   ରାମ ଦରଶନେ
ନ ଡରି ତଳେ କେଶରୀ ।
ବେଣୁ କୁଞ୍ଜ ପାଶେ   ନଇଁ ନଇଁ ଖାଦ୍ୟ
ଖୁଣ୍ଟି ଖାଉଥିଲେ କେକୀ,
ହୋଇଣ ବିରତ   ଆସନ୍ତି ହରଷେ
ଟୀକରେ ଅବା ପୁଚ୍ଛ ଟେକି ! ।
ବେଳେ ବେଳେ କାହିଁ   ପଦ ଉଡ଼ାଇକୁ
ଶୁଭେ ଝିଙ୍କାରୀ ଝଙ୍କାର,
ବିରକ୍ତି ଦେଖାଇ   ଭରତ ମାଆଙ୍କୁ
କରୁଥିଲ କି ଧିକ୍କାର ! ।

ଦିବା-ଅବସାନେ    ଭରଦ୍ୱାଜାଶ୍ରମେ
ସୁଖେ ଜାନକୀ-ରମଣ,
ରୁଳ୍ଲା, ବନ୍ଧୁପଥ    ଯାଇ ପହଞ୍ଚିଲେ
ସେନି ଜାନକୀ-ଲକ୍ଷ୍ମଣ ।
ଏମାନଙ୍କୁ ଦେଖି    ହେଲେ ଅତି ସୁଖୀ
ଭରଦ୍ୱାଜ ମୁନିବର,
ଶ୍ରୀରାମଙ୍କ ମନ    ଜାଣି ସନମାନ
କଲେ ଦେଇ ନାନା ଫଳ ।
ସାରିଣି ଅନ୍ଧାର    ଦେଲେ ଦିବାକର
ଉଠିଲେ ରଘୁନନ୍ଦନ,
ପୂଜା ବିଧି ସାରି    ସେଠାରୁ ମେଲାଣି
ମାଗି ଗଲେ ଘୋର ବନ ।
ଦୁଇ ମୁଖରିତ    ପକ୍ଷୀଙ୍କ ଲଳିତ
କୂଜନେ ଏ ବନ ରାଜି,
ପ୍ରୀତି ହୁଏ ଅବା    ଏ ବନ ଭୂମିରେ
ସୁର-କର ନାହିଁ ବାଜି ।
ଚିତ୍ରକୂଟ ବନେ    ମନ୍ଦାକିନୀ କୂଳେ
ନିର୍ମାଣି, କୁଡ଼ିଆ ଘର,
ରହିଲେ ତିନିହେଁ    ସେଠି କେତେ କାଳ
ଭୁଲି ଅଯୋଧ୍ୟା ନଗର ।

***

## ଚତୁର୍ଥ ସର୍ଗ

ଦୁଃଖ ଜଳେ ବୁଡ଼ି,    ସୁମନ୍ତ୍ର ବାହୁଡ଼ି-
ଆସିଲେ ଅଯୋଧ୍ୟା ପୁର,
ବନ୍ଧୁପୁର ବାସୀ    କାନ୍ଦି, କାନ୍ଦି, ଆସି
ପଚାରନ୍ତି ବାରଂବାର ।
କାହାନ୍ତି ଶ୍ରୀରାମ    କାହାନ୍ତି ଶ୍ରୀରାମ
ରହିଲେ କେଉଁ ବନରେ,
ଶୁଭ ସମାଚାର    ନେଇ ତାହାଙ୍କର
ଆଅ ଦଶରଥ ପୁରେ ।
ନକହି ବଚନ    ବହାଇ ଲୋତକ
ତୁରିତ ସାରଥି ଚଳାଇ ରଥ,
ପହଞ୍ଚିଲେ ଶେଷେ    ଭୂପାଳଙ୍କ ପାଶେ
ଅତିକ୍ରମି ଖରେ ସେ ରାଜପଥ ।
ମୃତକ ପରିଏ    ଦଶରଥ ରାଏ
ତାହାଙ୍କ ସରଣୀ (୧) ଥିଲେ ଉନାଇ,
କରଯୋଡ଼ି ଧୀରେ    ସୁମନ୍ତ୍ର ଅଧୀରେ
ଶ୍ରୀରାମ ବାରତା ଦେଲେ ଶୁଣାଇ ।
(୨) ମୃଗୟୁ-ଶରରେ    ଆଘାତେ ଭୂଇଁରେ
କୁରଙ୍ଗ ପଡ଼ିଏ ସେ ନରମଣି,
ରାମଙ୍କ ବାରତା    ଶ୍ରବଣେ ଅଚେତା
ହୋଇ ପଡ଼ିଗଲେ ଅଧୈର୍ଯ୍ୟ ପୁଣି ।
ଶେଷ ପାଶେ ନେଇ,    କଉଶଲ୍ୟା ଦେଇ,
କହନ୍ତି ନୃପଙ୍କୁ କରି ବିଳାପ,
'ବିଷାଦ ଛଳନା    ନକର ଲଳନା
ମାନସେ ନଦିଅ ଆଉ ପ୍ରଲାପ ।
କଉଶଲ୍ୟା ବାଣୀ    ଶୁଣି ନରମଣି
ଉତ୍ତରିଲେ ତହୁଁ ବିଷାଦେ ଅତି,
"ହେଉ ଅବା ସୁର    ଅଥବା ଅସୁର
ଜାୟାର ଦେବତା କେବଳ ପତି ।
କନ୍ଦୁକ ନୀତନ    ପରାଏ ଜୀବନ
ଉଠୁଛି ପଡ଼ୁଛି ଅନବରତ,
କିଏ ଆଜୀବନ    ସୁଖେ କାଟେ ଦିନ
ବିଷୟ ମୋହରେ ହୋଇ ଜଡ଼ିତ ।
ଶୋକ-ହୁତାଶନ    ଦହେ ହୃଦବନ
ଶ୍ରୀରାମ ବିରହେ ଦଶରଥର,
ଯାଉଛି ପରାଣ    ଲିଭିଅ ଦହନ
କହି ଏ ସମୟେ କୋମଳ ଗିର" ।
ଏ ବଚନ ଶୁଣି    କଉଶଲ୍ୟା ରାଣୀ
ଭକ୍ତିଭରେ ତାଙ୍କ ପଦଯୁଗଳ,
ଧରି ନିବେଦିଲେ,    "କର କ୍ଷମା ନାଥ"
ବହାଇ ସନ୍ତାପେ ଲୋତକଜଳ" ।
ଦୁଃଖ କାତର ଚିତ୍ତ    ମାନବର ମତ
ପ୍ରବଳ ଅରାତି ଦୁଃଖ ଜନକ,

(୧) ବାଟ    (୨) ଶିକାରୀ

ଶତ୍ରୁ ଆକ୍ରମଣ ନିଉର୍ନ କଷଣ
ଅତି ଅସହନ ଘାତ ଦୁଃଖର ।
କୌଶଲ୍ୟା ଉକତି ଶୁଣି ନରପତି
ଏମନ୍ତ ଜଗତେ କେହି କାହାର,
ନୁହଇ ବୋଲି ସେ କହୁଁ କହୁଁ ଧୀରେ
ପ୍ରାଣ ବାୟୁ ଉଡ଼ିଗଲା ତାଙ୍କର ।
ପ୍ରିୟତମା ନାରୀ କୈକେୟୀ ସୁନ୍ଦରୀ
ହେଲେ ଧବହୀନା ଆଜ,
ନିମିଷକ ମଧ୍ୟେ କାହିଁ ଗଲା ଗୁଡ଼ି
ପୂର୍ବର ସୌନ୍ଦର୍ଯ୍ୟ ସାଜ ।
ସୌଦାମିନୀ ପରି ଏ ବାରତା ଧରି
ଗଲା ପ୍ରଭଞ୍ଜନ ଚଉଦିଗରେ,
କ୍ରନ୍ଦନ ଚିତ୍କାର ଶୁଭେ ବାରଂବାର
କୌଶଲ୍ୟା ପଡ଼ିଲେ ବିଷାଦଭରେ ।
ସନ୍ତାନ ବିଚ୍ଛେଦ ହୁଏ ଅତି ଖେଦ
ପତିଙ୍କ ମରଣ ହେଲା ଦୁଃସହ,
"ବିଧି ହେଲେ ବାମ କେ କରିବ ଆନ
ଘୋଟିଆସେ ଜବେ ଦୁଃଖନିବହ" ।
ଅନାଇଁ କୈକେୟୀ ଶୋକାତୁର ହୋଇ
ଭାଷନ୍ତି କୌଶଲ୍ୟା ନିଷ୍ଠୁର ବଚନେ,
"ପାପିନୀ ଲାଳସି ଦେଲୁ ଦୁଃଖରାଶି
ପଠାଇ ଶ୍ରୀରାମ ଅଯୋଧ୍ୟାବାନ ।
କେତେ ନରନାରୀ କହିଲେ ଧିକ୍କାରି
ନଦେଖିଲୁ ତଳେ ମାନସ ବ୍ରୀଡ଼ା,
ପକାଇ ଆଲଟ ଲଗାଇଲୁ ନାଟ
ଅହର୍ନିଶ କରି ବିଦ୍ୱେଷ କ୍ରୀଡ଼ା ।
ଲଲାଟ ସିନ୍ଦୂର ଜାଣି ଜାଣି ନିଜ
ହାତେ ଲିଭାଇଲୁ ଲଜ୍ଜା ବର୍ଜି,
ମଙ୍ଗଳର ଶିଖା ଦେଲୁ ଲୋପ କରି
ଯୁଗେ ଯୁଗେ ଅପଯଶ ଅର୍ଜି" ।
ଭୁବନ ବିଦିତ ଅତି ସତ୍ୟ ବ୍ରତ
ଦଶରଥ ନୃପବର,
ଶତ ଶତ ପାପଣ ଥାଇ ଜଗୁଆଳ
ଚାଲିଗଲେ ଲୋକାନ୍ତର ।

ଛାମ ଯଥା ମେଷ ନିଅଇ ଗଧିଆ
ଥାଉ ଥାଉ ଜଗୁଆଳ,
ତେସନ ଶମନ ମାରି ଦିଏ ଛାମ
ଥାଉ କେତେ କଟୁଆଳ ।
ଶୂନ୍ୟହସ୍ତେ ଆହା ! ଗଲେ ଚାଲି କାହିଁ
ଏକି ବିଧାତା ବିଧାନ,
କାହା ଭେଟ ଆଉ ନ ମିଳିବ ବାରେ
କଲେହେଁ କେତେ ଯତନ ।
ଜନମ ପଛରେ ଗୋଡ଼ାଇ ମରଣ
ଅବଲମ୍ବେ ବସେ ମାଡ଼ି ।
ବିକଳ ଜୁହାର କଲେ ବାରଂବାର
ଦିଏ କି କାହାକୁ ଛାଡ଼ି ।
କିବା ଦଣ୍ଡ ଦିନ ନଦୀଜଳ ପରି
ଧାଉଅଛି ଏଣେ ବହି,
ଆଗପଛ କହି ପଳାଇବା ଦିନେ
ନ ରହିବେ ଜଣେ କେହି ।
କେ ଚିହ୍ନଇ ଲୋକେ କାହିଁ ଆସେ ପୁଣି
ଆସିଲେ କାହିଁକି ଏଥି,
ଉଲଗନେ ଆସି ଉଲଗନେ ଯାଉ
ସଙ୍ଗରେ ନଥାନ୍ତି ସାଥୀ ।
ଦିନପରେ ଦିନ ରାତିପରେ ରାତି
ଘୂରି ଘୂରି ଏ ସଂସାରେ,
ଜୀବନର ଅଂଶ କରଇ ବିନାଶ
ତା ପୁଣି କିଏ ବିଚାରେ ! ।
ପଦ୍ମପତ୍ର ନୀର ପରି ଟଳ ଟଳ
ପ୍ରତିକ୍ଷଣେ ଏ ପରାଣ,
ଜାଣି ଜାଣି ଜନେ କେଉଁ ବଡ଼ ପଣେ
ଦେଖାନ୍ତି ସଂସାରେ ଠାଣ ।
କେତେ ତପସ୍ୟାରେ ପାଇ ଚାରିପୁତ୍ର
ମଣୁଥିଲେ କେତେ ସୁଖ,
ଗଲାବେଳେ କେହି ନ ଥିବାରୁ ପାଶେ
ନ ଦେଖିଲେ ପୁତ୍ର ମୁଖ ।
ମାତୁଳ ନିବାସେ ଭରତ ଶତ୍ରୁଘ୍ନ
ଥିଲେ ବହୁଦିନ ଧରି,

ଚିତ୍ତ ଅଧୀର ଦୁଃଖେ ବେଳେ ବେଳେ
ରଘୁମଣି ସ୍ନେହ ସ୍ମର ।
କେକୟ-ଦେଶକୁ ଭରତ-ସମୀପେ
ଗଲେ ସଙ୍ଗେ ସଙ୍ଗେ ଚର,
ମରଣ ବାରତା ନ ଦେଇ ଆଣିଲେ
ଭରତ-ଶତ୍ରୁଘ୍ନ ବୀର ।
ଅଯୋଧ୍ୟାର ଦଶା ଦର୍ଶନେ ସହସା
ଭରତଙ୍କ ମନେ ସନ୍ଦେହ ଅତି,
ଉପୁଜିଲା, ଖରେ ପୁଚ୍ଛିଲେ ସେ ଚରେ
ଜାଣିବାକୁ ପୁର ହେତୁ ଝଟିତି ।
ନ ଦେଇ ଉତ୍ତର କୈକେୟୀଙ୍କ ପୁର
ନେଲା ସେ ତାହାଙ୍କୁ ଅତି ସତ୍ୱରେ,
ପ୍ରଣମି ଜନନୀ କାହାନ୍ତି ନୃମଣି
ବୋଲି ପୁଚ୍ଛିଲେ ସେ ଆବେଗଭରେ ।
ଜନକ-ମରଣ ବାରତା-ମୋଚନ
କଲେ କଇକେୟୀ ବିଷାଦଛଳେ,
ଶୁଣି ତା ଭରତ ଶୋକେ ଅଭିଭୂତ
ହୋଇ ପଡ଼ିଗଲେ ଧରଣୀ ତଳେ ।
କହନ୍ତି କାରୁଣ୍ୟେ ରାମଙ୍କ ଦର୍ଶନେ
ଘୁଞ୍ଚିବ ବିଷାଦ, ସେ ମୋ ଆଶ୍ରୟ,
କାହାନ୍ତି ଶ୍ରୀରାମ ଜଗତଲୋଚନ
ନ ଦେଖି ତାହାଙ୍କୁ ପ୍ରାଣ ଅଥୟ ?
ଭରତଙ୍କ ବାଣୀ କଇକେୟୀ ଶୁଣି
ବଖାଣି ତାହାଙ୍କୁ ପୂର୍ବ ଚରିତ,
କହିଲେ ଭରତ ଧରିବୁ ମୁକୁଟ
ନନ୍ଦନ ସମ୍ରାଟ ହୋଇ ଦୁଃଖିତ ।
ଚଉଦ ବରଷ ରାମ ବନବାସ
ସାରି ବାହୁଡ଼ିବେ ଦେଶ କୋଶଳ,
ପ୍ରଥା ଅନୁସରି ହୁଅ ଅଧିକାରୀ
ଏ ରାଜ୍ୟ ନ ହୋଇ ଆଉ ବିକଳ ।
ନ ବାଧିଲା ଚିତ୍ତେ ଜନକ ମରଣ
ଭାଇଙ୍କ ବନ ଗମନ,
ଦାବାଗ୍ନି ପରାଏ ଶୋକାନଳ ଜଳା
ତାଙ୍କ ହୃଦୟ ଦହନ ।

ରୋଷେ ଜରଜର ଭରତ କୁମାର
ଶୁଣି ଜନନୀଙ୍କ ଏ ପାପଗୀତ,
କହିଲେ "ନିଃଶଙ୍କେ ମାନସେ କଳଙ୍କ
ଲଗାଇଲୁ ବଂଶେ ସ୍ୱାର୍ଥରେ ମାତ ।
ରାମଙ୍କ ବିଚ୍ଛେଦ ଦେଲା ଅତି ଖେଦ
ଜନକ-ହୃଦୟେ ଦିବା-ରଜନୀ,
ଛାଡ଼ିଲେ ପରାଣ ଦଶରଥ ରାଣା
ହେଲୁ ଆଜ ଭବେ ହତ୍ୟାକାରିଣୀ ।
ଧନର ପିପାସା କ୍ଷମତା ଲାଳସା
ନେଇଛି ଲୋଚନ ତୁମର ଆଜ,
ନ କରି ବିଚାର କଲୁ ଏବେ ଚୂର
କୋଶଳ ଅତୁଳ ସମ୍ପଦରାଜ ।
ତୁଚ୍ଛ ଅଭିଳାଷେ ବଳାଇ ମାନସେ
କରିଲୁ ବିନାଶ ଆପଣା ଶିର ।
ଅନ୍ୟର ସମ୍ପତ୍ତି ବଳାଇଲୁ ମତି
ଯୁଗେ ଯୁଗେ ହୋଇ ଧର୍ମ ବିରସ ।
ରାମ ସର୍ବଦ୍ରଷ୍ଟା ସେ ଜଗତସ୍ରଷ୍ଟା
ଦଶରଥଙ୍କର ଜ୍ୟେଷ୍ଠ ସନ୍ତତି,
ରାଜ୍ୟ ଅଧିକାରୀ କେବଳ ତାଙ୍କରି
କିଙ୍କର ଭରତ ବାଳକ ମତି ।
ହୃଦୟ ସ୍ପନ୍ଦନ ହୁଏ ପୁନଃ ପୁନଃ
ଶୁଣିଏ ତୁମର କୁତ୍ସିତ ଗୀତ,
ରୁଧିର ପିପାସୁ ପିଶାଚୀ ପରାଏ
ଅରିଜିଲୁ ଭବେ ଅପକୀରତି ।
ରାମ ବନବାସ ଜନକ-ବିନାଶ
ତୁମ ଲାଗି ଏବେ ହେଲା ଘଟନ,
ଏ ଦୁରଭିସନ୍ଧି ହେଲା କି ସିଦ୍ଧି
ଭାବ ଭାବ ଆଜ ପୁଲକମନ ।
ସତ୍ୟର ପାଳକ କର୍ତ୍ତବ୍ୟ ସାଧକ
ରାମ ନିର୍ବାସିତ ଅଯୋଧ୍ୟାରୁ ବଣେ,
ଦଣ୍ଡକା ଅରଣ୍ୟେ ଅବା ହୁତାଶନେ
ପଶିଯାଅ ଖରେ ନରହି କ୍ଷଣେ ।
ତଦନ୍ତେ ପ୍ରବେଶ କଉଶଲ୍ୟା ପାଶ
ସରବ ସମେତ କୈକେୟୀସୁତ,

ହୃଦୟ ଫଟାଇ କହିଲେ ବୁଝାଇ
କପଟେ ଶ୍ରୀରାମ ହେବେ ଆହୂତ ।
"ଶ୍ରୀରାମ ଭକତ ଭରତ ସତତ
ଆସକତ ସଦା ରାମ ପ୍ରେମରେ,
ଅଘଟ ଘଟନ କରାଇ ଦହନ
ଭରତ ପରାଣ କ୍ରୂର ହବରେ ।
ଇନ୍ଦ୍ରିୟ ନିକର ଭରତ କିଙ୍କର
ଶ୍ରମ ନ୍ୟାଯ୍ୟ ମୂଲ୍ୟ ଦିଏ ସତତ,
ଅନ୍ୟାୟ ପଥରେ କେବେ ଅବସରେ
ଯାଇନାହିଁ ଦିନେ ପୁଣି ଭରତ ।
ତାହାଙ୍କ ଭକତ କଉଶଲ୍ୟା ମତ
ଦେଲେ ପ୍ରବୋଧନା ଏକାଳେ ଲବେ,
ଅନୁସରି ଧର୍ମ ଅନ୍ତ୍ୟେଷ୍ଟିର କର୍ମ
ସାରି ବାହାରିଲେ କାନନଜବେ ।
ଲଭି ସମ୍ବର୍ଦ୍ଧନା ଋଷି ମହାମନା
ଭରଦ୍ୱାଜଠାରୁ ପଥିକବ୍ରାତ (୧),
ଅତି ବ୍ୟଗ୍ରମନେ ଶ୍ରୀରାମ ସନ୍ଧାନେ
ପୁଚ୍ଛିଲେ ତାହାଙ୍କୁ ହୋଇ ଆରତ ।
ରାମ ଠାବ ପାଇ ପହଞ୍ଚିଲେ ଯାଇ
ଅନତି ବିଳମ୍ବେ ଚିତ୍ରକୂଟରେ,
ଖୋଜ ବାହାରି ଶ୍ରୀରାମ କୁଟୀର
ପଡ଼ିଲା ଶେଷରେ ନେତ୍ର-ପଥରେ ।
ରଥର ଘର୍ଘର ଗଜ-ବାଜ-ସ୍ୱର
କର୍ଣ୍ଣେ ପଡ଼ିବାରୁ ଲକ୍ଷ୍ମଣ ବୀର,
ଚଢ଼ି ତରୁ'ପରେ କହନ୍ତି ଏକାନ୍ତେ
ଅନାଇଁ ଶ୍ରୀରାମ ହୋଇ ଅଧୀର ।
ଆସୁଛି ଭରତ ସୈନ୍ୟ ସହିତ
ଯୁଝିବାକୁ ଏବେ ରାମ ନାୟକ,
ନ ମଣି ଅବଜ୍ଞା ହେଲେ ପ୍ରଭୁ ଆଜ୍ଞା
ମାରିବି ଭରତ ବନ୍ଧ ସାୟକ ।
ଲକ୍ଷ୍ମଣର ବାଣୀ ଶୁଣି ରଘୁମଣି
ପ୍ରବୋଧିଲେ ତାଙ୍କୁ ଦେଇ ସାନ୍ତ୍ୱନା,
ବିଷାଦେ ଆଗତ କୈକେୟୀ-ସୁତ
ରାମ ପ୍ରତି ତାର ନାହିଁ ଛଳନା ।
ଶତ୍ରୁଘ୍ନ-ଭରତ ସୁମନ୍ତ୍ର ସହିତ
ଶ୍ରୀରାମ-ସମୀପ ଗଲେ ତ୍ୱରିତ,
ତାହାଙ୍କ ଦର୍ଶନେ ବିକଳ କ୍ରନ୍ଦନେ
କୈକେୟୀଙ୍କ ସୁତ ହେଲେ ମୂର୍ଚ୍ଛିତ ।
ଚୈତନ୍ୟ ଲଭିଣ ଜନକ ମରଣ
ବାରତା ଶ୍ରୀରାମେ କଲେ ମୋଚନ,
ଶୁଣୁ ଶୁଣୁ ରାମ ଜାନକୀ-ଲକ୍ଷ୍ମଣ
ଅଶ୍ରୁଜଳେ ପୂର୍ଣ୍ଣକଲେ ଲୋଚନ ।
ବଶିଷ୍ଠ ମହର୍ଷି ତଥା ପୁରବାସୀ
ମାତୃଗଣ ସହ ଦେଖି ଆବାସ,
ପହଞ୍ଚିଲେ ଯାଇ ଶୋକାତୁର ହୋଇ
ଏକାନ୍ତ ଶୋକାର୍ତ୍ତ ଶ୍ରୀରାମ ପାଶ ।
ବନ୍ଧୁ ଗୁରୁଜନ ସାରି ପିତୃକର୍ମ
ପୁଚ୍ଛିଲେ ଶ୍ରୀରାମ ଭରତାଗମ,
କୈକେୟୀ ନନ୍ଦନ କରୁଣ ରୋଦନ
ଉତ୍ତରିଲେ ରାମେ ନିନ୍ଦ କରମ ।
କୈକେୟୀ ମନ୍ତ୍ରଣା ଆଣିଲା କାଳିମା
ଯୁଗ ଯୁଗ ଆମ ରବିକୁଳରେ,
ହୋଇ ତା ସନ୍ତାନ ଲଭିଲି ଜନନ
ଯାପୁଛି ଜୀବନ ବିଷାଦ ଭରେ ।
ନାହିଁ ପରିତ୍ରାଣ ତୁମ୍ଭ ବିନା ଆନ
ଘେନ ନିବେଦନ କହେ ବିନୟେ,
ଅଗ୍ରଜ ବସୋର ଅଯୋଧ୍ୟାକୁ ଫେରି
ହୁଅ ରାଜା ରଖି ଦୟା ହୃଦୟେ ।
ପାଳିବ ଭରତ ବନବାସ ବ୍ରତ
ତୁମେ ସିନା ପ୍ରଭୁ ପ୍ରାଣେ ସଜନ ।
କୋଟି କୋଟି ଲୋକ କରି ଅତି ଶୋକ
ସହୁଛନ୍ତି ଆଜ ଛାଡ଼ି ଅଶନ ।

***

(୧) ସମୂହ

## ପଞ୍ଚମ ସର୍ଗ

ଭରତଙ୍କୁ ବୁଝାଇଁ କହନ୍ତି ଶ୍ରୀରାମ
କ୍ଷୟଶୀଳ ଚରାଚର,
ଦେଖୁଛ ତ ଭବେ ସଂଯୋଗ-ବିୟୋଗ
ଲାଗିଅଛି ନିରନ୍ତର ।
ପୁତ୍ରର ମରଣେ ଝୁରୁଥାଏ ପିତା
ପିତାଲାଗି ଝୁରେ ପୁଅ,
ଜନମାଏ ପ୍ରୀତି ଜନମାଏ ଭୀତି
ଜନମ-ମରଣ ସୁଅ ।
ଋତୁ ପରେ ଋତୁ ଆସଇ ଜଗତେ
ଧରି ତା ସୁଷମା ଭାର,
କରି ଆୟୁକ୍ଷୀଣ ଚାଲେ ତା ବାଟେ
ନ ବୁଝେ କେ ଛନ୍ଦା ତାର ।
ଅଦୃଶ୍ୟ ଭାବରେ ଯଥା ଜଳ ଝରି
ଅଜଣାରେ ଯାଏ ସରି,
ତଥା କ୍ଷଣୁଁ କ୍ଷଣ ହୁଏ ଆୟୁକ୍ଷୀଣ
ନ ପଡ଼େ ଦୃଷ୍ଟି କାହାରି ।
ପାଚିଯିବା କ୍ଷଣି ତରୁ ଡାଳୁଁ ଫଳ
ପଡ଼େ ଭୂମିପରେ ଯଥା,
ଲଭନ୍ତି ମରଣ ଅବଶ୍ୟ ପ୍ରାଣୀଏ
ଜନମି ଧରାରେ ତଥା ।
ଭାଗ୍ୟ-ବଶେ ସିନା ହୁଏ ଆତଯାତ
ଜୀବ ଏ ସଂସାର ତଳେ,
କେ କରି ପାରିବ ବଶ ତାକୁ ଅବା
ଧନେ-ବଳେ-କଉଶଳେ ?
କେବେ ବା କାହାକୁ ଉପହାସ ଛଳେ
ପିନ୍ଧାଏ ରାଜ ମୁକୁଟ,
ପୁଣି ପେଲି ତାକୁ ଦଳ ହାଟେ ବାଟେ
କରୁଥାଏ ଛଟ ପଟ ।
ଆହା ! କି ବଚିତ୍ର କରେ ଯଉବନ
ଜରା ଦେଖି ନାନା ଅଙ୍ଗ,
ବନ୍ଧୁ ଏ ଶରୀର ନ ସହି କଏ ବା
କାଳର କୁହୁକ ଛଟା ।

ପଛ ଚକ ଯଥା ହୋଇ ଅନୁଗାମୀ
ଘୂରେ ଆଗଚକ ଗାରେ,
ଯଉବନ ପଛେ ପଛେ ତଥା ଜରା
ଜୀବନ ପରାଣ ଧାରେ ।
ଯଉବନ-ମଦେ ମାତନ୍ତି କଳହେ
ଧନ-ପ୍ରାଣ ନରେ ସାରି,
ନାହିଁ ଅବା ମନେ ପଳାଇବେ ଦିନେ
ନିଜ ରାହା ଅନୁସରି ।
ଯଉବନ-ଶ୍ରୀ ନିଏ କାଳ ହରି
ନ ଜଣାଇ ଲବେ ଯଥା,
ଧନ-ଗଉରବ ଛଡ଼ାଇ ନିଏ ତ
ସମୟ ନ ଜଗି ତଥା ।
ସଲିଳ-ଆଶାରେ ମରୀଚିକା-ପଛେ
ଗୋଡ଼ାଏ ପଥିକ ଯଥା,
ଅଜ୍ଞାନେ ମଣିଷେ ଧାଆଁନ୍ତି ବିଶ୍ୱାସେ
କଳ୍ପନା ପଛରେ ତଥା ।
ଆତ୍ମ ସୁଖ ଲୋଡ଼ି ନିର୍ଦ୍ଦୋଷିକୁ ତାଡ଼ି
ହୁଅଇ ଯେ ପୁଲକିତ,
ନ ଚିହ୍ନଇ ମନେ ହେବବୋଲି ଦିନେ
କାଳବାଣେ ସେ ତାଡ଼ିତ ।
କାହାରି ଶକତି ନିୟତିର ଗତି
ରୋଧିବାକୁ ଏ ଭୁବନେ,
ସମ୍ପତ୍ତି ଆଗମେ ଲଭେ ସୁଖ ଯେତେ
ସେତିକ ଦୁଃଖ ଗମନେ ।
କେ ଗଢ଼ି ପାରିବ ପାରିବ ବା କଏ
ସୁଖର ସଉଧ ଭବେ ? ,
ତରଙ୍ଗ ପରାଏ ଉତ୍ଥାନ ପତନ
ଭୋଗନ୍ତି ସଦା ସରବେ ।
ବେଢି ଯଥା ଜନ୍ଦା ଗୁଡ଼ ମାଠିଆକୁ
ଖାଆନ୍ତି ଗୁଡ଼ ପୁଲକେ,
ତଥା ଆଶାରସ୍ତୁ ଶୋଷନ୍ତି ରକତ
ଅହରହ ବେଢ଼ି ଲୋକେ ।
ସଲଖ କପାଳ ଥିବ ଯେତେ କାଳ
ଲକ୍ଷ୍ମୀ ଥିବେ ଅନୁସରି,

ତା ବହୁନେ ଆହା ! ସକଳ ଲକ୍ଷଣ
ଦିଅନ୍ତି ଭରତେ ଘେରି ।
ନାରିକେଳ ଫଳ ପରିଏ ସଜ୍ଜନ,
ବଦରିକା ସମ ଖଳ,
ଭିତରେ ପାଷାଣ ରହିଥାଏ ଲୁଚି
ବାହାର ସିନା କୋମଳ ।
କରେ ଯେ ପ୍ରୟାସ ତଣ୍ଡିବାକୁ ନିଃସ୍ୱ
ଧିକ ଧିକ ତା ଜନମ,
ଦୁରାଶାର ବଶ ହେଲେ ଦିବାନିଶି
ମିଳଇ ଫଳ ବିଷମ ।
ନୋହି ଅଳସୁଆ ହୋଇବ ଆଗୁଆ
ସଂସାର-ରଣ-ଭୂଇଁରେ,
ତେଜ ଭୋଗ-ଦୁଃଖ ମିଳେ ଯହିଁ ସୁଖ
ଯାପିବ କାଳ ତହିଁରେ ।
ଏହା କହି ରାମ ଆଦେଶିଲେ ତାଙ୍କୁ
ଫେରି ଅଯୋଧ୍ୟା ନଗରୀ,
ବୃଳ-ରାଜକାର୍ଯ୍ୟ ମାନି ପିତାଦେଶ
ଧର୍ମ ପଥ ଅନୁସରି ।
କୈକେୟୀ-ନନ୍ଦନ ରାମଙ୍କ ବଚନେ
ଉତ୍ତର ଦେଲେ ଏସନ,
ସର୍ବଗୁଣେ ପୂର୍ଣ୍ଣ ଯେ ଭବ ଲୋକେ
ପ୍ରଭୁ ପଣେ ସେ ଭଜନ ।
ସୁଖ ଅବା ଦୁଃଖ ନକରେ ବିମୁଖ
ଯାହାକୁ କେଉଁ ସମୟେ,
ତାହାର ଲଲାଟେ ଅଯୋଧ୍ୟା ମୁକୁଟ
ଧରୁ, କହୁଛି ବିନୟେ ।
ଭରତ ବଚନେ ଉତ୍ତରିଲେ ରାମ
ଆସିଲି ଏବେ କାନନେ,
ପିତୃ ସତ୍ୟ ଲଗି ଫେରିବି ଯେବେ ବା
କି ବୋଲିବେ ଏବେ ଜନେ ।
ମାନନ୍ତି ସରବେ ସର୍ବକାଳେ ଭବେ
'ସତ୍ୟ ହିଁ ପରମ ଧର୍ମ',
ଲଭନ୍ତି ଦୁର୍ଗତି ଆଚରି ଅସତ୍ୟ
ନବୁଝି ଜନେ ଏ ମର୍ମ ।

କାନନ ରାଜ୍ୟର ଏବେ ରଘୁବୀର
ହୋଇ ଅଛୁ ଅଧିକାରୀ,
ମନୁଷ୍ୟ ମାନଙ୍କ ହୁଅ ତୁମେ ରାଜା
ଫେରି ଅଯୋଧ୍ୟା ନଗରୀ ।
ଛାଡ଼ିଥିବା କାତି ଯେସନ ଭୁଜଙ୍ଗ
କେବେଁ ନକରେ ଗ୍ରହଣ,
ତେସନ ରାଘବ ଘେନିବାକୁ ରାଜ୍ୟ
ନ ମଙ୍ଗିଲେ କଦାଚନ ।
ମନୋରଥ ତାଙ୍କ ବିଫଳ ହେବାର
ଜାଣି କୈକେୟୀ-ନନ୍ଦନ,
ପାଦୁକା ଦେବାକୁ କଲେ ଅନୁନୟ
ଧରି ତାହାଙ୍କ ଚରଣ ।
ପାଦୁକା ବଢ଼ାଇ ଦେଲେ ରଘୁମଣି
ଜାଣି ତାହାଙ୍କର ମନ,
ମସ୍ତକ ଭୂଷଣ କରି ବାହୁଡ଼ିଲେ
କରି ବିଷଣ୍ଣ ବଦନ ।
ପୁର ଅଭିମୁଖେ ବାହୁଡ଼ିଲେ ଏବେ
ମେଲଣି ଘେନି ସକଳ,
କରୁଛି ପ୍ରଶଂସା କୈକେୟୀ ନନ୍ଦନ
ଯୁଗେ ଯୁଗେ ମହୀ ତଳ ।
ସୁଖ ଭୋଗ ଆଶେ ନର ନାରୀ ପାଗଳପ୍ରାୟ,
ଜାଣି ଜାଣୁ ଧରାତଳେ ସବୁ ଅନିଶ୍ଚିତ ।
କେହି ବା ଯୌବନ ମଦେ ହୁଏ ଉଚ୍ଛୃଙ୍ଖଳ,
କେହି ବା ଧନ ପ୍ରାଚୁର୍ଯ୍ୟେ ସଦା ମତୁଆଳ ।
କେହି କରି କ୍ଷମତାକୁ ଅପବ୍ୟବହାର,
ଦୁର୍ବଳ ଦଳନେ ଏଣେ ତୁରିତେ ତିଆର ।
ସ୍ୱାର୍ଥେ ମଜ୍ଜି ଜୀବନ କେ କରେ କଳୁଷିତ,
ପର ଘର ବୁଡ଼ାଇ କେ ହୁଏ ପୁଲକିତ ।
ଅସତ୍ୟର କାରବାର ବଢ଼ି ଧରା ତଳେ,
ବସାଏ ପ୍ରହାର କେବେ କେବଳ ଦୁର୍ବଳେ ।
କୁଟିଳ କୁହୁଳ ହିଂସା କେବେ ଉଠେ ଜଳି,
ଦିଏ ପୋଡ଼ି କାହାକୁ ବା ହୋଇ ମହାବଳୀ ।
ଗାଢ଼ ଅନୁରାଗ ରଖି ବିଷୟ ଭୋଗରେ,
ନିରତ ରହନ୍ତି କେହି ଅନ୍ୟାୟ ମାର୍ଗରେ ।

ପ୍ରବଳ ପ୍ରବଳ ହୋଇ ବୋଲନ୍ତି ସଂସାରେ,
ନାହାନ୍ତି କେ ତାଙ୍କଠାରୁ ବଳୀ ଶୌର୍ଯ୍ୟରେ ।
କେହିବା ମଣନ୍ତି ପରଦ୍ରବ୍ୟ ଲୋଷ୍ଟ୍ରବତ,
ଆପ୍ରାଣ ଚେଷ୍ଟିତ କେ ତା ହରଣେ ସତତ ।
ଶଠତାରେ ବଶହୋଇ କେତେ ଅଭିନୟ,
କରି, ମନେ କେହି କେହି ଜନ୍ମାନ୍ତି ବିସ୍ମୟ ।
କର୍ତ୍ତବ୍ୟ କରମେ କେହି ଅବହେଳା କରି,
ଲଭନ୍ତି ଆହା !-ସନ୍ତୋଷ 'ଅଧର୍ମ' ଆଚରି
ଶାସନରେ ଥାଇ କେତେ ଉଚ୍ଚ ପଦଧାରୀ,
କରନ୍ତି ପ୍ରୟାସ ନେବା ଲାଗି ବାହାଦୁରୀ ।
ସୁପୁରୁଷ ଜନମି କେତେ ଧର୍ମମାର୍ଗ ଧରି,
କାଟନ୍ତି ସନ୍ତୋଷେ କାଳ ଭାବନା ନ କରି ।
ଭବେ ରଖି ଚିରକାଳ ଅକ୍ଷୟ କୀରତି,
ପ୍ରାତଃ ସ୍ମରଣୀୟ ହୋଇ ଲଭନ୍ତି ସଦ୍‌ଗତି ।
ପ୍ରସବନ୍ତି ଏ ଭାରତ ସୁପୁରୁଷ ଏ ଭଳି,
ବିରାଜେ ଅଦ୍ୟାପି ସେମାନଙ୍କ ଗୁଣାବଳି ।
ଲାଗିଅଛି କେତେ ଖେଳ ନିତି ଏ ସଂସାରେ,
ପ୍ରତିକ୍ଷଣେ ନ ପଡ଼େ ବା କାହାର ନେତ୍ରରେ ।
ଦୁଷ୍ଟମତି କଇକେୟୀ କରି କଉଶଳ,
ଆପଣା ତନୟ ହେବବୋଲି ମହୀପାଳ ।
ରାମ ନ୍ୟାଯ୍ୟ ଅଧିକାର ଆଣିଲେ ଛଡ଼ାଇ,
ଅକାରଣେ ତାଙ୍କୁ ଶୀଘ୍ର ବନେ ଘଉଡ଼ାଇ,
ଭୋଗଲାଗି ପୋଷିଥିଲେ ହୃଦେ ଯେତ ଆଶା,
ଲାଜ ଛାଡ଼ି ବରିଲେ ସେ କେତେ କଟୁଭାଷା ।
ତତ୍‌କ୍ଷଣାତେ ବିଷମୟ ହେଲା ସେ କଳ୍ପନା,
ଅଚିରେ ଭୋଗିଲେ ନିଜେ ବୈଧବ୍ୟ-ଯାତନା ।
କିଏ ଜାଣିଥିଲା ସତେ କୈକେୟୀ ନନ୍ଦନ,
ଆପଣା ଆହୁତି କରି ନବ ଯଉବନ ।
ଗଲେ ଥରେ ନ ଫେରେ ଯା ଆଉ କଦାଚନେ,
ନନ୍ଦିଗ୍ରାମେ କାଳ ଏବେ କଟିବ [illegible]ନେ ।
ଅତୁଳ ସମ୍ପଦରାଜି ତେଜି ଅଯୋଧ୍ୟାରେ,
ଛାଲି ପିନ୍ଧି କଟାଇବେ ବନ ଫଳାହାରେ ।
ବୀତସ୍ପୃହ ହୋଇ ପୁଣି ବିଷୟ ଭୋଗରେ,
ଦେଲେ ମନ ଅବିରତ ଦରିଦ୍ର ସେବାରେ ।

ରାମ ପ୍ରତିନିଧି ରୂପେ ପାଦୁକା ତାଙ୍କର,
ଥୋଇ ଶାସୁଥିଲେ ରାଜ୍ୟ ପୂଜି ନିରନ୍ତର ।
ଭେଦାଭେଦ ନ ରହିଲା ଶାସିତ-ଶାସକେ,
ନ ରହିଲେ ରାଜ୍ୟେ କେହି ଶୋଷିତ-ଶୋଷକେ ।
ଉଡୁଅଛି ତ୍ୟାଗଧ୍ୱଜା ହୋଇ ଫର ଫର,
ହେଲେ ହେଁ ପୁରୁଣା ଅଛି ଥିବ ନିରନ୍ତର ।
ଅହରହ ଗଣୁଥାନ୍ତି ରାମ ଆଗମନ,
ଧନ୍ୟ ଧନ୍ୟ ଭରତ ହେ କୈକେୟୀ ନନ୍ଦନ ! ।

ପ୍ରଜାକୁଳ ହିତେ ଭରତ ନିରତ
ରହୁଥିଲେ ତତପର,
ତୋଷୁଥିଲେ ତାଙ୍କ ମନ ଅହରହ
କହି ବଚନ ମଧୁର ।
ଯଥା ଯୋଗ୍ୟ ମାନ୍ୟ ଗୁରୁଜନେ ରଖି
ପରଦୁଃଖେ ଅନୁରାଗ,
ଶାସୁଥିଲେ ରାଜ୍ୟ ନୀତି ଅନୁସରି
ତେଜି ଅହଂକାର ରାଗ ।
କ୍ରୀଡ଼ା କଉତୁକ- ଦୂରରେ ରହି ସଦା
ଆଚରି ଯତି ଜୀବନ,
ଗୁଣୁଥିଲେ ଦିନ ପ୍ରଜାକୁଳ ସଙ୍ଗେ
ଶ୍ରୀରାମଙ୍କ ଆଗମନ ।
ନନ୍ଦିଗ୍ରାମେ ରହି କେଶକରି ଜଟ
ପିନ୍ଧିଲେ ଛାଲ ବକଳ,
ଶାସିଲେ ରାଇଜ ଫଳ ମୂଳ ଖାଇ
ଚଉଦ ବରଷ କାଳ ।
ତ୍ୟାଗ ଭକ୍ତି ସେବା ସଦ୍‌ଗୁଣନିଚୟ
ହୋଇଥାନ୍ତି ଯହିଁ ଠୁଳ,
ପଳାନ୍ତି ରେ ଡରି ଲୋଭ କ୍ରୋଧ ଦ୍ୱେଷ
ଆଦି ଦୁଷ୍ଟ ରିପୁକୁଳ ।

## ପଞ୍ଚବଟୀ ବନେ ରାମ

ଏଣେ ରଘୁମଣି ପଞ୍ଚବଟୀ ବନ
ସୁମିତ୍ରା ନନ୍ଦନ ସୀତା ସହିତ,
ଯାଇ ଅବସ୍ଥାନ କଲେ ବହୁଦିନ
ରହି ଜନାଗମ ସଦା ରହିତ ।

କୁଡ଼ିଆ ଆଗରେ    ଦିନେ ମୋଦଭରେ
ଆସି କ୍ରୀଡାକଲା କୁରଙ୍ଗ ଗୋଟି,
ତା ହେମ ବରଣ    କଉତୁକ ଖେଳ
ଦେଖି ସୀତାଗଲେ ଆନନ୍ଦେ ଲୋଟି ।
ସୀତା ମନ ଜାଣି    ହୋଇ ଧନୁଷ୍ପାଣି
ଜଗାଇ ଲକ୍ଷ୍ମଣ ଧାଇଁଲେ ରାମ,
ମୃଗ ଖେଳି ଖେଳି    ଦୂରେ ଗଲା ଚଳି
ହେଲାଶେଷେ ତାର ପ୍ରାଣ ବିରାମ ।
ଗଲା ବେଳେ ପ୍ରାଣ    ଡ଼ାକିଲା ଲକ୍ଷ୍ମଣ
ରକ୍ଷାକର' ବୋଲି ଅତି ତୁରିତ,
ଏ ଶବଦ ଶୁଣି    ଶ୍ରୀରାମ ରମଣୀ
ପଠାଇ ଲକ୍ଷ୍ମଣ ହେଲେ ଦୁଃଖିତ ।
ଲଙ୍କାର ରାଜନ    ବିଶ୍ରବା ନନ୍ଦନ
ପହଞ୍ଚି ଏକାଳେ ଯତି ବେଶରେ,
ମାଗିଲା ସୀତାଙ୍କୁ    'ଦିଅ ଭିକ' ବୋଲି
ଦେଉ ଦେଉ ଭିକ ନେଲା ରଥରେ ।
ଅଶୋକ ବନରେ    ଅସୁରୀଙ୍କ ମେଳେ
ରଖିଲା ଯତନେ କରି ଗୋପନେ,
ଏଣେ ବୈଦେହଇ    ସୀତାଙ୍କୁ ନପାଇ
ଖୋଜି ବୁଲୁଥାନ୍ତି କରି ନନ୍ଦନ ।
ଭାଗ୍ୟବଶେ    ଭେଟି ହନୁମାନେ
ସୁଗ୍ରୀବ ସହିତ ବାନ୍ଧିଲେ ବନ୍ଧୁ,
ପୁଣି ବାଳୀ ମାରି    ସୀତା ଠାବ କରି
ଲଙ୍କାଗଡ଼େ ଗଲେ ଆକ୍ରମି ସିନ୍ଧୁ ।
ଅତି ଧର୍ମ୍ମ ପରାୟଣ    ସହୋଦର ବିଭୀଷଣ
ଗଲା ବୁଝାଇ ରାବଣ ଦେଖି ଘଟଣ,
ପାପେ ନିମଗ୍ନ ଯା ମନ    ଶୁଣେ ସେ କି କା ବଚନ
ଫେରିଏବେ ବିଭୀଷଣ ନେଲା ଶରଣ ।
ଆସି ସୁଖେ ରାମ ଚରଣେ
ସବଂଶ ହେଲେ ନିହତ ଏବେ ଏ ରଣେ ।
କୁକର୍ମ୍ମ ହେଲେ ଜଡ଼ିତ    ପତନହିଁ ସୁନିଶ୍ଚିତ
ଏଭଳି ଘଟନ ଶତ ଶତ ନେତ୍ରରେ,
କଡ଼ୁଥାଏ ନିରନ୍ତର    ତଥାପି ନବୁଝି ନର
ହୁଏ ବୃଥା ଆଗଭର କୁକର୍ମରେ ।
ବହୁ ମନେ ମନେ ଅନନ୍ଦ
ନ ବିଚାରି ତଳେ ହୃଦେ ଭଲ ବା ମନ୍ଦ ।
ଜୟଧ୍ୱନି ଘନ ଘନ    କରନ୍ତି ବାନର ଗଣ
ରାବଣର ନିପାତନ ଲାଗି ଗରବେ,
କଲେ କୁସୁମ ବରଷା    ସରଗୁଁ ସୁରେ ସହସା
ହନୁ ସୀତାଙ୍କ ନିକଷା (୧) ଗମିଲେ ଜବେ ।
ଭକ୍ତିଭରେ ବନ୍ଦି ପୟର
ଜଣାଇଲେ ତାଙ୍କୁ ଏ ମଙ୍ଗଳ ଖବର,
ସୀତା ମନ ଛନ୍ନ ଛନ୍ନ    ଶ୍ରୀରାମ ଦରଶନ
ଲାଗି, ତେଣୁ ହନୁମାନ କହନ୍ତି ମୋଦେ ।
ବିଷଣ୍ଣ ନକର ମନ    ଧରି ପୁଷ୍ପକ ବିମାନ
ଆସୁଛନ୍ତି ରଘୁବୀର ବିଜୟନାଦେ
ଟିକି ଫେରି ସାକେତପୁର,
ତବ ଶୋକାନଳ କଲା ଏ ଲଙ୍କାଜୁର ।
ଅଙ୍ଗଦ ରାମ ଲକ୍ଷ୍ମଣ    ସଙ୍ଗେ ସୁଗ୍ରୀ ବିଭୀଷଣ
ଏବେ ଅଶୋକ କାନନ ଗଲେ ସତ୍ୱରିତ,
ସୀତାଦେଖି ସୀତାନାଥ    କହିଲେ ହୋଇ ଉଷତ
ଅନାଇଁଥିବେ ଭରତ ଅଯୋଧ୍ୟାପୁର ।
ବାହୁଡ଼ିବା ମଠ ନକରି
ବିଭୀଷଣେ ରାଜ୍ୟଦେଇ ଅଗୋ ! ସୁନ୍ଦରି
ରାମ ଲଙ୍କା ସମର୍ପଣ    କରିମୋଦେ ବିଭୀଷଣ
ଚଢ଼ି ପୁଷ୍ପକ ବିମାନ ସୀତା ଲକ୍ଷ୍ମଣ
ଆଜ ରାଜ୍ୟ ଅଭିମୁଖେ    ବାହୁଡ଼ିଲେ ଅତିସୁଖେ
ଦୃଶ୍ୟଦେଖି ଅଧୋମୁଖ ମନ ହରଣ,
କରି ପହଞ୍ଚିଲେ ଯେ କାଳେ
ଭରତ ଦେଲେ ସମର୍ପି ରାଜ୍ୟ ସେକାଳେ ।
ତାହାଙ୍କର ଜଟକେଶ    ନନ୍ଦିଗ୍ରାମେ ଅଧିବାସ
ଦେଖି ବଇଦେହୀ-ଇଶ ହେଲେ ବିବଶ,
ବଶିଷ୍ଠଙ୍କ ଠାରୁ କଥା    ଶୁଣି ହୃଦେ ବହୁ ବ୍ୟଥା
ପ୍ରଶଂସିଲେ ଭ୍ରାତୃସଙ୍ଘା,(୨) ମନ ସରସ

୧) ନିକଟ  ୨) ସଚ୍ଚରିତ

କରି ଗୁରୁଜନେ ନମିଲେ
ସମାରୋହେ ସର୍ବେ ତାଙ୍କୁ ପାଛୋଟି ନେଲେ,
ଏଣେ ବାନର ସଇନେ   ଶ୍ରୀରାମ ପ୍ରଶଂସା ଗାନେ
ବଖାଣି ପରଜାଗଣେ ଲଭନ୍ତି ପ୍ରୀତି ।

ରହି ସେଠି କେତେ ଦିନ   ମେଲାଣି ମାଗି ବହନ
ଗଲେ ଆପଣା ଭବନ ବିଷଣ୍ଣ ମତି,
ଧନ୍ୟ ଧନ୍ୟ ରାମ ମହିମା
ଭଜିଲେ ନରହେ ତଳେ ମନେ ବଡିମା



# ଆନ୍ଦୋଳନ

## ପ୍ରଥମ ସର୍ଗ

ଧୀରେ ଧୀରେ ହ୍ରାସ ପାଇଲା ଭାରତର ଏକତା,
ଉଭେଇ ଗଲାଣି ମାନସୁଁ ଦେଶବାସୀ-ଦୃଢ଼ତା ।
ଲୋଲୁପ ନୟନ ପଡ଼ିଲା କଟମଟେ ସହସା,
ବ୍ରିଟେନ ଶ୍ୱେତାଙ୍ଗେ ହୋଇଲେ ଏ ଦେଶର ଭରସା
ଦିନୁଁ ଦିନ କରି ଭାରତରେ ଅଧିବାସୀଏ ସଢ଼ି,
ନ କହନ୍ତି ପଦେ କାହାକୁ ଅନ୍ଧକାରରେ ପଡ଼ି ।
ବିବିଧ ଆଇନ କରିଲେ ଚିରି ଭୂଇଁ ରଚନା,
କ୍ରମେ ଉଡ଼ିଗଲା କର୍ପୂର ଖାଲି ପଡ଼ିଛି କନା ।
ଅନାବୃଷ୍ଟି ଅତିବୃଷ୍ଟିରେ ଶସ୍ୟ ଯାଉଛି ଉଡ଼ି,
ଜଠର ଦାଉରେ ପରଜା ଯାଏ ଧରମ ଛାଡ଼ି ।
ନ ମିଳେ ସହଜେ ବସନ ଲାଗି ରହେ କାନ୍ତାର,
ଅସହାୟ ଆଜ ଭାରତ ଲଭିବାକୁ ନିସ୍ତାର ।
ଘର ଛାଇବାକୁ କେରାଏ ନଡ଼ା ନପାନ୍ତି ଲୋକେ,
କେତେ ଆଦର କାଟନ୍ତି ଦିନ ଉପାସ-ଶୋକେ ।
ନ ମିଳଇ ପାଣି ମୁନ୍ଦାଏ ଜଳାଧାର ଅଭାବେ,
ଜୀବନ ବିନା କା ଜୀବନ ଯାଏ ଗୁଡ଼ି କି ଦ୍ରବେ ।
କବଳିତ ନର ନାଶଏ ମହାମାରୀ ବସନ୍ତ,
ନ ପାନ୍ତି ବଣରୁ ଖଣ୍ଡିଏ କାଠ ଜାଳ ନିମନ୍ତେ ।

ଠାବେ ଠାବେ କେତେ ନଗରେ ବନ୍ଧ ପାଶ୍ଚାତ୍ୟାଳ,
ଦୋହଲାଇ ଦେଲା ଦେଶର ଯଶ-ସଂସ୍କୃତି-ଶୀଳ ।
ଦେଖାଇ ଶୋଣିତ କୃପାଣ ଗୋରା ଶାସକ ଚିତ୍ତ,
କୁହାଇ ନଦେଇ ଶାସନ୍ତି ଲୁଟି ଧନ ସମ୍ପତ୍ତି ।
ଗୃହୁଙ୍କ ଦେଖାଇ କୁଟୀର-ଶିଳ୍ପ କରି ବିନାଶ,
କାରିଗରଙ୍କର କ୍ରମଶଃ ବଢ଼ାଇଲେ ପରାସ ।
ଖୁନ୍ଦା ପଣ୍ୟ ଦ୍ରବ୍ୟ ବଜାରେ ପର ଦେଶରୁ ଆସି,
ଠକୁଛି ବଣିକ ଗ୍ରାହକେ ମଧୁ ବଚନ ଭାଷି ।
ଯେ ଦେଶକୁ ଘେରି ରହିଛି ପାରାବାର ସୁନୀଳ,
ତା ସନ୍ତାନେ ମନା ଆଜି ଆଣିବା ତା ସଲିଳ ।
ଏ ଶୋଷଣ ଘାତ ଦର୍ଶନ ହେଲା କ୍ରମେ ଦୁଃସହ,
କଂଗ୍ରେସର ମଞ୍ଜି ପୋତିଲେ ଦେଶ ପ୍ରେମୀ ନିବହ ।
ଦେଢ଼ଶ ବରଷ ଇଂରେଜ ଶାସନ
କାଳକ୍ରମେ ଗଲା ବିତି,
ନ ସହିଲା ଧରା ବଢ଼ିଲାଣି ଭରା
ଦେଖି ଏ ଘୋର ଅନୀତି ।
ଦମ୍ଭୀଙ୍କର ପିଣ୍ଡ କେତେ ଠେକ ମୁଣ୍ଡ
ମୂର୍ଚ୍ଛିଲେ ଧନ ସମ୍ପତ୍ତି,
ହେଲେ ଆଗଭର ଜନମ ଭୂଇଁର
ମୁକତି ଲାଗି ସମ୍ପ୍ରତି ।

ମାରୁତ ବେଗରେ ଗ୍ରାମ ଗ୍ରାମାନ୍ତରେ
ବେଢ଼ିଥିଲା ଏ ବାରତା,
'ସହିଲେ କଷଣ ଉଦ୍ଭବ କି ପଣ?
ନଥିଲେ ଦେଶେ ଏକତା।
ଉମେଶ-ଗୋଖେଲ- ବାଳ ଗଙ୍ଗାଧର-
ହଂସରାଜ-ଦାଦାଭାଇ,
ଭ୍ରମି ସ୍ଥାନୁ ସ୍ଥାନ କଲେ ସଙ୍ଗଠନ
ବିଦେଶୀ ତଡ଼ିବା ପାଇଁ।
ଧଳାକଳା ଭେଦ କରିବାକୁ ଛେଦ
ଏଣେ ଗାନ୍ଧି ଆଫ୍ରିକାରେ,
ବିସର୍ଜି ସର୍ବସ୍ୱ, ସହି ନାନା କ୍ଲେଶ
ଲଢୁଥିଲେ ଅହିଂସାରେ।
କୋଡ଼ିଏ ବରଷ ଲଢ଼ି ପଉରୁଷ
ଲଭି ଫେରିଲେ ସ୍ୱଦେଶେ,
କରି ଅନୁଧ୍ୟାନ ଭାରତ ବିଧାନ
ନେତୃତ୍ୱ ଦେଲେ କଂଗ୍ରେସେ।
ମୋଟା ଖଦି ପିନ୍ଧି ଆସେ ଆମ ଗାନ୍ଧି
ବାଡ଼ି ଖଣ୍ଡେ ହାତେ ଧରି,
ବିଳାତରେ ପଢ଼ି ସବୁ ଢଙ୍ଗ ଛାଡ଼ି
ଦିଶନ୍ତି ବାବାଜୀ ପରି।
ପାଦେ ବୁଲି ବୁଲି ପ୍ରତି ପୁରପଲ୍ଲୀ
କଲେ ସେ ଏବେ ଦର୍ଶନ,
ପରଜା ବକ୍ଷରେ ରଜା ମୋଦଭରେ
କରଇ ସଦା କ୍ରୀଡ଼ନ।
ଚଛିତ-ଶ୍ରମିକ- ଖିଆଲରେ ମାଲିକ
ବିନ୍ଧରଇ ଅବିରତ,
ଏଣେ ସାଉକାର ଭିତରେ ଗନ୍ଧାଧର
ଶୋଷି ଖାତକ ରକତ।
ଲଭନ୍ତି ପ୍ରସାର ଲାଞ୍ଛନା-ଲଞ୍ଛର
ହାକିମର ନାଲି ଆଖି,
ଦଳନେ ଦୁର୍ବଳ, ଭରତ ପ୍ରବଳ
ଯୋଡ଼ଇ ଅସତ୍ୟ ସାକ୍ଷୀ।
ବିଦେଶୀ ବାକ୍ଷଣେ ଭାଷିଲେ ଭାଷଣେ
ସତତ କହେ ଦୁନିଆଁ,

କଲେ ଆଲିଙ୍ଗନ ଅନ୍ୟାୟ ବିଧାନ
ଯାଏ ମଣିଷ ପଣିଆ।
ହଏ କେ ଫୋପାଡ଼ ଅଣ୍ଟା ଲୁଗା କାଢ଼
ଆଦେଶିଲେ ସରକାର,
ବିବେକର ମନା ଶୁଣୁଥିଲେ ସିନା
ନ ହୁଏ କେ ହଇବର।
ଜନ ପ୍ରଣୟନ ଅନ୍ୟାୟ ବିଧାନ
ନକରି ଗ୍ରହଣ ଲବେ,
ଦମ୍ଭ ଧରି ହୃଦେ ଭକ୍ତି ବନ୍ଧୁ ପଦେ
ରଖି ଚଳିବା ଏ ଭବେ।
କେତେ ବା ହାକିମ କରନ୍ତି ଜୁଲମ
ପୁଣି ଚହାନ୍ତି ଦମନେ,
ସହନଶୀଳତା ଅବା ସୁଜନତା
ଅଛି କି ଆଜ ଶାସନେ।
ଧରି ରାଜଦଣ୍ଡ ବିନା ଭୁଜାଦଣ୍ଡ
ହୁଏ କି ନ୍ୟାୟ ବିଗ୍ରହ,
ହୁଡ଼ିଗଲେ ଥରେ ବାଜଇ ଅଚିରେ
ପଛୁ ଅଲକ୍ଷ୍ୟ ପ୍ରହାର।
ସୃଷ୍ଟିର ବିଧାନ ବିନାଶ ସାଧନ
ଜାଣି ଜାଣି ଏହା ଜନେ,
ହୋଇ ଲୋଭପର ପର ଉପକାର
ନ ଭାବନ୍ତି ତିଳେ ମନେ।
ବର୍ଜି ବାହୁବଳ ଅର୍ଜି ଆତ୍ମବଳ
ମାନସ କଲେ ଦମନ,
ନଶ୍ୱର ଜୀବନ ଅବା ମାନ ଧନ
ଜିଣିବାକୁ ଏ ଭୁବନ।
ହୋଇ ପ୍ରେମେ ବଶ ସହୁଥିଲେ କ୍ଲେଶ
ସହଜ ଅରାତି-ଜୟ,
ସାଧୁତା ଅଙ୍କୁର ସ୍ୱାର୍ଥ ପରିହାର
ରଖେ କାରତ ଅକ୍ଷୟ।
ସମାଜ କଲ୍ୟାଣେ ହିଂସା ନିବାରଣେ
ମନପ୍ରାଣ ଦେବା ତାଙ୍କ,
ପଶିବା ସମରେ ହିଂସ୍ରକ ମନରେ
ଅହିଂସା-ଆଲୋକ ଜାଳି।

ସତ୍ୟର ସନ୍ଧାନେ     କେତେ ମହାଜନେ
ତେଜିଣ ଆପଣା ଘର,
ହୋଇ ବନବାସୀ     ସମାଧିରେ ବସି
ଜଗତେ ହେଲେ ଅମର ।
ଗରିବର ସେବା     ରାତି ଅବା ଦିବା
କରି ଲଭେ ଯେ ତୃପତି,
ସେହି ଆଶୀର୍ବାଦ     ପରମେଶ ପଦ
ହୁଅଇ ଶେଷେ ପ୍ରାପତି ।
ପରଧନ ପ୍ରତି     ନ ବଳାଇ ମତି
ସୁଖେ କଟାଇବା ଦିନ,
ଲୋଡ଼ା ନାହିଁ ଯାହା     ନ ରଖିବା ତାହା
ନ ହେବା ସଂଯମ ହୀନ ।
ପିନ୍ଧିବା ସ୍ୱଦେଶୀ     କରି ମନ ଖୁସି
ତେଜିବା ବିଦେଶୀ ଛଟା,
ଅନ୍ୟାୟ କଥାରେ     ନ ନୋଇଁବା ଶିରେ
ଯେତେ ହେଲେ ହଟହଟା ।
ଏଦେଶ ସମ୍ବଳ     ବ୍ୟୟିତ କେବଳ
ଗୋରା ଉପକାର ଲାଗି,
ବଢଇ ମଳତା     ପୁଣି, ଦରିଦ୍ରତା
ଖାଉଛି ଭାରତ ମାଗି ।
କେତେ ହିନ୍ଦୁଭାଇ     ଗ୍ରାମ କୋଣେ ଥାଇ
ନ ବସନ୍ତି ଆମପାଖେ,
କରିବାକୁ ଦୂର     ବନ୍ଧ ପରିକର
ହେଉ ଏ ଦେଶ ଉଲ୍ଲାସେ ।
ନିଜେ ସୂତା କାଟି     ଯୋଡ଼ାଇବା କଟି
ନରହିଁ ପରକୁ କଦା,
ବିଦେଶୀ ବସନ     କରିଣ ବର୍ଜନ
ସ୍ୱାବଲମ୍ବୀ ହେବା ସଦା ।
ଆମ ସହଯୋଗ     ଲଭି କରେ ଭୋଗ
ଗୋରା ଜାତି ଏ ଦେଶରେ,
କରିଣ ଶପଥ     ଧରି ଶାନ୍ତି ପଥ
ଠିଆ ହେବା ତା ଆଗରେ ।
ବରଜ ଅନ୍ଧାର     ହୁଅ ଉତପର
ପୁର ପଲ୍ଲୀବାସୀ ଜନେ,
ଉଡ଼ିବା ଅରାତି     ଲଭିବା ଖ୍ୟାତି
ରହୁ ଯଶ ତ୍ରିଭୁବନେ ।"
ରାଜାଙ୍କ-ରାଜେନ୍ଦ୍ର     ସୁଭାଷ-ନରେନ୍ଦ୍ର
ଜବାହାର ବଲ୍ଲଭଇ,
ଉତ୍କଳର ମଣି     ଗୋପବନ୍ଧୁ ଗୁଣୀ,
ସୀତାରାମେୟା ଦେଶାଇ-
ହରିହର-ମହା-     ତାବ-ବିଶ୍ୱନାଥ
ନୀଳକଣ୍ଠ-ଗୋଦାବରୀଶ,
ଶୁଣି ଏ ଭାଷଣ     ଘେନିଲେ ପ୍ରମାଣ
ହଟାଇବାକୁ ଏ ଅରି ।
ଅହିଂସା ହୁତାଶ     ତେଜ ସାରାଦେଶ
ଆଲୋକିଲା ପ୍ରତିପୁର,
କସ୍ତୁରବା-ବଚନେ     ବହୁ ନାରୀଗଣ
ହେଲେ ଏବେ ଆଗଭର ।
ଯେତେ ନିର୍ଯ୍ୟାତନ     ଆସେ ଦିନୁ ଦିନ
ନ କଲେ କେହି ପରୁଆ,
ମଣନ୍ତି ପୌରୁଷ     କାରାଗାର-ବାସ
ନ ବହି କଏ ଅସୂୟା ।
କରନ୍ତି ଅମାନ୍ୟ     କେତେ ବା ଆଇନ
ଅନ୍ୟାୟ ରୋଧିବା ଲାଗି,
କେବେ କା ଶରୀରେ     ପଡ଼ିଲେ ପଥର
ସରବେ ଉଠନ୍ତି ଜାଗି ।
ଏକ ପକ୍ଷେ ଜାତି     ଅନ୍ୟ ପକ୍ଷେ ମାତି
ରଖି ଯୁଝିଲେ ଏ ରଣ,
ଶେଷେ ଗୋରା ଜାତି     ଗଲା ଦେଶୁଁ ହଟି
ନ ଚଳିଲା ତା'ର ପଣ ।
ଊନବିଂଶ ଶତ     ଚତ୍ୱାରିଂଶ ସାତ
ଅଗଷ୍ଟ ପନ୍ଦର ଦିନ,
ଦାସତ୍ୱର ବେଡ଼ି     ଗଲା ଜବେ ଛିଡ଼ି
ହେଲା ଭାରତ ସ୍ୱାଧୀନ ।
କରି ଷଡ଼ଯନ୍ତ୍ର     ପଟାଇଲା ମନ୍ତ୍ର
ଏ କାଳେ ଗୋରା ଯବନେ,
ଦେଶ ହେଲା ଭାଗ     ଆଣିଲା ବିରାଗ
ମହାମାନବଙ୍କ ମନେ ।

ଯିବାବେଳେ ଗୋରା ଶାସନ କରନ୍ତ୍ର ପ୍ରଦାନ,
ହିନ୍ଦୁସ୍ଥାନ-ପାକିସ୍ଥାନ କରିଲେ ବିଧାନ ।
ନଥିଲା ବଳକା ପାଣ୍ଠି କିଛି ରାଜକୋଷେ,
"ମହାତ୍ମାଙ୍କ ଜୟ' ବୋଲି ଦେଶସାରା ଘୋଷେ ।
ଯବନ ହିନ୍ଦୁଙ୍କ ମଧ୍ୟେ ଉପୁଜିଲା କଳି,
ହଣାହଣି ହେଲେ କେତେ କେ ପାରେ ତା କଳି ।
ବହିଲା ରକତ ସ୍ରୋତ ଏ ପ୍ରାନ୍ତୁ ସେ ପ୍ରାନ୍ତ,
ବୁଝାଇ ବୁଝାଇ ନେତାଗଣ ହେଲେ କ୍ଲାନ୍ତ ।
ପଦବ୍ରଜେ ମହାତ୍ମାଜି ଏଣେ ତେଣେ ବୁଲି,
ଲିଭାଇଲେ ହିଂସା-ବହ୍ନି କେ ଦିବ ତା ଭୁଲି,
ନିୟତିର ଲେଖା କାହିଁ କେ କରେ ଖଣ୍ଡନ,
ବନ୍ଧୁକ ହାତେ ଶେଷେ ଲଭିଲେ ମରଣ ।
ଶତଦୁଃଖୀ ଅସହାୟ ଭବେ ଅଗଣନ,
ଘଟାନ୍ତି ବିପ୍ଳବର ଶଙ୍ଖୁଳ ଦିନ ଦିନ ।
ହିଂସା-ଲୋଭ-କ୍ରୋଧ ଆଦି ଦେଖାଇ ବିକ୍ରମ,
କ୍ଷଣ ଲାଗି ଚିତ୍ତ ଲଭେ ଆନନ୍ଦ ପରମ ।
ଯେସନ ମଳକୁ ଯାଏ ତୃଣ ଲାଜକୁଳି,
ପରଶିବା ସଙ୍ଗେ ସଙ୍ଗେ ମାନବ ଅଙ୍ଗୁଳି ।
ପରଶି, ହୃଦୟୁ କ୍ରୋଧ-ହିଂସା ଆଦି ତଥା,
ବୁଦ୍ଧି ବୃତ୍ତି ଝାଉଁଳଇ, ନୁହେଁ ଏ ଅନ୍ୟଥା ।
ମାଡ଼ିଆସେ ବ୍ୟାଧିକୁଳ ସଂଯମ ବିହୁନେ,
ଲଭେ ସୁଖ ଆମରଣ ସଂଯମୀ ଜୀବନେ ।
ଶୋକ ଢେଉ ଖେଳିଗଲା ଧରଣୀ ବକ୍ଷରେ,
ହେବ କି ସେ ଭେଟ ଆଉ ଯେ ଯାଇଛି ଥରେ ।
ଶିଖାଇଲେ ମନ୍ତ୍ର ଯାହା ପାଳୁଥିବା ନିତ୍ୟ,
ଠଜରେଇ, ସୁମରିବା ଦୁନିଆଁର ସତ୍ୟ ।
ନବ ସମ୍ବିଧାନ ଗଢ଼ାହେଲା ଭାରତର,
ସୁବିଧା ରହିଲା ବହୁ ଯହିଁ ଦଳିତର ।
ଉଠାଗଲା ପୂର୍ବରୁ ଥିବା ଯେତେ କଟକଣା,
ପ୍ରାଥମିକ ଶିକ୍ଷା ପିଲେ ଲଭିଲେ ମାଗଣା ।
ଛୁଆଁ ବା ଅଛୁଆଁ କିଛି ନ ରହିବ ଆଉ,
ଉଭେଇ ଗଲାଣି ଏଣେ ହାକିମଙ୍କ ଦାଉ ।
ସାବାଳକ ଭୋଟ ପ୍ରଥା ଚଳିଲାଣି ଦେଶେ,
ନରନାରୀ ମଧ୍ୟେ ଭିନ୍ନ ନ ରହିଲା ଲେଶେ ।
ଧର୍ମ ଜାତି ନିର୍ବିଶେଷେ ସୁଯୋଗ ସମାନ,
ସଂଖ୍ୟାଧିକ ଦଳେ ଦେଶ ଶାସିବା ବିଧାନ ।
କଂଗ୍ରେସର ପୂଜ୍ୟମାନ୍ୟ ନେତା ଜବାହାର,
କୋଟି କୋଟି ଜନତାର ଆଜ କର୍ଣ୍ଣଧାର ।

* * *

## ଜବାହାର

ଭାରତ-ଗଗନେ ଉଇଁ ଶୁଭକ୍ଷଣେ
କର୍ମବୀର ଜବାହାର ।
ଗୃହଲୋଭ-ମୋହେ ପଶିଲେ ବିଗ୍ରହେ
ନାହିଁ ଡର କାରାଗାର ।
ଯୁବକ ରକତ ଦେଶଲାଗି ବ୍ୟସ୍ତ
ହେବେ କି କାହାବଚନେ ?
ସମ୍ପଦ ଅତୁଳ ତେଜିଣ ସକଳ
ପିନ୍ଧିଲେ ଦେଶୀ ବସନ ।
ବାଗ୍ ବାଣ ଫୁଟାଇ ଚମକାନ୍ତ ମହୀ
ଦେଖି ଅନ୍ୟାୟ ବିଗ୍ରହ,
ସୁପ୍ତ ଦେଶବାସୀ ଉଠିଥିଲେ ହସି
ପିନ୍ଧି ଶୃଙ୍ଖଳାର ହାର
ପିତା ମାତା ପତ୍ନୀ ତାଙ୍କ କଥା ଶୁଣି
ଦେଶ ପ୍ରେମ ଗଲେ ଭାସି
ନ ବରିବ ଆନ କଲେ ପୁଣି ଦାନ
ଅତୁଳ ସମ୍ପଦ ରାଶି ।
ବାର କାରାଗାର ପୁଣି ବାର ବାର
ମନେ ଲଭନ୍ତି ପୁଲକ,
ବଚନେ ବଚନେ କି ଅବା ଭାଷଣେ
ସତତ ଗାନ୍ଧି-ଗ୍ରାହକ ।
ଭୂମି ଜନ ପଦ ଗାନ୍ଧିଙ୍କ ଦାୟାଦ
ହୋଇ ଆଣିଲେ ଏକତା ,
ଭୁଲିବ କି କ୍ଷଣେ ତାଙ୍କ ଅବଦାନେ
ଆ[illegible]ଭାରତ ଜନତା

***

## ପଞ୍ଚବାର୍ଷିକ ଯୋଜନା

ଆରମ୍ଭ ହୋଇଛି ଭାରତରେ କଂଗ୍ରେସର ଶାସନ,
ଦେଶର ଉନ୍ନତି ବିଧାନେ ଲାଗେ ଘୋରଚିନ୍ତନ ।
କାଶ୍ମୀର ସମସ୍ୟା ନତୁଟି ହୁଏ ଜଟିଳତର,
ସାନ ସାନ ଉପନିବେଶେ ମାଡ଼ି ବସିଚି ପର ।
ଯବନର ଆଳ ଶ୍ରବଣେ ଲାଗେ ଅତି ବିସ୍ମୟ,
ଭାରତ ବିରୁଦ୍ଧ ପ୍ରବୃତ୍ତି ଅହରହ ଅଥୟ ।
ଦଳ ଦଳ ହୋଇ ହିନ୍ଦୁଏ ଏବେ ପ୍ରାଣ ବିକଳେ,
ପଳାଇ ଆସନ୍ତି ଭାରତେ ପାକିସ୍ଥାନୁଁ ଚଞ୍ଚଳେ ।
ଏ ପଟେ ବିରମା ହେଲାଣି ତଡ଼ି ଆମ ଭାଇଙ୍କି,
'ବୋଝ ପରେ ବିଡ଼ା ନଳିତା' ଚଳ ଖରଚ ଝିଙ୍କି
ପଞ୍ଚବାର୍ଷିକ ଯୋଜନା ଆସେ ଏକାବେଳକୁ,
ଉପାଡ଼ିବା ଲାଗି ଦେଶରୁ ଚିର ଦରିଦ୍ରତାକୁ ।
ବଣ ଜଙ୍ଗଲରେ ସଡ଼ନ୍ତି କେତେ ଆଦିମବାସୀ,
ସେମାନଙ୍କ ହିତ ସକାଶେ ଜବାହାର ପ୍ରୟାସୀ ।
ବାଣିଜ୍ୟ ସୁବିଧା ନିମିତ୍ତ ରାସ୍ତାଘାଟ ନିର୍ମାଣ,
ଲାଗିଅଛି ଅନ୍ଧ କନ୍ଦରେ ସବୁ ନୂଆ ଭିଆଣ ।
ସମବାୟ ସୂତ୍ରେ ଦେଶକୁ ଆଗେଇବା ସକାଶେ,
କଳ୍ପନା ଜଳ୍ପନା ଚାଲିଛି ଦରିଦ୍ରତା-ବିନାଶେ,
ମୂଳଲକ୍ଷ୍ୟ ବ୍ୟୟସଙ୍କୋଚ କେବେ ନହିବା ଭୁଲି,
ସାଧୁତା ପ୍ରଚାର କରିବା ଗ୍ରାମ ଗହଳେ ବୁଲି,
କାଗଜକୁ ଗଢ଼ ଥୋଇଲେ ହୁଏ ସବୁ ବିଫଳ,
ସହଯୋଗ ବିନା ନିରତ ସମବାୟ ଅଚଳ ।
ସେବା ମନୋଭାବ ହୃଦୟେ ପୋଷି ଅନବରତ,
ଲୋଡ଼ା ହେଲେ ପରପାଇଁକି ଦେବା ନିଜ ରକତ ।
ଲାଭ ଉଠାଇବା ଆଶାରେ ପଶି ଅନୁଷ୍ଠାନରେ,
ନ ବୁଡ଼ାଅ ମୂଳଧନକି ଖର୍ଚ୍ଚ କରି ଇଚ୍ଛାରେ ।
ଯେତେଣି ଅନାଇଲେ ଦିଶଇ କର୍ତ୍ତବ୍ୟର ଅଭାବ,
ସବୁଠି ରହିଚି କେବଳ ଧନୀଙ୍କର ପ୍ରଭାବ ।
ହାକିମି ଦେଖାଇ ଅନ୍ୟାୟେ ରତ ନ ହୁଅ ଭାଇ,
ଏ ଜାତିର ପିତା ଗଲେ କି ଶେଷେ ଏହା ଶିଖାଇ ?
ପଞ୍ଚାମୃତ ଗଢ଼ା ସରିଚି ପୁଣି ଭାରତ ସାରା,
କ୍ଷମତା ବିକେନ୍ଦ୍ରୀକରଣେ ସୃଷ୍ଟି ନୂତନ ଧାରା ।
ଶିକ୍ଷାର ପ୍ରସାର ଉଦ୍ଦେଶ୍ୟେ ବ୍ୟୟ ବିପୁଳ ଅର୍ଥ,
ଅପାଠୁଆ ଯିନା କେବଳ କହେ, 'ଏ ସବୁ ବ୍ୟର୍ଥ'
କୃଷିର ଉନ୍ନତି ବିଧାନେ ଗାଆଁ ଗାଆଁ ବିହାନ,
ବିଅନ୍ତି ଯୋଗାଇ ସର୍କାରି କରି ବହୁ ଯତନ ।
ସ୍ୱାସ୍ଥ୍ୟ ସଙ୍ଗେ ଶିଳ୍ପ ପ୍ରସାର ଲଭି ପଞ୍ଚାୟତରେ,
ସାଧଇ ଅଶେଷ କଲ୍ୟାଣ ପଡ଼େ ନେଇ ପଥରେ ।
କେତେ ବନ୍ଧା ବାନ୍ଧ ବିଶାଳ ଜଳ ସେଚନ ଲାଗି,
ବଢ଼ାଏ ଆଦାୟ କେଦାର ଯଥା ସମୟେ ପାଗି ।
ଭିଲାଇ ରାଉରକେଲାର କାରଖାନା ବୃହତ,
ଲୁହା ଆମଦାନି ହୋଇଣ ଉଠେ ଆଜି ଭାରତ ।
ଅବଲମ୍ବି ଶାନ୍ତି ମାରଗ ଜବାହାର ଆମର,
ଧରଣୀ ବକ୍ଷରେ ପ୍ରଶସ୍ତି ଲଭୁଛନ୍ତି ଅପାର ।
ପଡ଼ୋଶୀ ଚୀନା ନସହି ଏ ଦେଶର ଉନ୍ନତି,
ଲୁଟିବାକୁ ଯତ୍ନ କରଇ ଆମ ଧନ ସମ୍ପତ୍ତି ।

## ଦ୍ୱିତୀୟ ସର୍ଗ

ଶୁଭିଲାଣି ରଣ-ଦୁନ୍ଦୁଭି ଉତ୍ତରୁ,
ଉଠ ଉଠ ଭାଇ ବିଳାସ କୋଳରୁ ।
ଭାରତର ସୀମା ଲଙ୍ଘି ପଶୁବେଳେ,
ଆସେ ଚୀନା ମାଡ଼ି ନୀଚ କଉଶଳେ ।
ବଣ ପରବତ ମକାଇଣ ଖୋଜି,
କେତେ ଭେଣ୍ଡିଆଙ୍କୁ ଧରି କଲା ଭୋଜି ।
ବହି ଆସିଲାଣି ରକତର ସୁଅ,
ଦରଶନେ ଏହା ସହିବ କା ଦେହ ।
ବନ୍ଧୁ କହି ନେହେ ପକାଇଲା ଧୂଳି,
କିନ ଗରବରେ ହେଲନି ବାଉଳି ?
ବିଶ୍ୱାସର କ'ଣ ଏହି ପରିଣାମ,
କ୍ଷମତା ମୋହରେ ଅବା ବୁଦ୍ଧି ବାମ ।
ନିରତ କଲ୍ୟାଣ ଯେ କରେ ଧିଆନ,
କୃତଘ୍ନତା କ'ଣ ତା'ର ପ୍ରତିଦାନ ।
ଉଠେ ଚୀନା ଆଜି ଧରଣୀ ବକ୍ଷରେ,
ଭାରତ ସାମ୍ରାଜ୍ୟ ପାଇ ଅଜ୍ଞାତରେ ।
ଆନନେ ଅଦ୍ଭୁତ ହୃଦେ ହଳାହଳ,

ରକ୍ତ ଚଳାଇଲୁ ପଞ୍ଚଶୀଳ ଛଳ ।
ଥିଲେହେଁ ରେ ତର୍କିକଟା ବୈରଦଳେ,
ନ ଠକନ୍ତ କେହି କାହାରିକ ଛଳେ ।
ସିନ୍ଧୁ ସମ ଯେଥା ସୀମା ମଧ୍ୟେ ରହି,
ମିଳେରେ ଆନନ୍ଦ ଗଲେ କାଳ ବହି ।
ନୁହେ କାପୁରୁଷ ଭାରତ ସନ୍ତାନ,
ଆତ୍ମବଳେ ଆଜ ଭବେ ବଳୀୟାନ ।
ତ୍ୟାଗର ଆଦର୍ଶ ଧରଣୀରେ ରଖି,
କରିଯାଏ କର୍ମ ଇତିହାସ ସାକ୍ଷି ।
ଏକତାର ବାଆ ଚଉଦିଗେ ବହି,
ଦେଲଣି ସଧୀରେ କାନେ କାନେ କହି ।
ନେହରୁନ୍ତ ଆମର ଶାନ୍ତିର ନାୟକ,
ପେଷିବେ କି ଅବା ଅହିଂସାସାୟକ ?
ମହାପରାକ୍ରମୀ ଇଂରେଜ ଜାତିକି,
ଗୋଳା ବାରୁଦକୁ ନକରି ଖାତିର ।
ଉଡ଼ଚ ଭାରତ ଦେଖାଇ ଭାରତି,
ଯୁଗେ ଯୁଗେ ଭବେ ରହିବ ମହତ୍ତ୍ୱ ।
ପାଞ୍ଚିଚ ହରି ଏ ଆମ ସ୍ୱାଧୀନତା,
ଭାରତ ଭୂଇଁରେ ଟେକିବ ତା ଛତା ।
ଉଡ଼ାଇଚ ଆଜ କଳ୍ପନାର ନେତ,
ଶୋଷୀ ବାଟୋଇର ମଟସିକା ଏତ ।
ଦେଖାଇ ଦେଲକି ନିଜ ବାହୁବଳ,
ବସୁମତୀ ସାରା ଟକାଇ ଚହଳ ।
ଶକୁନି ସମ କେ ଦେଲା ଏ ମନ୍ତ୍ରଣା,
ଆଣିଲି କି ଲୋଡ଼ ଆପଣାମରଣ ?
ରଜ ମୁକୁଟର କପଟତା ଏହି,
ଅବା ହେଉଥିଲା ସଜ ଲୁଟରାହି ।
ଯେତେବ ଆସେ ନନ୍ଦା-ବଡ଼ ବନମାନ୍ତି,
ନ ନିଏ କି ସଙ୍ଗେ ଦୁଇକୂଳ ଛାଡ଼ି ?
ଭାବଥିବ ପରା ହେବ ବୋଲି ଜିତା,
କିନ୍ତୁ ଏ ଭୂଇଁରେ ହେବ ତାର ଚିତା ।
ଦ୍ୱୀପବୋଲି ଭାବ ତିମିର ଉପରେ,
ରହିଲେ ସମାଧି ଅଗାଧ ସାଗରେ ।
ଗ୍ରାସେ ଯା'କୁ ଥରେ କ୍ଷମତାର ମୋହ,
କରିଥାଏ ସିନା ମିତ୍ର ସଙ୍ଗେ ଦ୍ରୋହ ।
କହେ ବେଳେ ବେଳେ କେତେ କଥା ଗୁଳ,
ହୋଇ ହୁସିଆର ଦିଏ କେବେ ଫାଙ୍କି ।
ପରଧନ ଦେଖି ବସିଥିଲା ଟାକି,
ଭଣ୍ଡୁଥିଲା ସଜ ନେବାକୁ ତା ଠକି ।
ରହିଲେ ପଡ଼ିଆ ଜମି ବହୁଦିନ,
ଜନମଇ ଯଥା ଘୁଦା ଲଭହିନ ।
ନିଯୁକ୍ତି ନ ପାଇ ତଥା ଜନମନ,
ନାନା ଅମନ୍ତରେ ପଶେ ଘନଘନ ।
ଲୋଭ ମିଥ୍ୟା ଘୃଣା କରି କାରସାଦି,
ସଭ୍ୟତା ସଙ୍ଗରେ ହେଉଅଛି ବାଧା ।
ଜଗତେ ମନିଷ ଯେ ଇନ୍ଦ୍ରିୟ ଗ୍ରସ୍ତ,
ହୁଅଇ ରେ ଅହରହ ଅପଦସ୍ଥ ।
ଅବିବେକୀ ସିନା ଭାବଇ ନିରତ,
ତା କରିବା କର୍ମ ସବୁ ସୁବାସିତ ।
ନ ଉଦ୍ଧବ କିନ୍ତୁ ଏ ସବୁ ଫିକର,
ଶିକାରୀ ହୁଅଇ ଦିନେ ତ ଶିକାର ।
ଆହାର ଲୋଭରେ କାଣ୍ଡିଆରେ ଚଢ଼ି,
ଦେଖ, ବିହଙ୍ଗମ ମରେ ତହିଁ ଜଡ଼ି ।
ପିଇବାକୁ ପାଣି ଗଲେ ଜଳାଧାରେ,
ବଣଧର ବଣ ରଖେ ତା ବଦରେ ।
କାହାରିକ ବଳେ ନ କରେ ଅନିଷ୍ଟ,
ନଛାଡ଼େ କାହାକୁ ପଡ଼ିଲେ ଅରିଷ୍ଟ ।
କିନ୍ତୁ ଆହା, ଆଜ ମାନବ ସମାଜ,
ପଡ଼ିଲେଭ ମୋହେ ନ ବହଇ ଲଜ ।
ପରକିଶି ଦେଖି ଯାଏ ଫାଟି ହିଆ,
ନିଜ ନିଜ ମଧ୍ୟେ ଲାଗିଛି କଜିଆ ।
ଝୁଲୁଛିରେ ଭାଗ୍ୟ ମସ୍ତକ ଉପରେ,
ମାରୁଛିରେ ଉଙ୍କି ପ୍ରତି ମୁହୂର୍ତ୍ତରେ ।
ନଥିଲେ କା' ଠାରେ ତାର ଅନୁଗ୍ରହ,
ଅସମ୍ଭବ ସିନା ତାର ପରିଗ୍ରହ ।
କିଏ କେତେଦିନ ରହିବ ଏ ଭବେ,
ପଡ଼ିଲା କି ଜଣା ଏ ରହସ୍ୟ ଲବେ ?

କି ଘଟିବ କାଲି କିମ୍ବା ନ ଜାଣି,
ହୁଅନ୍ତି ମଣିଷ ଭୁଆ ଟଣାଟଣି ।
କେହି ଅତନମି ସୀମିତ ସମୟ,
ରହିଲେ କି ଭବେ ନ ଲଭି ବଳୟ ?
ଭବ ଶିକ୍ଷାଗାରୁଁ ଗଲେ ଯେବେ ଛୁଟି,
ନିଜ ରୂପ ଧରି ଆସେ କି ଲେଉଟି ?
ସ୍ଥୂଳ ପର ମୃତ୍ୟୁ ଜନ୍ମ ଚାରୁଣରେ,
ପଡ଼ିଗଲେ ସଜ ମାଡ଼ିବସେ ଗରେ ।
ନ ଚାହିଁ ନିଜକୁ ଚାହିଁବାକୁ ପର,
କାହିଁକି ଦେବା ନିଶି ତଳବର ?
କରିଲେ ଅକର୍ମ ନ ପଡ଼ିବୁ ଧରା,
ଦମ୍ଭେ ମନେ ମନେ ଚାଲୁଥିବୁ ପରା ।
ବୁଲୁଛ ଯେବେ ଏ ପାଖ ସେ ପାଖ,
ଦେଖୁଛି ଦେବ ନିତି ତୋ କରମପାକ ।
ଖୋଜିବାକୁ ତୋର ବାହାର ଭିତର
ପାଇଛନ୍ତି ଅଧିକାର ନିରନ୍ତର ।
ଠିକ ନିଖି କରି ଦେଖେ ତୋର ମତ,
କହିବାକୁ ମନା ନାହିଁ କା ଶକତ ।
ଏ ଦେହର କେଉଁ ଅନ୍ଧାର କଣରେ.
ରହି ନ ପାରେ ସେ କା ଆଖି ଆଗରେ ।
ତା ଆଖିକି ଡରେ ମାରେ ନାହିଁ ନାଦ,
ଚିନ୍ତାଥାଏ ଅବା ସବୁ ତୋ ଫିସାଦ ।
ଖଟି ତୋହ ଲଗି ହେଉଥାଏ ବଳ,
ତା ବିନା ନାହିଁ କେ ଅନ୍ୟତୋ ସମ୍ବଳ ।
ହୋଇ କେତେ ଦିନ ତୋ ଘରେ କୁଣିଆ,
ପରଖୁଥାଏ ତୋ ମଣିଷ ପଣିଆ ।
ତା କଷା ପଥର ଦୁନିଆଁ ବାହାର,
ପଡ଼େ ଧରା ଯେତେ ତୋର କାରବାର ।
ସଜ ହେଉ ହେଉ ଯିବାକୁ ବାହାରି,
ଗଡ଼ି ଲୁହ ଧାର ନୟନୁଁ କାହାରି ।
ହେଉଥିଲେ କେତେ କାକୁତି ମିନତି,
କିଞ୍ଚିତ କରୁଣା ନ ଥାଏ ତୋ ପ୍ରତି ।
ତୋ ଘରୁ ଯେବେରେ ଚଳଏ ସେ ଛାଡ଼ି,
ରହନ୍ତି ଦୂରେ କେ ତୋ ପାଖ ନ ମାଡ଼ି ।

ଅକ୍ଷି ଯୋଡ଼ି ସଙ୍ଗେ ସଙ୍ଗେ ଜ୍ୟୋତିହୀନ,
ପୁଣି କଣ୍ଠ ସ୍ୱର ତା ସଙ୍ଗେ ବିଲୀନ ।
ସେ ରୂପ ଦର୍ଶନେ ଜନମେ ବିସ୍ମୟ,
ମଡ଼ା ବୋଲି କହି ସରିବେ ଅଥୟ ।
ରହେ ନାହିଁ କିଛୁ ଦେଖାଇଲେ ଟେକି,
ନିର୍ମଳ ମିନାରେ ଯେତେ ଟେକାଟେକି ।
ନ କରିବେ ଆଉ କେହି ତୋ ତର୍କ,
ଫିଙ୍ଗିବେ ଛଡ଼ାଇ ତୋ ବାଟ ଖର୍ଚ୍ଚ ।
କୁଟୁମ୍ବ ଭିତରେ ଯାଙ୍କୁ ବୋଲୁ ମୋର,
ଜଣେ ହେଲେ ପୁଣି ନୁହନ୍ତି କେ ତୋର ।
କିଏ କାହୁଁ ଅସି ଲଭନ୍ତି ମିଳନ,
ମମତା ଡୋରିରେ ସରିବେ ବନ୍ଧନ ।
ଅନିତ୍ୟ ପଦାର୍ଥେ ଟାଳି ସଦା ମନ,
ନ ଭାବନ୍ତି ଦିନେ ଆପଣା ସ୍ୱଜନ ।
କେହି ନୁହେ ଭାଗୀ କାହା ସୁଖ ଦୁଃଖେ,
କିଏ କେତେବେଳେ ପଡ଼େ କାଳମୁଖେ ।
ଏଥି ଯେ ଯାଉଛି ଧରି ନିଜବାହା,
ନ ମିଳଇ ତାକୁ ଜଣେ ହେଲେ ସାହା ।
କାହା ସଙ୍ଗେ କେବେ ହେବ ନାହିଁ ମେଳ,
ତାକରି ତକେଇ ଯିବସିନା ବେଳ ।

ଅସିତ ନଥିଲ୍ ଦାମୁଡ଼ିଏ ଧରି,
ଦେବ କେ କାଢ଼ିଏ ଯିବୁ ଯେବେ ମରି ।
କେବଳ ପାପପୁଣ୍ୟ ନ ଛାଡ଼େ ତା ସଙ୍ଗ,
ଅଟଳ ଦୁନିଆ ଆଉ ଯେତେ ରଙ୍ଗ ।
ବୋଝ ବହନା ମିତା ଅବାବେଳ ଦାଉ,
ନିଜକୋ କାହିଁ ବୁଝେ କିଏ ଆଉ ।
ତୁଚ୍ଛ ସ୍ୱାର୍ଥ ଲଗି ସନ୍ତାନକୁ ବିକି,
ମଣିଷ ଦୁଆରେ ହେଉଅଛି ଟେକି ।
ସ୍ୱାର୍ଥ ପଡ଼ିକଲେ କୁକର୍ମ ବରଣ,
କରିବେ ଦିନେ ତାହିତ ପୂରଣ ।
ଆଶା-ବହ୍ନି ଆଜ ମେଳା ତାର ଚାଟି,
ଯାହା ପଡ଼େ ଆଗେ ହେଉଛି ତା ବୃତ୍ତି ।
ଯେତେ ମିଳେ ସେତେ ଗୋଡ଼ାଇଛି ଲୋଭ,
ପାପ କରିବାକୁ ନ ଥାଏ କା କ୍ଷୋଭ ।

ସକଳ ପାପର ଦୁର୍ଜନତା ମୂଳ,
ସାଧୁତା ମାର୍ଗରେ ଲୋଭ ପ୍ରତିକୂଳ ।
ଗୋଟାଇ କଉଡ଼ି ବରଷୋରେ ତନ୍ତ୍ର,
ଟେଖୁଟ ସାଇତି ଝିକଏ ନଚନ୍ତ୍ର ।
ଧରମ ପ୍ରଦୀପ ସଦା ଦାଉ ଦାଉ,
ଜୀବନେ ସନ୍ତୋଷ ଅଭାବର ରାହୁ ।
ଭୁଲଏ ଯେ ନର କହି ମିଥ୍ୟା କଥା,
ଅବରତ ତାର ଅବନତ ମଥା ।
ନେଇଯାଏ ଯେହୁ ଜଟି ପର ଧନ,
ଚିର ଦୁଃଖମୟ ତାହାର ଜୀବନ ।
ଇନ୍ଦ୍ରିୟ-ଘୋଟକ ନ ପାରିଲେ ରୂନ୍ଧି,
ଜଗତେ ସରବେ ମାରିଥାନ୍ତି ତାଳି ।
ପଶିଲେ ଅବାଟେ ବାଜିବରେ କଣ୍ଟା,
ପରମ ବାଧାରେ ଯାଏ ଲଗି ଅଣ୍ଟା ।
ପାପର ମଞ୍ଜୁଷ ଅଟଇ ମରଣ,
ଅମରତ୍ୱ ସିନା ପୁଣ୍ୟର ଭୂଷଣ ।
ଯହିଁ ସତ୍ୟ-ନ୍ୟାୟ ଲଭନ୍ତି ମିଳନ,
ତହିଁ ଧର୍ମ-ଶାନ୍ତି ଦିଅନ୍ତି ଚୁମ୍ବନ ।
କରେ ଜରା ଯଥା ସୌନ୍ଦର୍ଯ୍ୟ ବିନାଶ,
ଅହଙ୍କାର ତଥା ଗଉରବେ ହ୍ରାସ ।
ଠିକଣା ବାଟରେ ଗଲୁଥିଲେ ନର,
ଯାହାଟି ସୁଗମ ତାର ନିରନ୍ତର ।
ମସ୍ତକ ଉଚ୍ଚରେ ନାହିଁରେ ନମ୍ରନ,
ପଛ ଭ୍ରୂକୁଟିକି ହୁଅ ସାବଧାନ ।
ବାଛି ବାଛି ଗୋଡ଼ ରଖିବରେ ମାଟି,
ଗଡ଼ିବାରେ ଘଟ ନ ଦିବ ତା ଫାଟି ।
ଆପଣା କାନକୁ ନକର ବିଶ୍ୱାସ,
କହୁଥିଲେ କର୍ଣ୍ଣ ମିଳଇ ଆଶ୍ୱାସ ।
ଭଲ କଥା ଯେତେ ଲାଗୁଛି ଅଡ଼ୁଆ,
ଖସିଲେରେ ଜିଭ ହେଉଛି ଫଗୁଆ ।
ସ୍ୱାର୍ଥ ମୋହେ ପଡ଼ି ଆପଣାକୁ ଭୁଲି,
ମଣ ସିନା ସୁଖ କରରେ ଚଟୁଳି ।
ଲାଗିଛିରେ ମତି କେତେ ମନଧରା,
ହେଲେଣିରେ ପୁଣି କେତେ ଦରମରା ।

ଇନ୍ଦ୍ରିୟକୁ ପୂଜ ମଣିଲେରେ ସୁଖ,
ପରିଣାମେ ଆହା ଜନମାଏ ଦୁଃଖ ।
"ବର୍ତ୍ତମାନ" ମଣେ ସୁଖ ବୋଲି ଯାହା,
ହସୁଅଛି ଦେଖି, "ଭବିଷ୍ୟତ" ତାହା ।
ଆସିଲେ ତୋଫାନ ଘେନିଯିବ ନାବ,
ନ ପାଇବ କୂଳ କଲେ କେତେ ଭାବ ।
କାନ୍ଦିବରେ ଦିନେ କନ୍ଦାଇଲେ ପର,
ପରିଣାମ ମାତ୍ର ଏ ତ ଜଗତର ।
ଶୁଣିବାକୁ ଅଭିଯୋଗ ଗରିବର,
ଭାଗ୍ୟବାନ କାନ ନ କରେ ଖାତର ।
ମେଳା ମଉଜରେ ଦିନ ଯାଏ ବିତି,
ନ ଖୋଜେ କିଏ ସେ ଏ ସଂସାର ଗତି ।
ସବୁ ଦେଖି ଯେବେ ବୁଜୁଥିବା ଆଖି,
ଆଜୀବନ ପଙ୍କେ ରହିଥିବା ଲାଗି ।
ପ୍ରାଚୁର୍ଯ୍ୟରେ ଏଣେ କେହି ଉନମତ୍ତ,
କେଣନ୍ତି ଆମୋଦ ନ ହୋଇ ସଂଯତ ।
କେତେ ଦିନ କରିଥିବ ଗଳା କଣ୍ଟି,
ନ ଫିଟାଇ ଏଣେ ସ୍ୱାର୍ଥ ମୋହ ଗଣ୍ଠି ।
ଜାଗରେ ଜାଗରେ ଭାରତ ସନ୍ତାନ,
ଦେଖ ଇତିହାସେ ଜାତିର ସମ୍ମାନ ।
ସମର ଭୂଇଁରେ ଶକତି ଖଟାଇ,
ବାହୁବଳ ମୋଦେ ଅରାତି ହଟାଇ ।
ମରଣକୁ ଡରେ ନଥାଏ ଯା ଭୟ,
ସେହି ସିନା ଭବେ ସୈନିକ ଦୁର୍ଜୟ ।
ମରଣକୁ ମାଗି କରିଲେ ମନ୍ଥରେ,
ମହତ ପଣିଆ ବିକଶେ ଅନ୍ତରେ ।
ଅଧୀରତା ସଦା ଦେଖାଏ ପଲ୍ଲବ,
ଜୀବନ ଯୌବନ ସକଳ ବିଭବ ।
ନିରପେକ୍ଷ ମାତ୍ର ହୋଇଛି ବସ୍ଥାନ,
ସଦ ଅବସ୍ଥାନ ଲାଗି ଏ ମହାନ୍ ।
ଉଦାର ଭାବର ଦିଏ ପରିଚୟ,
ପଶୁ ପ୍ରବୃତ୍ତିର ସାଧଇ ବିଲୟ ।
ମହାଲକ୍ଷ୍ୟ ଦିଗେ ଟାଣୁଥାଏ ଧୀରେ,
ଶାନ୍ତିର ମାରଗ ଦେଖାଏ ମନ୍ଥରେ ।

ହୁଏ ଅସହାୟ ଯେତେବେଳେ ନର,
ହୋଇ ଅନୁନୟ ଯୋଡ଼ି ବେନିକର ।
ମୃଗସ୍ଥ ଉରରେ ଗଡ଼ାଇ ଲୋତକ,
ମାଗେ ଦୟାଭିକ ସିନା କୁରଙ୍ଗକ ।
ନୁହେରେ ଅକ୍ଷମ ଭାରତ ସନ୍ତାନ,
ମାତୃଭୂମି ଲାଗି ଦେବାକୁ ପରାଣ ।
ବାଲୁକା ଉଡ଼ାଇ ଶୃଙ୍ଗ ଘସି ଘସି,
ବୃଷଭ ପରାଏ ଭଣେ ହସି ହସି ।
ନେତା ଡ଼ାକ ଶୁଣି ଭାରତର ବୀରେ,
ପଶିଲେଣି ଦେଖ, ଅଟୋଡ଼ ଶିବରେ ।
ପରର ଉପରେ ନକର ନିର୍ଭର,
ନିଜ ଶ୍ରମଫଳେ ପୋଷିବ ଉଦର ।
ଅଛନ୍ତରେ ଲୋକ କେତେ ଏ ରସାରେ,
ବ୍ୟସ୍ତ ସଦା ପରଗୋଡ଼ ଘୃଷିବାରେ ।
ଜନମ ହେଲେ ତ ମରଣ ନିଶ୍ଚୟ,
ଏଥି ଲଗି କିଆଁ ଲାଗେ ଏତେ ଭୟ ।
ମରଣ ପଛରେ ଆସଇ ଜନମ,
ବରଷର ଛଅ ଋତୁ ଚକ୍ର ସମ ।
ଅସ୍ଥି ଚର୍ମ ଲଗ୍ନ ଏ ଦେହ ମାଂସ,
କାଳ ବଶେ ଦିନେ ହେବ ଏ ପାଂଶ ।
କେତେ ଦିନ ଅବା ରହିବ ଏ ବସା,
ଦେଖାଇ ପହିଜ ସିନା ଲୋକହସା ।
ଯେତେ ଖାଇଲେ ମଶାଣି ନିକଟ,
ବଢ଼ୁଅଛି ତୃଷା ନ ହୋଇ ଆକଟ ।
ମଣିଷ ଭିତରେ କି ପ୍ରଭେଦ ଭବେ,
ଜରା ରୋଗ ମୃତ୍ୟୁ କବଳିତ ସର୍ବେ ।
ପାଁଚିଆ କେଶ ଉପାଡ଼ିଲେ ଶିରୁଁ,
ଭାବନ୍ତି କି କଳା ଉଠିବ ତହିଁରୁ ?
କଟାଇଲେ ଦିନ ଯୁଗ୍ମ ବେଶ ପଡ଼ି,
ହସିବେ ତ ଲୋକେ ନିରେଖି ଏ ଛଡ଼ ।
ନ ଜାଣି ସମ୍ବନ୍ଧ ଶରୀର ଆତ୍ମାର,
କରୁଛ କାହିଁକି ଅଯଥା ବିଚାର ?
ଆପଣା ଶରୀରୁଁ ସୂତା ଖିଅ କାଢ଼,
ହେଉଛ ଆବଦ୍ଧ ଖୋସାମାନ ଗଢ଼ ।

ଲଭି ଏ ଜନମ ହେଲରେ ଭିକାରୀ,
ପତାଇଲ ହାତ କିଛି ନ ବିଚାରି ।
କଣା ଅବା ବକା ଦିଆ ଅବା ନିଆ,
ଲଗିଛି ନିରତ ଦେଖୁଛି ଦୁନିଆଁ ।
ଯାହା ପାଇଁ ତୋତେ ଲଗିଛିରେ ଧନ୍ଦା,
କେବେ ହେଲେ ସିଏ ହେବ କି ତୋ ଫନ୍ଦା ?
ଜ୍ଞାନ-ନିକେତନେ ନାଜଲେ ଓଜନ,
ନ ପଡ଼ିବ ଜଣା ତୋ କାର୍ଯ୍ୟ ସାଧନ ।
ଅନ୍ଧାର କଣରେ ବୁଢ଼ିଆଣୀ ପରି,
ବସିନ ମଜ୍ଜେ ପୁଣି ଜାଲ ଧରି ।
ରଜତମ ମତ ଅବା ସଉଗୁଣୀ,
ଲାଗିଛିରେ ନିତି ତାଙ୍କ ଝୁଣାଝୁଣି ।
କେ ବୁଝିବ ଭାଇ ସୃଷ୍ଟିର ଅକଳ,
ହେଉଥିବ ସିନା ଭୁଷ୍ଟ କଳବଳ ।
ଜାଗରେ ଜାଗରେ ଭାରତ ସନ୍ତାନ,
ରଖ ଇତିହାସେ ଜାତିର ସମ୍ମାନ ।
ଦେଖାଏ ଯେବେ କେ ତରବାରି କାତି,
ନ ଆସିବ ଡର ଯୁଦ୍ଧ ଭୂଇଁ ଗୁଡ଼ି ।
ଶୋଇ ଆରାମରେ ତୁଳି ତଳ ପରେ,
ନ ଯାଚିବ କାଳ ମୋହେ ଗଳପରେ ।
ଜମାଜଳ ପରି ଅଳସୁଆ ମନ ।
ଝର ମାର ସଙ୍ଗେ କର୍ମଠ ସମାନ,
ବାହାରିଲେ ନିଆଁ ଫୋଇବ ଦାଳ,
ତକେଇଲେ ଦଣ୍ଡେ ଉଠିବାରେ ଜଳ ।
ଧରଣୀ ବକ୍ଷରେ ବ୍ୟାପିଲେ କୁହୁଡ଼ି,
ବ୍ୟଞ୍ଜନରେ କାଏ ପାରେ କି ଘଉଡ଼ି ?
ଏକମନେ ସର୍ବେ ହେଲେ ସିନା ଠୁଳ,
ଶତ୍ରୁ ବିଟପୀର ଉପୁଡ଼ିବ ମୂଳ ।
ଯେତେ ଲଣ୍ଡଭଣ୍ଡ ଲାଗେ ଦୁନିଆଁରେ,
ପୁରୁଷର ହାତ ଥାଏ ସବୁଠାରେ ।
ଧ୍ୱଂସ ଲାଗି କ'ଣ ପୁରୁଷ ଭିଆଣ,
ଅବା ତା ହୃଦୟ ପିହିତ ପାଷାଣ ।
ଶୁଦ୍ଧି ସରଳତା ସେବା ଅଳଙ୍କାର,
ହୋଇଥାଏ ଅହରହ ଅବଳାର ।

ମନୁ ସଦା ମନଇଚ୍ଛା ପରିହରି,
ମିଛ ବ୍ୟର୍ଥି ତାକୁ କରେ ସହଚରୀ ।
ଆଡ଼ମ୍ବର ଶୂନ୍ୟ କୋମଳ ବଚନ,
କହୁ ତୋଷୁଥାଏ ମଣିଷର ମନ ।
ପରଦୁଃଖ ଦେଖି ହୁଅଇ କାତର,
କୋମଳ ତାହାର ହୃଦ ନିରନ୍ତର ।
ନ ଥାଏ ହୃଦୟେ ଲେଶ ମାତ୍ର ଘୃଣା,
ଲଭନ୍ତି ସରବେ ତା ଠାରୁ କରୁଣା ।
କେତେ ଉପବାସ କେତେ ଉପାସନା,
ସନ୍ତାନ ସକାଶେ କରେ କେ କଳନା ?
ପର ଦୁଃଖ ଦେଖି ଗଳେ ଲୁହଧାର,
ସାରା ଜୀବନ ତା ଦୁଃଖର ଭଣ୍ଡାର ।
ନ ଥାଏ ମାନସେ ତା ଜୀବନେ ଆଶା,
ପ୍ରସବ ସମୟେ ନ୍ୟୁତ ଭରସା ।
ନ ଜାଣେ ସେ କିଛି ଦାର୍ଶନିକ ତତ୍ତ୍ୱ,
ସଦା ବିଭୂଷିତା ଏବା ଗୁଣେ ସତ୍ତ୍ୱ ।
ସାଧେ ଜଗତର କେତେ ଉପକାର,
କୃତଘ୍ନତା କରୁ ତାର ଉପହାର ।
ନଥାଏ ଦିବସ ସାରା ଅବସର,
ମହୁମାଛି ଏ ତ ଜୀବ ଜଗତର ।
ନଥିଲେ ଲଳନା ଘର ଅସୁନ୍ଦର,
ଗୃହଲକ୍ଷ୍ମୀ ପୁଣି ଏ ତ ପୁରୁଷର ।
କେତେ ବୀରାଙ୍ଗନା ଭାରତ ଭୂଇଁର,
ମାତୃଭୂମି ଲାଗି ତେଜିଥିଲେ ଶରୀର ।
"ଜାଗରେ ଜାଗରେ ଭାରତ ସନ୍ତାନ,
ଦେଖ ଇତିହାସେ ଜାତିର ସମ୍ମାନ" ।
ପଲ୍ଲୀ ସ୍ୱେଚ୍ଛାସେବୀ ଗ୍ରାମେ ଗ୍ରାମେ ଗଢ଼,
ବୈର ବେପାରୀଙ୍କୁ ଦେଉଥିବା ତଡ଼ ।
ଗାଆଁ କଳିଗୋଳ ତୁଟାଇ ଗାଆଁରେ,
ନ ମାଡ଼ିବା ପାଦ କଚେରି ଦୁଆରେ ।
ପଞ୍ଚରେ ଚୁଗୁଲି କରୁଥାନ୍ତି କେତେ,
ଫାଇଦା ଉଠାନ୍ତି ଟାଉଟର ଯେତେ ।
ଲଗାପୋଡ଼ା ଶୁଣି ନ ଛୁଟେ ଆହାର,
ଲୋକହସା ସିନା ହୋଇଥାଏ ସାର ।

ନପାରେ କେ ଉଠି ଗଲେ ଗୋଡ଼ ଖସି,
ନିଜ ଧନ ଶେଷ ପରେ ଗୋଡ଼ ଘସି ।
ସ୍ୱେଚ୍ଛାପ୍ରସୂତ ହେଲେ ଗୃହରକ୍ଷୀ ଦଳ,
ବଢ଼ାଇବେ ଏବେ ପୋଲିସର ବଳ ।
ଗ୍ରାମବାସୀଙ୍କର ସୁସ୍ଥ ସଂଗଠନ,
କରିବ ଦେଶର ଉନ୍ନତି ସାଧନ ।
ଥିବେ ଗ୍ରାମାଞ୍ଚଳେ ଯେତେ ଧୁରନ୍ଧର,
ମାତୃଭୂମି ଲାଗି ହେବା'ନ୍ତୁ ଆଗଭର ।
ଦେଶର ସମ୍ବଳ ବଢାଇବା ଲାଗି,
କରିବା ଖରଚ ଅପବ୍ୟୟ ଜଗି ।
ଯେତେ ଆଡମ୍ବର ଅଢ଼େଇ ଦିନିଆ,
ମିଥ୍ୟାବୃଥା ଆଜ ଲୋଡ଼ଇ ଦୁନିଆଁ ।
ସଉକ ଦେଖାଇ ଅଯଥାରେ ବ୍ୟୟ,
ବଢାଇଲେ ହେବ ନଷ୍ଟସ୍ୱ ଅର୍ଥସ୍ୱ ।
ଭାରତ ପବିତ୍ର ଜାହ୍ନବୀ ସଲିଳ,
ଯୁଗ ଯୁଗ ଧରି ଯାହା ଅନାବିଳ ।
ରକ୍ତ ରଞ୍ଜିତ ତାର କଳେବର,
ଦରଶେ ନ ଅଜ ହୃଦ ଅନ୍ତର ।
ଜାଗରେ ଜାଗରେ ଭାରତ ସନ୍ତାନ,
ଦେଖ ଇତିହାସେ ଜାତିର ସମ୍ମାନ ।
ମୁକ୍ତିର ସଂଗ୍ରାମେ ଦିଏ ଯେ ଜୀବନ,
ଜୀବନ୍ତ ବୋଲି ସେ ଘୋଷେ ଭୁବନ ।

ଜାଗରେ ଜାଗରେ ଭାରତ ସନ୍ତାନ
ଡାକୁଛି ଜନନୀ ବାରମ୍ବାର,
ତେଜ ମନୁସାହ ଦେଖାଇ ସାହସ
ସଇନିକ ସାଜ ହୁଅ ବାହାର ।
ଆସୁ ଅଛି ମାଡ଼ି ବନ ଭୂଇଁ ତାଡ଼ି
ଉତ୍ତର ଦିଗରୁ ଗରବେ ମାତି,
ଯୁଦ୍ଧମଦେ ମତ୍ତ ଦୋର୍ନବ ଚକତ
ଶତ୍ରୁ ମନେ ଭାଳ ତୁମ୍ଭ ଅରାତି ।
ଜନବଳେ ବଳୀ ମାରି କରତାଳି
କଲାଣି ଅନେକ ସୋଦର କ୍ଷୟ,
ତୁମ୍ଭ ସ୍ୱାଧୀନତା ନ ରହିବ ସତ୍ୟ
ଗଣତନ୍ତ୍ର ବାଦ କରିବ ଲକ୍ଷ୍ୟ ।

ବୀରତ୍ୱ ଦେଖାଇ ବନେ ଭ୍ରମଣାଇ
ଲଢ଼ୁଥିଲେ ମୋଦେ ଯୁଦ୍ଧ ଅଙ୍ଗନେ,
ତା ଦାୟାଦ ହୋଇ ରହିଅଛ ଶୋଇ
ବେଳ ନାହିଁ ଆଉ ଜାଗ ସଘନେ ।
ଅକୁଣ୍ଠିତ ଚିତ୍ତେ ସ୍କନ୍ଧ ଦେଇ ବ୍ରତେ
ଜନନୀର ସେବା କର ତ୍ୱରିତେ,
ନୁହେ ଧନ ବଡ଼ ନୁହେ ପ୍ରାଣ ବଡ଼
ଧନ ପ୍ରାଣ ଲୋଡ଼ା ନିଜ ମହତେ ।

## ଆହ୍ୱାନ

ଜାଗ ଜାଗ ଭାଇ ନକର ଡେରି
ଗଲେତ ସମୟ ନଆସେ ଫେରି,
ବାହାର ପଡ଼ିବା ପାଇକ ସାଜି
ଯାଇ ହରାଇବା ଶତ୍ରୁସେନା ଆଜି ।
ଶତ୍ରୁଗଣ ଲୋପ କରି
ବାହୁଡ଼ିବା ଘରେ ଆନନ୍ଦ-ମନରେ
ବିଜୟ ପତାକା ଧରି ।
ରଣର ହୁଙ୍କାର ଶୁଭେ ଉତ୍ତରେ,
ଶତ୍ରୁସେନା ସଇନ ଅଛି ସମ୍ମୁଖରେ ।
ମାଡ଼ି ଆସୁଛନ୍ତି ଦେଶ ଭିତରେ,
କଲେ ହେଲା ଭାଇ ଏ ବିପଦରେ ।
ହରି ଆମ ସ୍ୱାଧୀନତା,
ଶୋଷିବେ ରକତ ନାଶିବେ ଧରମ
ନ ରହିବ ଆମ ସତ୍ତା ।
ନୁହଇ ଏ ଜାତି କାହାଁରେ ହୀନ,
କରିବା ସମରେ ଶତ୍ରୁସେନା ମ୍ଳାନ ।
ଓଡ଼ିଶା ପାଇକେ ଲଢ଼ି ସମରେ,
ଟେକ ରଖିଥିଲେ ରଣ ଭୂଇଁରେ ।
ସେ ଉତ୍ସାହ ଜାଗୁ ମନେ
କଲେ ଏବେ ହେଲା ବୁଡ଼ିଯିବ ଭେଳା
ଏକତା ବିସର୍ଜ୍ଜନେ ।
ବିଦେଶୀ ଶାସନ କରି ନିଶ୍ଚିହ୍ନ,
ସହି ନାନା ଦୁଃଖ ହେଲେ ସ୍ୱାଧୀନ ।
ଲୋକ ଶାସନରେ ଦେଶ ଚଳାଇ-
ବାରୁ ଦରିଦ୍ରତା ଗଲା ପଳାଇ
ଡାକେ ମାତୃଭୂମି ଆଜି,
ସମର ଭୂଇଁରେ ଟେକ ରଖ, ଦେଇ
ରକ୍ତ-ଧନ-ଜନ ବାଜି ।

****



# ସୀତା ଉଦ୍ଧାର

( ବଳସ୍ତୁ ବାହୁଡ଼ା )

## ପ୍ରଥମ ସର୍ଗ

"ସ୍ତବ"

କି ବୋଲି ନମିବି ପ୍ରଭୁ, ଚକ୍ଷୁନାହିଁ ହାତ ।
ଅନନ୍ତ ମହିମା ଜଳେ ପାଇବ କି କାତ ?
ତବ ବ୍ରହ୍ମାଣ୍ଡି ଚଣିଆ ଦେଖି ଅଗୋଚର ।
ବୁଝିବ କପର ଅବା ମଣିଷ ନଶ୍ୱର ॥
ସରଜିଲ ମଣିଷକୁ ମହାଜିବ କରି ।
ନାନା ରୋଗେ କଷ୍ଟ ପାଇ ଯାଉଅଛି ସରି ॥
ଅଗଣିତ ଅଉଷଧି ସରଜିଛ ସତ ।
ମୃତ୍ୟୁର ସମୀପେ ସର୍ବେ ସଦା ପରାହତ ॥
ଶ୍ରାବଣର ନାଗକାଙ୍କ ନଦେଖିଲେ ଥରେ ।
ମଣିଷର ବୁଦ୍ଧିବଣା ହୁଏ ବସୁପୁରେ ॥
ହଳଦୀରେ ବୋଲି ଚମ୍ପା ଗୋଲାପ ଅବରେ ।
ମହ ମହ ବାସନାରେ ଶୋଭା ଉମା ଶିରେ ॥
ତବରୂପ ମୁଖି ଲଭିଅଛି କରି ଆଳ ।
ତେଣୁ ଉର୍ଦ୍ଧେ ହନୁମାନ ଏ ଡାକେଁ ସେ ଡାଳ ॥
ମହକଇ ତେଜଦାର ସୁଗନ୍ଧେ ଚନ୍ଦନ ।
ଦେହେ ବୋଳି ତାପ ବାଧା ଭୁଲେ ଧର୍ମୀ ଜନ ॥
କର୍କଶ ଦୋଡ଼ଣୀ ତଳେ ସୁସ୍ୱାଦୁର ରସ ।
ସାଇତି ରଖିଛ ଦେଖ କପରି ପଣସ ॥
ରଙ୍ଗିମା ଛବିରେ ମୋହେ ଫଳ ମହାକାଳ ।
ଭାଙ୍ଗି ଦେଲେ ଭିତରଟା ଦିଶେ ବିକଟାଳ ॥
କାକ ଡାକ କର୍ଣ୍ଣେ ରୁକ୍ଷ ମଧୁର ପିକର ।
କଦାକାର ଶୋଭନ ରୂପ କେଙ୍କା ମନୋହର ॥
ଭିକଟରେ ବୋଙ୍କାପର ଦଣ୍ଟଇ ପଲଙ୍ଗ ।
ନ ଦେଖେରେ ତାକୁ କଏ ଯେଣୁ ହୀନ ବାସ ॥
ତବ ଭାବଧାର ପ୍ରଭୁ କେ ବୁଝିବ ଭବେ ।
ଚଢ଼ୁ ଏ ଅଧମ ପ୍ରତି କୃପା ଦୃଷ୍ଟି ଲବେ ॥

—ଃ*O*ଃ—

ପାଦୁକାକୁ ଧରି ଅଯୋଧ୍ୟାକୁ ଫେରି
ଆସିଲେ ଭରତ ଯେବେ ।
ଚିତ୍ରକୁଟ ରାମ ନେବାକୁ ବିଶ୍ରାମ
ହୋଇଲେ ଅମଙ୍ଗ ସେବେ ॥
ରାବଣ ବଇରି ଜନକ କୁମାରୀ
ଲକ୍ଷ୍ମଣଙ୍କୁ ସଙ୍ଗେ ଧରି ।
ଯାଇ ପ୍ରବେଶିଲେ ଅତ୍ରିଙ୍କ କୁଟୀରେ
କାନନେ ସୁଖେ ବିହରି ॥
ପରମ ସନ୍ତୋଷେ ହେଲେ ଜାନକୀଏ
ମୁନିଙ୍କ ଆତିଥ୍ୟ ପାଇ ।

ତହିଁ ଆରଦିନ ପ୍ରାତୁଁ କରି ସ୍ନାନ
ସୀତା ସଙ୍ଗେ ଦୁଇ ଭାଇ ।
କଲେ ଗମନ ଦଣ୍ଡକା ଅରଣ୍ୟ
ଯହିଁ ରହନ୍ତି ମୁନିଏ,
ଭେଟିଲେ ବାଟରେ ବିରାଧ ନାମରେ
ଦୁଷ୍ଟ ଦଇତ ଗୋଟିଏ ।
ଘୋର ଗରଜନେ କମ୍ପାଇ କାନନେ
ପହଞ୍ଚି ଜାନକୀ ଅଗ୍ରେ,
ତାଙ୍କୁ ଟେକି ନେଇ କୋଳେ ଜାକିଦେଇ
ଧାଇଁଲା ଆଗକୁ ବ୍ୟଗ୍ରେ ।
କିଛି ଦୂର ଯାଇ ରାଘବଙ୍କୁ ଚାହିଁ
ଏସନ କହେ ବଚନ,
"ରମଣୀ ରତନ ଛାଡ଼ି ଏ କାନନ
କର ଶୀଘ୍ରେ ପଳାୟନ"
ଏ ବାଣୀ ଶ୍ରବଣେ ଆରକ୍ତ ଲୋଚନେ
ସୀତାନାଥ ଶରବଳେ,
ବିନ୍ଧିବାରୁ ଦୈତ୍ୟ ହୋଇ ଅତି ଆର୍ତ୍ତ
ଛାଡ଼ିଲା ଘୋର ବୋବାଳି ।
ଛାଡ଼ି ସେ ଜାନକୀ ନେଇଗଲା ଜାକି
ରାମ ସୁମିତ୍ରା ନନ୍ଦନ,
ଏହା ଦେଖି ସୀତା ହୋଇ ଅତି ତ୍ରସ୍ତ
ବିକଳେ କଲେ ରୋଦନ ।
ଶୁଣି ଘନ ଘନ ବିକଳ କ୍ରନ୍ଦନ
ସୀତାଙ୍କର ସୀତାପତି,
ନ କରି ଉଚ୍ଛୁର ଦଇତରି କର
ଛିଣ୍ଡି ଧିକ୍‌କାରିଲେ ଅତି ।
ପାଇ ଅତି କ୍ଳେଶ ବିରାଧ ରାକ୍ଷସ
କହିଲା ନିଜ ବୃତ୍ତାନ୍ତ,
ପୋତିଲେ ତା ତନୁ ଦଶରଥ ସୁନୁ
ଭେଟିଲା ଯାଇ କୃତାନ୍ତ ।
ଶରଣ ବତ୍ସଳ ଦଶରଥ ବାଳ
ସେଠାରୁ ଗଲେ ବାହାରି,
ପଥଶ୍ରାନ୍ତି ବାଧା ଅବା ପାନକ୍ଷୁଧା
ନ ପଡ଼େ ମନେ କାହାରି ।
ଜାନକୀ ରମଣ ଜାନକୀ ଲକ୍ଷ୍ମଣ
ଘନ କାନନ ଭିତରେ
ଯାଉ ଯାଉ ବାଟେ ଫଲ୍‌ଗୁ ନଦୀ ତଟେ
ପହଞ୍ଚି ଥିଲେ ସୁଖରେ ।
ସେ ସ୍ଥାନୁଁ ବାହାରି ଗଲେ ଗୃପଧାସି
ଭାରିଯା ଭାଇ ସହିତ,
ଭେଟିଲେ ବାଟରେ ଜଟାୟୁ ନାମରେ
ଶକୁନ ପକ୍ଷୀ ଅଦ୍ଭୁତ ।
ସେ ଜଟାୟୁ ପକ୍ଷୀ ସେମାନଙ୍କୁ ଦେଖି
ଦେଲା ନିଜ ପରିଚୟ,
ହେଲା ଅନୁଚର ଦାଶରଥିଙ୍କର
ହୃଦୟେ ନ ରଖି ଭୟ ।
ତହୁଁ ରଘୁଜଣ ପଞ୍ଚବଟୀ ବନ
ଯାଇ ନିର୍ମିଲେ କୁଟୀର ,
କରି ଅବସ୍ଥାନ ଦେଖି ଦୃଶ୍ୟମାନ
ହୁଅନ୍ତି ମୋଦେ ଅଧୀର ।

—:୦:—

## ଲକ୍ଷ୍ମଣଙ୍କ ହେମନ୍ତ କାଳ ବର୍ଣ୍ଣନା

ପ୍ରବେଶିଲା ଆସି ହେମନ୍ତ କାଳ,
ଧାନ ଶସ୍ୟ ଶୋଭା କେଦାର ମାଳ ।
ଝୁଲୁ ଝୁଲୁ ବାତେ ନୁଆଇଁ ଶିର
କହଇ ଚଷାକୁ ବିନୟେ ଗିର ।
"ମୋ ଲାଗି ପାଇଛୁ କଷଣ ଯେତେ,
ବତାଇ ଦେଇଚି ଫଳ ମୁଁ ସେତେ ।"
କ୍ଷେତ ଦେଖି ଚଷା ଆନନ୍ଦ ଅତି
ବିଭୁଙ୍କ ଚରଣେ ରଖିଲା ମତି ।
ଦିନ ହୋଇ ହ୍ରସ୍ୱ ବଢ଼ିଲା ରାତି,
କମିଲା ଧରାରୁ ଦିନେଶ ତାତି ।
ଶୁଭେ ଚଉଦିଗେ ହଳିଆ ଗୀତ,
ସୁଫସଲ ଦେଖି କେଡ଼େ ସେ ପ୍ରୀତ ।
ପାଣ୍ଡୁର ଦିଶେ ଆକାଶ,
ମାଳ କଇଁ ଫୁଟି ସରୋବର ଜଳେ
କରଇ ଶୋଭା ପ୍ରକାଶ ।

କେହି ହଳ ଯୋଚ ପେଣ୍ଡୁଚ ଗୁଡ଼,
ଅନାଇଲେ ଏଣେ କୁଡକୁ କୁଡ଼ ।
ବିଲମାଳ ଦିଶେ ଆଖୁର ରୂପା
ଟେକିଲା ଶିଶିର ଟୋପାକୁ ଟୋପା ।
ଉତ୍ତରୁଁ ବହି ପବନ,
କମଳ ବନକୁ ପକାଇଲା ପୋଡ
ମଧୁଚ ଅନ୍ତ ବସନ୍ତ ।
ହେଲାଣି ସକାଳ କାକର ଅନ୍ତ,
ଶ୍ରଦ୍ଧା ନାହିଁ କାର ଆଉ ତା ପ୍ରତି ।
ଆସୁଅଛି ମାଡ଼ ପ୍ରଖର ଶୀତ,
ପ୍ରାଣୀଏ ଏକାଳେ ପାବକ ପ୍ରୀତ ।
ଗ୍ରାମେ ଗ୍ରାମେ ଶିଶି ପଶି
ଗହ୍ୱର ନିବାସ କରିଦେଲା ଗ୍ରାସ
ସମ୍ପତ୍ତିକ ଦେଲା ଧ୍ୱଂସି ।
ନର ତନୁ ଶୁଖି ଖାରୁଆ ଦିଶେ
ଢୋଡ଼ାଇ ଦେଲାଣି କୁହୁଡ଼ି ଦିଶେ ।
ଛୁଟିଲାଣି ହିମେ ପାଦପ ଶିର,
ଧବଳ ତୁଷାରେ ମଣ୍ଡିତ ଗିରି ।
ପୁଷ୍ପହୀନ ଉପବନ,
ଶିଶିରେ ରଞ୍ଜିତ ପତର ଗୁଡ଼ିକ
ଦିଶେ ଅତି ଶୋଭବନ ।
ଏକାଳେ ଲକ୍ଷ୍ମଣ ରାମଙ୍କୁ ଚାହିଁ,
ପୁଚ୍ଛିଲେ "ଏ କିଏ ଆସୁଚି ଧାଇଁ" ?
ବୁଲାଇ ନୟନ ଜାନକୀ ପତି,
କଲେ ନିରୀକ୍ଷଣ ତାହାର ଗତି ।
ରୂପ ବଦଳାଇ ରାମଙ୍କ ପାଶେ,
ଆସି ସେ ତାହାଙ୍କୁ ଏମନ୍ତ ଭାଷେ ।
କିଏ ସେ ଆପଣ କିଏ ଏ ନାରୀ,
କାହିଁକି ହୋଇଚ ବକଳ ଧାରୀ ?
ଏ ଘନ କାନନେ ରହି
ରୁଧୀର ପିପାସୁ ମାୟାରେ ଧୂଷଣ
ରାକ୍ଷସଙ୍କ ଦାଉ ସହି ।
ଉତ୍ତରିଲେ ରାମ ତା କଥା ଶୁଣି
ତାର ପରିଚୟ ପୁଚ୍ଛନ୍ତି ପୁଣି ।

ବଖାଣିଲା ସବୁ ପାଖରେ ବସି,
ପତ୍ନୀରୂପେ ବର କହିଲା ହସି ।

"ମଙ୍ଗଳ ବେଳାରେ ଘଟିଚି ଯୋଗ
ଏ ନାରୀ ରତନ କରନ୍ତୁ ଭୋଗ ।"
ଏ ବାଣୀ ଶ୍ରବଣେ କହିଲେ ତାକୁ,
"ଯାଅ ଅବିଳମ୍ବେ ଲକ୍ଷ୍ମଣ ଠାକୁ" ।
ଲକ୍ଷ୍ମଣ ସମୀପେ ଯାଇ ସେ ଖରେ,
କହିଲା ତାହାଙ୍କୁ ହରଷ ଭରେ ।
"ମଙ୍ଗଳ ବେଳାରେ ଘଟିଚି ଯୋଗ,
ଏ ନାରୀ ରତନ କରନ୍ତୁ ଭୋଗ" ।
ଏ ବଚନ ଶୁଣି ସୁମିତ୍ରାସୁତ,
"ରାମଙ୍କ ଦାସ ମୁଁ ଏକଥା ସତ ।
ଅଛି କି ତୋ ଇଚ୍ଛା ହେବାକୁ ଦାସୀ ?
ହେଉଚ କାହିଁକି ଅରଣ୍ୟବାସୀ" ।
ବଦଳାଇ ମାୟା ବେଶ ସେ ନାରୀ,
ବସିଲା ଲକ୍ଷ୍ମଣ ଦେବାକୁ ମାରି ।
ତା ସ୍ୱଭାବ ଦେଖି ଲକ୍ଷ୍ମଣ ବୀର,
ତତ୍କ୍ଷଣେ କାଢ଼ିଲେ ତୂଣୀରୁ ତୀର ।
କାଟିଲେ ତାହାର ଶ୍ରବଣନାସା,
କହିଲେ ତାହାକୁ କର୍କଶ ଭାଷା ।
ଗଲା ତା ଶରୀର ରୁଧୀରେ ବୁଡ଼ି,
ଆକାଶ ମାର୍ଗରେ ଗଲା ସେ ଉଡ଼ି ।
ଯହିଁ ଥିଲେ ଖରଦୂଷଣ ଭାଇ,
ମିଛ ସଚ ଯୋଡ଼ି କହିଲା ଯାଇ ।

***

## ଦ୍ୱିତୀୟ ସର୍ଗ

ସୂର୍ପା ବଚନ କରିଣ ଶ୍ରବଣ
ରୋଷ ବହି ଖର ମନେ,
ଚଉଦ ଅସୁରେ ଆଦେଶିଲା ଖରେ
ଯିବାକୁ ଦଣ୍ଡକାବନେ ।

ଆଦେଶେ ଦଇତେ ଆସିଲେ ତୁରିତେ
ରଣବେଶେ ହୋଇ ସଜ,
ଜବେ ଗଲେ ଚଳି ସରୂପାକୁ ଧରି
ଉଡ଼ାଇ ମାର୍ଗେଣ ରଜ ।
ଅତି ମାୟାବନୀ ରାବଣ ଭଗିନୀ
ଦଇତଙ୍କ ଆଗେ ଆଗେ,
ଦେଖାଇଲା ଯାଇ କିଛି ଦୂରେ ଥାଇ
ଜର ଜର ହୋଇ ରାଗେ ।
ମହା ବଳୀୟାର ରାମ ବୀରବର
ଦେଖି ଦାନବ ନିକର,
ଦଇତ ଉଦ୍ଦେଶ୍ୟେ ହରଷ ମାନସେ
କାଢ଼ିଲେ ତୂଣିରୁ ଶର ।
ଗୁଣରେ ତତାଇ ଗୁଡ଼ଇ ତୁଡେଇ
ପେଷିଲେ ମୁନିଆଁ ବାଣ,
ରଣଭୂଇଁ ପରେ ପଡ଼ିଲେ ଅସୁରେ
ନ ରହିଲା ତାଙ୍କ ପ୍ରାଣ ।
ହେଲା ରଣଭୂଇଁ ଶୋଣିତର ନଈ
ନଟାର ସର୍ପା ସମ୍ଭାଳି,
ଲୋତକ ଗଡ଼ାଇ ଛଇଁ ଛଇଁ ହୋଇ
କହିଲା ଖରକୁ ଗୃଳା ।
ଖର ତା କଥାରେ ଅନାଇଁ ରାଗରେ
ରଥୀମାନଙ୍କୁ ଡ଼କାଇ,
ଆଣି ପାଶେ ତୋର ରଣର ବେଭାର
କହିଲା ସବୁ ବୁଝାଇ ।
ରଥକୁ ସଜାଇ ସୁବେଶ ପକାଇ
ଦଇତ ମାନଙ୍କୁ ଧରି,
ରଣଭୂଇଁ ପାଶ ହୋଇଣ ହରଷ
ଗଲା ବନାଶନେ ଅରି ।



ଅରାତି ବଳସୁ ଆଶେ ଆସିଚି ସେ ଧାଇଁ,
ରାମଙ୍କର ବଳକଳ ଲବେ ଜାଣି ନାହିଁ ।
ଅମଙ୍ଗଳ ଦରଶନ କଲା ସେ ବାଟରେ,
ଶ୍ୟେନ ପକ୍ଷୀଟିଏ ଆସି ବସିଲା ରଥରେ ।
ପାଦପ ଡାଳରୁ ଫଳ ପଡ଼ୁଅଛି ଝଡ଼ି,
ଶୁଭୁଅଛି ଶୃଗାଳର ବିକଟାଳ ରଡ଼ି ।
ଆଣ୍ଠୋଇ ପଡ଼ିଲେ ତାର ରଥେ ଯୋଗ୍ୟ ବାଜି,
ପାଂଶିଆ ହସିଲଣି ନଭେ ମେଘ ରାଜି ।
ବଢ଼ିଲା ଟଳର ପର କମ୍ପେ ତା ଶରୀର,
ଧୀରେ ଧୀରେ ହତୋତ୍ସାହ ହେଲା ଖରବୀର ।
ପରବେଶ ହେଲା ଆସି ସମର ପ୍ରାଙ୍ଗଣେ,
ସାହସ ବାନ୍ଧି ମାନସେ ହେଲା ଠିଆ ରଣେ ।
ଏଣେ ଜାନକୀ କୁଟୀରେ ରଣର ହୁଙ୍କାର,
ଶୁଣି ପୁଚ୍ଛିଲେ ରାମଙ୍କୁ ସ୍ୱାର ସମାଚାର ।
ଦାଶରଥି ଜାଣି ଜାନକୀ ହୃଦୟ,
କହିଲେ, "ଗୋ ସୀତେ ନହୁଅ ଅଥୟ ।
ମନେ ବହି ପ୍ରାଣ ଆସନ୍ତି ଅସୁରେ,
ମୋ ବାଣ ଆଘାତେ ଯିବେ ଯମପୁରେ ।
ନ ଜାଣନ୍ତି କେହି ରାମ ପରାକ୍ରମ,
ଦାନବ ମାନସେ ଉପୁଜଛି ଭ୍ରମ ।
ନିରତ ସେମାନେ ହିଂସା ମନେ ବହି,
ନିଜ ଇଚ୍ଛାମତେ ବିହରନ୍ତି ମହୀ ।
କରିଚି ଶପଥ ଏ କାନନେ ଥାଇ,
ରାକ୍ଷସଙ୍କ ଦାଉ ଦେବାନି ଲିଭାଇ ।
ଦକ୍ଷିଣ ବାହୁ ମୋ ଦେଖ କମ୍ପମାନ,
ସୂଚଇ ହଏ ଏ ବଳସ୍ତ ନଶାଣ" ।
ଲକ୍ଷ୍ମଣଙ୍କୁ ଡାକି କହନ୍ତି ରାଘବ,
"ଆସୁଛନ୍ତି ଦେଖ ଅସଂଖ୍ୟ ଦାନବ ।
ରହ ଗୁମ୍ଫା ମଧ୍ୟେ ଜାନକୀଙ୍କ ପାଶେ,
ଯାଏ ମୁଁ ଆଗକୁ ଦଇତ ବିନାଶେ" ।
ଏହା କହି ରାମ ହେଲେ ଆଗଭର,
ପାଉଅଛି ଶୋଭା କରେ ଧନୁଶର ।
ଘନ ପ୍ରଜ୍ୱଳିତ ରାମଙ୍କ ତେଜରେ,
ଅସୁରେ ଏ ପଟେ ରହିଲେ ଲାଜରେ ।
ନେଲା ରଥ ବାହି ସାହସରେ ଖର,
ରାମଙ୍କ ଉପରେ ବରଷିଲା ଶର ।
କଏ ଧରିଚନ୍ତି ଶାଣଦିଆ ଅସି,
ବାର ବାର ପୁଣି ଦେଉଛନ୍ତି ଘଷି ।

କିଏ ବା ଧରିବ ମୁଦ୍‌ଗର ବିଶାଳ,
ଭ୍ରକୁଟି ମାନସେ ରାମଙ୍କ ଏ କାଳ ।
ବିକଟ ଟଙ୍କାର ଶୁଣିଭ ବାରମ୍ବାର,
କରାଉଛି ମନେ ଭୟର ସଞ୍ଚାର ।
ମହାବାହୁ ରାମ ଏସନ ସମୟେ,
ବରଷିଲେ ବାଣମାନ ଏକଲୟେ ।
ପାବକ ନିକଟ ଆସି ପତଙ୍ଗ ଯେସନ,
ଉଡ଼ି ଉଡ଼ି ସେହିଭାବେ ହରାନ୍ତି ଜୀବନ ।
ରାମଙ୍କ ସମୀପ ଆସି ଅସୁରେ ତେସନ,
କଟୁକ୍ଷଣ ପରେ ଯାଇ ଭେଟିଲେ ଶମନ ।

—**—

ରଣଭୂମି ଅଙ୍ଗ ଶୋଣିତେ ରଞ୍ଜିତ,
କ୍ଷଣକ ମଧ୍ୟରେ ନିନାଦ ରହିତ ।
ସର୍ଜିଯୁଦ୍ଧ ନାଅଁ ଗର୍ଜୁଥିଲେ କାଲି,
ବର୍ଜିପ୍ରାଣ ଏବେ ବୃଷ୍ଟୁଚନ୍ଦ୍ର ବାଳା ।
କାନ୍ଦିବାକୁ ନାହିଁ ତାଙ୍କ ପାଇଁ କିଏ,
ଦେଖି ଏ ଘଟଣା ଆନନ୍ଦ ହୃଷିଏ ।
ସ୍ୱଭାବେ ଦଇତ ହିଂସାପରାୟଣ,
ସାଧୁ ସାଧୁ ଡାକ ଦେଲେ ଜୀବଗଣ ।
ଆକାଶରେ ଥାଇ ଦେବତା ନିକର,
ଦେଲେ ରାଘବଙ୍କୁ ପୁଷ୍ପ ଉପହାର ।
ଥିଲା ଏହି ଭୂଇଁ ବିଷାଦହାରିଣୀ,
ସମ୍ପ୍ରତି ହୋଇଛି ବିକଟକାରିଣୀ ।
ମଡ଼ ଖୁରପଟେ ବୁଲିଲେ ବିଲୁଆ,
ତାଙ୍କୁ ଡରିବାକୁ ଉଡ଼ୁଅଛି କୁଆ ।
ଲଗିଛି କଳହ ଗଧିଆ ଶ୍ୟେନର,
ଏ ସମୟେ କୋକଶିଆଳ ହାଜର ।
ଦେଖିଲେ ଏ ଦୃଶ୍ୟ ଉପୁଜଇ ତ୍ରାସ,
କାଳ ଉପହାସେ କରଇ କି ଗ୍ରାସ ।
ଜାନକୀ ଲକ୍ଷ୍ମଣ ଗୁମ୍ଫାରୁ ବାହାରି,
ଭେଟିଲେ ଏ କାଳେ ରାମ ରଘୁଧୀଶ ।
ତାହାଙ୍କର ଦେଖି ଅକ୍ଷତ ଶରୀର,
ଉଭୟେ ହୋଇଲେ ଆନନ୍ଦେ ଅଧୀର ।

***

ହୋଇଣ ଚକିତ ଭୟେ ବିକମ୍ପିତ
ଲଙ୍କାଯାଇ ଅକମ୍ପନ,
ସଂଗ୍ରାମ ସଙ୍ଗତ କହିଲ ଜଣତ
ଲଙ୍କାଧୀପ ଦଶାନନ ।
ସରୂପା ଏକାଳେ ପବନ ବେଗରେ
ଲଙ୍କାପୁରେ ଗଲ ଚଳି,
ସକେଇ ସକେଇ କହିଲ ବୁଝାଇ
ଦଶାନନ ମହାବଳୀ ।
ମଶକ ଯେସନ ଖୋଜୁଥାଏ ରନ୍ଧ୍ର
ସଦା ରକତ ସନ୍ଧାନେ,
ଅହରହ ଛିଦ୍ର ଖୋଜଇ ତେସନ
ଖଳ ସ୍ୱକାର୍ଯ୍ୟ ସାଧନେ ।
ସରୂପା ବଚନ ଶୁଣି ଦଶାନନ
ଜାନକୀ ହରଣେ ବଳାଇ ମନ,
ସାରଥୀ ଡ଼କାଇ ସ୍ୟନ୍ଦନ ଅଣାଇ
ମାରୀଚ ସମୀପେ ଗଲ ବହନ ।
ଶତାଙ୍ଗୁ ଓହ୍ଲାଇ ଧୀରେ ଧୀରେ ଯାଇ
ନିକଟେ ତାହାର ହେଲ ହାଜର,
ଲଭି ତା ଦର୍ଶନ ମାୟାରେ ନିପୁଣ
ସେ ମାରୀଚ ତାକୁ ଯୋଡ଼ିଲ କର ।
କୁଶଳ ବାରତା ପୁଚ୍ଛି ଦଶମଥା
ଗମନ କାରଣ ଦେଲ ବଖାଣି,
ମାରୀଚ ତା ଶୁଣି ଯାହାଥିଲା ଜାଣି
କରିଲେ ବର୍ଣ୍ଣନା ରାମ କାହାଣୀ ।
ମରଣ ଯାହାର ହୁଅଇ ହାଜର
ନ ଶୁଣେ ସେ କାର ଭଲ ବଚନ,
ତାକୁ କଉଶଳେ ଅବା ବଳେ ଛଳେ
କରଇ ଆୟତ୍ତ ଅନ୍ତ ବହନ ।
ସ୍ୟନ୍ଦନେ ଆରୋହି ଖରେ ଗଲେ ଦୁଇ
ରାମଥିଲେ ଯହିଁ ଦଣ୍ଡକା ବନେ,
ଖଣ୍ଡେ ଦୂରେ ପଥୁଁ ଅବରୋହି ରଥୁଁ
ମାରୀଚ ଏକାଳେ ବିଷଣ୍ଣ ମନେ ।
ହେମକାନ୍ତି ପରି ମୃଗରୂପ ଧରି
ରାମଙ୍କ କୁଡ଼ିଆ ପାଶେ ଗମିଲା,

ତା ରୂପ ଦର୍ଶନ ସୀତା ଛନ୍ନଛନ୍ନ
ଧରିବାକୁ ତାଙ୍କ ମନ ବଳିଲା ।
ଜାନକୀ ବଲ୍ଲଭ ସୀତା ମନୋଭାବ
ଜାଣି ମୃଗ ପଛେ ଗଲେ ପ୍ରଖରେ,
ଗୋଡାଇ ଗୋଡାଇ ଅବଶେଷ ଯାଇ
ନେଲେ ପ୍ରାଣ ତାର ତୀକ୍ଷ୍ଣ କାଣ୍ଡରେ ।
ଜନମିଚି କେବେ କେଉଁ ଯୁଗେ ଭବେ
ମୃଗ ହାଟକ ବରଣ,
ତଥାପି ଲୋଭରେ ମିରଗ ପଛରେ
ଧାଇଁଲେ ସୀତା ରମଣ ।
ଗଲାବେଳେ ପ୍ରାଣ ଡାକିଲ ଲକ୍ଷ୍ମଣ
"ଲକ୍ଷାକର ଆସି ଅଛି ଚଞ୍ଚଳ" ।
ରାମ କଣ୍ଠସ୍ୱର ପରି ଆର୍ତ୍ତସ୍ୱର
ଶୁଣି ବଇଦେହି ଅତି ବିକଳ ।
କହିଲେ ଲକ୍ଷ୍ମଣ ! ତୁରିତ ଗମନ
କରି ରାମ ପାଶେ ପୁଚ୍ଛ କୁଶଳ,
କାହିଁକି କେଜାଣି ହୃଦ ଦ୍ରବେ ହାଣି
ଶୁଣିଲା ବେଳୁଁ ସେ ଧ୍ୱନି ବିକଳ" ।
ସୁମିତ୍ରା ନନ୍ଦନ ନକହି ବଚନ
ରାମ କଥା ସ୍ମରି ଟଳିଁ ନଥିଲେ,
ଜନକନନ୍ଦିନୀ ଦେଖି ତାଙ୍କୁ ତୁନି
ଯିବାପାଇଁ ଆଉଥରେ କହିଲେ ।
ଲକ୍ଷ୍ମଣ ଉତ୍ତରେ କହିଲେ "ସମରେ
ଦେବତା ଦାନବ ଗନ୍ଧର୍ବ ଚଳ,
ରାମ ସଙ୍ଗେ ଯୁଦ୍ଧ କଲେ ହେବ ଗଧ
ତାଙ୍କ ସରି ଭବେ ଅଛି କେ ବଳୀ" ।
ତାଙ୍କ ରୁକ୍ଷ ଭାଷା ଶ୍ରବଣେ ସହସା
କହନ୍ତି ଏସନ ସୁମିତ୍ରାସୁତ,
"ନାଶିଏ ଅନୃତ ରଟନ୍ତି ସତତ
ଚରିତ୍ର ସେମାନଙ୍କ ରୁହଇ ପୂତ ।
ପୁଣି ଘୋର ବନେ କପଟ ନର୍ତ୍ତନେ
ଗ୍ରୁଡ଼ି ଏକୁଟିଆ ଯିବ ପଳାଇ" ?
ଦାଉର କଥାରେ ଗଉଜ ରାଗରେ
ନାନା କଥା କହି ଦେଲେ ଟଳାଇ ।

"ଦେଲ ମୋତେ ଗାଳି ତୁମ ଆଜ୍ଞା ପାଳି
ଯାଉଚି ବନକୁ ଲବେ ନ ଡ଼ରି ।"
ଏହା କହି ସାକ୍ଷି ଦେବତାଙ୍କୁ ରଖି
ଭାଉଜଙ୍କ ପାଶୁଁ ହେଲେ ଅନ୍ତର ।



## ସୀତା ଚୋରୀ

ଲକ୍ଷ୍ମଣ ଗମନ ଲଙ୍କେଶ ଦେଖି ହରଷଭରେ,
କୁଡ଼ିଆ ଆଗରେ ପ୍ରବେଶ ହେଲା ତପି ବେଶରେ ।
ଜାନକୀ ହରିବ ବ୍ରାହ୍ମଣ ଦେଲେ କୁଶ ଆସନ,
ଜଳ ଧୋଇବାକୁ ଚରଣ ଆଣି ଦେଲେ ବହନ ।
ମଇଥିଳୀ ରୂପ ଦର୍ଶନେ ହୋଇ ମୁଗ୍ଧ ବିଶେଷ,
ଦେଖିଲ ଅଙ୍ଗ ବଦନେ ନାହିଁ କଳଙ୍କ ଲେଶ ।
ନାନା କଥା କହି ଭଣ୍ଡଇ ଭଣ୍ଡ ତପସ୍ୱୀ ବସି,
ତା ବଚନ ଶୁଣି ବୈଦେହୀ ଉତ୍ତରିଲେ ଭରସି ।
କ୍ଷୁଧାତୁର ସିଂହ ମୁଖରେ କାହିଁ ଦେଉଛ କର,
ଝୁଲିକୁ ଗୃହୀତ କରେ ତୋର ନାହିଁକି ଡ଼ର ?
ସାପଗାତେ ହାତ ଭରନ୍ତ କାହିଁ କରୁଛୁ ନେଇ,
ହରିର କରିବୁ ନିର୍ମଳ ଚକ୍ଷୁ ନୟନେ ଦେଇ ।
କାଳକୁଟବିଷ ପିଇବୁ ରଖି ହଜମ ଆଶା,
ଶ୍ରୀରାମବନିତା ଛୁଇଁବୁ ତୋର କେତେ ଭରସା ।
ଗଳେ ଶିଳା ବାନ୍ଧି ହେବୁକି କେବେ ସାଗର ପାର ?
ଫଣୀ ଦନ୍ତେ ହାତ ବଜାଇ କିଏ ପାରିବ ମାର ?



ପାପିଷ୍ଠ ଲଙ୍କେଶ ବଦଳାଇ ବେଶ
ଦେଖାଇ ସ୍ୱରୂପ ଜାନକୀ ଧରି,
ବସି ରଥପରେ ଆକାଶ ମାର୍ଗରେ
ଚଳିଲା ଅହ୍ଲାଦେ ଲଙ୍କା ନଗରୀ ।
ଜନକ ଦୁହିତା ଶ୍ରୀରାମ ବନିତା
ଗଲାବେଳେ ରଥେ ଅତି ବିକଳେ,
ଅନାନ୍ତି ପଛକୁ ଲକ୍ଷ୍ମଣ ରାମଙ୍କୁ
ନୟନ ପୂରାଇ ଲୋତକ ଜଳେ ।

କାହିଁ ଅଛ ରାମ ସୁମିତ୍ରାନନ୍ଦନ
ଦଶାନନ ମୋତେ ନେଉଛି ହରି,
ଅନ୍ୟାୟୀକୁ ଶିକ୍ଷା ଦେଇ ଧର୍ମରକ୍ଷା
କର ରଘୁନାଥ ପଣ ତୁମରି ।
ହେ ବନ ଦେବତା ତୃଣ ତରୁଲତା !
କହୁଛି ବନସ୍ତେ ପଶି ଶରଣେ,
କହିବ ରାମଙ୍କୁ ଅବା ଲକ୍ଷ୍ମଣଙ୍କୁ
ସୀତାଙ୍କୁ ହେରାଇ ନେଲା ରାବଣ ।"
ଜାନକୀ ଏକାକେ ଦେଖି ବୃକ୍ଷଡାଳେ
ଖଗେଶକୁମାରେ କହିଲେ ରାଜ,
"ଜଣାଇବ ରାମ ଅଥବା ଲକ୍ଷ୍ମଣ
ନେଲା ଦଶାନନ ସୀତା ହେରାଇ" ।
ଖଗେଶ ନନ୍ଦନ ଜାନକୀ ରୋଦନ
ଶୁଣି ଉପରକୁ ଉଠି ଗଲେ,
ସତୀଙ୍କୁ ନେବାର ଦେଖି ଦଶଶିର
ପକ୍ଷ ଝାଡ଼ି ବସି କ୍ରୋଧେ କହିଲେ ।
"ଶୁଣ ବଂଶପାଣି ଏ ରାମ ରମଣୀ
କେଉଁ ଦୋଷେ ତାଙ୍କୁ ନେଉ ହେରାଇ ?
ଏ ପାପ କରମ କରି ତୁହି ଧର୍ମ
ରଖି ରଖି ରଥ ନ ଯା ଚଳାଇ ।
ଜନ୍ମ ଉଚ୍ଚ କୁଳେ ପୌଲସ୍ତ୍ୟ ବଂଶରେ
କଲୁ ପାପ କର୍ମ ସାରା ଜୀବନ,
କେତେ ପରନାରୀ ନେଲୁ ଅପହରି
ହେଲଣି ନିକଟ ତୋର ନିଧନ ।
ମଣିହରା ଫଣୀ ପ୍ରମାଦ ନ ମଣି
ନେଉଅଛୁ ବାନ୍ଧି କାହା ପଣରେ,
ରଖି ତୋ ଶରୀରେ ଲଢ଼େଇ ମୋ ସଙ୍ଗେ
କରେ ଦେଖିବା ତୁ ନେବୁ କେମନ୍ତେ" ।
ହୋଇ କ୍ରୋଧଭର ବିଶ୍ରବାକୁମାର
ଜଟାୟୁ ବଚନ ଶୁଣି ଫେରିଲା,
ହୋଇ ଭେଟାଭେଟି ନୟନ ତରାଟି
ଯୁଝିବା ନିମିତ୍ତ ଧନୁ ଧଇଲା ।
ଦୁହିଁଙ୍କ ମଧ୍ୟରେ ଲାଗିଗଲା ଖରେ
ଝଡ଼ଣ ସମର ବହୁ ସମୟ,
ବୃଦ୍ଧ ପକ୍ଷୀରାଜ ଖଗେଶ ଆତ୍ମଜ
ନଥାଇ ଆୟୁଧ କଲା ଅଥୟ ।
ଦେବତା ବଇରି ଶେଷେ ଅସି ଧରି
ଜଟାୟୁର ପକ୍ଷ ଛିଣ୍ଡାଇ ଦେଇ,
ଚଢି ବିମାନରେ ହରଷ ମନରେ
ଲଙ୍କାଦେଶେ ଗଲା ସୀତାଙ୍କୁ ନେଇ ।
ପ୍ରାଣଠାରୁ ବଳି କିଛି ନାହିଁ ଏ ଜଗତେ,
ଜଟାୟୁ ଛାଡ଼ିଲା ପ୍ରାଣ ଅନ୍ୟାୟ ନିମନ୍ତେ ।

—**—

## ତୃତୀୟ ସର୍ଗ

## ରାବଣପ୍ରତି ସୀତାଙ୍କ ତିରସ୍କାର

ଦୂଷଣ କରିତ ବିଶ୍ରବାନନ୍ଦନ,
କରଇ ବିମାନେ ଲଙ୍କାକୁ ଗମନ ।
ଏକାକେ ଜାନକୀ ତାହାଙ୍କୁ ଅନାଇଁ
କହନ୍ତି ରାଗରେ ଲୋତକ ଗଡ଼ାଇ ।
"ରେ ଅଧର୍ମାଚାରୀ ଥିଲା ଯେବେ ବଳ,
କାହିଁକି ମୋ ଆଗେ ଦେଖାଇଲୁ ଛଳ ।
ପଠାଇ ବନସ୍ତେ ମୋ ପତି ଦିଅର,
କରୁ ଆଜ ମୋତେ କେଉଁ ହରିବାର ।
ଦେଖି ଏକୁଟିଆ କୁଡ଼ିଆ ଭିତରେ,
ବସିଲୁ ଦୁଆରେ ବାବାଜୀ ବେଶରେ ।
ବଳେ ପରନାରୀ ଆଣିଲୁ ଓଟାରି,
କି ବୋଲିବେ ଲୋକେ କହିତ ବିଚାରି ?
ତୋ ମନ କାମନା ହୋଇବ ବିଫଳ,
ନ ପାରିବୁ ବଞ୍ଚି ପିଇ ହଳାହଳ ।
ଧର୍ମରକ୍ଷା ପାଇଁ ରାଜାର ଜନମ,
କରୁଛୁ କିଆଁ ତୁ ଏ ପାପ କରମ ?
ବ୍ରହ୍ମାଣ୍ଡେ କିଏ ସେ ଅଛିରେ ଏପରି ?
ରାମ ସଙ୍ଗେ ସିଏ ହେବାକୁଟି ସରି ।
ଅନ୍ତିମ କାଳ ତୋ ଆସିଲା ପାଖେଇ,
ଯମପାଶେ ରାମ ଦେବେ ତ ପଠେଇ" ।

ଏପରି ସମୟେ ପାଞ୍ଚଟି ବାନର,
ଦେଖିଲେ ଜାନକୀ ଗିରିର ଉପର ।
ଆପଣା ଦେହରୁ ଅଳଙ୍କାର କାଢ଼ି,
ଖଚରେ ତଳେ ଦେଲେ ବିକଳେ ଫୋପାଡ଼ି ।

***

## ଜାନକୀଙ୍କର ଲଙ୍କା ପ୍ରବେଶ

ଲଙ୍କାପୁରେ ଯାଇ ପହଞ୍ଚିଲା ରଥ,
ଅତିକ୍ରମି ବହୁ ନଦୀଗିରି ପଥ ।
ଓହ୍ଲାଇ ତହିଁରୁ ସତୀ ଜାନକୀଙ୍କି,
ରଖିଲା ଦେଖାଇ ସକଳ ନାରୀଙ୍କି ।
ପାହିଲା ଦୁଃଖର ରଜନୀ ଉଦେ ହେଲେ ଭାସ୍କର,
ସାରିଲା ସକାଳୁ ଗାଧୁଆ ଏଣେ ଲଙ୍କା ଈଶ୍ୱର ।
ଜାନକୀ ସମୀପେ ପ୍ରବେଶି ଭାଷେ ବିନୟ ବାଣୀ,
"ଅଭେଦ୍ୟ ଏ ଲଙ୍କା ରାଇଜେ ହୁଅ ମୋ ପାଟରାଣୀ
ଦେଖ ଚଉଦିଗେ ସାଗର ବେଢ଼ିଅଛି ଏ ଲଙ୍କା,
ନ ପାରନ୍ତି ପଶି କେଏ ସେ ଅବରତ ନିଶଙ୍କା ।
ମଣି ମାଣିକ୍ୟରେ ପୂରିତ ଦେଖ ଏହି ନଗରୀ,
ଶଚୀପତି ଆଦି ଦେବତାମାନେ ଅଛନ୍ତି ଡରି ।
ଅଧମ ରାମ କି ପଶିବ ଏହି ସାଗର ମଝିରେ ?
ଯାର ଚଉପାଖେ ଅଛନ୍ତି ବହୁ ରାକ୍ଷସବୀରେ ।
ରାମ ଆଶା ଛାଡ଼ି ମନରୁ ଭଜ ମୋତେ ଏଥର,
ବିଭବ କୋଳରେ ବିହରି ପୋଛ ଲୋତକ ଝର" ।

—ଃ୦ଃ—

ଶ୍ରୀରାମ ରମଣୀ ଦଶାନନ ବାଣୀ
ଶୁଣି ଉତ୍ତରିଲେ ତାହାକୁ ଚଳ,
"ପୂରିଲା ତୋ କାଳ ରେ ବର୍ବର ବାଳ
ରାମଙ୍କ ତେଜରେ ଯିବୁ ତୁ ଜଳି ।
ରାମ ପରାକ୍ରମ ନ ଜାଣି ଅଧମ
କଥା ବଡ଼ ବଡ଼ କହୁ ମୋ ଆଗେ,
ଧରାରୁ ଅସୁରେ ଯିବେ ଯମପୁରେ
ରଘୁନାଥ ଶର ପେଷିଲେ ରାଗେ ।"

ଜାନକୀ ବଚନ ଶୁଣି ଦଶାନନ
ରଖିଲା ତାହାଙ୍କୁ ଅଶୋକ ବନେ,
ବର୍ଷେ କଣକର ସେଠାରୁ ବାହାର
ଆସିଲା ଦଇତ ବିଷଣ୍ଣ ମନେ ।
ଭୋକ ଶୋଷ ବାଧା ନିବାରଣେ ସୁଧା
ଆଣି ପୁରନ୍ଦର ଦେଲେ ସୀତାଙ୍କୁ,
ପରିଚୟ ଦେଇ ସେତକ ସେ ପିଇ
କଟାଇଲେ ଦିନ ସ୍ମରି ରାମଙ୍କୁ ।

—ଃ୦ଃ—

## ରାମ ମୃଗମାରି ଫେରିବା

ରାମ ମୃଗମାରି ବନମଧ୍ୟୁଁ ଫେରି
ଲକ୍ଷ୍ମଣଙ୍କୁ ବାଟେ ଭେଟି ତଟସ୍ଥ,
"ଜାନକୀଙ୍କି ଛାଡ଼ି ଆସିଲ କିପରି ?
ବୋଲି ପୁଚ୍ଛି ତାଙ୍କୁ ହେଲେ ହାରସ୍ଥ ।
ଜାନକୀ ନ ଦେଖି ହୋଇ ଅତି ଦୁଃଖୀ
କହନ୍ତି ଏସନ ଚାହିଁ ଲକ୍ଷ୍ମଣ,
"ଜନକନନ୍ଦିନୀ ହୋଇ ଅନାଥିନୀ
କାହିଁ ଗଲା ମୋର ପ୍ରାଣଚନ୍ଦନ ।
କି ଅବା ଅସୁରେ ଖାଇବା ଆଶାରେ
ଧରି ତାକୁ ବନେ ଗଲେ ପଳାଇ,
ଅବା ତୋ ପଛରେ ଗଲେ ଅବାଟରେ
ବୁଲୁଛନ୍ତି ବନେ ବାଟ ନ ପାଇ ।
ମୋ ଆଜ୍ଞା ନ ପାଳି ଗଲୁ ବନେ ଛାଡ଼ି
ହିଂସ୍ରଜନ୍ତୁ ଯହିଁ କରନ୍ତି କ୍ରୀଡ଼ା,
ଅବା ବାଘ ଆସି ଦେଲା ତାଙ୍କୁ ଗ୍ରାସି
କହିବାକୁ ଦାଣ୍ଡେ ଲାଗୁଛି ବ୍ରୀଡ଼ା ।
ଅବା ଲତା ତଳେ ପତର ଗହଳେ
ଲୁଚିଅଛି କାହିଁ ଅଭିମାନରେ,
କ୍ଷେପି ଅଗ୍ନି ବାଣ ଜାଳି ଲତାତୃଣ
ପଡ଼ିବ ପରା ସେ ନେତ୍ର ପଥରେ ।"
ସୁମିତ୍ରା କୁମର ରାମଙ୍କ ଏ ଗିର
ଶୁଣି ଉତ୍ତରିଲେ ଅତି କାତରେ,

"ସୀତାଙ୍କ ଆଦେଶେ    ଗଲି ବନ ଦେଶେ
ଶୁଣି ଆର୍ତ୍ତସ୍ୱର ବନ ଭିତରେ" ।
ଶୋକରେ ଅଧୀର    କୌଶଲ୍ୟା କୁମର
ଖୋଜି ଖୋଜି ସୀତା ହତାଶ ଅତି,
ତାଙ୍କର ସନ୍ଦେଶ    ନ ପାଇ ବିଶେଷ
ରାଗରେ ଧଇଲେ ଉଗ୍ରମୂରତି ।
ଦେଖି ସେ ମୂରତି    ଲକ୍ଷ୍ମଣ ସମ୍ପ୍ରତି
ବୋଧିଲେ ଏପରି ଅତି ବିନୟେ,
"ବିପଦେ ଧଇର୍ଯ୍ୟ    ଧରି କଲେ କାର୍ଯ୍ୟ
ଶେଷରେ ମଙ୍ଗଳ ହେବ ନିଶ୍ଚୟେ" ।
ସଉମିତ୍ରି ବାଣୀ    ଶୁଣି ରଘୁମଣି
ଶାନ୍ତ କରି କୋପ ହେଲେ ଆଶ୍ୱସ୍ତ,
ଦୁଇ ଭାଇ ମିଳି    ଗଲେ ବନେ ଚଳି
ବାଟରେ ଭେଟିଲେ ଖଗେଶସୁତ ।
ଲୋଟି ବସୁନ୍ଧରା    ହୋଇ ଦରମରା
ପଡ଼ିଥିଲା ସେହି ଜଟାୟୁ ପକ୍ଷୀ,
ସୀତାଙ୍କ ବାରତା    ଜାନକୀ ଭରତା
ଦେଇ ସେ ସହସା ମୁଦିଲା ଆଖି ।
ଦେଖି ତା ମରଣ    ଶ୍ରୀରାମ ଲକ୍ଷ୍ମଣ
ତା ପିଠି ଆଉଁଷି ଦେଲେ ଅଧୀରେ,
ବନୁଁ ହଣାହଣି    କରି କାଠ ଆଣି
ତା ପିଣ୍ଡ ଦହନ କଲେ ବିଧିରେ ।
ନ ଖାଇ ନ ପିଇ    ଭ୍ରମି ବେନି ଭାଇ
କ୍ଷୁଧାରେ ବସିଲେ ଗଛ ଛାଇରେ,
ଗୋରୁ ପଲ ଦେଖି    ଲଜ୍ଜାକୁ ଉପେକ୍ଷି
ଆତୁରେ ମାଗିଲେ କ୍ଷୀର ଆଗ୍ରହରେ ।
ରୋଷେ ଜରଜର    ସୁମିତ୍ରା କୁମାର
ନ ଦେବାରୁ କ୍ଷୀର ଏମନ୍ତ ଗିର,
କହିଲେ "ତୁମରି    ଯାହା ଅଛି ଭାଣ୍ଡେ
ତା ହେବୁ ଏକ୍ଷଣି ହେଉ ରୁଧିର" ।
ସବୁ ଦୁଧ ରକ୍ତ    ହେବାରୁ ଚକିତ
କାନ୍ଦି କାନ୍ଦି ଧାଇ ଆହିରଗଣ,
ଧରି ରାମ ପାଦ    କରି ଆର୍ତ୍ତନାଦ
କହିଲେ, 'ଏଥିରୁ କର-ତାରଣ' ।

ରାମ ଦୟା ବହି    ଦୁଧ ଦେବେ ଗାଈ
କହିବାରୁ ଗଲେ ଗୋପାଳ ଘରେ,
ଦୁଧ ଦୁହିଁ ଆଣି    ଥୋଇଲା ସେତିକି
ଜଣେ ମୋଦଭରେ ରାମ ଆଗରେ ।
ଦୁଇ ଭାଇ ଯାକ    ପିଇ ଦୁଧ ଟିକ
ବୋଇଲେ 'କି ବର ମାଗ ଗୋପାଳେ,
"ଅଯୁର୍ବିକ ଦୋଷ    କରି ମୋର ନାଶ"
ବୋଲି ମାଗିଲା ସେ ବର ବିକଳେ ।
ଏ ବଚନ ଶୁଣି    ପୁଣି ରଘୁମଣି
ଉତ୍ତରିଲେ ତାକୁ ପ୍ରସନ୍ନ ମନେ,
ଜନମି ଦ୍ୱାପରେ    ବଢ଼ିବୁ ତୋ ଘରେ
ପାଳିବି ଆନନ୍ଦେ ଅତି ଯତନେ ।
ଏହା କହି ରାମ    ଛାଡ଼ି ସେହି ସ୍ଥାନ
ଖୋଜି ଖୋଜି ସୀତା ଗିରି କନ୍ଦରେ,
ନ ପାଇ ସନ୍ଦେଶ    ସହି ନାନା କ୍ଳେଶ
କଲେ ପରବେଶ ଋଷ୍ୟମୂକରେ ।
ବ୍ୟଥିତ ଚିତ୍ତରେ    ଗନ୍ତବ୍ୟ ମାର୍ଗରେ
ଗଲେ ବେନି ଭାଇ ସୀତା ସନ୍ଧାନେ,
ଯାଉଁ ଯାଉଁ ବାଟେ    ପମ୍ପାସର ତଟେ
ପହଞ୍ଚିଲେ ଦୁହେଁ ଦୁଃଖ ବଦନେ ।
ଗୋଟିଏ ଶବରୀ    ମହୋଲ୍ଲାସେ ଆସି
ପୂଜିଲା ଚରଣ ଦ୍ୱୟ,
ନାନା ଫଳ ତୋଷି    ଆଶ୍ରମକୁ ନେଇ
ଦେଲା ନିଜ ପରିଚୟ ।
ତପନ ନନ୍ଦନ    ଏକାଳେ ଦର୍ଶନ
କରି ଶ୍ରୀରାମ ଲକ୍ଷ୍ମଣ,
କମ୍ପି କମ୍ପି ଭୟେ    ଭାସ୍କର ତନୟେ
କହିଲା ଯାଇ ତତ୍କ୍ଷଣ ।
"ଅପୂର୍ବ ମୂରତି    ଯୁବକ ଦୁଇଟି
ହାତେ ଧରି ଧନୁଶର,
ଆସୁଛନ୍ତି ଏଣେ    ଭୟ ଲାଗେ ମନେ
ଏଥିକୁ ଉପାୟ କର" ।
ଏକଥା ଶ୍ରବଣେ    ସୁଗ୍ରୀ ମନେ ମନେ
ବିଚାରିଲା ବାଳୀ ପଠାଇଥିବ,

ଯାଇ ଅନ୍ୟସ୍ଥାନ    କହେ ହନୁମାନ
"ଯାଇ ବୁଝି ଖବର ପ୍ରାଣ ରହିବ" ।
ଗଲା ହନୁ ଚଳି    ଯତି ବେଶ ଧରି
ଭାଇ ଦୁହିଁଙ୍କି ଭେଟିଲେ,
ପରିଚୟ ପାଇ    ପରିଚୟ ଦେଇ
ଆପଣା ରୂପ ଧଇଲେ ।
କାନ୍ଧରେ ବସାଇ    ନେଲେ ଦୁଇଭାଇ
ତପନ ନନ୍ଦନ ପାଶେ,
ଭେଟାଭେଟି ହୋଇ    ପଥରେ ପକାଇ
ବସିଲେ ସର୍ବେ ଉଲ୍ଲାସେ ।
ତରଣି ତନୁଜ    ତରଣି ବଂଶଜ
ଜାମ ଶିଖି ସାକ୍ଷି କରି,
ମିତ୍ରତା ବନ୍ଧନରେ    ବନ୍ଧା ପରସ୍ପରେ
ହେଲେ କର ଧରାଧରି ।
ଏକାଳେ ରାମଙ୍କୁ    ସୀତା ଭୂଷଣ
ଦେଖାଇଲେ ବାୟୁବାଳ,
ଦେଖି ତା ଶ୍ରୀରାମ    ଜାନକୀଙ୍କ କନ୍ତ
ଗଡ଼ାନ୍ତି ଲୋତକ ଜଳ ।
ସୁଗ୍ରୀବ ଏଅନ୍ତେ    କହନ୍ତି ଦୁଃଖିତେ
ମିତ୍ରଙ୍କ ଆଗକୁ ଚାହିଁ,
କପଟି ଅଗ୍ରଜ    ତଡ଼ିଲେ ଅନୁଜ
ଅଧର୍ମେ ମତି ବଳାଇ ।
ଶ୍ରବଣେ ଏକଥା    ମନେ ବହି ବ୍ୟଥା
ଦିଅନ୍ତି ରାମ ଉତ୍ତର,
"ମୋର ଶର ସହି    ନପାରିବେ କେହି
ସଂଶୟ ମନେ ନ କର ।
ଶୁଣି ସେ ବଚନ    ତପନ ନନ୍ଦନ
ହୋଇ ଅତି ପୁଲକିତ,
ଜାନକୀଙ୍କ ଅଙ୍ଗ    ଆଭରଣ ଯାକ
ଆଣିଲେ ଯାଇ ତ୍ୱରିତ ।
ଦେଖି ସେ ଭୂଷଣ    ରାମ ହତଜ୍ଞାନ
ହୋଇ ପଡ଼ିଲେ ଭୂତଳେ,
ହେବାରୁ ସେ ଚେତା    ତକ୍ଷଣେ ପୂରିଲା
ନୟନ ଲୋତକ ଜଳେ ।

ରାମଙ୍କ ଏ ଦଶା    ଦର୍ଶନେ ସହସା
ସୁଗ୍ରୀ କହନ୍ତି ବୁଝାଇ,
"କାହାଁକୁ ଏ ଭବେ    ସୁଖ ଦୁଃଖ ଲଭେ
ଘୁଞ୍ଚିଛି କି ଜନମ ପାଇ ?
ଏ ଭବ ସାଗର    କରିବାକୁ ପାର
ଧୃତି ହିଁ ନଉକାବାହି,
ମସ୍ତକ ଚଞ୍ଚଳ    କଲେ ଅବିରଳ
ମଣିଷର ନାହିଁ ସାହା ।
ଆମୋଦ ପ୍ରମୋଦ    ଅଥବା ବିପଦ
ଆତଯାତ ବିଧିବଶେ,
ହୋଇ ଜ୍ଞାନବନ୍ତ    କପାଁ ହନ୍ତସନ୍ତ
ବସିବ ମନ ବିରସେ ? ।
ସମରେ ସାହସ    କଲେ ପରକାଶ
ବିପଦ ହୁଏ ଖଣ୍ଡିତ,
ଭୀରୁତା ଆଚରି    ଯେହୁ ଡ଼ରି ଡ଼ରି
ଚଳେ ତା ମୃତ୍ୟୁ ନିଶ୍ଚିତ ।
ବିପଦ ମୁହଁରେ    ଅବଲମ୍ବି ଧୈର୍ଯ୍ୟ
କର୍ମ କରଇ ଯେ ଜନ,
ଭାଗ୍ୟ ଲକ୍ଷ୍ମୀ ତାର    ହୋନ୍ତି ଅବଳମ୍ବେ
ସହାୟିକା ଆଜୀବନ ।
ଉପଦେଶ ବାଣୀ    ଶୁଣି ରଘୁମଣି
ସରସ କଲେ ବଦନ,
ଅନ୍ୟାୟୀର ବାଧା    ଦେବାକୁ ଶରଧା
ବଳିଲା ତାହାଙ୍କ ମନ ।

***

## ଚତୁର୍ଥ ସର୍ଗ

ତପନତନୟ ଏ ଅନ୍ତେ ଧରି ରାମଙ୍କ କର,
ନେଇ ବସାଇଲା ପଥରେ ଯହିଁ ନ ଥିଲା କର ।
ବାଳି ସୁଗ୍ରୀବଙ୍କୁ ଯେତେକ ଦେଇଥିଲା ଯନ୍ତ୍ରଣା,
ପ୍ରତିଶୋଧ ତାର ନେବାକୁ କଲା ଏବେ ମନ୍ତ୍ରଣା ।
ବାଳିର ପୁରୁଷ ଚରିତ ସୁଗ୍ରୀ କରି ପ୍ରକାଶ,
ପୁଚ୍ଛିଲା ରାମଙ୍କୁ କପରି ହେବ ତାର ବିନାଶ ।

ଉତ୍ତରିଲେ ରାମ ତାହାଙ୍କୁ ବାଳି ସଙ୍ଗେ କନ୍ଦଳ,
ଆରମ୍ଭିଲେ ଯାଇ କରିବି ଚୂର୍ଣ୍ଣ ତା ବକ୍ଷସ୍ଥଳ ।
ଏ ବଚନ ଶୁଣି ସୁଗ୍ରୀବ ଦେଲ୍ ରଣ ହୁଙ୍କାର,
ତା ଗର୍ଜନ ଶୁଣି କମ୍ପିଲା ବାଳୀ ସିଂହ ଦୁଆର ।
ଯେବେ ସେ ଶବଦ ବାଜିଲା ବାଳୀ କର୍ଣ୍ଣ କୁହରେ,
ଦୁଆର ଫିଟାଇ ଧାଇଁଲା ଖରେ ଅତି ରାଗରେ ।
ଦୁହିଁଙ୍କ ମଧ୍ୟରେ ଲାଗିଲା ଏବେ ଘୋର ସମର,
ଗଛ ପଛେ ରାମ ଦେଖନ୍ତି ରୂପ ଉଭୟ ସମ ।
କିଏ ବାଳୀ କିଏ ସୁଗ୍ରୀବ ରାମ ଚିହ୍ନି ନପାରି,
ହୋଇ ସେ ହତାଶ ଫେରିଲେ ରଣୁଁ ଶର ନମାରି ।
ବାଳୀର ଆଘାତେ ସୁଗ୍ରୀବ ମୁଖୁଁ ରୁଧିର ଧାର,
ବହି ବୁଡ଼ାଇଲା ଶରୀର ଦଶେ କି ନାଟଖାର ।
ଆସିଲା ବାହୁଡ଼ି ସେଠାରୁ ହୋଇ ଅତି ଦୁଃଖିତ,
ଦାଶରଥି ଦେଖି ଶୋଣିତ ହେଲେ ଅତି ଲଜ୍ଜିତ ।
କେତେ ଦୁଃଖ କରି ରାମଙ୍କୁ ପୁଚ୍ଛେ ରବିନନ୍ଦନ,
ବଇରି ହାତରେ କାହିଁକି ମୋତେ କଲ ଅର୍ପଣ ?
ବୁଝାଇ ତାହାଙ୍କୁ ଗଳାରେ ଦେଇ କୁସୁମମାଳ,
ପଠାଇଣ ଗଲେ ପଛରେ ପୁଣି କୌଶଲ୍ୟାବାଳ ।
ସବିତାକୁମାର ନୟନ କରି ଆରକ୍ତ ବର୍ଣ୍ଣ,
ପୁନରପି ଧାଏଁ ଯୁଦ୍ଧକୁ କରି ସିଂହ ଗର୍ଜନ ।
ସେ ଶବଦ ଶୁଣି ସ୍ତବଧ ହେଲେ ପ୍ରାଣୀ ସକଳ,
ଭୟେ ପଳାଇଲା ଦୁଆର ଛାଡ଼ି ଦୁଆରପାଳ ।
କୁହାକୁହି ହେଲେ ବାନରେ ଥିଲେ ଯେତେ ସେଠାରେ
ମାଡ଼ଖାଇ ପୁଣି ଆସିଛି ଆଜ କାହା ସାହାରେ ?
ସୁଗ୍ରୀବ କେଶରୀ ଦୁଆରେ କରେ କେଶରୀ ନାଦ,
କିଷ୍କିନ୍ଧ୍ୟାବାସୀଏ ମଣିଲେ ଘଟିଲା କି ପ୍ରମାଦ ?
ନସହି ସୁଗ୍ରୀବ ଗର୍ଜନ ଉଠେ ଇନ୍ଦ୍ରନନ୍ଦନ,
ଏସମୟେ ତାରା କରନ୍ତି ଘନଘନ ବାରଣ ।
ତାରାକୁ ପ୍ରବୋଧି ବଳବନ୍ତ ବାଳୀ ହେଲା ବାହାର,
ଦୁର୍ଭାଗ୍ୟ ଘୋଟିଲେ ନ ଶୁଣେ କିଏ କଥା କାହାର ।

*★*

ଫିଟାଇ ଦୁଆର                    ଦେଖେ ବାଳୀବୀର
        ଜଗିଅଛି ଉଗ୍ର ରବିତନୟ,
ଦେଇଥିଲା ଗାଳି                    କୋପାନଳେ ଜଳି
        ଶୁଣି ମନ ତାର ହେଲା ଅଥୟ ।
କରି ବଜ୍ର ପାଣି                    ଟକାଇଲା ମୁଷ୍ଟି ।
        ବକ୍ଷେ ସୁଗ୍ରୀବର ବୁଡ଼ିଲା ଜ୍ଞାନ,
ଚେତା ପାଇ ଶାଳ                    ଉପାଡ଼ି ପ୍ରହାର
        କଲା ବାଳୀ ମୁଣ୍ଡେ ହେଲା ଅଜ୍ଞାନ ।
ହୋଇ ଧରାଧରି                    ହେଲେ ମରାମରି
        ବୋହିଲା ଶରୀରୁଁ ରକତ ଧାର,
କିଏସେ ଅଧିକ                    କିଏ ଅନଧିକ
        ହୁଏ ନାହିଁ କଳି ବଳ କାହାର ।
ଜାଣି ସମୟ                    କୌଶଲ୍ୟାତନୟ
        କ୍ଷେପିଲେ ବାଳୀକି ଅମୋଘ ଶର,
ସେ ଶର ବିଜୁଳି                    ପରି ଗଲା ଚାଲି
        ଭେଦି ବକ୍ଷସ୍ଥଳେ ବହେ ରୁଧିର ।
ପକାଇ ବୋବାଳି                    ବାଳୀ ଗଲା ଢଳି
        ହୁଏ ଛଟପଟ ପଡ଼ି ଭୂତଳେ,
ସୁଗ୍ରୀବ ଦର୍ଶନେ                    ବିରସ ବଦନେ
        ପୂରାଇଲେ ନେତ୍ରେ ଲୋତକ ଜଳେ ।
ବାଳୀର ଏ ଦଶା                    ଦର୍ଶନେ ସହସା
        ଶ୍ରୀରାମ ଲକ୍ଷ୍ମଣ ଗଲେ ତା ପାଶ,
ଚିହ୍ନି ଏ ଦୁହିଁଙ୍କି                    ଦେବେରେ କାହିଁକି
        ବୁଲ ଏକୁଟିଆ କେଉଁଠି ବାସ ?
ସକଳ ବିଷୟ                    କୌଶଲ୍ୟା ତନୟ
        ବଖାଣିଲେ ତାଙ୍କୁ ଏଅନ୍ତେ ବାଳୀ,
ଶୁଣି ସବୁ କଥା                    ପାଇ ହୃଦେ ବ୍ୟଥା
        କଣ୍ଠ ଭ୍ରଷ୍ଟା କହି ଦିଅନ୍ତି ଗାଳି ।
"ପାଉଁଶ ଭିତରେ                    ପାବକ ପରିଏ
        ତୁମ ହୃଦମଧ୍ୟେ ଛପିଛି ହିଂସା,
ଲୁବ୍ଧକ ପରିଏ                    କ୍ଷେପିଲ ଆଶୁଗେ
        ବିନା ଅପରାଧେ ବଧିଲ ମୋତେ ।
ଜନ୍ମି ରାଜକୁଳେ                    ବୁଡ଼ି ପାପଜଳେ
        ନେଲ ପ୍ରାଣ ରହି ଗଛ ପଛରେ,
ଅସାଧୁ କରମ                    କରି ଅଧରମ
        ଅରଜିଲ ଭବେ ସାଧୁ କେଶରେ ।

ଶୁଭୁ ନାହିଁ କାହିଁ    ନବ ନବ ତାନେ
ମୃଦଙ୍ଗର ଧ୍ୱନି ଆଜି,
ଆନନ୍ଦ ବର୍ଦ୍ଧନ    ସାକେତ ନଗରେ
ବଢ଼ିଲଣି ଖଣ୍ଡ ଦାଉ ।
କମଳ କାନନେ    ମୃଣାଳ ଖଣ୍ଡିକୁ
ନିଜ ଥୋଇ ହସ୍ତେ ଧରି,
ଖାଉଥିଲ ଯାହା    ପ୍ରମତ୍ତ ମାତଙ୍ଗ
ଏବେ କୁପିତ କେଶରୀ ।
ହାବୋଡ଼ ତା ଆଗେ    କାମୋଡ଼ ଦନ୍ତରେ
କମନୀୟ କୁମ୍ଭମାନ,
ବିଦାରି ନଖରେ    ଅବିରତ ଖରେ
କରୁଅଛି ଛିନ୍ନଭିନ୍ନ ।
ବାରନ୍ଦାମାନଙ୍କ    ଧାଡ଼ି ଧାଡ଼ି ସ୍ତମ୍ଭେ
ଅପରୂପ ନାରୀରୂପ,
ଶୋଭୁଥିଲ ଯାହା    ଧୂଳିରେ ମିଶି ତା
ହୋଇଅଛି ଭଗ୍ନସ୍ତୂପ ।
ଆଗେ ଯେଉଁ ହର୍ମ୍ୟ    ବିମଳ କାନ୍ତିରେ
ତୁଷାର ଖଣ୍ଡରି ପରି,
ହସୁଥିଲା ଦୂରୁଁ    ହୋଇଅଛି ତାହା
ଏବେ ତୃଣାଙ୍କୁରେ ଭରି ।
ଏବେ ହେ ବୀରେନ୍ଦ୍ର    ଉପବନ ଲତା
ହେଲେଣି ଦଳା ବାନରେ,
ସେ ଦଶା ଦର୍ଶନେ    କହିବା ନିମିତ୍ତ
ନୟନୁ ଲୋତକ ଝରେ ।
ପୁଷ୍ପିତ ଲତାରୁ    ଫୁଲ ତୋଳି ତୋଳି
ଲଳନାଏ ଯହିଁ ସୁଖୀ,
ହେଉଥିଲେ ସଦା    ୧- ପୁଳିନ୍ଦଙ୍କ ଯୋଗେ
ଗଲ ସେମେ ତାହା ଶୁଖି ।
ପ୍ରାସାଦମାଳରେ    ଯେ ରମ୍ୟ ଗବାକ୍ଷ
ହେଉଥିଲ ଆଲୋକିତ,
ସେ ଗୁଡ଼ିକ ଏବେ    ୨- ଊର୍ଣ୍ଣନାଭଜାଲେ
ହୋଇଛି ଆହା ଭରିତ !

ଧାର୍ମିକ ନିବହ    ଗୁଣୁ ଗୁଣୁ ସ୍ୱରେ
ଜପି ଜପି ହରିନାମ,
ନୟାନ୍ତି ପ୍ରଭାତୁଁ    ସରଯୂକୁ ଆଉ
ଘେନି ପୂଜା (୩) ପୁଷ୍ପଦାମ ।
ନାହିଁ ସେ ସୌନ୍ଦର୍ଯ୍ୟ    ଅବା ଜନଚହଳ
ରହିଛି ଏ ସବୁ ସହି,
କୁଶାବତୀ ଛାଡ଼ି    ଆସ ମୋର ପୁରେ
ମୋ ପ୍ରତି ସୁଦୟା ବହି ।
"ତଥାସ୍ତୁ" ଉଚ୍ଚାରି    ରଘୁଶ୍ରେଷ୍ଠ କୁଶ
ଘେନନ୍ତେ ତାଙ୍କ ପ୍ରାର୍ଥନା,
ହେଲେ ଅନ୍ତର୍ହିତା    ଲକ୍ଷ୍ମୀ ସେହିକ୍ଷଣି
ପୂରିଲ ଭାବ କାମନା ।
ନୃପତି ପ୍ରଭାତୁ    ଉଠି ଶୟନରୁ
କହି ମନ୍ତ୍ରୀଙ୍କ ଆଗରେ,
ଶୁଭ ଅନୁକୂଳେ    ଅଯୋଧ୍ୟାଭିମୁଖେ
ଗମିଲେ ହରଷଭରେ ।
ପ୍ରଭଞ୍ଜନ ଯୋଗେ    ଦୋହଲି ଦୋହଲି
ଶୋଭୁଥିଲ ଧ୍ୱଜଛତ୍ର,
ବିପୁଳବାହିନୀ    ଚଳି ପଛେ ପଛେ
ଟେକିଥିଲେ ଶିରେ ଛତ୍ର ।
ଉଡୁଥିଲେ ନଭେ    ଚଞ୍ଚଳ ପକ୍ଷରେ
ହଂସେ କଳରବ କରି,
ବିଞ୍ଚିଦେଲା କରେ    ନୃପଙ୍କୁ ଗଗନ
ଧବଳ ଚାମର ଧରି ?
ଅଶ୍ୱଙ୍କର ହ୍ରେଷା    ହସ୍ତୀର ଗର୍ଜ୍ଜନ
ଭୀମ ନାଦୀ ଢୋଲ ସ୍ୱରେ,
ଗିରିବାସୀ ପ୍ରାଣୀ    ନ କରି କେଉଁଠି
ଲୁଚିଗଲେ ଅତି ଡରେ ।
ଆସି ଅଯୋଧ୍ୟାକୁ    ସୁପବନ ମନେ
ରମ୍ୟ ରାଜଭବନରେ,
ପ୍ରବେଶିଲେ କୁଶ    ବେଦୋକ୍ତମତରେ
ଆତ୍ମୀୟଙ୍କ ସହିତରେ ।

୧ — ମ୍ଲେଚ୍ଛ ଜାତି ବିଶେଷ    ୨—ବୁଢ଼ିଆଣୀ

(୩) ସମୂହ

ରାଜଶ୍ରୀ ହରାଇ ଥିଲା ଯେ ନଗରୀ
ଗଢ଼ି ତା ନୂଆ ଭାବରେ,
ବଂଶର ମର୍ଯ୍ୟାଦା ବଢାଇଲେ ସେହୁ
ନୋହି ମତ୍ତ ପ୍ରମାଦରେ ।
କିଛି ଦିନ ଅନ୍ତେ ଭୁଜଙ୍ଗରାଜଙ୍କ
ଭଗିନୀ କୁଶବରଙ୍କୁ,
କରିଲେ ବିବାହ ଭୁଜଙ୍ଗିନୀ ଭୟୁଁ
ମୁକ୍ତ କରି ଧରଣୀକୁ ।



## ସପ୍ତଦଶ ସର୍ଗ

ଭୁବନ ଭୂଷଣ ତନୟ ରତନ
ପ୍ରସବନ୍ତେ କୁମୁଦ୍ୱତୀ,
ରଖିଲେ ଅତିଥି ନାମ ତାହାଙ୍କର
ସାନନ୍ଦେ ଅଯୋଧ୍ୟାପତି ।
ଦକ୍ଷିଣ ଉତ୍ତର ଦିଗକୁ ଉଜ୍ଜ୍ୱଳ
ରଖଇ ରବି ଯେସନ,
ପିତୃମାତୃ ବେନି କୁଳକୁ ରଖିଲେ
କୁଶ କୁମର ତେସନ ।
ଯୋଗ୍ୟ ପାଣୀ ସହ ଯଥା ସମୟରେ
ପୁତ୍ରକୁ ବିଭା କରାଇ,
ଦୁର୍ଜୟ ବିନାଶେ ଗଲେ ସ୍ୱର୍ଗେ କୁଶ
ଇନ୍ଦ୍ରଙ୍କ ଡକରା ପାଇ ।
ସେ ଦୈତ୍ୟକୁ ମାରି ହୋଇଲେ ନିହତ
ନିଜେ ତାହାରି ହସ୍ତରେ,
କୁମୁଦ୍ୱତୀ ଏହା ଶୁଣି ଦେହତ୍ୟାଗ
କରିଲେ ପତି ପ୍ରେମରେ ।
ବୃଦ୍ଧ ମନ୍ତ୍ରୀଗଣ ଅତିଥିଙ୍କୁ କଲେ
ପ୍ରତିଷ୍ଠିତ ରାଜପଦେ,
ମୁକୁଳ ବନ୍ଧରୁ ବନ୍ଧଏ ଏକାଳେ
ମୁକ୍ତ କଲେ ତାଙ୍କ ପଦେ ।
ସକଳ କାର୍ଯ୍ୟରେ ସଫଳ ବିଜୟୀ
ଥିଲେ ସଦା ନବ ଭୂପ,
ଜଣେ ହେଲେ କେହିଁ ନଥିଲେ ସେକାଳେ
ତାହାଙ୍କର ଅନୁରୂପ ।
ବିଶୁଦ୍ଧ ଚରିତ ଥିଲା ସଦା ତାଙ୍କ
କହୁଥିଲେ ହସି କଥା,
କୌଣସି କର୍ମେ କରୁ ନଥିଲେ ସେ
ଦେଇ କାହାମନେ ବ୍ୟଥା ।
ଅଳସ୍ୟ ଉପେକ୍ଷି ମନ୍ତ୍ରୀଙ୍କ ସଙ୍ଗରେ
ମିଶି ନବୀନ ରାଜନ,
ପ୍ରକୃତ ତଥ୍ୟକୁ ଆଣୁଥିଲେ ଟାଣି
ନଥି ଦେଖି ତନ୍ନ ତନ୍ନ ।
ସକଳ ବିଷୟେ ନିୟମକୁ ଲକ୍ଷି
ଚଳୁଥିଲେ ନୃପ ନବ,
ଶତ୍ରୁ ଉତ୍ପାଟନେ ନିରତ ଆନନ୍ଦ
କରୁଥିଲେ ଅନୁଭବ ।
ମଣିଷକୁ ମତ୍ତ କରନ୍ତି ସତତ
ସ୍ୱରୂପ ଯୌବନ ଧନ,
ତିନିହେଁ ଥିଲେହେଁ ଏକତ୍ର ଆୟତ୍ତେ
ରଖୁଥିଲେ ଭୂପ ମନ ।
ଷଡ୍‌ରିପୁମାନଙ୍କୁ ପରାଭବ ଦେଇ
କଲେ ଆପଣାର ବଶ,
ମିତ୍ର ନିୟମକୁ ନ ଲଙ୍ଘିବା ଲାଗି
ଅଟଳ ଥିଲା ମାନସ ।
ରିପୁଙ୍କ ଅଜ୍ଞାତେ ରଖି ଗୁପ୍ତଚରେ
ଅଣାଉଥିଲେ ସନ୍ଦେଶ,
ସୁନୀତି ସହିତ ମିଶାଇ ଶୌର୍ଯ୍ୟକୁ
ଗଢ଼ିଲେ ଅଯୋଧ୍ୟାଦେଶ ।
କୌଶଳେ ମନ୍ତ୍ରଣା କରି ମନ୍ତ୍ରୀ ସହ
କରୁଥିଲେ କାର୍ଯ୍ୟମାନ,
ଶୟନେ ସ୍ୱପନେ ପ୍ରଜାଙ୍କ କଲ୍ୟାଣ
ଥିଲା ଏକମାତ୍ର ଧ୍ୟାନ ।
ଦୁର୍ଭାଗ୍ୟ ବଶରୁ ଜନ୍ମିଲେ ବିରାଗ
କେବେ ପ୍ରଜାଙ୍କ ମନରେ,
ସତତ ଚେଷ୍ଟିତ ହେଉଥିଲେ ନୃପ
ଆଣିବାକୁ ଶାନ୍ତ ଖରେ ।

ଧର୍ମ୍ମ ଅର୍ଥକାମ  ତିନିଙ୍କୁ ସମାନ
ଭାବେ ରଖୁଥିଲେ ପାଶେ,
ବଳସ୍ଥାନ ହେଲେ  ବିପକ୍ଷ ତାହାଙ୍କୁ
ରଖୁଥିଲେ ନିଜ ବଶେ ।

ନଜାଣେ କେ ଏହା  ଜଗତେ ହୁଅନ୍ତି
ସକଳେ ଧନର ବଶ,
କିନ୍ତୁ ନରପତି  ନୋହି ଲୋଭ ଯୁକ୍ତ
ବଢାଉ ଥିଲେ ସ୍ୱଯଶ ।

ବିଜୟ ଆଶାରେ  ଧରମ ରାହାକୁ
ଲଙ୍ଘୁ ନଥିଲେ ସେ କଦା,
ତେଣୁ ନୃପଙ୍କର  ରହୁଥିଲେ ପାଶେ
ରଣେ ଜୟଲକ୍ଷ୍ମୀ ସଦା ।

ଏରୂପେ ନୃପତି  ହୋଇଲେ ଉଦ୍‌ଯୋଗୀ
ନୀତି ଶାସ୍ତ୍ର ଅନୁସରି ।
ଶୌର୍ଯ୍ୟ ଅବା ଯଶ  ବସୁନ୍ଧରା ତଳେ
ନଥିଲା କେ ତାଙ୍କ ସରି ।

ତାଙ୍କ ରାଜତ୍ୱରେ  ମେଘ ଯଥାକାଳେ
ବର୍ଷୁଥିଲା ଘନରସ (୧)
ତେଣୁ ଅହରହ  କୃଷକ ମୁହଁରେ
ଫୁଟି ଉଠୁଥିଲା ହସ ।

— ★ —

## ଅଷ୍ଟାଦଶ ସର୍ଗ

ଅତିଥିଙ୍କ ରାଣୀ  ନିଷଧ ପତିର
କନ୍ୟା ଗର୍ଭୁଁ ହେଲେ ଜାତ,
ସୁପୁତ୍ର ଗୋଟିଏ  ନିଷଧ ଆନନ୍ଦେ
ଯା' ନାମ ରଖିଲେ ତାତ ।

ଯୌବନେ ପ୍ରବିଷ୍ଟ  ହୁଅନ୍ତେ ତନୟ
ରାଜପଦରେ ବସାଇ,
ତପସ୍ୟା ଆଚରି  ଗଲେ ସ୍ୱର୍ଲୋକକୁ
ପ୍ରଜାମାନଙ୍କୁ କନ୍ଦାଇ ।

ଅଦ୍ୱିତୀୟ ବୀର  କୁଶ ନରେଶଙ୍କ
ନାତି ନିଷଧ ରାଜନ,
ନିଜ ବାହୁବଳେ  ପିତା ଅନ୍ତେ ଯତେ
ପାଳୁଥିଲେ ଏ ଭୁବନ ।

ଏହାଙ୍କର ସୁତ  ମହାବଳବନ୍ତ
ନଳ ସିଂହାସନେ ବସି,
ବିକ୍ରମ ଦେଖାଇ  ଅରିରେ ସଦମ୍ଭେ
ଦେଲେ ରିପୁଙ୍କୁ ଧର୍ଷି ।

ତାହାଙ୍କ ଉତ୍ତାରେ  ନଭ ଶବ୍ଦ ହେଲେ
ଅଯୋଧ୍ୟାର ଦଣ୍ଡଧର,
୨ ନଭ ମାସ ପରି  ହେଲେ ସେ ଆନନ୍ଦ
ବର୍ଦ୍ଧକ ପରଜାଙ୍କର ।

ଲଭନ୍ତେ ନିର୍ବାଣ  ନଭ, ପୁଣ୍ଡରୀକ
ବସିଥିଲେ ସିଂହାସନେ,
ସୁହାସିନୀ ଲକ୍ଷ୍ମୀ  ଆସି ଅହରହ
ରହିଲେ ତାଙ୍କ ସଦନେ ।

ପୁତ୍ର କ୍ଷେମଧନ୍ୱା  ହସ୍ତେ ସମର୍ପିଣ
ଶାସନ ଭାର ରାଜ୍ୟର,
ଗଲେ ବନେ ବହି  କ୍ଷମାଶୀଳ ନାମ
ପୁଣ୍ଡରୀକ ନରବର ।

ତାହାଙ୍କ ଔରସେ  ଜନ୍ମି ଦେବାନୀକ
ହେଲେ ଅଦ୍ୱିତୀୟ ବୀର,
ପିତା କ୍ଷେମଧନ୍ୱା  ହେଉଥିଲେ ଖୁସି
ଦେଖି ତାଙ୍କୁ ଧୀରସ୍ଥିର ।

ଗମନ୍ତେ ଅମର-  ପୁରେ କ୍ଷେମଧନ୍ୱା
ଦେବାନୀକ ନରପତି,
ପଦେ ଅଭିଷିକ୍ତ  ହୋଇ ଅଯୋଧ୍ୟାର
ଲଭିଲେ ଅନୁତ୍ତମ ଗତି ।

ତାହାଙ୍କ ତନୟ  ସ୍ୱକୁଳ ପ୍ରଦୀପ
ଅହୀନଗୁ ଗୁଣମଣି,
ମଧୁର ବଚନେ  ତୋଷିଲେ ଅରିରେ
ସାକେତପୁର ଧରଣୀ ।

(୧) ଜଳ

(୨) ଶ୍ରାବଣ

ଆତ୍ମୀୟମାନଙ୍କ ପର ଶତ୍ରୁଙ୍କର
ହୋଇ ସେ ପ୍ରିୟଭାଜନ,
ତାଙ୍କ ଅମାୟିକ ବ୍ୟବହାର ଯୋଗେ
କରିଲେ ରାଜ୍ୟ ପାଳନ ।
ଗମନ୍ତେ ସ୍ୱର୍ଗକୁ ଶାସି ବହୁକାଳ
ଅହୀନଗୁ ନୃପବର,
ତାହାଙ୍କ ତନୟ ପରଯାତ୍ର ଏବେ
ହେଲେ ରାଜ୍ୟେ ଅଧୀଶ୍ୱର ।
କିନ୍ତୁ ଅଳ୍ପ କାଳେ ତନୟ ଶୀଳକୁ
ସମର୍ପି ରାଜ୍ୟେ ଶାସନ,
ବନ୍ଦୀରୁ ମୁକୁଳ ବିଷୟ ସମ୍ଭୋଗ
ସୁଖେ ବଳାଇଲେ ମନ ।
ଗ୍ରାସି ଜରା କ୍ରମେ ଭୋଗୀ ନରେଶଙ୍କୁ
ମର୍ତ୍ତ୍ୟୁଁ କରନ୍ତେ ଅନ୍ତର,
ବଜ୍ରଧର ପର ବଜ୍ରନାଭ ହେଲେ
ଅଯୋଧ୍ୟାର ଦଣ୍ଡଧର ।
ସହସା ତାହାଙ୍କୁ ଗ୍ରାସିବାରୁ କାଳ
ଶଙ୍ଖଣ ଶତ୍ରୁଙ୍କୁ ନେଇ,
ପିନ୍ଧାଇଲେ ରାଜ ମୁକୁଟ ପ୍ରଜାଏ
ଉପାୟନମାନ ଦେଇ ।
ଗମନ୍ତେ ସ୍ୱର୍ଗକୁ ଶଙ୍ଖଣ ନୃପତି
ପୈତୃକ ଆସନ ପରେ,
ତାଙ୍କ ପୁତ୍ର ବୀର ଖିଦସଶ୍ୱ ରାଜା
ହେଲେ ସାକେତ ପୁରରେ ।
ସେ କ୍ଷୀଣ ତୋଷି ତପସ୍ୟାରେ ଶିବ
ଲଭିଲେ ସୁତ ରତନ,
ବିଶ୍ୱସହ ନାମ ବହୁ ଭୂମଣ୍ଡଳେ
ହେଲେ ପ୍ରତାପୀ ରାଜନ ।
ହିରଣ୍ୟାଭ ବୋଲି ତନୟ ଗୋଟିଏ
ଜନମି ତାଙ୍କ ଔରସେ,
ବୈଶ୍ୱାନର ସମ ହେଲେ ତେଜଶାଳୀ
ବିନାଶି ଶତ୍ରୁ ଉରସେ (୧) ।

(୧) ଶୀଘ୍ର

ଅକ୍ରମ ବୟସେ ବିଶ୍ୱସହ ଦେଇ
ଅଯୋଧ୍ୟାର ସିଂହାସନ,
ହିରଣ୍ୟ ପୁତ୍ରକୁ ଗଲେ ବନେ ମୋଦେ
ପିନ୍ଧି ବକଳ ବସନ ।
ଧର୍ମେ ପାଳି ଧରା ସେ ହିରଣ୍ୟ ନାଭ
ସୂର୍ଯ୍ୟବଂଶ ଅବତଂସ,
କୌଶଲ୍ୟଙ୍କୁ ରାଜ୍ୟ ଦେଇ ସୁରଧାମେ
ଗଲେ ଲଭି ମହାଯଶ ।
ବ୍ରହ୍ମନିଷ୍ଠ ସୁତ କୌଶଲ୍ୟ ବାର୍ଦ୍ଧକ୍ୟେ
ତେଜି ସୁଶାସିତା ଧରା,
ଅମର ପୁରକୁ ଆଶ୍ରିଲେ ବୁହାଇ
ପ୍ରଜାନେତ୍ରୁ ଅଶ୍ରୁଧାରା ।
ତାହାଙ୍କ କୁମର କମଳ ଲୋଚନେ
ସାକ୍ଷାତ ବ୍ରହ୍ମଙ୍କ ପରି,
ଦିଶୁଥିଲେ ରଘୁ ତନୟ ଗୁଣରେ
ନଥିଲ କେ ତାଙ୍କ ସରି ।
ଦେବରାଜଙ୍କର ସଖା ହେବା ଆଶେ
ତେଜି ବିଷୟ ବାସନା,
ତୀର୍ଥ ପର୍ଯ୍ୟଟନ କରି କରି ଶେଷେ
ପୁରିଲା ତାଙ୍କ କାମନା ।
ପୁଷ୍ୟ ନାମଧାରୀ ତାହାଙ୍କ ଆତ୍ମଜ
ଅଯୋଧ୍ୟାର ସିଂହାସନ,
ପିତୃଅନ୍ତେ ଲଭି ଧର୍ମେ ଆଶ୍ରୟି
ଚଳାଇଲେ ସୁଶାସନ ।
ସଂସାର ବନ୍ଧନେ ବୀତସ୍ପୃହ ହୋଇ
ରାଜତ୍ୱକୁ ପରିହରି,
ଲଭିଲେ ମୁକତି ଋଷି ଧୁରନ୍ଧର
ଜୈମିନିଙ୍କୁ ଗୁରୁକରି ।
ତାହାଙ୍କ ଆତ୍ମଜ ବୀର ଧ୍ରୁବସନ୍ଧି
ତହୁଁ ହେଲେ ଅଧିପତି,
ସତ୍ୟରେ ଅଟଳ ରହି ଅହରହ
ଲଭିଲେ ପରମ ଗତି ।
ସୁଦର୍ଶନ ବୋଲି ତନୟ ତାଙ୍କର
ଶିଶୁଥିଲେ ଏ ସମୟେ,

ମୋହନ ମୂରତି ଥିବାରୁ ଦିଶିଲେ
କୁମୁଦବନ୍ଧୁ ପରାଏ ।
ନୃପଙ୍କ ବିୟୋଗ ଦେଖି ମନ୍ତ୍ରୀମାନେ
ଶୋକ ନେତ୍ର ପରିହରି,
ଅଭିଷେକୋତ୍ସବ ପାଳିଲେ ଶିଶୁଙ୍କ
ବିହିତ ବିଧାନ କରି ।
କିଶୋର ଚନ୍ଦ୍ରଙ୍କୁ ଧରି ନଭସ୍ଥଳ
ଶୋଭା ପାଉଥାଏ ଯଥା,
ରାଜଶିଶୁ ବସି- ଥିବାରୁ ସିଂହାସନେ
ଶୋଭିଲା ଅଯୋଧ୍ୟା ତଥା ।
ସେ ରାଜମୁକୁଟ ବହିଥିବା ଯୋଗୁଁ
ହେଲେହେଁ ବୟସେ ସାନ,
ନଗର ବାସୀଏ ଭାବି ପ୍ରଭୁ ତାଙ୍କୁ
ଦେଖାଉଥିଲେ ସମ୍ମାନ ।
ସାମନ୍ତ ରଜାଏ ସେ ପଦକୁ ଛୁଇଁ
ଜୁହାରୁଥିଲେ ଭକ୍ତିରେ,
ଜ୍ଞାନ ବୃଦ୍ଧ ଲୋକ ନିକଟରୁ ରହସେ
ଶିଖିଲେ ବିଦ୍ୟା ଅଚିରେ ।
କାଳକ୍ରମେ ତାଙ୍କ ଅଙ୍ଗଦେଶେ ଆସି
ପ୍ରବେଶିଲା ଯଉବନ,
ମନ୍ତ୍ରୀମାନେ ରାଜ- କନ୍ୟା ଦେଶାନ୍ତରୁ
ଆଣି କଲେ ମଣ୍ଡନ ।

—*—

## ଊନବିଂଶ ସର୍ଗ

ଗୁଣୀ ଶିରୋମଣି ବାଣୀ ବରପୁତ୍ର
ନୃପବର ସୁଦର୍ଶନ,
ଗ୍ରାସିବାରୁ ଜରା ତେଜିବାକୁ ଧରା
ବଳାଇଲେ ଏବେ ମନ ।
ଅଗ୍ନିବର୍ଣ୍ଣ ପୁତ୍ରେ ଦେଇ ରାଜପଦ
ଯାଇ ନୈମିଷ କାନନ,
ଭୂମିତଳରେ ଶୋଇ ଅଟ୍ଟାଳିକା ଛାଡ଼ି
କଲେ ଉଟଜ ସଦନ ।
ଏଣେ ଅଗ୍ନିବର୍ଣ୍ଣ ଦେଇ ମନ୍ତ୍ରୀଗଣ
କରେ ରାଜ୍ୟର ଶାସନ,
ଏକାନ୍ତରେ ବସି ହୋଇ କାନ୍ତା ସଙ୍ଗେ
ବ୍ୟସନେ ବଳିଲା ମନ ।
ନାଗମଣ୍ଡଳୀରେ ବସି କେଳିପୁରେ
କଟାଇଲେ ଦିବାନିଶି,
ରାଜକାର୍ଯ୍ୟ ଲାଗି ରହୁ ନଥିଲେ ସେ
କେବେ ମନ୍ତ୍ରୀସହ ମିଶି ।
ପ୍ରଜାପୁଞ୍ଜ ଆସି ଯାଉଥିଲେ ଫେରି
ପ୍ରଭୁଙ୍କ ଦେଖା ନପାଇ,
ମାତି ବିଳାସରେ ହାସ୍ୟ ରହସ୍ୟରେ
ଦିଅନ୍ତି ଦିନ ପୁହାଇ ।
ପ୍ରମତ୍ତ ବାରଣ କରେଣୀ ସଙ୍ଗରେ
ପଶେ ପଦ୍ମାକରେ ଯଥା,
ପଶନ୍ତି ନୃପତି ରମଣୀଙ୍କ ସହ
କେଳି ସଦନରେ ତଥା ।
ବ୍ୟସନେ ଆସକ୍ତ ହେବାରୁ ସନ୍ତତ
ଜନ୍ମିଲା କ୍ଷୟ କାସ ରୋଗ,
ଆକ୍ରମନ୍ତେ ଭୂପ ଦ୍ରୁତ ବେଗେ ଆସି
ଛାଡ଼ିଲେ ସକଳ ଭୋଗ ।
ନିର୍ବାଣ ଉନ୍ମୁଖ ହେଲେ ଦୀପ ଯାହା
ଦିଶଇ ସେ କାଳେ ଯଥା,
କ୍ରମେ କଳେବର ହୋଇ ଅସମର୍ଥ
ଦିଶିଲେ ନୃପତି ତଥା ।
ଔଷଧକୁ ପରି- ହରି ବୈଦ୍ୟଙ୍କର
ରୋଗ ହେଲା ଅସମ୍ଭାଳ,
ପ୍ରଦୀପ ପଡ଼ନେ ହୁଏ ଯେମନ୍ତ ନାଶ
ପଡ଼ିଲେ ତେମନ୍ତ ଭୂପାଳ ।
ନ ଥିବାରୁ ପୁତ୍ର ମନ୍ତ୍ରୀମାନେ ମିଳି
ଦେହଦାହ ଗୋପନରେ,
କରି ତାହାଙ୍କର କଲେ ସମାପନ
ଦଶାହ କରମ ଘରେ ।
ପାଟ ମହିଷୀଙ୍କ ଗର୍ଭଚିହ୍ନ ଲକ୍ଷି
ତାଙ୍କୁ ବସାଇ ଗାଦିରେ,
ପରଜା ନିବହ ହେଲେ ପୁଲକିତ
ଦୁଃଖ ପରିହରି ଧୀରେ ।

# ଦ୍ରୌପଦୀ ସ୍ୱୟମ୍ବର

ଦ୍ୱାପର ଯୁଗରେ     ପାଞ୍ଚାଳ ଦେଶରେ
ଦ୍ରୁପଦ ନାମେ ନୃପତି,
ଶାସୁଥିଲେ ରାଜ୍ୟ     ନ୍ୟାୟ ଅବଲମ୍ବି
ପ୍ରଜାଙ୍କୁ ଦେଇ ମତି ।
ପାଞ୍ଚାଳେଶ୍ୱରଙ୍କ     ପୂର୍ବରୁ ଥିବାରୁ
ଧର୍ମ ପ୍ରତି ଅନୁରାଗ,
ବ୍ୟାସଙ୍କୁ ଡକାଇ     ନିଜ ରାଜଧାନୀ
ଆରମ୍ଭିଲେ ମହାଯାଗ ।
ତହିଁରୁ ଅଚିରେ     ହେବାରୁ ଉତ୍ପନ୍ନ
ସୁନ୍ଦରୀ କନ୍ୟା ରତନ,
ଯାଜ୍ଞସେନୀ ବୋଲି     ଦେଇ ନାମ ତାକୁ
ଦ୍ରୁପଦଙ୍କୁ ଦେଲେ ଦାନ ।
ତାର ପଞ୍ଚଦଶ     ବୟସ ହେବାରୁ
ପାଞ୍ଚାଳ ଦେଶ ରାଜନ,
ଦ୍ରୁପଦ ସତ୍ୱରେ     ସ୍ୱୟମ୍ବର ଲାଗି
କଲେ ସବୁ ଆୟୋଜନ ।
ଶୁଭଦିନ ଦେଖି     ବାର୍ତ୍ତାମାନ ଲେଖି
ଦେଶେ ଦେଶେ ବାର୍ତ୍ତାବହ,
ପଠାଇ ଲାଗିଲେ     ମଣ୍ଡପ ନିର୍ମାଣେ
ଡାକି ବର୍ଦ୍ଧକୀନିବହ ।

ଏଣେ ଦ୍ୱାରକାରୁ     ରାମକୃଷ୍ଣ ବେନି
ଧୃତରାଷ୍ଟ୍ର ଦରଶନେ,
ଯିବାରୁ ହସ୍ତିନା     ଦୁହିଁଙ୍କ ଦେଖି ସେ
ପୂଜିଲେ ଆନନ୍ଦ ମନେ ।
କିଛି କ୍ଷଣ ପରେ     ସେଠାରୁ କେଶବ
ଯାଇ ବିଦୁର ସଦନେ,
ପୁଚ୍ଛିଲେ ତାହାଙ୍କୁ     କୁଶଳ ବାରତା
ଅତି ପୁଲକିତ ମନେ ।
ଦରଶନ ଲଭି     ବାସୁଦେବଙ୍କର
ପ୍ରଣମି ତାହାଙ୍କ ପାଦେ,
ପଚାରିଲେ ତାଙ୍କୁ     ପାଣ୍ଡବଙ୍କ କଥା
ବିଦୁର ଅତି ବିଷାଦେ ।
କଥା ହେଉ ହେଉ     ବିଦୁର ସହିତ
ଯୋଗ ଧ୍ୟାନେ ଲୟ କରି,
ବ୍ୟାସଙ୍କୁ ସ୍ମରନ୍ତେ     ପ୍ରବେଶିଲେ ସେହି
ଦଣ୍ଡ କମଣ୍ଡଳୁ ଧରି ।
ତାଙ୍କ ଦରଶନ     ଲଭିଣ ବିଦୁର
ପ୍ରଣମିଲେ ବହୁବାର,
କେଶବ ଏ ଅନ୍ତେ     ପୁଚ୍ଛିଲେ ତାହାଙ୍କୁ
ପାଣ୍ଡବଙ୍କ ସମାଚାର ।

କୁମ୍ଭୀର କନ୍ଦର          ହିଡ଼ମ୍ବକ ବକ
ସଂହାର ଦୈତ୍ୟ ବିରତ,
ପଞ୍ଚବଟୀ ବନେ          ରହିଛନ୍ତି ବୋଲି
ଭାଷେ ବ୍ୟାସ ମହାମତି ।
ତହୁଁ ବ୍ରଜନାଥ          କହିଲେ ତାହାଙ୍କୁ
ପାଞ୍ଚାଳକୁ ଯାଇ ଖରେ,
ହୋଇବ ଯତନେ          ମହା ଲକ୍ଷ ତହିଁ
ଯାଜ୍ଞସେନୀ ସ୍ୱୟମ୍ବରେ ।
କୃଷ୍ଣ ଲାଗି ପୁଣି          ମନଭେଦୀ ଶର
ପ୍ରେରି ତାପସ କରରେ,
ଯାଉଛି ପାଞ୍ଚାଳ          ମୋଲି ବୋଇଲେ ସେ
ଉଗ୍ରସେନ ସହିତରେ ।
ଏଥୁଅନ୍ତେ ବ୍ୟାସ          ପାଞ୍ଚାଳ ଦେଶକୁ
ଯାଇ ଭେଟନ୍ତେ ଦ୍ରୁପଦ,
ଆସନରୁ ଉଠି          ପ୍ରଣମିଲେ ନୃପ
ଧରି ମହାମୁନି ପଦ ।
ସ୍ୱୟମ୍ବର ଲାଗି          ସାଜସଜ୍ଜା ଯେତେ
ଯୋଗାଡ଼ ଥିଲେ ନୃପତି,
ଦେଖାନ୍ତେ ଯତିଙ୍କି          ଦର୍ଶନ କରି ତା
ହେଲେ ଆହ୍ଲାଦିତ ଅତି ।
କନକ ଖଚିତ          ସିଂହାସନଚୟ
ବସିବା ଲାଗି ରାଜନେ,
ମଣ୍ଡପ ପାରୁଶେ          ନାପିତନିକର
ଥୋଇଲେ ନେଇ ଯତନେ ।
ରଜତ ଖଚିତ          ସ୍ତମ୍ଭମାନଙ୍କରେ
ହଳଦୀ ବୁଡ଼ା କେତନ,
ଫଡ଼ ଫଡ଼ ହୋଇ          ଉଡୁଥିଲ କେତେ
ହରୁଥିଲ ଜନମନ ।
ରାଜାଦେଶ ଘେନି          ବ୍ୟାସ ମହାମୁନି
ଲକ୍ଷ ସ୍ଥାପି କଉଶଳେ,
ରମ୍ୟ ସ୍ୱର୍ଣ୍ଣ ମତ୍ସ୍ୟ          ଉପରେ ଝୁଲାଇ
ଥୋଇ ଦେଲେ ଧନୁ ତଳେ ।
ଜଳପୂର୍ଣ୍ଣ ଘଟ          ତା ଚାରୁପାଶେ ସ୍ଥାପି
ଭାଷିଲେ ମୁନି ଏସନ,

"ପ୍ରତିବିମ୍ବ ଲକ୍ଷ୍ୟ          ବାମାକ୍ଷି ବିନ୍ଧିଲେ
ସେ ନେବ କନ୍ୟା ରତନ ।
ଯୋଗାଡ଼ ଏମନ୍ତ          ବିଦା ମାଗି ତହୁଁ
ମୁନି ହେଲେ ଅନ୍ତର୍ଦ୍ଧାନ,
ଛଦନେ କୁରୂପ          ଧରି ପହଞ୍ଚିଲେ
ପାଣ୍ଡବଙ୍କ ସନ୍ନିଧାନ ।
ମରୁତ କୁମାର          ମାରି କରତାଳି
ଆସିବାରୁ ତାଙ୍କ ପାଶେ,
ପୁଚ୍ଛିଲେ ଯୁଧିଷ୍ଠି          କନିଷ୍ଠ ଭାଇଙ୍କି
"ଏ କିଏ ସେ ବୋଲି ଭାଷେ" ?
"ବଡ଼ବା ନିମନ୍ତେ          କେଶବ ବିଦୁର
ବ୍ୟାସଙ୍କୁ ଦେଲେ ପଠାଇ",
ବୋଲି ଉତ୍ତରିଲେ          ଆସିଛନ୍ତି ସେହି
ନିଜ ରୂପ ବଦଳାଇ ।
ପାଣ୍ଡବଙ୍କ ସଙ୍ଗେ          କୁନ୍ତୀ ମହାଦେଈ
ଜୁହାରି ତାଙ୍କ ପୟରେ,
ଗୁଲ୍‌ଟିଏ ଆଣି          ଥୋଇଦେଲେ ପାଶେ
ବସିବାକୁ ଆସନରେ ।
କାନ୍ଦି କାନ୍ଦି ସେହି          ବନବାସ ଦୁଃଖ
ବଖାଣନ୍ତି ମୁନିବରେ,
"ଦୁଃଖପରେ ସୁଖ          ବିଧାତା ଭିଆଣ"
ବୋଲି ଉତ୍ତରିଲେ ଖରେ ।
ଆପଣା ନନ୍ଦନୀ          ସ୍ୱୟମ୍ବର ଲାଗି
ଦ୍ରୁପଦ ଯୋଗାଡ଼ କରି,
ଲକ୍ଷେ ନରପତି          ସମାବେଶ ପାଇଁ
ସାଜିଲେ ତାଙ୍କ ନଗରୀ ।
ସେ କୂଟ ଲକ୍ଷ୍ୟକୁ          ସବ୍ୟସାଚୀ ବିନା
ବିନ୍ଧିବାକୁ କେ ସମର୍ଥ,
ଜମା ହୋଇଥିବା          ନୃପତିମାନଙ୍କ
ହେବ ମନୋରଥ ବ୍ୟର୍ଥ,
କୃଷ୍ଣ ବଳରାମ          ଆସିବେ ସେଠାକୁ
ଭେଟିବ ସକଳ ଭାଇ,
କୌରବଙ୍କ ଦର୍ପ          ଭାଙ୍ଗିବ ମାରୁତି
ଦେଖିବେ ସେ ବେନି ଭାଇ ।

ତିନିଶ ପଚିଶ    ଯୋଜନ ସେ ପୁର
ଷୋଳଦିନ ଅଛି ବାଟ",
କୁନ୍ତୀ ଦେବୀ ଶୁଣି    ବତାଇ ଦେଲେ ସେ
ଅର୍ଜୁନଙ୍କୁ ତହୁଁ ଡାକି ।
ଯିବାକୁ ଚଞ୍ଚଳ    ପାଦୁକା ମନ୍ତ୍ର
ମହାମୁନି ଦେଲେ କହି,
'ସ୍ନାନ ସାରି ପ୍ରାତେ    ପଢୁଥିଲେ ମନ୍ତ୍ର
ପଥଶ୍ରମ ଯିବ ସହି" ।
ସେଠାରୁ ଅଦୃଶ୍ୟ    ହେଲେ ବ୍ୟାସଦେବ
କହି ଗୁପ୍ତ କଥାମାନ,
ପାଣ୍ଡବେ ଚଳିଲେ    ଯିବାକୁ ପାଞ୍ଚାଳ
ହେବାରୁ ବିଭାବସାନ ।
ପାଳିଲେ ଶବଶ୍ୟ    ପ୍ରାତଃ ସ୍ନାନ ସାରି
ପଢି ଚରଣ ମନ୍ତ୍ର,
ଜନନୀ ସଙ୍ଗରେ    ଚଳିଲେ ପାଣ୍ଡବେ
ଦେଖିବାକୁ ସ୍ୱୟମ୍ବର ।
ଭେଟିଲେ ବାଟରେ    କାମିନୀ ନିକର
କରୁଥିବା ଜଳକ୍ରୀଡ଼ା,
ଏମାନଙ୍କୁ ଦେଖି    ପଳାଇଲେ ଭୟେ
ମନେ ବହି ଅତି ବ୍ରୀଡ଼ା ।
ଏ ଦଶା ଦର୍ଶନେ    ଅଙ୍ଗାରପର୍ଣ୍ଣଗ
ପୁଚ୍ଛନ୍ତେ ତାର କାରଣ,
କହିଲେ ନାରୀଏ    ଘଟିଥିଲା ଯାହା
କରି ଲେତକ ବର୍ଣ୍ଣ ।
ଶୁଣୁ ଶୁଣୁ ତାହା    ଆସିଲେ ବାସବ
କମ୍ପାଇ ଅବନୀ ତଳ,
ଦେଖିଲେ କିରୀଟୀ    ଉଦ୍ୟାନରେ ପଶି
ତୋଳୁଥିବା ପକ୍ୱଫଳ ।
ଗୁଣକୁ ଟଙ୍କାରି    ଅଙ୍ଗାରପର୍ଣ୍ଣଗ
ମହାଧନୁ ହାତେ ଧରି,
ପେଷିଲେ ନାରାଚ    ମହା କୋପଭରେ
ଫାଲ୍‌ଗୁନିକୁ ଲକ୍ଷ କରି ।
ଜାଣି ସବ୍ୟସାଚୀ    କୋଦଣ୍ଡ ଟଙ୍କାରି
ନିକ୍ଷେପନ୍ତେ ଖର ଶର,
ଅଙ୍ଗାରପର୍ଣ୍ଣଗ    ପଡ଼ିଗଲେ ଏଣେ
ମୋହେ ମେଦିନୀ ଉପର ।
ଧାଇଁ ଆସି କୁମ୍ଭୁ    ମହା କ୍ରୋଧଭରେ
ପଚାରନ୍ତେ ପରିଚୟ,
ଅର୍ଜୁନଙ୍କ ଭାଇ    ବୋଲି କହିବାରୁ
ତୁଟିଲା ତାଙ୍କ ସଂଶୟ ।
ଏ କଥା ଶ୍ରବଣେ    ଅର୍ଜୁନ ବୋଲି ସେ
କହି ପ୍ରଣମନ୍ତେ ପଦେ,
ଅଙ୍ଗାରପର୍ଣ୍ଣଗ    ଆଶିଷିଲେ ତହୁଁ
"ହୋଇବ ସାହା ବିପଦେ" ।
ଗନ୍ଧର୍ବ ନାରୀର    ଦେଖାଇ କୃଷ୍ଣଙ୍କୁ
କହନ୍ତି ସେ ହର୍ଷଭରେ,
"ସ୍ୱକାର୍ଯ୍ୟ ସାଧନେ    ସୁମରିବା କ୍ଷଣି
ହେବ ପ୍ରାପ୍ତ ତୋର କରେ" ।
ତହୁଁ ବିଦ୍ୟାଧର    ଗଲେ ଅନ୍ତରୀକ୍ଷ
ଅର୍ଜୁନ ମାତା ନିକଷା,
ଫେରି ମୋଦଭରେ    କହିଲେ ସକଳ
ଗୁରୁ ଭାଇଙ୍କି ସହସା ।
ଏ ଅନ୍ତେ ପାଣ୍ଡବେ    ଯାପି ବିଭାବରୀ
ସକାଳୁ ସ୍ନାହାନ ସାରି,
ନଖାଇ ନପିଇ    ଦିନଯାକ ଚାଲି
ହେଲେ ଘୋରବନ ପାରି ।
ସଞ୍ଜବେଳ ଦେଖି    ବାସସ୍ଥାନ ଖୋଜି
ପାଇଲେ କୁଲାଳ ଶାଳ,
ସେ ସ୍ଥାନକୁ ଯାଇ    ଆଶ୍ରମିଲେ ତହିଁ
ହୋଇ ଗୋଟିଏ ପାଳ ।
ଧନ୍ୟରେ ଦଇବ    ବ୍ରାହ୍ମଣୀ ତୋର
ଜାଣିବ କିଏ ସଂସାରେ,
ଭିକ୍ଷାକୁ ମଣିଷ    ହୁଏ ଧନ୍ଦ ସିନା
ଚଉମାଖି ତୋ ଇଚ୍ଛାରେ ।
ପ୍ରଭାତିଲା ନିଶି    କୁନ୍ତୀଦେବୀ ଡାକି
ପଞ୍ଚକୁମାର ପାଶକୁ,
ବ୍ରାହ୍ମଣ ବେଶରେ    କହିଲେ ଯିବାକୁ
ଦ୍ରୁପଦ ସଭାସ୍ଥଳକୁ ।

ତହୁଁ ଭ୍ରାତାଗଣ ଜନନୀ ବଚନେ
ଗଲେ ଦ୍ୱିଜବେଶ ସାଜି,
ବସିଲେ ଏକାଠି ଆନଟିଏ ବାଛି
ଯହିଁଥିଲେ ବିପ୍ରରାଜି ।
ସିଂହାସନେ ଆସି ବସିଲେ ରାଜାଏ
ଯେଝା ଆଟୋପ ଦେଖାଇ,
ପାଞ୍ଚାଳୀକି ଆଣି ବସାଇଲେ ମଞ୍ଚେ
ଶଙ୍ଖ ମଙ୍ଗଳ ବଜାଇ ।
ହୁଳହୁଳି ନାଦ ନଗର ଭିତରେ
ଶୁଭୁଥାଏ ଘନ ଘନ,
ଉଲ୍ଲାସରେ ପୁରନାରୀ ଯାଇଅଛି ପୁଣି
କେ କରେ ଗୀତ ଗାୟନ ।
ପଟେଣଯୋତ୍ସବ ଦର୍ଶନ ଆଶାରେ
ଯେ ଯାହା ପ୍ରାସାଦେ ବସି,
ନାନା ଟଗ ମେଳି ଗଡ଼ ଯାଉଥାନ୍ତି
କଉତୁକେ ହସି ହସି ।
ବ୍ରାହ୍ମଣ ସଭାରେ ଦିଶିଲେ ପାଣ୍ଡବେ
ଟଞ୍ଚ ଦିଗପାଳ ଭଳି,
ଚାହୁଁଥିଲେ ଭୀମ ନୃପତିମାନଙ୍କୁ
ବେଳେ ବେଳେ ଆଖି ମଳି ।
ଦ୍ରୁପଦ ଏ ଅନ୍ତେ ଆସିଲେ ସଭାକୁ
ଅର୍ଘ୍ୟଥାଳୀ ଧରି କରେ,
ଥୋଇଦେଇ ତାହା କହିଲେ ଏସନ
ସମ୍ବୋଧି ନୃପତିବରେ ।
"ସୁନା ମାଛଟିଏ ବୁଲୁଅଛି ଦେଖ
ରାଧାଚକ୍ରର ଉପରେ,
ଭୂମିତଳେ ଥୁଆ ହୋଇଅଛି ଧନୁ
ଜଳ କଳସ ଭିତରେ ।
ବାନ୍ଧିବ ଯେ ଲକ୍ଷ ମାଛ ବାମ ଆଖି
ଜଳେ ଦୃଷ୍ଟି ପକେଇ,
ଦେଖି ତାଙ୍କୁ ଦାନ ମୋ କନ୍ୟା ରତନ
ଯଉତୁକ ଭାରି ଦେଇ" ।
ସତ୍ୟ ସତ୍ୟ ବୋଲି ବୋଲନ୍ତେ ନୃପତି
ଧୃଷ୍ଟଦ୍ୟୁମ୍ନ ସଭାସ୍ଥଳେ,
ଯେ ଲଙ୍ଘିବ ଏହା ଶିରଚ୍ଛେଦ ତାର
ବୋଲି ବୋଇଲେ ସକଳେ ।
ଦ୍ରୁପଦ କାମନା ଶୁଣି ନୃପତିଏ
କରନ୍ତି ହୃଦେ ବିଚାର,
ମଳିନ ଦିଶିଲା ବଦନ କାହାର
ହସ ହସ ଅବା କାର ।
ଓଢଣା ପକାଇ ବସିଅଛି ବାଳୀ
ତଳକୁ ନୁଆଇଁ ଶିର,
ଏସନ ବଚନ ଶୁଣି ଜନକଙ୍କ
ଭାଳିଲା ହୋଇ ଅଧୀର ।
ବରଣ ବିଧାନ ସଜ କଲେ ଆସି
ପୁରୋହିତ ଯତନରେ,
ପାଞ୍ଚାଳୀର ଭାଇ ଶୁଣୁଥିଲେ ସବୁ
ସ୍ୱୟମ୍ବର ମଣ୍ଡପରେ ।
ଡାକ ଧୃଷ୍ଟଦ୍ୟୁମ୍ନ ଜରାସନ୍ଧ କହେ
ଭଗିନୀ ବଦନ କାନ୍ତି,
ଦର୍ଶନ ଇଚ୍ଛାରେ ରହିଛନ୍ତି ଭୂପେ
ଛୁଟିବାକୁ ମନୁ ଭ୍ରାନ୍ତି" ।
ଶୁଣି ଏ ବଚନ ଦ୍ରୁପଦ ରାଜନ
ମଣ୍ଡପେ ଠିଆ କରାଇ,
ମନୋହର ରୂପ ଦେଖାଇଲେ ଜବେ
ଓଢଣୀ ତାର ମେଲାଇ ।
ସୌମ୍ୟ ବଦନର କମନୀୟ ଡୋଳ
ଦେଖି ଭାବିଲେ ସକଳ,
ଅମରାବତୀରୁ ଅପ୍ସରୀଟିଏ କି
ଖସି ପଡ଼ିଗଲା ତଳ ।
କେଶିନୀ ନାମରେ ମୃଦୁସୁଳୀ ଗୋଟି
ଥିଲା ଯାଜ୍ଞସେନୀ ପାଶ,
କାନପାଖେ ଯାଇ ସଧୀରେ ତାହାକୁ
ପଚାରିଲା ଉପହାସେ ।
କହରେ ସଙ୍ଗିନୀ କେଉଁ ରାଜା ପ୍ରତି
ବଳିଅଛି ତୋର ମନ, ?
"ଦେଖିନି କା ରୂପ" ବୋଲି ବୋଇଲା ସେ
ଶୁଣି ଦାସୀର ବଚନ ।

ଓଲଟି ପାଞ୍ଚାଳୀ ପଚ୍ଛରେ ଦାସୀକି
"ନୃପତିଙ୍କ ଗୁଣ ତତ୍ତ୍ୱ,

ଜାଣିଥିଲେ କହ ଆଲୋ ସଖି ମୋତେ
ହେବ ଅପୂ ମୋର ମତ୍ତ" ।

ଚହିଁ ମୃଦୁସୁଲ୍ଲୀ କୋମଳ ବଚନେ
ଦେଲା କୃଷ୍ଣାକୁ ଉତ୍ତର,

"କହୁଛନ୍ତି ତାତ ଯେ ବିନ୍ଧିବ ଲକ୍ଷ
ସେ ହେବ ବର ତୋହର ।

ଭୂପତିମାନଙ୍କ ଗୁଣ ଅବା ଯଶ
ଅଯଥା ଲୋଡ଼ୁ କପାଇଁ

ପଣ ଯା ହୋଇଛି ସମ୍ପାଦିଲେ କେହି
ପୂଲକେ ବରିବୁ ଯାଇ" ।

ପାଞ୍ଚାଳୀର ମନ ବୁଝିବା ନିମନ୍ତେ
ବୋଇଲା ଦାସୀ ଏପରି,

"ଧୃତରାଷ୍ଟ୍ର ପୁତ୍ର ଏହି ଦୁର୍ଯ୍ୟୋଧନ
ଗର୍ବେ କେ ନୁହେ ତା ସରି ।

ଅକଳନା ଧନ ରଖିଛି ଭଣ୍ଡାରେ
କୁଞ୍ଜରଗଳେ ଏ ନୃପତି,

ମନ୍ଦରେ କାହାକୁ ନ କରେ ଖାତିର
ସଦା ଅଭିମାନ ମତି ।

ଥାଆନ୍ତି ଏ ଭୀଷ୍ମ ସେନାପତି ଭାବେ
ସଂଗ୍ରାମେ ଅତି କୁଶଳ,

ପାଇଛନ୍ତି ବର ସ୍ୱଇଚ୍ଛା ମରଣ
ବଚନେ ସଦା ଅଟଳ ।

ତାଙ୍କପାଶେ ଗୁରୁ ଦ୍ରୋଣ ବସିଛନ୍ତି
ଭରଦ୍ୱାଜଙ୍କ ନନ୍ଦନ,

ଶସ୍ତ୍ର ଥିଲେ ହସ୍ତେ ନପାରେ କେ ଜିଣି
ଜାଣୁଚି ସଦା ଭୁବନ ।

ମଦ୍ରଦେଶ ଭୂପ ମହାରଥୀ ଶଲ୍ୟ
ଏହି ପାଣ୍ଡବ ମାତୁଳ,

ଧନୁ ଧରି ବୀର ପଶିଲେ ସମରେ
ହୁଅନ୍ତି ରିପୁ ଆକୁଳ ।

ଦେଖ ଜରାସନ୍ଧ ବସିଛି ମଣ୍ଡପେ
ଶିଶୁପାଳ ସୁତ ପାଶେ,

ପଳାଇ ଆସିଲେ କୃଷ୍ଣ ଦ୍ୱାରକାରୁ
ଯେତେ ଜଣ ମଥୁରା ବାସେ ।

ଦୁର୍ଯ୍ୟୋଧନ ମିତ୍ର କର୍ଣ୍ଣ ମହାବୀର
କୁନ୍ତୀ ଗର୍ଭୁଁ ହେଲେ ଜାତ,

ସଂଗ୍ରାମେ କୁଶଳ ପାଣ୍ଡବଙ୍କ ଭଳି
ସବୁତା ଏହାଙ୍କ ତାତ ।

ଧରା ଥରହର ହୁଏ ନିରନ୍ତର
ଦର୍ଶନେ ଏହାଙ୍କ ବଳ,

ଦାନକର୍ଣ୍ଣ ବୋଲି ଲଭିଛନ୍ତି ଖ୍ୟାତି
ସଦା ପ୍ରତିଜ୍ଞା ଅଟଳ ।

ଦେଉଛନ୍ତି ଭେଟି ଭୂପତି ନିଚୟ
ନିତି ଲକ୍ଷ ସ୍ୱର୍ଣ୍ଣ ଭାର,

ଗରିମା ଏହାଙ୍କ କହିଲେ ନସରେ
ଧନରେ ଭରା ଭଣ୍ଡାର ।

ନର୍ତ୍ତର କଳିଙ୍ଗ ଉତ୍କଳ ଦେଶର
ବଳଶାଳୀ ଭୂପ ଆସି,

ସ୍ୱର୍ଣ୍ଣ ସିଂହାସନେ ବସିଛନ୍ତି ଦେଖ
ସଙ୍ଗେ ଧରି ଗଜରାଶି ।

ଲକ୍ଷେ ନରସାଇଁ ନିମନ୍ତ୍ରଣ ପାଇ
ଆସି ଅଛନ୍ତି ପାଞ୍ଚାଳେ,

ଆଜୀବନ ସଙ୍ଗୀ ହେବ ସେ ତୋହର
ଅଛି ଲେଖା ଯା କପାଳେ" ।

ତଦନ୍ତେ କେଶିନୀ ଯାଜ୍ଞସେନୀ ଘେନି
ବସାଇଲା ତା ସ୍ଥାନରେ

ଏଣେ ଧୃଷ୍ଟଦ୍ୟୁମ୍ନ କରତାଳି ଦେଇ
କହିଲେ ପୁଲକଭରେ ।

"ପାଞ୍ଚାଳୀ ଲଭିବ ଯେ ଲକ୍ଷ ବିନ୍ଧିବ
କରନ୍ତି ଜନକ ପଣ,

ଗୋଟି ଗୋଟି ହୋଇ ଲକ୍ଷ ବିନ୍ଧିବାକୁ
ଆସନ୍ତୁ ନୃପତିଗଣ ।

ଏମନ୍ତ ସମୟେ କୃଷ୍ଣ ବଳରାମ
ପ୍ରବେଶନ୍ତେ ସଭାସ୍ଥଳେ,

ଆସନୁ ସକଳ ଉଠି ମୋଦଭରେ
ପ୍ରଣମିଲେ ପଦତଳେ ।

ବାସୁଦେବ ହଳୀ ଅସିବାର ଜାଣି
ସ୍ୱର୍ଗରୁ ସୁରନିକର,
ଆସି ପ୍ରବେଶିଲେ ସେ ସଭା ସ୍ଥାନରେ
ଦେଖିବାକୁ ସ୍ୱୟମ୍ବର ।
କେତେ ମହାଋଷି ଶିଷ୍ୟ ସଙ୍ଗେ ଘେନି
ଆସନ୍ତେ ସେ ସ୍ୱୟମ୍ବରେ,
ଦ୍ରୁପଦ ଆସନୁ ଉଠି ଆସି ଜବେ
ଅଭ୍ୟର୍ଥିଲେ ସମାଦରେ ।
ଧୌମ୍ୟ ପୁରୋହିତ ଗଗନୁ ଓହ୍ଲାଇ
ଶିଷ୍ୟମାନଙ୍କ ସଙ୍ଗରେ,
ପ୍ରବେଶନ୍ତେ ତହିଁ ଚରଣ ଧଉତ
କଲେ ପାଞ୍ଚାଳେଶ ଖରେ ।
ପୁଚ୍ଛନ୍ତେ କେଶବ ହଳୀଙ୍କୁ ଏକାଳେ
ବିନ୍ଧିବ କିଏ ଏ ଲଖ ?
ଉତ୍ତରିଲେ ସେହି "କର୍ଣ୍ଣ ବିନା କାର
ନଟିବ ଶର ତା ପାଶ" ।
ତାହାଙ୍କ ବଚନ ଶୁଣି ବାସୁଦେବ
କରିଲେ କୂଟ ସେକାଳେ,
ସୁଦର୍ଶନ ଚକ୍ର ପଠାଇଲେ ନଭେ
ଭ୍ରମିବାକୁ ଅନ୍ତସଳେ ।



## ଲଖବିନ୍ଧା

ବେଦମନ୍ତ୍ର ପାଠ ସାର ତାପସୀଏ
ଆଦେଶନ୍ତେ ଲଖ ପାଇଁ,
ଧୃଷ୍ଟଦ୍ୟୁମ୍ନ ଉଠି କହନ୍ତି ସଭାରେ
ଦୁର୍ଯ୍ୟୋଧନଙ୍କୁ ଅନାଇଁ ।
"ନୃପମଧ୍ୟେ ତୁମେ ମହା ପରାକ୍ରମୀ
ପୁଣି ଅତି ଧନଶାଳୀ,
ପଣ ପୂରଣରେ ସମର୍ଥ ହୋଇଲେ
ଲଭିବ ନିଶ୍ଚେ ପାଞ୍ଚାଳୀ ।
ଏସନ ବଚନ ଶୁଣି ଦୁର୍ଯ୍ୟୋଧନ
ଚାହାଁନ୍ତେ କର୍ଣ୍ଣ ବଦନ,
ଯାଅ ବୋଲିବାରୁ କର୍ଣ୍ଣ ମହାରଥୀ
ଗଲେ ଗାନ୍ଧାରୀନନ୍ଦନ ।
ବାନ୍ଧିଅଛି ବୀର ମସ୍ତକେ ପଗଡ଼ି
ଜରି ପକା ବସନରେ,
ଦିଶେ ଝଲମଲ ଅଙ୍ଗ ଆଭରଣ
ଖଞ୍ଜା କନକ ପଟରେ ।
ଆସ୍ଫୋଟ ଦେଖାଇ ଗଲାବେଳେ ସେହି
ପଡ଼ନ୍ତେ କୃଷ୍ଣା ନୟନେ,
ଏ କିଏ ବୋଲି ସେ ପୁଚ୍ଛନ୍ତି କେଶିନୀକି
ସହସା ମୃଦୁ ବଚନେ ।
ତହୁଁ ଉତ୍ତରିଲା କେଶିନୀ ତାହାକୁ
ହସ୍ତିନାର ଏ ସୂତଜ,
ଜତୁଗୃହେ ଭରି ପାଣ୍ଡଙ୍କି ମାରନ୍ତି
ଅହରହ ପାପମତି ।
କେଶିନୀର ବାଣୀ ଯାଜ୍ଞସେନୀ ଶୁଣି
ବୋଇଲେ ଦୋଷୀ ଏ ଦୁର୍ଜନ,
ନରହତ୍ୟା କରି ବସିଛି ସଭାରେ
ଧିକ ଧିକ ତା ଜୀବନ" ।
କଥୋପକଥନ ହେଉଁ ହେଉଁ ତହିଁ
ପ୍ରବେଶିଲା ଲଖ ତଳେ,
ଧନୁ ଦେଖି ଛନ୍ନ ହୋଇ ନରପତି
ପଡ଼ିଲା ମେଦିନୀ ତଳେ ।
ଶିଖଣ୍ଡୀ ତଦନ୍ତେ କଲା ଉପହାସ
ନାନା କଟୁ କଥା କହି,
ଲାଜ ପାଇ ରଜା ବାହୁଡ଼ି ଆସିଲା
କ୍ଷଣେ ସେଠାରେ ନରହି ।
ଏ ଅନ୍ତେ ସେଠାକୁ ଗଲା ଜରାସନ୍ଧ
ମଗଧର ନରପତି,
ଗୁଣ ଦେବା ଲାଗି ନୋହିଲା ସମର୍ଥ
ଲଭିଲା ଅପକାରତି ।
ଲଭି ଅପମାନ ମଗଧ ନରେଶ
ଫେରିବାରୁ ଶିଶୁପାଳ,
ସେ ଅପୂର୍ବ ଧନୁ ବୀକ୍ଷଣେ ତାହାର
ଶରୀରୁ ବୋହିଲା ଝାଳ ।

'ଚଳ ଯା ଚଳ ଯା' ବୋଲନ୍ତେ ଶିଖଣ୍ଡୀ
ବାହୁଡଲ ପୋଡ ମୁଖ,
ତାଳ ମାର ମାର ହସନ୍ତେ ସରବେ
ଉପୁଜିଲ ମନେ ଦୁଃଖ ।
ତହୁଁ କାଶୀଶ୍ୱର ହୋଇଲ ବାହାର
ସଭାରୁ ପ୍ରତିଜ୍ଞା କରି,
ପ୍ରବେଶି ସେଠାରେ ପ୍ରତାପୀ ନରେଶ
ଧନୁକୁ ଟେକିଲା ଧରି ।
ଆକର୍ଷନ୍ତେ ତାକୁ ନ ପାରିଲା ଟାଣି
ନାସାରୁ ବହେ ଶୋଣିତ
ପୋଛୁ ପୋଛୁ ହାତେ ଧୀରେ ଧୀରେ ଦୁଃଖେ
ଫେରିଲା ହୋଇ ଲଜ୍ଜିତ ।
ନକଲେ ଭରସା ଆଉ ଯେତେ ରଜା
ଥିଲେ ସେ ସଭାସ୍ଥଳରେ
ଦେଖି ତା ଦ୍ରୁପଦ ସଭା ମଞ୍ଚେ ଉଠି
କହିଲେ ଅତି ଦୁଃଖରେ ।
"ଯେ ପାରିବ ବିନ୍ଧ ରଖିବ ମୋ ପଣ
ଏଥିରେ ନାହିଁ ସଂଶୟ,
ନକରି କେ ଶଙ୍କା ଆସୁ ଲକ୍ଷ୍ୟ ସ୍ଥାନେ
ମୋ ପ୍ରତି ହୋଇ ସଦୟ ।
ଏକଥା ଶ୍ରବଣେ ସୂର୍ଯ୍ୟସୁତ କର୍ଣ୍ଣ
ନଜାଣି ଲଖିର କୂଟ,
କୁଣ୍ଡଳ ହଲାଇ ବାହାରିଲା ଗୃବେ
ଲଗାଇ ମୁଣ୍ଡେ ମୁକୁଟ ।
ଟହଲି ଟହଲି ବୁଲୁଥାଏ ବୀର
ଗୁମ୍ଫକେ ପୁଣି ଫୁଲାଇ,
କାର୍ଯ୍ୟସିଦ୍ଧି ଲାଗି ପ୍ରବେଶି ସେ ସ୍ଥାନେ
ଧନୁ ଦେଲା ଦୋହଲାଇ ।
ଲାଖିର ବିଧିକୁ ଧନଞ୍ଜୟ ବରିବ
ଧନୁରେ ଗୁଣ ଚଡାଇ,
ବିନ୍ଧନ୍ତେ ନାହିଁତ ବିଅର୍ଥ ହେବାରୁ
ଲେଉଟିଲା ଲାଜ ପାଇ ।
କର୍ଣ୍ଣ ଫେରିବାରୁ ଦ୍ରୋଣ ମହାରଥୀ
ପ୍ରବେଶି ଲକ୍ଷ୍ୟ ସ୍ଥାନରେ,
ଅସମର୍ଥ ହୋଇ ଫେରିଲେ ଏକାଳେ
ଅବନତ ବଦନରେ ।
ନପାଇ ସମ୍ମାନ ପିତା ଅପମାନ
ତହୁଁ ଅଶ୍ୱତ୍ଥାମା ବୀର,
ଉଠି ସଭାସ୍ଥଳୁ ଗମିଲେ ଧରସି
ବିନ୍ଧିବାକୁ ଲକ୍ଷ୍ୟ ଶର ।
କରିଅଛୁ ପଣ ବିନ୍ଧିବାକୁ ବାଣ
ଟେକିଲା ଧନୁ ଆୟାସେ,
ଜଳଘଟ ଗୃହିଁ ନଭସ୍ଥ ମତ୍ସ୍ୟକୁ
ମାରିଲା ଶର ଉଲ୍ଲାସେ ।
ନ ବାଜ ସେ ଶର ମାଛର ଆକ୍ଷିରେ
ବାଜିଲା ଚକ୍ରରେ ଖରେ,
ଖଣ୍ଡ ଖଣ୍ଡ ହୋଇ ଗୁଣ୍ଡ ହେବା ପରେ
ପଡ଼ିଲା ଭୂମି ଉପରେ ।
ଦ୍ରୋଣ ପୁତ୍ର ଫେରି ଆସିବାରୁ କୃଷ୍ଣ
ଯାଇ ମଞ୍ଚ ଉପରକୁ,
ଶିଖଣ୍ଡୀ ବଦନ ଦର୍ଶନ କରନ୍ତେ
ଲେଉଟିଲେ ସ୍ୱସ୍ଥାନକୁ ।
ଶଲ୍ୟ ଜୟଦ୍ରଥ ପୁଣି କୃପାଚାର୍ଯ୍ୟ
ଆପଣା ଆପଣା ବଳ,
ଦେଖାଇ ଦେବାକୁ ଗଲେ ସଭାସ୍ଥଳୁ
ଘଟିଲା ବିଷମ ଫଳ ।
ମଉନ ହେବାରୁ ସଭାରେ ରାଜାଏ
ପୁଚ୍ଛିଲେ କୃଷ୍ଣା ଏମନ୍ତ,
"ଆଗୋ ସଖି, କହ ନୃପତି ମଧ୍ୟରେ
ଅଛନ୍ତି କି କେ ରୂପବନ୍ତ ?
ଅସମ୍ଭବ ଲାଖ ଭିଆଇ ବାପାଏ
ସାରିଲେ ବହୁତ ଧନ,
ସ୍ୱୟମ୍ବର ଲାଗି ନଜାଣି ଇଚ୍ଛାରେ
କଲେ ଏତେ ଆୟୋଜନ" ।
ଏ ବଚନ ଶୁଣି କହିଲା କେଶିନୀ
"ଭାବିଲେ କି ହେବ ଏବେ,
ତୁଟିବ ତୋ ବ୍ୟଥା ଦେଖି ବରଟିଏ
ବାଛିବୁ ଇଚ୍ଛାରେ ଯେବେ" ।

କେଶିନୀ କଥାରେ      ଉତ୍ତରିଲେ କୃଷ୍ଣା
ଯାହା ତୁ କହିଲୁ ସହି !
"କାହାକୁ ମୋହର      ମନ ବଳୁନାହିଁ
ପାରୁନାହିଁ କିଛି କହି ।"
କହିଲେ ଦ୍ରୁପଦ      ଏସନ ସମୟେ
ଅଛି କେ ସଭାରେ ଆଉ ?
ବିପ୍ର ବା ଚଣ୍ଡାଳ      ଯେ ପାରିବ ଲକ୍ଷ
ବିନ୍ଧି ପାଞ୍ଚାଳୀକି ପାଉ ।"
ରାଜାର ବଚନ      ଶ୍ରବଣେ ଅର୍ଜୁନ
ଯୁଧିଷ୍ଠିର ଇଙ୍ଗିତରେ
ସଭାମଧ୍ୟୁ ଉଠି      ବିନ୍ଧିବାକୁ ଲକ୍ଷ
ଚଳିଲେ ପୁଲକ ଭରେ ।
ବାଞ୍ଛିଲେ କଲ୍ୟାଣ      ସଭାସ୍ଥ ବ୍ରାହ୍ମଣ
ଗଲାବେଳେ ଧନଞ୍ଜୟ,
ତାଙ୍କ ପଦଗତି      ଦେଖି କୃଷ୍ଣମନୁଁ
ତୁଟିଲା ଖରେ ସଂଶୟ ।
ବ୍ୟାସ ମହାମୁନି      ଦେଖି ଫାଲଗୁନ
ପୁଲକିତ ହୋଇ ଅତି
ଆଶିଷ ଅର୍ପି      ଇଚ୍ଛିଲେ ହୃଦୟେ
ପାଉଯାଜ୍ଞସେନୀ ସତୀ ।
ରବିସୁତ କର୍ଣ୍ଣ      ବଦନ ଅନାଇଁ
ବୋଲେ ଦୁଃଶାସନ ବୀର,
"ରାଜାଏ ଲଭିବେ      ମହା ଅପମାନ
ବ୍ରାହ୍ମଣ ବିନ୍ଧିଲେ ଶର ।"
ଦ୍ରୋଣଙ୍କୁ ଅନାଇଁ      ବୋଲନ୍ତି ଗାଙ୍ଗେୟ
ଉତ୍ସୁକେ ପ୍ରଶାନ୍ତ ମନେ
ଧନଞ୍ଜୟ ଗତି      ପରାଏ ଦିଶୁଛି
ସତେ କି ଅଛି ଜୀବନେ ।"
ମୁହୂର୍ତ୍ତେ ରହିଲୁ      ବୋଲି ଗୁରୁ ଦ୍ରୋଣ
ନିରେଖନ୍ତେ ବାରମ୍ବାର,
ଗାଣ୍ଡୀବୀ ବୋକାସେ      ଜନ୍ମିଲା ପ୍ରଶାନ୍ତି
ସୌମ୍ୟ ରୂପ ଦେଖି ତାର ।
ବାସବ ନନ୍ଦନ      ତଦନ୍ତେ ପ୍ରବେଶି
ଉଠିଲେମଞ୍ଚଉପରେ

ଧନୁକୁ ଆଉଡ଼ି      ଧନକୁ ବଡାଇ
ଦେଲେ ଜବେ ବାମକରେ ।
ଏକାଳେ ପାଞ୍ଚାଳୀ      ବୋଲେ କେଶିନୀକି
ବିନ୍ଧିଲେ ଲକ୍ଷ ବ୍ରାହ୍ମଣ
ଉଲ୍ଲାସ ମାନସେ      ମାଳ ଦେଇ ଗଳେ
ପଶିବି ତାର ଶରଣେ ।"
ବ୍ରାହ୍ମଣ ରୂପରେ      ମୁଗ୍ଧ ହୋଇ ବାଳା
ଭଜିଲା ଅନାଦି ଶକ୍ତି,
ଏ ବିପ୍ରର କରେ      ବିଜେ ହେବାଲାଗି
ହୃଦେ ରଖି ଦୃଢ଼ ଭକ୍ତି ।
ସୁନ୍ଦରୀ କାମନା      କରୁଥାଏ ସିନା
ସୁନ୍ଦରକୁ ସଦା ଭବେ
ନଥିଲେ ସୁରୂପ      ଧନବନ୍ତ ପ୍ରଭୁ
ନଥାଏ ତା ଇଚ୍ଛା ଲବେ ।
ଜାତି ପ୍ରୀତି କେବେ      ନଥାଏ ପ୍ରେମରେ
ସୁନ୍ଦର ଗୁଣକୁ ଲୋଡ଼େ,
ରତ୍ନ ମଣି ଧନ      କୁରୂପକୁ ସଦା
ଆଉଡ଼ି ଦିଏ ସେ ଗୋଡେ ।
ସମବେତ ନୃପ      ଧନାଢ୍ୟ ହେଲେହେଁ
ତଳେ ନ ବଳଇ ମନ,
ବସିଥିଲା ବାଳା      ସମସ୍ତଙ୍କୁ ଜଗି
ତଳକୁ ପୋତିବଦନ ।
ଏ ଅନ୍ତେ ଅର୍ଜୁନ      ଲକ୍ଷର ବିଧାନ
ପୁଛନ୍ତେ ଧୃଷ୍ଟଦ୍ୟୁମ୍ନକୁ
ବୋଇଲେ ସେତହୁଁ      ଏ ଲକ୍ଷ ବିନ୍ଧିଲେ
ଲଭିବ କନ୍ୟାରତ୍ନକୁ
ପ୍ରଣମି ଦ୍ରୋଣଙ୍କୁ      ପୁଣି ଦେବତାଙ୍କୁ
ଆଉଥିଲେ ଯେତେ ଋଷି,
ଲକ୍ଷ ବିନ୍ଧିବାରେ      ହେବାରୁ ସମର୍ଥ
ସକଳେ ହୋଇଲେ ଖୁସି ।
ବାଜିଲା ଏ ଲକ୍ଷ      ବ୍ରାହ୍ମଣର ବୋଲି
କେଶବ ଏକାଳେ କହି
ବଜାଇଲେ ଶଙ୍ଖ      ହରଷ ମନରେ
ବାର ବାର ଉହି ଉହି ।

ଜବେ ଯାଜ୍ଞସେନୀ କରେ ମାଳା ଘେନ
ଗମନ୍ତେ କିରୀଟୀ ପାଶେ,
ଦୁଷ୍ଟ ଦୁର୍ଯ୍ୟୋଧନ ଦେଲା ଅଟକାଇ
ଅବଳାକୁ ନେବା ଆଶେ ।
ଲାଗିଗଲା କଳି ଘଡ଼କ ଭିତରେ
ଖୁଣ୍ଟାଖୁଣ୍ଟି ହୋଇ ସର୍ବେ
ଉଠିଲେ ସଭାରୁ ଅର୍କସୁତ କର୍ଣ୍ଣ
ଦୁର୍ଯ୍ୟୋଧନ ଅତି ଗର୍ବେ ।
ଏସମୟେ ହଳୀ ନାଶିକେ ଅଙ୍ଗୁଳ
ଦେଇ କଲେ ଉପହାସ
ଦ୍ରୁପଦ ଠାକୁର ଚାଇଲୁ ଉତ୍କୋଚ
ନକରୁ କର୍ମା ପ୍ରକାଶ ।
ସତ୍ୟତା ନ ଜାଣି ବଜାଇଲୁ ଶଙ୍ଖ
ଉପୁଜିବ ଏବେ ଦ୍ୱନ୍ଦ
ବୋଲି ବୋଇଲେ ସେ କୃଷ୍ଣକୁ ଏକାନେ
ଭିଆଇ ଚୁକ୍ତାକୁ ଛନ୍ଦ ।
ବଳରାମ ଉକ୍ତି ଶୁଣି ବ୍ରଜନାଥ
ଭାଷନ୍ତି ବାଣୀ ଏସନ
"ଅଉଥରେ ଲକ୍ଷ ବିନ୍ଧ ଏ ବ୍ରାହ୍ମଣ
ଦେଖାନ୍ତୁ ସଭାସ୍ଥଜନ ।"
ଏ ଅନ୍ତେ କିରୀଟୀ ପ୍ରବେଶି ସେଠାରେ
ପୁନରପି ବନ୍ଧଣର,
ଖସାଇଲେ ମାଛ ଫୁଟାଇ ଆଖିକି
ଚାଠକା ସକଳ ନର ।
ପକାଇଲେ ପୁଷ୍ପ ଦେବତାଏ ସ୍ୱର୍ଗୁଁ
ବ୍ରାହ୍ମଣ ଶିର ଉପରେ,
ବାହାବା ବାହାବା ବୋଲି ବାସୁଦେବ
ଭାଷିଲେ ହରଷଭରେ ।
ଧୃଷ୍ଟଦ୍ୟୁମ୍ନ ତହୁଁ ନେଇ ମୁଣ୍ଡ ମତ୍ସ୍ୟ
ଜରାସନ୍ଧ ନିକଟରେ
ଦେଖାନ୍ତେ ବଚନ ନ ଫୁଟିଲା କାର
ପୋତିଲେ ମୁଣ୍ଡ ଲାଜରେ ।
ପାଞ୍ଚଜନ୍ୟ ଶଙ୍ଖ ବଜାନ୍ତେ କେଶବ
କରେଧରି ରତ୍ନମାଳ

ଧନଞ୍ଜୟ ଗଳେ ଅତି ମୋଦଭରେ
ପିନ୍ଧାଇ ଦେଲା ସେ ବାଳା ।
ଶକୁନିକ ସଇ ପାପୀ ଦୁର୍ଯ୍ୟୋଧନ
କହେ, "ଯାଇ ବିପ୍ର ପାଶ ,
ଯାହା ଧନ ନେଇ ଦେଉ ଦ୍ରୌପଦୀକ
ନକରୁ ମୋତେ ନିରାଶ ।"
ଶକୁନି ଏଅନ୍ତେ ବୋଲନ୍ତେ ବିପ୍ରକୁ
ଦୁର୍ଯ୍ୟୋଧନର ବାରତା
ବୋଇଲେ ସେ ରୋଷେ ଯାହା ନେଉ ପଛେ
ଦେଉ ମୋତେ ତା ବନିତା ।"
ଉଠିଲା କନ୍ଦଳ ଉଭୟ ପକ୍ଷରୁ
ଅସ୍ତ୍ର ଶସ୍ତ୍ର କରେ ଧରି
କହିଲେ ଦ୍ରୁପଦ ଦୁଃଶାସନ ବୋଧି
"ଯାଅ ଗୋଳୁଁ ଅପସରି ।"
ଲଣ୍ଡ ଭଣ୍ଡ ସତ ଆଚରେ ନିରତ
ବସୁନ୍ଧରା ତଳେ ଖଳ,
ନପାଇଲେ ବାଟ ସଜ ଉଣ୍ଡି ଉଣ୍ଡି
ଶେଷରେ ଦେଖାଏ ବଳ
ଦୁଃଶାସନ କଥାଁ ସେକଥା ଶୁଣିବ
ଗ୍ୟୁଡେ ଦେଲା ଓଲଟି,
ରାଜନଭୂଇଁରେ ଗଡ଼ ପଡ଼ ବାରୁ
ପଡ଼ିଲା ଆଜ୍ଞାନେ ପାଟି ।
ଆସି ଧୃଷ୍ଟଦ୍ୟୁମ୍ନ ଓଗାଳନ୍ତେ ପଥ
ଧରି ଦୁଶାସନ କର,
ଚେତାପାଇ ଭୂପ ପ୍ରବେଶିଲେ ତହିଁ
କ୍ରୋଧେହୋଇ ଜର ଜର ।
ଦୁଃଶାସନ ବୀର ପଡ଼ିବାରୁ ଘେରେ
ଦେଖି ପାପୀ କୁରୁପତି,
ଅମାତ୍ୟମାନଙ୍କୁ ଚଢ଼ାଇ ରଥରେ
ଆସିଲା ରଣେ ତଡ଼ତି
ଶିଶୁପାଳ ତହୁଁ ଜରାସନ୍ଧ ସହ
ସଭାରୁ ଉଠିଣ ଖରେ,
ରେ ରେ କାରକରି ମାର ମାର ବୋଲି
ଉଚାରିଲେ ଉଚ୍ଚ ସ୍ୱରେ

ବିବେକୀ ଧାର୍ମିକ ଥିଲେ ଯେତେ ତହିଁ
କଲେ ମନା ଘନ ଘନ,
ରାଜା ଦୁର୍ଯ୍ୟୋଧନ ଅହଙ୍କାରେ ମାତି
ନ ଶୁଣିଲା କା ବଚନ ।
କେଶରୀ ଆଗରୁ ଶୃଗାଳ ନେବାକୁ
ହେବ କି ଶଶା ସକ୍ଷମ ,
ବ୍ରାହ୍ମଣ ପିଲାକୁ ରାଜକନ୍ୟା ଦେବା
ନୁହଇ ରାଜଧରମ ।
କହି ଏହିପରି ପାପୀ ଦୁର୍ଯ୍ୟୋଧନ
ପଶିଲା ଘୋର ସମରେ,
ଧର ଧରବୋଲି ଡାକ ପଡିବାରୁ
ଗାବନ ଉଠିଲା ଖରେ ।
ମାର ମାରବୋଲି କ୍ଷତ୍ରିୟଙ୍କୁ ମାରି
ଏବେ ଉପରୋଧ ଛାଡି
ରଡ଼ି କରି କରି ସଭାରୁ ଉଠିଲେ
ଧରି ଖପ୍ରେ ଛଡାବାଡ଼ି ।
ରାଜାଏ କେତେକ ରହିଲେ ମଉନେ
ଦେଖିବାକୁ କଉତୁକ
ଏ କନ୍ଦଳ ଦେଖି ମହାଭୟ ପାଇ
ଯୁଧିଷ୍ଠିର ହେଲେ ମୂକ ।
ଦୁଃଶାସନ ଭୀମ ହେଲେ କୋଡାକୋଡ଼ି
ପହିଲେ ହାତକୁ ହାତେ
ପରେ ଗଦାଧରି ହେଲେ ପିଟାପିଟି
ପଡ଼ିଲା ପାବନ ଖାତେ ।
ଖାତରୁ ଉଠି ପୁଣି ଗରଜି ଦୁଃଶାର
କେଶ ଓଟାରି ଓଟାରି,
ପକାଇ ତଳକୁ ଗଡାଇ ଗଡାଇ
ବକ୍ଷକୁ ଦେଲା ବିଦାରି ।
ପାଞ୍ଚାଳୀକି ଦୁଃଶା ଟାଣି ନେବାଲାଗି
ତମୂଳ କାଣ୍ଡ ଭିଆଇ
ଚଣ୍ଡ ହେଲାଶେଷେ ପାଷାଣ୍ଡ ଉଦ୍ୟମ
ଫେଡିଲା ମୁହଁ ଶୁଖାଇ ।
ପଳାଇଲା ଦୁଃଶା ଭୟେ ଭୀମପାଶୁଁ
ବୁଡିଛି ଦେହ ରୁଧିରେ

ଦରଶନ କରି ଏ ଦଶା ତାହାର
ପୁଚ୍ଛିଲେ କୃଷ୍ଣ ଅଧୀରେ ।
ସାଗର କେବେ କି ପୋତ ହୁଏ ଧୂଳି
ପକାଇଲେ ତା ଗରଭେ,
ମାଇଲେ କି ଟେଳା ଟଳି ଯାଏ ଗିରି
ଦେଖିଛ କି କାଏ ଭବେ ।
ଯାବତ ଘଟଣା ଘଟିଥିଲା ଯାହା
ବଖାଣି ତାଙ୍କ ଆଗରେ,
ହାତେ ଗଦା ଧରି ପୁଣି ପ୍ରବେଶିଲା
ବ୍ରାହ୍ମଣ ପାଶେ ବେଗରେ ।
କହଇ କପଟୀ ଖାଇଛୁ ପାମାଡ
ଛାଡ ନାହିଁ ତା ପରଶ ,
ମାଡ ନାହିଁ ଲାଜ ଆସୁ ପୁନରପି
ଅନଳେ ଦେବାକୁ ଝାସ ।
କାଏ କେତେ ଦିନ ରହିବ ଏଥାରେ
କାହାକୁତ ନାହିଁ ଜଣା,
ରାଗ ହିଂସା ହୃଦେ ବହି ଅବିରତ
ହେଉଛୁ ମଶିଷ ବଣା ।
ଏହା ଦେଖି ଭୀମ ଧାଇଁ ଧାଇଁ ଆସି
ଦୁଇଟି ଗଛ ଉପାଡି,
ପଛ ଆଡୁ ଆସି କୋପାନଳେ ଜଳି
ଶିରେ ତା ଦେଲା କଚାଡି ।
ଛଟ ପଟ ହୋଇ ଭୂମି ତଳେ ପଡ଼ି
ଗର୍ଜିଲା ଦୁଃଶାସନ,
ଏକାଳେ ତାହାର ନାସାରୁ ରୁଧିର
ଧାରି ବହେ ଘନ ଘନ ।
ରାଗରେ ଶକୁନି ଦୁର୍ଯ୍ୟୋଧନ ପାଶେ
ଗମି ବୃତ୍ତାନ୍ତ ସକଳ,
କହନ୍ତେ, ସେ ରାଜ ଉପରେ ଆରୋହି
ଆସିଲା ଧରି ତା ବଳ ।
ବୋଲେ ଦୁର୍ଯ୍ୟୋଧନ ବ୍ରାହ୍ମଣ ବୋଲିମୁଁ
ଛାଡିଥିଲି ଦୟା ବହି,
ଦୁଃଶା ଅପମାନ ପଡିବାରୁ କାନେ
ନପାରିଲି କ୍ଷଣ ସହି

ଏହା କହି ଗଦା    ହସ୍ତିନାଧିପତି
ବୁଲାନ୍ତେ ଗାଣ୍ଡୀବୀ ଆଗେ,
ଧାଇଁ ଆସି ପଛୁ    ମରୁତ କୁମର
ଭାଙ୍ଗିଲା ଗଦାକୁ ରାଗେ ।
ତା ଦେଖି ଶକୁନି    ଆସିବାରୁ ତହିଁ
ଭୀମ ଗୋଡ଼ାଇ ଗୋଡ଼ାଇ
ତେନ୍ତୁଳି ଗଛରେ    ପିଟି ତାପିଠିକି
ଦେଲା ତାକୁ ଘଉଡ଼ାଇ ।
ଗଦାଶୂନ୍ୟ ହୋଇ    ରାଜା ଦୁର୍ଯ୍ୟୋଧନ
କାଢ଼ି ନାରାଚ ମୁନିଆଁ,
ନିକ୍ଷେପନ୍ତେ ତାହା    କିରୀଟିକି ଲକ୍ଷି
ସକଳେ ହେଲେ ଛିନିଆଁ ।
ବ୍ରାହ୍ମଣ ସହସା    ପ୍ରତିଶର ବର୍ଷି
ଦ୍ୟନ୍ତେ ଜାଳି ଖଣ୍ଡେ ଦୂରୁ
ଧନ୍ୟ ଧନ୍ୟ ବୋଲି    ପ୍ରଶଂସିଲେ ଅତି
ତାହା ଦେଖି ଦ୍ରୋଣ ଗୁରୁ ।
ଏସମୟେ କର୍ଣ୍ଣ    କୁଣ୍ଡଳ ହଲାଇ
ଝପଟି ରଣେ ଆସନ୍ତେ
ସତର୍କ କରାଇ    ମାରୁତିକି ଜିଷ୍ଣୁ
ପ୍ରତିରୋଧିଲେ ଏଅନ୍ତେ ।
ଆଣିଥିଲା ବଳୁ    ଗଦା ବୃକୋଦର
ରଣେ ଜିଣି ଦୁଃଶାସନ,
ସେ ଗୁଡ଼ିକ ଧରି    ହୁଅନ୍ତେ ସେ ଠିଆ
ଦେଖିଲା ଭାନୁ ନନ୍ଦନ ।
ଏଅନ୍ତେ ନକୁଳ    ପୁଣି ସହଦେବ
ପ୍ରବେଶି ଯୁଦ୍ଧ ସ୍ଥାନରେ
ମାର ମାର ବୋଲି    ଶବଦ କରନ୍ତେ
ଛୁଇଁଲେ କର୍ଣ୍ଣ ଶରରେ ।
ପାଣ୍ଡବଙ୍କ ଠେକ    ରଖିବା ନିମନ୍ତେ
କୋପେ ପବନ କୁମାର,
ଗଦା ପିଟି ପିଟି    ରବିସୁତ ରଥ
କଲା ଗୁଣ୍ଡ ଅନନ୍ତର ।
ଏ କାଳେ ନାରଦ    ଅନ୍ତରୀକ୍ଷେ ଥାଇ
ବୋଇଲେ ମାଡ଼ୁଛି ଲାଜ,
କ୍ଷତ୍ରିୟ କନ୍ୟାକୁ    ଭିକାରୀ ନେଉଛି
କ୍ଷମା ହୋଇ ଏତେ ରଜ ।
ଏଣେ ପାଣ୍ଡବଙ୍କୁ    ଗୁପ୍ତନାମ ଧରି
କହନ୍ତି ଦେଖ ଏରୀତି,
ଦେଖିଲ ବ୍ରାହ୍ମଣ    ବିନ୍ଧିଲା ଲାଖକୁ
ଉପୁଜେ ଭୁଷ୍ଟ ଅପ୍ରୀତି ।
ଶୂନ୍ୟରୁ ଏ ବାଣୀ    ଶୁଣିନୃପତିଏ
ମେଳ ହୋଇ ଯୁଦ୍ଧ ସ୍ଥାନେ
ଯୁଝି ଯୁଝି ଶେଷେ    ପରାଜୟ ଲଭି
ପଳାଇଲେ ଅପମାନେ ।
ବିଚିତ୍ର ସର୍ଜନା    କାହାର ଏ ଭବେ
ନବୁଝଇ କେହି ଲବେ,
ନାନା ଅପକର୍ମ    କରୁଛି ମଣିଷ
ତ୍ରୁଟିକୁ ମାଡି ଗରବେ ।
ଦୁଃସହ ସଂଗ୍ରାମ    କରି ବୀର ଭାଇ
ବହୁତ ମାରି ବାହିନୀ,
ଅର୍ଜିଲେ ପ୍ରଖ୍ୟାତି    ଏ ବସୁଧା ତଳେ
ଧନ୍ୟା କରିଣି ଭାମିନୀ ।
ଏଥୁ ଅନ୍ତେ କନ୍ୟା    ଘେନି ପାଞ୍ଚଭାଇ
ଗମିଲେ କୁମ୍ଭାର ଶାଳେ,
ହୋଇଥିଲ ରାତ୍ର    ଅତୀତ ପ୍ରହର
ପ୍ରବେଶ ହେଲେ ଯେ କାଳେ ।
ପଚାରିଲେ କୁନ୍ତୀ    ଦେଖି ପାଞ୍ଚାଳୀକି
ଏ କିଏସେ କୁତୂହଳେ,
"ଲକ୍ଷ ବିନ୍ଧି କରି    ଦ୍ରୁପଦ କୁମାରୀ
'ଆଣିଲୁ ସୌଭାଗ୍ୟ ବଳେ' ।"
ଦ୍ରୌପଦୀ କାନରେ    ତୁନି ତୁନି କହି
କେଶିନୀ ଗଲ ନବରେ
କୁମ୍ଭାର ପାଖଁଶେ    ଶେଯ ପାରି ଦେଇ
ଶୋଇଲେ ସର୍ବେ ରାତ୍ରରେ ।
ଗହନ ସଂସାରେ    ପ୍ରାସାଦ ଭିତରେ
ଯେ ଥିଲା କାଳି ତୂଳିରେ
ଗଛ ତଳେ ପଡ଼ି    ସେହି ପୁଣି ଆହା !
ରହୁଛି ଅଜ ଧୂଳିରେ

ଜୀବନ ଧରି ବା ଚଳାଇଲେ କେହି
କାହାର ଗଲା ଜୀବନ,
ପଞ୍ଚବୀର ସହ ଦ୍ରୁପଦ ନଗରେ
କରନ୍ତି ଅତି ବେଦନ ।
ନ ବୁଝିଲେ ମନ ବୁଝାଇବ କିଏ
ଏ ମହା ମାୟା ସଂସାରେ,
ସତ୍କର୍ମ ଅକର୍ମ ଭାବୁଅଛି କିଏ
ମାତି ସ୍ୱାର୍ଥ ଲାଳସାରେ ।
ଅନ୍ୟାୟ ବୋଲି ବା ଜାଣିଲେ କିଏ ସେ
ଓହରୁଛି ବସୁଧାରେ
ଦେଖିବାକୁ ନାଟ କେତେକ ପଛରୁ
ଲାଗନ୍ତି ମଚାଇବାରେ ।
ଦେବର୍ଷି ବୋଲି ବା କହନ୍ତି ଯାହାକୁ
ସେହି ତ ବଡ ନାଟୁଆ,
ଉଭୟ ପକ୍ଷକୁ ଚିହାଇ ଦେବାରୁ
ପାଇଲା ଦୁଃଖ ବାଟୁଆ
ପଡି ଅଛି ମଡ଼ କୁତ କୁତ ହୋଇ
ଶୋଣିତେ ଭାସୁଛି ଧାଣ୍ଡ
ଅନ୍ୟାୟେ କୌରବେ ନ ମାନିଲା କଥା
ଭିଆଇଲେ ଏତେ କାଣ୍ଡ ।
ଲାଗିଛି କଳହ ଦୁନିଆଁ ଭିତରେ
ପରସ୍ପର ମଧ୍ୟ ମତ
କ୍ଷତିବିନା ଲାଭ ହୋଇଛି କାହାର
କରି କରମ ଅନୀତି
ଆପଣା ସ୍ୱାର୍ଥକୁ ଜପେ ଯେ ନିରତ
ପଡୁଅଛି ସେହି ଖାଲେ,
ଅସାର କଳ୍ପନା କରି ବା କିଏ ସେ
ପଡ଼ୁଛି ବିଷମ ଜାଲେ ।
ଲେଉଟି କେଶିନୀ ପାଞ୍ଚାଳୀଙ୍କ ଗୃହୁ
ପ୍ରବେଶିଲା ନଗରରେ
ତାକୁ ଦେଖି ସର୍ବେ ପୁଚ୍ଛିଲେ ସକଳ
କଥା ଆକୁଳ ଅନ୍ତରେ ।
ଯୁଦ୍ଧ ଆରମ୍ଭରୁ ଦେଖିଥିଲା ଯାହା
ବର୍ଣ୍ଣିଲା ନୃପତି ଆଗରେ

କହିଲା ଟିକାକୁ ପାଞ୍ଚାଳିଙ୍କ ଦେଖି
କୁମ୍ଭାର ଘରକୁ ଖରେ ।
କେଶିନୀଙ୍କ ଠାରୁ ଦ୍ରୁପଦ ରାଜନ
ବାରତା ପାଇ କୁମ୍ଭାର
ତା ବିବାହ ଲାଗି ହେଲେ ସଜବାଜ
ଯୋଗାଡ଼ି ନାନା ସମ୍ଭାର ।
ପ୍ରବେଶିଲେ ନୃପ କୁମ୍ଭକାର ଗୃହେ
ଦେଖିବାକୁ ପଞ୍ଚବୀର
ସେମାନଙ୍କୁ କୁନ୍ତୀ ନିଦରୁ ଉଠାଇ
ଭଣିଲେ ଏମନ୍ତ ଗୀର ।
"ପାଞ୍ଚାଳେଶ ଆପେ କରଛନ୍ତି ବିଜେ
ବନ୍ଦ କୃଷ୍ଣଙ୍କୁ ସୁମର,"
ଜନନୀ ବଚନେ ସୁମରନ୍ତେ କୃଷ୍ଣ
ଆସିଲେ ଦୁହେଁ ସତ୍ୱର ।
ପ୍ରବେଶିଲେ ତହୁଁ ବ୍ୟାସ ମହାମୁନି
ସଙ୍ଗେ ଘେନି ବହୁ ଋଷି,
ଅମରାବତୀରୁ ଆସିବାରୁ ଇନ୍ଦ୍ର
କୃଷ୍ଣ ଦେଖି ହେଲେ ଖୁସି ।
କୁମ୍ଭାର ଶାଳଟି ହେଲା ନେଥୁର
ବିଶ୍ୱକର୍ମା ଅନୁଗ୍ରହେ
ସଜନ ପୁଲକେ ହେଲେ ମିଶା ମିଶି
କୃଷ୍ଣା ଦାରପରିଗ୍ରହେ ।
ଆସିଲେ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ସହ
ସଜାଇ ଗୁମ୍ଫା ମଣ୍ଡପ,
ପ୍ରବେଶ ନ ଥିଲା ଯହିଁ ଇତରଙ୍କର
ଖଞ୍ଜାହେତୁ ଚନ୍ଦ୍ରାତପ
ପାଞ୍ଚବୀରଙ୍କର ଏକାରୂପ ଦେଖି
ପୁଚ୍ଛେ ଦ୍ରୁପଦ ରାଜନ,
ଏ ପାଞ୍ଚମଧ୍ୟରେ କେ ବିନ୍ଧିଲା ଲକ୍ଷ
ଜଣାଅ ଆଗେ ବହନ
ବୋଲନ୍ତେ ଯୁଧିଷ୍ଠି ଏ ପାଞ୍ଚ ଭିତରୁ
ତୃତୀୟ ଜଣ ବିନ୍ଧିଲେ ଶର
ଯାହା ପାଉ ଯଶ ପାଞ୍ଚଭାଇ ହେଲୁ
ଜାଣ ହେ ପାଞ୍ଚାଳେଶ୍ୱର ।

ଦ୍ରୌପଦୀ କ ଭର୍ତ୍ତା ହେବେ ପାଞ୍ଚଜଣ
ଶୁଣି ତାହାକା ନରେଶ,
ବ୍ୟାସଙ୍କୁ ପୁଚ୍ଛନ୍ତେ ଦେଲେ ସେ ଉତ୍ତର
"ଦୋଷ ନାହିଁ ତହିଁ ଲେଶ ।"
ତହୁଁ ବାସୁଦେବ ଦ୍ରୁପଦଙ୍କୁ ଦେଇ
ପାଣ୍ଡବଙ୍କ ପରିଚୟ,
ବୋଇଲେ ସୁକୃତୁଁ ଏ ଜାମାତା ଯୋଗୁଁ
ନ ଉଦ୍ଭବ କେବେ ଭୟ ।
ପାଞ୍ଚଭାଇ ତହୁଁ ବସିଲେ ବେଦୀରେ
ବିବାହ ବିଧାନ ପାଇଁ,
ନବୀନ ବସନ ପିନ୍ଧାଇ କୃଷ୍ଣାକୁ
ଆଣିଲେ ପାଞ୍ଚାଳସାଇଁ ।
ଚନ୍ଦ୍ର ବନ୍ଧୁଗଣ ପାଇ ନିମନ୍ତ୍ରଣ
ବତର୍ଦ୍ଧୀ ଚଉପାଶରେ,
ଶୁଣୁଥିଲେ ବସି ବେଦ ମନ୍ତ୍ର ପାଠ
ପୁଲକିତ ହୃଦୟରେ ।
ବିବାହ ବିଧାନ ସରିବାରୁ କନ୍ୟା
ନେଲେ ଅସି ନଗ ମାଳ,
ଦ୍ରୁପଦ ତଦନ୍ତେ ରାଜାର କର୍ତ୍ତବ୍ୟ
ବୁଝାଇଲେ କ୍ଷଣେ କାଳ ।

ସର୍ପିଣୀ ମୁଖ ଚୁମ୍ବନ କଠିନ ଯେମନ୍ତ,
ରାଜନୀତି ଅବଲମ୍ବ ଦୁଃସାଧ୍ୟ ସେମନ୍ତ ।
କାମ କ୍ରୋଧ ଲୋଭ ମୋହ ମଦ ମାତ୍ସର୍ଯ୍ୟାଦି ଅରି,
ପ୍ରଜାନୁରଞ୍ଜନ ଲାଗି ପରିହାର କରି ।
ଅବଲମ୍ବି ମିତାଚାର ଶାସନର ଭାର,
ତୁଳାଇଲେ ପ୍ରଜା ତୋ ଭଲଭର ଅପାର ।
ପ୍ରତ୍ୟୁଷରୁ ଉଠି ଭୂପ ସୁର ପୂଜା ସାରି,
ରାଇଜ କଥା ବୁଝିବ ଅମାତ୍ୟ ହକାରି ।
ନ ରହିଲେ ସଦାଚାର ପରଜା ପାଳନେ,
ପ୍ରସରଇ ଅସନ୍ତୋଷ ଭବନେ ଭବନେ ।
ଖଳେ ଜେ ଅଭୋଜକତା କରଇ ପ୍ରବେଶ,
ନ୍ୟାୟ ପ୍ରତି ସଦା ଦୃଷ୍ଟି ନ ଦେଲେ ନରେଶ ।
ଅନ୍ୟାୟକୁ ଅବଲମ୍ବି କେ ଉଚିତ ଭାବେ,
ଅବଶ୍ୟମ୍ଭାବୀ ପତନ ଅନ୍ୟାୟର ଜବେ ।

ଶତ୍ରୁତା ମିତ୍ରତା ଜନ୍ମେ ଆପଣେ ବଶେ,
ଅନ୍ତର ବିଶୁଦ୍ଧି ସାଥି ପରୀକ୍ଷେ ଯଶେ ।
ମନୁଷ୍ୟ ଜନମ ଲଭି ହେଲେ ନୀତି ଭ୍ରଷ୍ଟ,
କିଞ୍ଚିତ କାଳରେ ସେହି ଭୋଗେ ବହୁ କଷ୍ଟ ।
ଅନ୍ତରଗୁପ୍ତ ଭ୍ରମୁଛନ୍ତି ପଡ଼ୁଛି ନଜର,
ନିଜକୃତ ଦୁଷ୍କୃତରୁ ସିନା ହରିବର ।
ପ୍ରତିଭୂ ତୋ ଅନ୍ତରାତ୍ମା ଅସତ କର୍ମରେ,
ଲଭିବୁ ବିଷମ ଦଣ୍ଡ ପର ଜନମରେ ।
ଦୁଷ୍ଟଙ୍କୁ ରଖିବ ଦୂରେ ଶିଷ୍ଟଙ୍କୁ ପାଶରେ.
ରଖିଲେ ସାହାଯ୍ୟ ମିଳେ ଆପଦ କାଳରେ ।
ପାପ ପୁଣ୍ୟ ନ ବିଚାରି କରେ ଯେ କରମ,
ନ ଲଭେ ସେ ସିଦ୍ଧି କେବେ ବୃଥା ତା ଜନମ ।
ଅପରାଧୀ ନ ପାଇଲେ ଯଥା ଯୋଗ୍ୟ ଦଣ୍ଡ,
କହଣ ବଢ଼େ ସନ୍ଧର ଦେଶ ଖଣ୍ଡ ଖଣ୍ଡ ।
ପରଜାକୁ କରି ରକ୍ଷା ଦଣ୍ଡହିଁ କେବଳ,
ହଟି ଯାଏ ଦଣ୍ଡ ଭୟେ ଅପରାଧୀ ବଳ ।
ଦୁର୍ବଳ କରିବାକୁ ଦୁର୍ଜନ ନକରେ ସାହାସ,
ଦଣ୍ଡ ସିନା ନିରନ୍ତର ପୀଡ଼ଇ ମାନସ ।
ନଥାନ୍ତା ଜଗତେ ଯେବେ ଦଣ୍ଡର ବିଧାନ,
ମାରଠାରୁ ଉଦ୍ଧ କେବେ ନପାନ୍ତା ସମ୍ମାନ !
ଦଣ୍ଡକୁ ବୋଲନ୍ତି ଧର୍ମ ପଣ୍ଡିତ ସକଳେ,
ଦେଖାଏ ସେ ନ୍ୟାୟ ପଥ ମନୁଷ୍ୟଙ୍କୁ ଭଲେ ।
ଅଳସୁଆ ସିନା ସଦା ଲୋଡ଼ଇ ବିଳାସ,
ରକ୍ଷକ ଭକ୍ଷକ ହେଲେ ଘଟଇ ବିନାଶ ।
ନିର୍ବୋଧ ବିଷୟାସକ୍ତ ଶୁଣି ଲୋଭୀ ଜନ,
ନ୍ୟାୟ ପଥ ଛାଡ଼ି ସଦା ପାପ ଲିପ୍ତ ମନ ।
ବଢ଼ଇ ରାଜାର ଯଶ ଶତ୍ରୁ ଦମନରେ,
ଅକପଟ ବ୍ୟବହାର ମିତ୍ରର ସଙ୍ଗରେ ।
ପୂରଣ କରିବା ଲାଗି ନିଜ"ଅଭିଳାଷ,
ରାଜଦ୍ରୋହୀ ମନୁଷ୍ୟ ଘଟାଏ ବିନାଶ ।
ନ କରି ସମର କେହି ଆତ୍ମ ସମର୍ପଣ,
କଲେ ତାକୁ ମିତ୍ର ରୂପେ କରିବ ଗ୍ରହଣ ।
ଜୟ ପରାଜୟ ଯୁଦ୍ଧେ ଦଇବ ଅଧୀନ,
ନ ବିଚାରି କେତେ ବେଳେ ଆପଣାକୁ ହୀନ ।

ବ୍ୟସନେ ଆସକ୍ତ ହୋଇ ରାଜା ଏ ସଂସାରେ,
ନୁହନ୍ତି ସକ୍ଷମ କେବେ ପ୍ରଜା ପାଳିବାରେ ।
ଅବିନୟ ହେତୁ ରାଜା ନହୁଷ ସୁଦାସ,
ନାନା କ୍ଲେଶ ପାଇ ଶେଷେ ଲଭିଲେ ମରଣ ।
ଜିତେନ୍ଦ୍ରିୟ ହୋଇ ଆପେ ପ୍ରଜାଙ୍କୁ ବଶରେ,
ରାଜାଏ ସକ୍ଷମ ରଖିବାକୁ ଏ ଭବରେ ।
ଦିବାନିଦ୍ରା ଅକ୍ଷ କ୍ରୀଡ଼ା ବୃଥା ଅଭିମାନ,
ଅସୂୟା ଖଳତା ପରଦ୍ରୋହ ମଦ୍ୟପାନ ।
ଜୀବନର ସାଙ୍ଗ ହେଲେ ଘଟାନ୍ତି ପ୍ରମାଦ,
ସର୍ବଥା ବର୍ଜନ କଲେ ଘୁଞ୍ଚଇ ବିଷାଦ ।
ବ୍ୟସନୀ ଦିନକୁ ଦିନ ଲଭେ ଅବନତି,
ନିର୍ବ୍ୟସନ ଅହରହ ଅର୍ଜଇ କୀରତି ।
ସତ୍‌ପାତ୍ରରେ ବିନିଯୋଗ ଉପାର୍ଜିତ ଅର୍ଥ,
ଆନନ୍ଦ ଲଭନ୍ତି କଲେ ଦେଶେ ପ୍ରଜା ସାର୍ଥ
ନ୍ୟାୟାନ୍ୟାୟ ବିଚାରରେ ନିବେଶିବ ମନ,
କାର୍ଯ୍ୟଶୀଳ ହୁଅ କରି ଆଳସ୍ୟବର୍ଜନ ।
ହିତକର କାର୍ଯ୍ୟେ ରାଜା ବଳାଇଲେ ମତି,
ଦିନୁଦିନ କରେ ସିନା ଦେଶ ଅଗ୍ରଗତି ।
ଦେଶର କଲ୍ୟାଣ କର ନ୍ୟାୟେ ଅର୍ଜି ଧନ,
ପରଜା ଶୋଷଣେ କେବେ ନ ବଳାଅ ମନ ।
ଅଧ୍ୟବସାୟ ସଂଯମୀ ହୁଅଇ ଯେ ନର,
ଲଭଇ ସେ ଆଜୀବନ ଢେର ଆଦର ।
ସର୍ବ ଶାସ୍ତ୍ର ବିଶାରଦ ଚତୁର କୁଳୀନ,
ରାଜଦୂତ ହେବା ଲାଗି ସଦା ସମୀଚୀନ ।
ଶୁଦ୍ଧଚିତ୍ତ ସ୍ମୃତିଶାଳୀ ସର୍ବଜନ ପ୍ରିୟ,
ନିର୍ଲୋଭ ନିର୍ଭୀକ ଯେହୁ ହୁଏ ପୂଜନୀୟ ।
ପ୍ରଜାର ସକଳ କାର୍ଯ୍ୟ ହେଲେ ଅବଗତ,
ସୁଶାସକ ବୋଲି ଘୋଷେ ଦୁନିଆଁ ସତତ ।
ଧାର୍ମିକ ବତ୍ସଳ ଦେଶ ଧନଧାନ୍ୟ ଶାଳୀ,
ହୁଅନ୍ତି ରୋଗାଦିଶୂନ୍ୟ ସଦା ପ୍ରଜାବଳୀ ।
ଧର୍ମାଧର୍ମ ପ୍ରତି ଦୃଷ୍ଟି ଦେଇ ନରପତି,
ଶାସିଲେ ପରଜା ତତି ଲଭନ୍ତି ତୃପତି ।

ସାର୍ଥ—ସମୂହ

ପୁତ୍ରପରି ସ୍ନେହ କରି ପରଜା ପାଳନ,
କରିବାରେ ତ୍ରୁଟି କେବେ ନକରୁ ରାଜନ !
ନ କରିବ ବନ୍ଧୁ ସଙ୍ଗେ କପଟାଚରଣ,
ନ ଦିଅ ପ୍ରଶ୍ରୟ କେବେ ପରସ୍ତ୍ରୀ ହରଣେ ।
ଆପଣା ଛିଦ୍ରକୁ ଶତ୍ରୁ ନଜାଣେ ଯେପରି,
କରୁଥିବ କାର୍ଯ୍ୟ ଅବିରତ ସେହିପରି ।
ଶତ୍ରୁ ସଙ୍ଗେ ଯୁଦ୍ଧ ହେବ ବଳ କଷାକଷି,
ନ ପାରିଲେ ଶଶା ପରି ପଳାଇବ ଖସି ।
ଧାନ୍ୟ ଯେସନ କ୍ଷେତ୍ରୁ ଉପାଡ଼ିଲ ଘାସ,
କରିବ ନୃପତି ତଥା ବିରୋଧୀଙ୍କ ନାଶ ।
ଜ୍ଞାନେ ବା ଅଜ୍ଞାନେ ରାଜା କଲେ ଅବିଚାର,
ଜଳାଭାବେ,ବନ୍ୟାହାଗ୍ନି ଦେଶେ ବାରମ୍ବାର ।
ରାଜ ଭୃତ୍ୟ ପ୍ରବଞ୍ଚକ ନ ହେଲା ପରିଏ,
ସମୀଚୀନ ସନ୍ଧାନେ ବା ଯତନ ରାଜାଏ ।
ଆତ୍ମାହିଁ ନିଜର ସାକ୍ଷୀ ଶୁଭାଶୁଭ କର୍ମ,
ମିଥ୍ୟା କହି ଏଣୁ କେବେ ନ ଯାଅ ଅଧର୍ମେ ।
ପ୍ରଜା ବର୍ଗ ଅସନ୍ତୁଷ୍ଟ ହେଲେ ରାଜାପ୍ରତି,
ପରିଣାମେ ହୁଏ ତାର ଅମଙ୍ଗଳ ଅତି ।
ମନ୍ତ୍ରଣା କରିବ ରାଜା ନିଭୃତ ସ୍ଥାନରେ,
ସେତେବେଳେ ରମଣୀ କେ ନ ଥିବ ପାଶରେ ।
ଶାସନେ ଅସାଧୁ ଲୋକ ହେଲେ ଭରପୂର,
ନ୍ୟାୟ ପ୍ରତି ଅନୁରକ୍ତି ନରହେ ତାଙ୍କର ।
ଜଳ ସେଚନ ବ୍ୟବସ୍ଥା ନକଲେ ଦେଶରେ,
ଶସ୍ୟହାନି ହୁଏ ଭୂମି ବୃଷ୍ଟି ଅଭାବରେ ।
ସତ୍ତ୍ୱରେ ଅସତ୍ୟ କହି ନ ଅର୍ଜ ପାପ,
ଉପୁଜେ ତହିଁରୁ ସଦା ମାନସେ ସନ୍ତାପ ।
ଏକାଗ୍ରହୃଦୟ ବସି ବିଚାର ଆସନେ,
ନ୍ୟାୟାନୁସରଣେ କର ସଦା ମନେ ମନେ ।
କର୍ମନିଷ୍ଠ ହେବା ଲାଗି ଶାସ୍ତ୍ର ଅଧ୍ୟୟନ,
ନ କର ମନୀଷ ଦେଖି ଲଭେ ଉଚ୍ଚାସନ ।
ସତ୍ୟ ଠାରୁ ବଳି ଧର୍ମ ନାହିଁ ଜଗତରେ,
ସତ କହି ନିରନ୍ତର ଚଳ ଜୀବନରେ ।

## ଆଜିର ଦୁନିଆଁ

କିଏ କେତେ ଦିନ ରହିବ ସଂସାରେ,
ଏକଥା କିଏସେ ଚିନ୍ତିଲା କିବାରେ ?
ଅର୍ଥତୃଷ୍ଣା ସଦା ଘାରୁ ଅଛି ମୁଣ୍ଡ,
କ୍ଷମତା ନିମନ୍ତେ ଲୋକେ ଆଜି ରୁଣ୍ଡ ।
ପାପପୁଣ୍ୟ ଚିନ୍ତା ଯାଉଛି ଉଭେଇ,
ପର ପର ମଧ୍ୟେ ଲାଗିଛି ଲଢ଼େଇ ।
ଗରିବ ନାଆଁରେ ଲାଗିଛି ଲୁଣ୍ଠନ,
ଏସବୁ ସନ୍ତତ ଦେଖୁଛି ନୟନ ।
ନିରୀହଙ୍କୁ ଏଣେ ଠକିବାରେ ବ୍ୟସ୍ତ,
ହିଂସ୍ର ହେଉଛନ୍ତି ଜନେ ଅପଦସ୍ତ ।
ମାତି ବିଳାସରେ ସାରା ଗନ୍ଧାଧର,
ପ୍ରଜାଙ୍କ ଉପରେ ବସୁଅଛି କର ।
ଗଣତନ୍ତ୍ର ବୋଲି ଭୁକ୍କାପଟେ ହୁରି,
ଭୋଟ ଲାଗି ଖର୍ଚ୍ଚ ଅର୍ଥ ଭୂରି ଭୂରି ।
ଭୋଟ ପାଇଁ ମୋଟା ନୋଟ କେ ଦେଖାଇ,
ଭୋଟରଙ୍କୁ ଡାକେ ଆଜି ଭାଇ ଭାଇ ।
ସ୍ୱାର୍ଥ ସଂଗ୍ରାମରେ ଦେଖ ଜଗ ଗ୍ରସ୍ତ,
ହେଉ ଅଛି ଅଧ୍ୱ ଉହ ଅପଦସ୍ତ ।
କର ପରେ କର ବସେ ବାରଂବାର,
ଏଥି ପ୍ରତିପୂର୍ବ ହୁଅ ହୁସିଆର ।
କରୁଅଛି ମିଛ ପ୍ରତି ମୂରଖ ବସା,
ନଥାଏ ଖାତିର ହେଲେ ଲୋକ ହସା ।
ଚଉଦରେ ହଂସା କାର ଅଭିନୟ,
କରି ନିରୀକ୍ଷଣ ଚମକେ ହୃଦୟ ।
ଛିଦ୍ର ଖୋଜି ବାରେ ମନକୁ ବଳାଇ ।
ହାଷନ୍ତି ନେତାଏ ଦେଖାଇ ବଡାଇ,
କର୍ତ୍ତବ୍ୟ କରିମେ ନାହିଁ କାର ଲୟ ।
ଗୁରୁଉପଦେଶ ଭଜୁଛି ବିଳୟ ।

## ଅନ୍ତିମ ବେଦନା

ଜୀବନ ଯିବାକୁ ଅଛି ବାକି ଦୁଇଦିନ,
ଶ୍ଳଥ ଅବୟବ ଧୀରେ ଧୀରେ ଗତିହୀନ ।
ଆଖି କିଛି ଦିଶୁନାହିଁ ପଡ଼ିଲାଣି ଦନ୍ତ,
କରନ୍ତି ଇନ୍ଦ୍ରିୟ ଯେତେ ନିତି ହନ୍ତ ସନ୍ତ ।
'ମୋହର' ବୋଲି ଯାହାକୁ ଭାବୁଥିଲି ମନେ,
ନାସିକା କୁଞ୍ଚନ କରେ ମୋ ଦଶା ଦର୍ଶନେ ।
ବଦନେ ପୀୟୂଷ ଧରି ହୃଦେ ହଳାହଳ,
ସତ୍ ଛାଡି ବିତାଇଲି ଜୀବନ କେବଳ,
ଅନ୍ତରେ ରହିବ ନାହିଁ କଡ଼ାଏ କଉଡ଼ି,
ଯେ ଯାହା ପନ୍ଥରେ କହି ଦେବେ ତ ଘଉଡ଼ି
ଭାବୁଥିଲି ବନ୍ଧୁ ବୋଲି ଜୀବନେ ଯାହାକୁ,
ନଆସଇ ଅସମୟେ ନେଉଲେ ତାହାକୁ ।
ନୟନୁ ଲୋତକ ଧାର ଗଡ଼ିଲେ କାହାର .
ଆକାଶୁ ଛଳନା ବୋଲି ଶୁଭେ ବାରବାର ।
ଆହା କରିବାକୁ ମୋତେ ଦେଖି ନାହିଁ ଜଣେ,
ପକେଇ ଅଛନ୍ତି ଦେଖ ଆଣି ଘର କୋଣେ ।
ନେଇଗଲା କିଏ ଆସି ହାତୁଁ କଣ୍ଠକାଠି
କରିଥିଲେ ମନା ଅବା ବସିଥାନ୍ତାଲାଠି ।
ଜାଣି ନେର ମଣିଷ ସିନା ହେଉ ଲୋକହସା,
ହେଲୁଁ ଥିଲେ ହୁସିଆର ନପଡ଼ନ୍ତୁ ଏଦଶା ।
ପରର ଭେଟା ଭେଟି ମୁହୂର୍ତ୍ତେ ମାତର,
ଏଥି ଲାଗି ଜନେ କମ୍ପା ଏତେ ହରବର ।
ନାହିଁ ସେହି ଯଉବନ ଔଦ୍ଧତ୍ୟ ଯାହାର,
ସର୍ବନାଶ ହୋଇଅଛି ମଣିଷ ବେଭାର ।
ହାୟରେ ବିଧାତା ତୋରବଚନ ସର୍ଜ୍ଜନା,
ତୋ ବିନା କେ ହରିବ ମୋ ଅନ୍ତିମ ବେଦନା ।

-୦-

# ପାଣ୍ଡବ ବନବାସ

## ପ୍ରଥମ ସର୍ଗ

ପାଣ୍ଡବଙ୍କ ପରସନେ ନାନା କଉଶଳ,
ଅବଲମ୍ବି ଦୁର୍ଯ୍ୟୋଧନ ହେବାରୁ ବିଫଳ ।
ଦ୍ୟୂତକ୍ରୀଡ଼ା କରିବାକୁ ମାତୁଳମର୍ଶନେ,
ଦୁଃଶାସଙ୍କେ ଆଲୋଚନା କରିଲେ ଗୋପନେ ।
ଜନକଙ୍କଠାରୁ ତହୁଁ ଆଣି ଅନୁମତି,
ଆରମ୍ଭି ଯୁଧିଷ୍ଠି ସଙ୍ଗେ କପଟ ପୀରତି ।
ଆଣିଲେ ଲୋଡ଼ି ତାହାଙ୍କୁ ଆପଣା ନଗରେ,
କ୍ରୀଡ଼ିଲେ ସେ ୧ ପଣ ରଖି ଅକ୍ଷଆନନ୍ଦରେ ।
ଖେଳୁ ଖେଳୁ ଯୁଧିଷ୍ଠିର ସର୍ବସ୍ୱ ହରାଇ,
ଥକା ହୋଇ ବସିଗଲେ ଅତି ଲାଜ ପାଇ ।
ଶକୁନିର ପ୍ରବଞ୍ଚନା ଦୁଃଶାର ଲାଞ୍ଛନା,
ଦେଇଥିଲା ଯୁଧିଷ୍ଠିର ଅନ୍ତରେ ବେଦନା ।
ପାଞ୍ଚାଳୀକି ପଣ ରଖି ଶେଷେ ଯୁଧିଷ୍ଠିର,
ଆରମ୍ଭିଲେ ପୁଣି ଖେଳ ମନ କରି ସ୍ଥିର ।
ଜାଣି ନପାରିଲେ ତିଳେ ଶକୁନି କପଟ,
ପଡ଼ିଗଲେ ସଙ୍ଗେ ସଙ୍ଗେ ୨ ଅବକଟ ପଟ ।

ଦୁର୍ଯ୍ୟୋଧନ ବୋଲେ ଯାଇ ଜନ୍ମେ ଦୁଃଶାସନ,
ପାଞ୍ଚାଳୀକି ଟାଣି ଟାଣି ଆଣିଲା ତହନ ।

ବେଣୀମୁକୁଳିତା ବାଳା କାନ୍ଦନ୍ତି ବିକଳେ,
ପିନ୍ଧିବା ବସନ ଭିଜୁ ଅଛି ଅଶ୍ରୁଜଳେ ।

ଯୁଧିଷ୍ଠିର ପାଶେ ଥିଲେ ପାବନ କଷଟୀ,
ଚାହିଁଲେ ସେ ଦୁହେଁ କରି ଆଖି ମିଟିମିଟି ।

ଥିଲେ ତହିଁ ଭୀଷ୍ମ କର୍ଣ୍ଣ ଶକୁନ୍ୟାଦି ବୀର,
କୃଷ୍ଣାର ଦୁର୍ଦ୍ଦଶା ଦେଖି ନ ଫିଟେ କା ଗିର ।

ମନ୍ଦମତି ଦୁର୍ଯ୍ୟୋଧନ କୃଷ୍ଣା ବିବସନେ,
ଆଦେଶିଲେ ଦୁଃଶାସନ ରୋଷ ବହ୍ନି ମନେ ।

ଏକାନ୍ତେ ଦ୍ରୌପଦୀ ଆର୍ତ୍ତେ ସୁମରନ୍ତେ ହରି,
ଶୂନ୍ୟରୁ ବସନ ଖସି ହେଲା ତହିଁ ଭରି ।

ଗୋଟିକ ପରେ ଗୋଟିଏ ପଡ଼ିଲା ବସନ,
ଲୋଡ଼ାଇଲା ସଙ୍ଗେ ସଙ୍ଗେ ବାଳା ଅପଘନ ।

ସ୍ତମ୍ଭୀଭୂତ ହେଲେ ସର୍ବେ ଏ ରୂପ ଦର୍ଶନେ,
ମାନିଲେ ଦେଖଣାହାରୀ ମହିମା କାହ୍ନେ ।

୧ — ପଣ   ୨ — ବିପତ୍ତି

ମଧୁର ବଚନ ଶୁଣି କପଟୀର
ନପଡ଼ କବଳେ ତାର,
ଅମୃତ ଦେଲେ ସେ ବିଷମଣି ତାକୁ
କର ଦୂରୁ ପରିହାର ।
ଲୁହାକୁ କଳଙ୍କ କ୍ଷୟେ କଲାଭଳି
ଅବୟବକୁ ଆଳସ୍ୟ,
ନକଲେ କରମ ଉପୁଜେ ଦୁଶ୍ଚିନ୍ତା
ଦିଅଇ କ୍ଲେଶ ଅବଶ୍ୟ ।
ପ୍ରାଚୁର୍ଯ୍ୟରେ ବଢ଼ି କେ ପାଉଛି ସୁଖ
ନକଲେ ଜୀବନେ ଶ୍ରମ,
ପ୍ରବେଶି ଶରୀରେ ନାନା ରୋଗ ଆସି
ହୁଅଇ ଶେଷରେ ଯମ ।
ବସୁନ୍ଧରା ତଳେ ହୁଏ କି ଜୀବିତ
ଶ୍ରମ ବିନା ଜନ କାର
ବୀଜ ବପନେ କି ଖନ୍ଦ ହୁଏ କେବେ
ନକଲେ କୃଷ କେଦାର ।
ସ୍ୱକୀୟ ଧନରେ ଲଭିଲେ ସନ୍ତୋଷ
ହୋଇଥାଏ ସୁଖକର,
ପରସ୍ୱକୁ ସ୍ପୃହା କରୁଥାଏ ଯିନା
ନିଘୃଣ୍ୟ ନିରନ୍ତର ।
ଦୁଷ୍ଟ ଦୁଃଶାସନ ହୋଇ ଅବସନ୍ନ
କରନ୍ତେ ଉପବେଶନ,
ଦ୍ରୁପଦ ନନ୍ଦିନୀ ଦେଖାଇ ତା ବେଣୀ
ଭାଷିଲା କୋପେ ଏସନ,
"ଚିରଦିନ ଲାଗି ଗର୍ବ ଅବା ଦମ୍ଭ
ନରହେ କାହାର ଭବେ,
ଦୁଃଶୀର ଶୋଣିତେ ବାନ୍ଧିବ ଏ ବେଣୀ
ଛଳିଲୁ ହେତୁ ୧କିତବେ ।"
ପାଞ୍ଚାଳୀ ବଚନେ ଶୁଣି ଦୁଃଶାସନ,
କହେ ତାକୁ କ୍ରୋଧଭରେ
"କୌରବ ନଗରେ ୨ପ୍ରେଷ୍ୟା ହେବା ଲାଗି
ଜନ୍ମିଛୁ ତୁହି ମର୍ତ୍ତ୍ୟରେ ।"

ଏସନ ସମୟେ ୧ଲୋମାଳିକା ରଡ଼ି
ଶୁଭିବାରୁ ଉଚ୍ଚସ୍ୱରେ,
ବିଦୁର ଗାନ୍ଧାରୀ ୨ଆମ୍ବିକେୟ ପାଶେ
ଯାଇ ନିବେଦିଲେ ତ୍ୱରେ ।
ଶୁଣି ନିବେଦନ ସାନ୍ତ୍ୱନା ପ୍ରଦାନ
କରି ପାଞ୍ଚାଳୀକି ଆଗେ,
କଲେ ତିରସ୍କାର କୁମାର ମାନଙ୍କୁ
ରାଜନ ଅତି ବିରାଗେ ।
ମୁକୁଳାଇ ପାଶୁ ପାଣ୍ଡବ ମାନଙ୍କୁ
ଫେରାଇ ଜିତ ପଦାର୍ଥ
ଲେଉଟିବା ଲାଗି ଅନୁଜ୍ଞା ଦେବାରୁ
ପ୍ରଫୁଲ୍ଲିତ ୩ପ୍ରଜାସାର୍ଥ ।
ତଦନ୍ତେ ସେମାନେ ଯାଜ୍ଞସେନୀ ସହ
ବିଦାୟ ମାଗି ୪ସ୍ୟନ୍ଦନେ,
ଆରୋହି ଗମିଲେ ବୈରିତା ବିସ୍ମରି
ଇନ୍ଦ୍ରପ୍ରସ୍ଥ ହୃଷ୍ଟମନେ ।
ଏ ଘଟଣା ଶୁଣି ଦୁର୍ଯ୍ୟୋଧନ କର୍ଣ୍ଣ
ଶକୁନି ସହିତ ଯାଇ,
୫ପରିବ୍ରତ ପାଶେ ହୋଇ ଉପଗତ
ଭଣିଲେ ତାଙ୍କୁ ବୁଝାଇ ।
"ଯୁଦ୍ଧ ୬ଆଶୀବିଷ ପରାଏ ପାଣ୍ଡବେ
ଗଲେଣି ସ୍ୟନ୍ଦନେ ଚଢ଼ି
ପଶାଖେଳେ ଜିତି ନପଠିଲେ ବନେ
ବଳ ତାଙ୍କ ଯିବ ବଢ଼ି ।
୭ଆଶୀଯୁ କ୍ରୁଦ୍ଧ- ଉରଗ ଗଳାଇ
ବସୁଧାରେ କେ କଣ୍ଠରେ,
ଜୀବନ ଧରିବା ଦେଖିଛି କି କାହିଁ
କହନ୍ତୁ ଅନ୍ଧ ଆଗରେ ?
ଅନିଷ୍ଟାଚରଣ କରିଛ ଯାହାଙ୍କ
ସଙ୍ଗରେ ପାଞ୍ଚାଳୀ ପ୍ରତି,
ପସୋର ଯିବକ ପାଣ୍ଡବ ମାନସୁ
ଦେବେ କି କ୍ଷମା ସମ୍ପ୍ରତି ?

୧ ପ୍ରତାରକ, ଜୁଆଖେଳାଳୀ ୨ ଦାସୀ

୧ବିଲୁଆ ୨ଧୃତରାଷ୍ଟ୍ର, ୩ସମୂହ, ୪ରଥ, ୫ଧୃତରାଷ୍ଟ୍ର, ୬ସର୍ପ ୭ ବିଷଦନ୍ତଯୁକ୍ତ

ଏଣୁ ଅନୁମତି ଦିଅନ୍ତୁ ଆମ୍ଭଙ୍କୁ
ଖେଳିବାକୁ ଆଉଥରେ,
ହାରିଲେ ପାଣ୍ଡବେ ଦ୍ୱାଦଶ ବରଷ
ରହିବେ ବନଭିତର ।
ଆଉ ବର୍ଷଟିଏ ପ୍ରଚ୍ଛନ୍ନ ଭାବରେ
ପାରିବେ ଯେବେ କଟାଇ,
ନ ଭୁଆଇ କଳ ଉଲ୍ଲସିତ ଚିତ୍ତେ
ରାଜ୍ୟ ଦେବୁ ଫେରାଇ ।"
ଏକାଳେ ପ୍ରବେଶି ଜନନୀ ଗାନ୍ଧାରୀ
କଲେହେଁ କେତେ ବାରଣ,
ନ ବଳିଲା ମନ ନରପତିଙ୍କର
କରିବାକୁ ତା ଶ୍ରବଣ ।
ଦୁର୍ଯ୍ୟୋଧନ କର୍ଣ୍ଣ ଶକୁନି ଛଦନ୍ତେ
ନରପତିଙ୍କି ମନାଇ
ପାଣ୍ଡବ ୧ନିକଟା ପଠାଇଲେ ଦୂତ
ଆଣିବାକୁ ବାହୁଡ଼ାଇ ।
ବହୁ ଦୂରଗତ ପାଣ୍ଡୁସୁତମାନେ
ପ୍ରଣିଧି କରଦର୍ଶନ,
ପୁଚ୍ଛନ୍ତେ ବୋଇଲା, "ପୁନଶ୍ଚ କ୍ରୀଡ଼ନେ
ଅନୁଜ୍ଞା ଦେଲେ ରାଜନ ।"
ଏ ବଚନ ଶୁଣି ପ୍ରଲୋଭିତ ହୋଇ
ଲେଉଟିଲେ ଯୁଧିଷ୍ଠିର,
ହେମମୃଗ ପଛେ ଯେସନ ଆଗୁରେ
ଧାଇଁଥିଲେ ରଘୁବୀର ।
ପାଣ୍ଡବନିକର ପ୍ରବେଶି ସଭାରେ
କଲେ ଉପବେଶନ,
ହରଷେ ଶକୁନି ରାଇ ଦୁର୍ଯ୍ୟୋଧନ
ତାପାର୍ଶ୍ୱେ ଦେଲା ଆସନ ।
ଦୁହିଙ୍କି ଅନାଇଁ ପଣ ସମାସର
ଭାଷେ ଶକୁନି ଏପରି,
"ନକରେ ଯେ ଜୟ ବାର ବର୍ଷ ବନେ
ଯିବ ପରିବାର ଧରି ।

ବଚନେ ଛଦନ୍ତେ ରହିବ ପ୍ରଚ୍ଛନ୍ନେ
ବାନ୍ଧବଜନ ପ୍ରଦେଶ,
ପଡ଼ିଗଲେ ଜଣା ପୁନଶ୍ଚ ସେପରି
କରିବେ ବନପ୍ରବେଶ ।"
"ତଥାସ୍ତୁ ଉଭୟେ ବୋଲନ୍ତେ ଶକୁନି
ନିକ୍ଷେପିଲା ଅକ୍ଷ ସବେ,
ଖଳର ଛଳନା କେବେ ମହାମନା
ବୁଝି ପାରିବ କି ଲବେ ।
"ଜିଣିଲି ବୋଲି ସେ ଭାଷନ୍ତେ ତକ୍ଷଣେ
ଯୁଧିଷ୍ଠିରଙ୍କୁ ଅନାଇଁ,
ପାଣ୍ଡବ ବଚନ୍ତ ହେଲେ ସଜବାଜ
ବନେ ତହୁଁ ଯିବା ପାଇଁ ।
ପାଣ୍ଡବ ଦୀନତା କୌରବ ବିଭବ
ଏ କାଳେ ଦୁଃଶା ଦେଖାଇ ,
ଡାକି ପାଞ୍ଚାଳୀକି ନୃଶଂସ ବଚନ
ଭାଷିଲା ଗୁପ୍ତ ପୁଲକେ ।
ଅର୍ଥନାଶେ ଯିନା ହୁଏ ଦୈନ୍ୟ ଜାତ
ଅର୍ଥ ବୃଦ୍ଧିରେ ଗରବ,
ଅର୍ଥକାମୀ ସବେ ଇଚ୍ଛନ୍ତି ଦେବାକୁ
ଅପରକୁ ପରାଭବ ।
ମୂଢ଼ ସମାଗମେ ମୋହ ହୁଏ ଜାତ
ସାଧୁ ସହବାସେ ଧର୍ମ,
ଖଳର ସଂସର୍ଗ ଆସିଲେ ନିଶ୍ଚୟ
ଉପୁଜେ ନାନା ଦୁଷ୍କର୍ମ ।
ଦୁଃଶାର ବଚନେ ଶ୍ରବଣେ ପାବନୀ
କରି ତାକୁ ତିରସ୍କାର,
"ଦେଖିଲି ରଣେ ତୋ ମୁଣ୍ଡ ଗୁଣ୍ଡ କରି
ଦେବ ତୋତେ ଉପହାର ।
ନିବାରିବ ତୃଷା ୨ପବନପ୍ରିୟ ସୁତ
୩ଗୋଲକପୁତ୍ର ରୁଧିରେ,
୪ସତ୍ୟସନ୍ଧା ବେଣୀ ତୋ ଶୋଣିତ ଦେଇ
ବାନ୍ଧିବ ପୁଣି ଅଚିରେ ।

୧ ସମୀପ

୨ ପବନର ପୁତ୍ର ଭୀମ ୩ ଦୁର୍ଯ୍ୟୋଧନ, ୪. ଦ୍ରୌପଦୀ

କର୍ଣ୍ଣର ନନ୍ଦନ୍ତା ହେବ କପିଧ୍ୱଜ ୧
ସହଦେବ ଶକୁନିର,
କହେ ପୁନରପି ଏ ସଭା ମଧ୍ୟରେ
ନୋହିବ ବୃଥା ଏ ଗିର" ।
"ବୋଲେ ସହଦେବ ଶକୁନିକ ବୃଦ୍ଧି
ରେ ଗାନ୍ଧାର କୁଳଙ୍ଗାର,
ଅକ୍ଷ ବୋଲି ଯାହା ଭାବୁ ମନେ ମନେ
କରିବ ପ୍ରାଣ ସଂହାର ।
ଦୁଃଖରେ କାତର ମୁକ୍ତବେଣୀ କୃଷ୍ଣା
୨ ଶ୍ୱଶ୍ରୂ ସନ୍ନିହିତ ହୋଇ,
ବିଦାୟକାଳୀନ ପ୍ରାର୍ଥନା କରିଲେ
ଚରଣେ ମସ୍ତକ ଥୋଇ ।
ସୁତମାତଙ୍କର ତାଦୃଶ ଅବସ୍ଥା
ଦର୍ଶନେ ମାତା ଶୋକରେ,
ଭାଗ୍ୟ ଦୋଷ ବୋଲି କହି ଅଶ୍ୱାସିଲେ
କୁମାରମାନଙ୍କୁ ଖେଦେ ।
ତନୁଜମାନଙ୍କ ଈଦୃଶ ଦୁଃଖରେ
ଧିକ ଜନନୀର ପ୍ରାଣ,
ବନବାସ କ୍ଳେଶ ବାସୁଦେବ ବିନା
କରିବ କେ ପରିତ୍ରାଣ ?
ନିରାନନ୍ଦ ଚିତ୍ତେ ବନେ କୃଷ୍ଣାସଙ୍ଗେ
ଗମନ୍ତେ ପାଣ୍ଡୁନନ୍ଦନେ,
ଆଦ୍ୟୋପାନ୍ତ ଶୁଣି ଲଗିଲେ ନାଶିଏ
କୌରବ କୁପ୍ରାରଟନେ ।

## ଦ୍ୱିତୀୟ ସର୍ଗ

ହାୟରେ ଦଇବ ନାନାମତେ ଯାହା
ଦେଉ ତୁ ନିତ କଷଣ,
ଚେତୁ ନାହିଁ ଲବେ ମନିଷ ଅନ୍ତର
ଦେଖି ତୋ ଦୁର୍ଦ୍ଧର୍ଷ ପଣ ।
ଦୁର୍ଭଗା ପାଣ୍ଡବେ ଗମନ କାଳରେ
୩ ପ୍ରାକାରେ ବସି ବାୟସେ,

୧ ଅର୍ଜୁନ, ୨ ଶାଶୁ, ୩ ପାଚେରି,

କୁରୁବଂଶ ଧ୍ୱଂସ ସଙ୍କେତ ଦେଲେ କି
ଚିତ୍କାର କରି ୧ ରଭସେ ?
ଏକାଳେ ସୁରର୍ଷି ବହାୟୁସୁ ଆସି
କଉରବଙ୍କ ବିନାଶ,
ଘଟିବ ବୋଲି ସେ ଶୁଣାଇ ସକଳ
ଗମିଲେ ପୁଣି ଆକାଶ ।
ବିଭବ ବିଭ୍ରଷ୍ଟ ପାଣ୍ଡୁସୁତମାନେ
ସେ ଦିନ ସାୟଂକାଳରେ,
ଅନାହାରେ ରହି ୨ ଯକ୍ଷବାସ ତଳେ
ଯାପିଲେ ନିଶା ଦୁଃଖରେ ।
ବିଭାବରୀ ଅନ୍ତେ ୩ ପିଣ୍ଡସନବନ୍ଧ
କରନ୍ତେ ତହିଁ ପ୍ରବେଶ,
ମଧୁର ବଚନେ- ତୋଷି ପୁଣ୍ୟଶ୍ଳୋକ
ବର୍ଣ୍ଣିଲେ କୁଟୁମ୍ବ କ୍ଳେଶ ।
ଶୌନକ ନାମରେ ୪ ଶମୀଗର୍ଭ ଜଣେ
ତହିଁ ହୋଇ ଉପନୀତ,
ଧର୍ମ ସମ୍ବନ୍ଧରେ କଲେ ଆଲୋଚନା
ଧର୍ମରାଜଙ୍କ ସହିତ ।
ବୋଲନ୍ତି ଶୌନକ ଉପସ୍ଥିତ ଭାବ
ଦେଖୁଛୁ ସଂସାରେ ନିତ,
ସାଧୁଏ ଯାହାକୁ ତେଜନ୍ତି ଅସାଧୁ
ତହିଁରେ ଲଭନ୍ତି ପ୍ରୀତି ।
କର୍ମମୟ ଭବେ ସିଦ୍ଧି ଲଭ ଲାଗି
ଇନ୍ଦ୍ରିୟ କର ନିଗ୍ରହ,
ସଂଯମ ପ୍ରଭାବେ ଲଭିବ ଶେଷରେ
ପରମେଶ ଅନୁଗ୍ରହ ।
ଅର୍ଥଲାଭ ଆଶେ ଅଥବା ବିନାଶେ
ନ ଭେଟେ କିଏ କଷଣ ?
ତେଣୁ ହେ ୫ ଅବସ ବୀତସ୍ପୃହ ହୋଇ
କରିଲୁ ପ୍ରାଣ ଧାରଣ ।
ନୋହିବ ମନିଷ ସ୍ନେହ ଅନୁବର୍ତ୍ତୀ
ସ୍ନେହରୁ ଜାତ ବିକାର,

୧ ଶୀଘ୍ର, ୨ ବଟଗଛ, ୩ ଭିକ୍ଷୁକ,
୪ ବ୍ରାହ୍ମଣ, ୫ ରାଜା

ମାନସିକ ଦୁଃଖ ପ୍ରଶମିତ ସିନା
କଲେ ଚିନ୍ତା ପରିହାରି,
ନୃପରୂପ ବୃକ୍ଷେ କୃପା ପୁଷ୍ପ ଫୁଟି
ରଞ୍ଜିଲେ ପ୍ରଜା ମାନସ,
ରାଜ ଶାସନରେ ଲଭି ତୃପ୍ତି ସଦା
ସରବେ ହୁଅନ୍ତି ବଶ ।
୧ ଷଣ୍ଢ ହେଲେ ପତି ଲଭେ ଅନାଦର
କାମିନୀଠାରୁ ଯେସନ,
ପ୍ରଜାପୁଞ୍ଜଠାରୁ ଶୁଣନ୍ତି ଧିକ୍କାର
ମହୀଶ ନୃପ ତେସନ ।
ବ୍ୟାଧଭୟଗ୍ରସ୍ତ ମୃଗକୁଳ ପରି
ପ୍ରଜାପୁଞ୍ଜ ହେଲେ ତ୍ରସ୍ତ,
ସସାଗର ଧରା ନ ଫେଡ ଅବଶ୍ୟ
ହୁଏ ସଦା ଅପଦସ୍ତ ।
ଅନ୍ୟାୟରେ ରତ ହେଲେ ନରପତି
ସମୂଳେ ଲଭେ ବିନାଶ,
୨ ଜଳଦପଟଳ ପ୍ରଭଞ୍ଜନ ଯୋଗେ
ଲଭଇ ଯେସନ୍ତେ ୩ ପର୍ଯ୍ୟାସ ।
ସାଧୁ ଆଚରିତ ଧର୍ମ ଆଚରଣେ
ରାଜାର ବଢେ ସମ୍ପତ୍ତି,
ଐଶ୍ୱର୍ଯ୍ୟ କାରଣ ଧର୍ମ ସିନା ଭବେ
ଅଧର୍ମ ଲଭେ ବିପତ୍ତି ।
ଦୁର୍ଜ୍ଜୟ ଇନ୍ଦ୍ରିୟ ଅଧୀନେ ଦୁର୍ବୋଧ
ଆଣି ବିସ୍ତୃତ ଅନର୍ଥ,
ଯଥାର୍ଥ ଧର୍ମକୁ ଉପେକ୍ଷା କରି ସେ
ଲଭଇ ଅନ୍ୟାୟ ଅର୍ଥ ।
କ୍ରୋଧ ମଣିଷର କରଇ ଶ୍ରୀଭ୍ରଷ୍ଟ
ରୂପକୁ ଗ୍ରାସଇ ଜରା,
ଲଜ୍ଜାକୁ ହରଇ କାମ ଅବିରାମ
ନାଶଇ କାର୍ଯ୍ୟକୁ ତ୍ୱରା ।
ଶୀଳତାରେ ଭଦ୍ର ବୋଲା ହୁଏ ଜାତ
ସାଧୁତାର ବ୍ୟବହାରେ,
ଶତ୍ରୁ ମିତ୍ର ଜଏ ମିଳେ ପରିଚୟ
ଆପଦେ ସିନା ସଂସାରେ ।
ଆତ୍ମଜ୍ଞାନ ଲଭି ସରଳ ସ୍ୱଭାବେ
ଚଳଇ ଭବେ ସଜ୍ଜନ,
ଅନ୍ୟାୟ କାର୍ଯ୍ୟକୁ ନ୍ୟାୟଯୁକ୍ତ ବୋଲି
ଭାବଇ ସଦା ଦୁର୍ଜ୍ଜନ ।
ଶୌନକ ଭଣିତ ଭଣିତ ଶ୍ରବଣେ
ପୁରୋହିତଙ୍କୁ ଡକାଇ,
ନବେ ବଚନରେ ଯୁଧିଷ୍ଠିର ତାଙ୍କୁ
କହିଲେ ସବୁ ବୁଝାଇ ।
ପ୍ରତ୍ୟୁଷରୁ ଉଠି ବନ୍ଧୁବର୍ଗ ପୂଜା
କଲେ ନରହିବ କ୍ଲେଶ,
ବୋଲି ଚିନ୍ତା କରି ପୁରୋହିତ ଧୌମ୍ୟ
ଦେଲେ ତାଙ୍କୁ ଉପଦେଶ ।
ଗାତ୍ରୋତ୍ଥାନ କରି ଅତି ପ୍ରତ୍ୟୁଷରୁ
କଲେନ୍ତେ ରାଜା ସେପରି,
ଅନ୍ତର ଅଭାବ ନରହିଲା ପୁଣି
୪-ପ୍ରେଷ ଗଲା ଅପସରି ।
ବିପ୍ରପରିବୃତ ପାଣ୍ଡବ ଏଥନ୍ତେ
କୃଷ୍ଣା ପୁରୋହିତ ସହ,
କାମ୍ୟକ କାନନେ କରିଲେ ପ୍ରବେଶ
ଲଭି ଭାନୁ ଅନୁଗ୍ରହ ।
ସମୃଦ୍ଧି ସମ୍ପନ୍ନ ଅରଣ୍ୟ ଭିତରେ
ପାଣ୍ଡବେ ଥିବା କାଳରେ,
ଉପନୀତ ହୋଇ ବିଦୁର ସେଠାରେ
ସତ୍କୃତ ହେଲେ ଆଦରେ ।
ତହିଁ ପୁଣ୍ୟଶ୍ଳୋକ ପ୍ରେମରୁ ପଚାରୁ
ଆଗମନର କାରଣ,
ସକଳ ବୃତ୍ତାନ୍ତ ବର୍ଣ୍ଣିଲେ ଆଦ୍ୟରେ
କଲେ ସେ ତାହା ଶ୍ରବଣ ।
ଏଣେ ୫ ପଟବ୍ରତ ନିଜ ଭ୍ରମ ବୁଝି
କରି ପରିତାପ ଅତି,

ଏଠତ୍ରା ବଚନେ  ସଞ୍ଜୟକୁ ଡାକି
ପେଷିଲେ ବଚନ ଝଟତ ।
ଶ୍ରୀ ବିଦୁରଙ୍କୁ  କାମ୍ୟକ କାନନେ
ପାଣ୍ଡବ ସନ୍ନିଧାନରେ,
ମଧୁର ଆଳାପେ  ଯାପିଲେ ଶର୍ବରୀ
ସକଳ ଅତି ସୁଖରେ ।
ସଞ୍ଜୟ ବିଦୁର  ତହୁଁ ବିଦା ମାଗି
କଲେ ହସ୍ତିନା ଗମନ,
ପ୍ରବେଶି ନଗରେ  ଅମ୍ବିକା ସୁତଙ୍କୁ
ସାକ୍ଷାତ କଲେ ବନ୍ଦନ ।

## ତୃତୀୟ ସର୍ଗ

ପାଣ୍ଡବ ଦର୍ଶନ  ଇଚ୍ଛାରେ କେଶବ
ପ୍ରବେଶି କାମ୍ୟକ ବନେ,
କୁଳ ଅବତଂସ  ଧର୍ମ ରାଜଙ୍କୁ ସେ
ତୋଷିଲେ ଅଭିବାଦନେ ।
"ବୋଇଲେ ଉଦନ୍ତେ  କୌରବେ ପକ୍ଷୀୟ
ସକଳ ରଣେ ନିହତ
ହୋଇ ରଣଚଣ୍ଡୀ-  ତୃଷା ମେଣ୍ଟାଇବ
ସେହି ମାନଙ୍କ ରକତ ।"
କୁରୁସଭା ତଳେ  ଯାହା ଅପମାନ
ଦେଇଥିଲା ଦୁଃଶାସନ,
୨ଶିଖଣ୍ଡିନୀ ତାହା  ଭାଷିଲେ ଆଗରେ
କରି ଲୋତକ ମୋଚନେ ।
ବୋଧକରି କୃଷ୍ଣ  କୃଷ୍ଣାଙ୍କୁ କହିଲେ
"ନକର ଶୋଚନା ଲବେ
କୁରୁବଂଶ ଧ୍ୱଂସ  ଘଟିବ ଅବଶ୍ୟ
ଦେଖିବେ ସଭିଏ ଭବେ ।
ଅର୍ଜୁନ ନାରାଚେ  ନିଧନ ଲଭିବେ
ଜଣେ ସେହି ମନମତ
ତୁମ ଭଳି ଶୋକେ  ହୋଇବେ ଆତୁର
ତାଙ୍କର ବନିତାବ୍ରାତ ।

୧ ବିଦୁର  ୨ ଦ୍ରୌପଦୀ

ଏତାଦୃଶ କହି  ନୁହନ୍ତା ତୁମ୍ଭର
ଥିଲେ ମୁଁ ଦ୍ୱାରକାପୁରେ,
ଦ୍ୟୂତକ୍ରୀଡ଼ା ବୁଧେ  ଦୁଃଖପ୍ରଦ ମଣି
ରହନ୍ତା ତା ପାଶୁ ଦୂରେ ।
ପାଣ୍ଡବ କୃଷ୍ଣାଙ୍କୁ  ବୁଝାଇ ଏସନ
କରନ୍ତେ କୃଷ୍ଣ ପ୍ରସ୍ଥାନ,
ଦ୍ୱୈତବନେ ଯାଇ  ପାଣ୍ଡୁସୁତେ କଲେ
ଘନକାଳେ ଅବସ୍ଥାନ ।
ରସାରେ ପ୍ରାବୃଷ କାଳ ପ୍ରବେଶ,
ପ୍ରସୂତ ମଣ୍ଡି ୧ଶିଖୀ ପ୍ରଦେଶ,
ସରୋବରେ ମୋଦେ ଖେଳେ ୨ବରଟା,
ଘନ ଦେଖି ୩ଶିଖୀ ଦେଖାଏ ଛଟା,
୪ଅଜସ୍ର ଜଳ ଭିତରେ
ଟିପି ଟିପି ନାଦେ  ବଜାଉଛି ଢୋଲ
ନିଶି ଯାପି ଉଜାଗରେ ।
କେବେ ଟିପି ଟିପି କେବେ ଆସାରେ ୫
ହୋଇ ପରିପୂର୍ଣ୍ଣ ମରେ କାସାର ୬
ବସିଛି ୭ ବିଶଙ୍କୁ ତରୁ ଡାଳରେ
ମାତିଅଛି ମନ ଘନ ରସରେ ୮
୯ପ୍ରିୟକ ପ୍ରିୟକ ରସି
ଗୁଞ୍ଜରି ୧୦ପ୍ରିୟକ  କରେ ମଧୁପାନ
ତଥିପରେ ମୋଦେ ବସି ।
ଘନ ଘନ ୧୧ ଅବ୍ଦ ଶବ୍ଦ ଶ୍ରବଣେ
ଗବଲ୍ ଡାହୁକ ବାହୁଁଶ ବରଣ
ଦନ ପଲ୍ଲବରେ ଦେଲେ ଦୋଳାଇ
ପାଦପ ଲତାଏ ଅଙ୍ଗ ଲୁଚାଇ,
୧୨ ନର୍ତ୍ତକ କୁଟ ଦେଶରୁ
ଫୁଲକେ ବାହାରି  ନର୍ତ୍ତକୀ ସହିତ
ପକାଇଲା ଲଙ୍ଗି ତରୁ ।
ଦେଖି ଶରରୂପ ମେଘ କୋଳରେ
ନାଚ ଉଠିଲେଣି ପିଲେ ମୋଦରେ
ମାରୁତ ବିଚଳି ଥରକୁ ଥର

୧ ବକ, ୨ ରାଜହଂସ, ୩ ମୟୂର, ୪ ବେଙ୍ଗ, ୫ ବୃଷ୍ଟିପାତ, ୬ ସରୋବର, ୭ ଗୃତକ, ୮ ପାନ୍ଥି, ୯ କଦମ୍ବଫୁଲ, ୧୦ ଭ୍ରମର ୧୧ ମେଘ, ୧୨ ହାଣ୍ଡି

୧ ବର୍ହୀ ୨ ବର୍ହ ତୋଳି ଝାଡ଼ିଲ ପର,
ବହି କହିଲ ପବନ
୩ ଆନୂପାନୂପଙ୍କୁ ଦେଇ ସୁଖ ସିନା
କର୍ମେ ଲୀନ ଅପଘନ ।
୪ ବନ୍ୟୀଦେଶୁ ବହେ ଝରଣା ଜଳ
ପିଇଲେ ମନ୍ଦାଏ ପେଟ ଶୀତଳ,
୫ ଶତଧାର ନାଦେ କମ୍ପଇ ଧରା
ଦିନସାରା ପୁଣି ନପଡ଼େ ଖରା,
ଅନଳ ବଳ ନେଖାଇ
ଭଙ୍ଗି ଘରଦ୍ୱାର ମହା ମହା ଦ୍ରୁମ
ସଳିଳେ ଦେଇ ଭସାଇ ।
କାହୁଁ ଅଇଲା ଏ ବାଦଲ କାଳ,
ଭୂଚରମାନଙ୍କ ହେଲାଣି କାଳ
କଷ୍ଟଜୀବୀତ ପେଟ ବିକଳେ
ମୁଠେ ଅନ୍ନ ଲାଗି ଗଡନ୍ତି ତଳେ,
ବୁଝାମଣା ଦଇବର
କେ ବୁଝିବ ଭବେ ଏ କପଟ ସ୍ୱତ
ତା ହୃଦ ସଦା ଚତୁର ।
୬ କୀନାଶମାନସ ବଡ଼ ଆନନ୍ଦ
ବର୍ଷିଲେ ମନ୍ଦାଏ ଲାଗିବ ଖନ୍ଦ,
ମନ ଫୁଲାଣିଆ ସଙ୍ଗୀତ ଗାଇ
ଲାଗିଛି କେଦାରେ କଛି ନଖାଇ
ସମ୍ଭାଳେ ଉଦର ଦାଉ
ଯେତେବେଳେ ଯାହା ମିଳେ ତା କପାଳେ
ଗିଳିଦିଏ ଢାଉ ଢାଉ ।
କେତେ ତୃଣଜୀବୀ ହରଷେ ଅତି
ଭ୍ରମିଲେଣି ୭ ଧର ଦେଶେ ସମ୍ପ୍ରତି,
ତରୁବରେ ୮ ଶଷ୍ପ ବଅଳ ଖାଇ
ଦେଖିଲେ ମଣିଷ ଯାନ୍ତି ପଳାଇ,
ଦୁର୍ବଳର ସଦା ଡର
ଦେଖିଲେ ବଳୁଆ ଛପିଯାଏ କାହିଁ
ହେବ ବୋଲି ହରବର ।

୧ ମୟୂର, ୨ ପୁଚ୍ଛ, ୩ ମହିଷ, ଗଣ୍ଡାର, ୪ ବନ, ୫ ବଜ୍ର, ୬ ଚଷା, ୭ ପର୍ବତ, ୮ ବାଳତୃଣ, ଘାସ

ଜଳେ କରୁଥିବା ୧ ଶକଳୀକେଳୀ
ଦର୍ଶନେ ପିଲାଏ ବାନ୍ଧିଲେ ମେଳ,
ଘଡ଼ିକେ ଆନନ୍ଦ ଘଡ଼ିକେ ଦୁଃଖ
କେ ପାଏ ସଂସାରେ ଅନାଶ ସୁଖ,
ଠେଙ୍ଗାକୁ ମୋଦେ ମୀନ
ଆପଣା ବୁଦ୍ଧିରେ ସାରୁଛି ସଂସାରେ
ଗଣ୍ଡକ ବାପୁଡ଼ା ଦିନ ।
ଅସିଲାଣି ବଢ଼ି ଉଚ୍ଛୁଳି କୂଳ
ଫୋପାଡ଼େ ଉପାଡ଼ି ବଟପୀମୂଳ,
କେଙ୍କାରେ ଶୁଣି ଭୂଚରକୁଳ
ଲୁଚି ହେବାକୁ ହେଲେ ଆକୁଳ,
କୋଟରେ ଭିତରେ ପଶି
ଉଣ୍ଡୁଛନ୍ତି ସଞ୍ଜ ରଜନୀ ପ୍ରବେଶେ
ଚଳାଇବେ ଧୀରେ ଖସି ।
ପ୍ରକୃତି ଶୋଭା କର ଦର୍ଶନ
ଲଖି ନାହିଁ ତହିଁ ପାଷାଣୀମନ,
ଓଲଟ ପାଲଟ ଦୁନିଆଁ ମତି
ଏଥିଲାଗି କର୍ମେ ଲଗିଛି ପ୍ରୀତି,
ଅଛି ଯା କପାଳେ ଯାର
ମନ୍ଦ ତେଜ ସିନା ଆଚରିଲେ ଭଲ
ମିଳିବ ସୁଖ ଅପାର ।
ଦ୍ୱୈତ ବନରେ କରିଲେ ନିବାସ
ଯୁଧିଷ୍ଠିର ମହାମତି,
ବହି ଯାଉଅଛି ପାଦଦେଶେ ଯାର
ପୁଣ୍ୟତୋୟା ସରସ୍ୱତୀ ।
ପୁରାଣ ପ୍ରସିଦ୍ଧ ମାର୍କଣ୍ଡେୟ ଋଷି
ସେ ତପିନେ ଦିନେ ଆସି,
ଦେଲେ ପରାମର୍ଶ ପାଣ୍ଡବେ "ଅଧର୍ମେ
ନହୁଅ କେବେ ପ୍ରୟାସୀ ।
ବଳଅଛି ବୋଲି ତେଜିଲେ ଧରମ
ଦାରୁଣ କଷଣେ ପଡ଼ି,
ଦେଖନ୍ତି ସରବେ ଦୁନିଆଁ ଭିତରେ
ଯାଉଛି ମଣିଷ ସଢ଼ି ।

୧ ମାଛ

୧ଶିଖୀସହ ବାତ ହେଲେ ସଂଯୋଜିତ
ପ୍ରଦଗ୍ଧ ଅଟବୀ ଯଥା,
କ୍ଷାତ୍ରବଳେ ବ୍ରହ୍ମ- ତେଜ ସଂଯୋଗରେ
ଶତ୍ରୁ ଏ ଜଗତେ ତଥା ।"
ଏହି ଆମର୍ଶଣ ଦେଇ ମାର୍କଣ୍ଡେୟ
କରନ୍ତେ ତହୁଁ ପ୍ରସ୍ଥାନ,
ବିଷର୍ଣ୍ଣ ବଦନା ୨ପାର୍ଷତୀ ଭାଷିଲେ
ପୁଣ୍ୟଶ୍ଳୋକ ସନ୍ନିଧାନ ।
"ଜାଣନ୍ତି ଆପଣ ଦୁଷ୍ଟ ଦୁର୍ଯ୍ୟୋଧନ
ନକରି ତିଳେ ଶୋଚନା,
କୁରୁସଭାତଳେ ନିର୍ଲଜ୍ଜ ଭାବରେ
ଦେଲା ଯା ଅବମାନନା ।
ବିପିନେ ପ୍ରବେଶି ସମ୍ବର କୋପକୁ
ସହୁଛ ଯାହା କାରଣ,
ପ୍ରତିକାର ଲାଗି ନକଲେ ଯୋଗାଡ଼
ହେବ କି ଦଶା ହରଣ ?
ଚନ୍ଦନ ଚର୍ଚ୍ଚିତ ଶୁଭ୍ର କଳେବର
ଦିଶୁଛି କେତେ ବିବର୍ଣ୍ଣ,
ଯୋଦ୍ଧା ଭାଇମାନେ କରି ବନବାସ
ଦିଶନ୍ତି ଅତି ବିଷର୍ଣ୍ଣ ।
ଅପ୍ରତିମ ବୀର ଦେବ କୁମାର
ନଲୋଡ଼ି କାହା ସାହାଯ୍ୟ,
ହଟାଇ ସମରେ କୌରବଙ୍କ ଠାରୁ
ଆଣନ୍ତେ ଫେରାଇ ରାଜ୍ୟ ।
ଜାଗରୁକ ଥିଲେ ଦୁଷ୍ଟପ୍ରତି ସଦା
ପଡ଼େ କି କେବେ ଆପଦ,
ଦଣ୍ଡର ବିଧାନ ନକଲେ ଦୋଷୀକି
ହୁଅଇ ଶେଷ ବିପଦ ।"
ଦିଅନ୍ତି ଉତ୍ତର କୃଷ୍ଣାକୁ ଏଥନ୍ତେ
ଯୁଧିଷ୍ଠିର ମହାମତି,
"ଯତିଏ କହନ୍ତି ମଣିଷକୁ ସିନା
ସତ୍ୟହିଁ ଦିଏ ମୁକତି ।
କ୍ରୋଧରୁ ଉତ୍ପନ୍ନ ହିତ ବା ଅହିତ
ଜାଣନ୍ତି ସଜ୍ଜନେ ଭବେ,
କରିଅଛି ବ୍ରତ ଚଳିବ ସତତ
ସତ୍ୟରୁ ନଟଳି ଲବେ ।
ନିଷ୍ଠୁରତା ଠାରୁ ଦୟା ଶ୍ରେୟସ୍କର
କହନ୍ତି ବୁଧେ ନିଯୁତ,
ଅସାଧୁ ବ୍ୟକ୍ତିକି ପରାଭବ ଦେବା
ନୁହଇ କେବେ ସଙ୍ଗତ ।
ସାମର୍ଥ୍ୟ ଥିଲେହେଁ ଅପକାର ଚିନ୍ତା
ନକରି କେବେ ଜୀବନେ,
ବିଗ୍ରହର ମୂଳ କ୍ରୋଧହିଁ କେବଳ
ହେତୁ ଲେଖ ସଦା ମନେ ।
ବଳବାନ ବାୟୁ କରେ ବଶୀଭୂତ
ତୃଣ ଅଗ୍ରଭାଗ ଯଥା,
ଧୈର୍ଯ୍ୟବଶବର୍ତ୍ତୀ ହୋଇ ପ୍ରକଟିତ
ପ୍ରାଣୀଏ ଜଗତେ ତଥା ।
ସଂଶୟ ରହିତ ହୋଇ ବସୁଧାରେ
କରିବ ସେବା ଧର୍ମର,
ଇନ୍ଦ୍ରିୟ ପ୍ରୀତିକି ତେଜିଲେ ହୃଦୟୁ
ମିଳେ ସୁଖ ନିରନ୍ତର ।"
ତହୁଁ ଆସି ଭୀମ ହୋଇ ତମ ତମ
କହଇ ବିଷର୍ଣ୍ଣ ମନେ,
"ଆପଣଙ୍କ ପାଶେ ହୋଇ ବଶବର୍ତ୍ତୀ
ପାଉଛୁ ଦୁଃଖ ଜୀବନେ ।
ଭୀମ ବାହୁବଳ ଜାଣନ୍ତି କୌରବେ
ଅନୁଜ୍ଞା ଦେଲେ ସଦୟେ,
ସେମାନଙ୍କୁ ରଣେ ଖଣ୍ଡ ଖଣ୍ଡ କରି
ପଠାଇବ ଯମାଳୟେ ।"
ନିନ୍ଦା ବା ପ୍ରଶଂସା ନଭାବ ମଣିଷ
ଲୋଡ଼ଇ ଆପଣା ସୁଖ,
ପରଠାରୁ ଲଭ ପରାଭବ ଭବେ
ସକଳେ ପାଆନ୍ତି ଦୁଃଖ ।
ଭୀମ ମନୋଭାବ ଜାଣି ଧର୍ମରାଜ
ବୁଝାଇବା ସମୟରେ,

୧ ଅଗ୍ନି ୨ ଦ୍ରୌପଦୀ

ବାକ୍ୟ ବିଶାରଦ ପରାଶର ସୁତ
ବ୍ୟାସ ପ୍ରବେଶିଲେ ଶେଷେ ।
ଦରଶନ ଲଭି ତାଙ୍କର ପାଣ୍ଡବେ
ହେଲେ ଅତି ଉଚ୍ଛ୍ୱସିତ,
ସିଦ୍ଧି ଲାଭ ପାଇଁ ଉପାୟ ବତାଇ
ହେଲେ ତହୁଁ ଅନ୍ତର୍ହିତ ।
ଯାଜ୍ଞସେନୀ ସଙ୍ଗେ ଯୁଧିଷ୍ଠିର ନୃପ
ହରିବାକୁ ମନୋବ୍ୟଥା
ଋଷିଗଣ ମୁଖୁଁ ଶୁଣୁଥାନ୍ତି ବସି
ନଳଦମୟନ୍ତୀ କଥା ।
ଶାସନପଦ୍ଧତି ଦୁର୍ଯ୍ୟୋଧନଙ୍କର
ଜାଣିବାକୁ ଅଜାତାରି,
ଗଲା ୧ ଅପସର୍ପ ବିଶ୍ୱାସ ଭାଜନ
ବ୍ରହ୍ମଚାରୀ ବେଶଧାରୀ ।
ଜ୍ଞାତ ହୋଇ ସବୁ ଫେରି ସେ ବନକୁ
ସ୍ୱାମୀ ହିତକାରୀ ଚର,
ନିବେଦିଲା ଅଗ୍ରେ ପୁରୁଷର୍ଷଭଙ୍କ
ତା ଶାସନ ସମାଚାର ।
ସ୍ୱାମୀ ହିତକାରୀ ପ୍ରଭୁର ସମୀପେ
କହିବାକୁ ସତକଥା,
ଭୃତ୍ୟର ଧରମ ଛାଡ଼େ ନାହିଁ କେବେ
ଲଭିଲେହେଁ ଗୁରୁବ୍ୟଥା ।
ଶୋକ ଅମଙ୍ଗଳ ସଦ୍ୟ ପ୍ରିୟ କଥା
କହି ପ୍ରଭୁଙ୍କ ଆଗରେ,
ବାହାଦୁରି ଲାଗି ଆଚରିଲେ ଛଳ
ପଡ଼ଇ ଜଣା ସତ୍ୱରେ ।
ଅମାତ୍ୟ ପ୍ରଭୁର ଥିଲେ ନିରନ୍ତର
ପରସ୍ପର ଅନୁରାଗ,
ସକଳ ସମ୍ପଦ ହେଉଥାଏ ଠୁଳ
ନ ଜନ୍ମି ଲବେ ବିରାଗ ।

୧ ଗୁପ୍ତଚର

## ଚତୁର୍ଥ ସର୍ଗ

କ୍ଷମା ମାଗି ଫସ୍ଥ ଆଗେ ଭାଷେ ୧ଅଜାତାରି ଆଗେ
ଦୁର୍ଯ୍ୟୋଧନର ସରାଗେ ଶାସନନୀତି
"ଭବପ୍ରତି ରଖେ ଭୟ ପ୍ରଜାଙ୍କଠାରେ ସଦୟ
ଷଡ଼୍‌ବର୍ଗଙ୍କୁ କରିଜୟ ଅର୍ଜିଛନ୍ତି ପ୍ରୀତି
କୃତ୍ରିମ ସାଧୁତା ବଳରେ,
ମିତ୍ରତା ବାନ୍ଧନ୍ତି ପୁଣି ୨ବସୁ ମେଳରେ ।
ଅହରହ ନିରଳସ ସଚିବଙ୍କୁ କରି ବଶ
ବଞ୍ଚାଉଛନ୍ତି ନିଜ ଯଶ ଜଗଦ୍ଦିଗରେ
ଅପାତ୍ରେ ନଦେଇ ବିତ୍ତ ପୁଣ୍ୟ କାର୍ଯ୍ୟେ ରଖିଚିତ୍ତ
୩ବସୁରେ ନୋହି ଲୁବ୍ଧ ଭୁଞ୍ଜିତ ରହି ସୁଖରେ
ପ୍ରଜାବର୍ଗ ଅଯଥା ଦଣ୍ଡ
ନଦେଇ ଶାସୁଛନ୍ତି ରାଜ୍ୟ ବର୍ଜି ଚଣ୍ଡ ।
୪ସନ୍ନତି କରି ପ୍ରକାଶ ଭେଜି ସକଳ ବିଳାସ
୫ସପତ୍ନ କରି ବିନାଶ ପ୍ରଜାହିତରେ
୬ଅନୁଦିନ କରି ଧ୍ୟାନ ଛାଡ଼ି ମନୁ ଅଭିମାନ
୭ତୋୟାଧାର ୮ସରୀମାନ କରି ରାଜ୍ୟରେ
୯ଭୂତିଯୁକ୍ତ ହୋଇଛନ୍ତି ଅତି
୧୦ଅନାରତ ଜାଗ୍ରତ ତା ୧୧ଧ୍ୱଜିନୀପତି ।
ଦୁର୍ଯ୍ୟୋଧନ ରାଜନର ଅବଞ୍ଚକ ଗୁପ୍ତଚର
ଆଣନ୍ତି ତଥ୍ୟ ନାନାକର ଅନ୍ୟରାଜାର,
ଆସମୁଦ୍ର ଭୂମଣ୍ଡଳ କରିବାଲାଗି କବଳ
ଚନ୍ଦ୍ରାକର ଅବିରଳ ଶାସନ ଭାର
ଅର୍ପି ଦୁଃଶାସନ ହସ୍ତରେ
୧୨ମର୍ଶନ କରୁଛନ୍ତି ନିତି କର୍ଣ୍ଣ ସଙ୍ଗରେ ।
ପରାକ୍ରମ ଅର୍ଜୁନର ଲୋକମୁଖେ ଥର ଥର
ଶୁଣି ୧୩ଅବସତ-ବାସର ରହିଛ ଡରେ
ଜୟ ଆଶା ପୋଷି ମନେ ଭୀମର ଛିଦ୍ର ଗୋପନେ
୧୪ଗୁପ୍ତ ଗତ ଖୋଜିବନେ ଆଣନ୍ତି ଖରେ

୧ ଯୁଧିଷ୍ଠିର ୨ ପ୍ରଜା ୩ ଧନ ୪ ନମ୍ରତା ୫ ଶତ୍ରୁ
୬ ସର୍ବଦା ୭ ଜଳାଶ୍ରୟ ୮ ସ୍ରୋତା ୯ କ୍ଷମତାଶାଳୀ
୧୦ ସଦା ୧୧ ସେନା ଫସ୍ଥ-ସ୍ଥଳ ୧୨ ପରାମର୍ଶ
୧୩ ଧୃତି ଦିନ ୧୪ ଗୁପ୍ତଚର

ପରାଜିତ ହେବ ଯେପରି
କରନ୍ତୁ ୧ତୂର୍ଣ୍ଣେ ବ୍ୟବସ୍ଥା ଡେରି ନକରି" ।
୨ପ୍ରେଷ୍ୟ ଆସ୍ୟରୁ ଦ୍ରୌପଦୀ ଶ୍ରବଣେ ରୋଷେ୩ସପନ୍ଦ
କୌନ୍ତେୟଙ୍କୁ ଦୋଷଲବ୍ଧ ଭାଷେ ଏସନେ,
ନିତ୍ୟ ୪ ଏଣଏଣୀ ନାଶି    ଅର୍ଜୁଅଛୁ ପାପରାଶି
୫ପାଶୀ ପରି ପିଶିତାଶୀ ହେଲୁ କାନନେ
ସସାଗରା ଧରା ହରାଇ
ଅକ୍ଷକ୍ରୀଡ଼େ ନିଜ ଭ୍ରାନ୍ତି ଦେଲ ଲିଭାଇ ।
ସମୃଦ୍ଧ୍ୟକାଂକ୍ଷ ମାନବ    ଜଗେ ସଦା ତା ବିଭବ
ନ ଲଭଇ ପରାଭବ କେବେ ସଂସାରେ
କପଟୀ ରଖି କପଟ    ଲଗାଇଣ ଲଟପଟ
ମଣିଷକୁ ଛଟପଟ କରେ ବେଭାରେ
ତୁମଭଳି କିଏ ଭାବରେ
୬ମଙ୍ଗଳାକୁ ଦିଏ ଗୁଣ୍ଡ ପର ହାତରେ ।
ଶତ୍ରୁକୁ ବନ୍ଦୀ ଗାନରେ    ଉଠେ ଯେତୁ ପ୍ରତ୍ୟୁଷରେ
୭ ଅଶିବ ଶିବାରୁତରେ ୮ନିଦ୍ରା ବର୍ଜନ
ଜନ୍ଦଏ କି ଖେଦମନେ    ଆବୋରି ୯ଚୀରବସନେ
୧୦ ପଲ୍ଲବ ଫଳ ଅଶନେ ୧୧ କାଳ ଯାପନେ
କେଉଁ ଜନ ଏହା ସମ୍ଭବ
ଘଟାଇଛୁ ପୂର୍ବ ପାପୁଁ ହୁରି ଦଇବ
ଆଚରିବା ସଦା ଶମ    ଅଟଇ ଋଷି ଧରମ
୧୨ଯୁଯୁଧାନ ପରାକ୍ରମ ମନୁ ମତରେ
ତତ୍ତ୍ୱାଦେଶ ମାନି ମାନ    ହେଉଅଛୁ ମାନ ହାନି
ହୋଇ ଏତେ ମହାଜ୍ଞାନୀ ଶତ୍ରୁ ଉପରେ
ଯାପିବା କି ଏପରି କାଳ
ଯୁଦ୍ଧଲାଗି ଭୀମ ଏବେ କରୁଛୁ ଆଳ ।
ଶତ୍ରୁଠାରୁ ପରାଭବ    ଲଭି ଦୁଃଖ ଅନୁଭବ
ନକଲେ ଭବେ ମାନବ କାର୍ଯ୍ୟ ସାଧନେ
ଜଟାଧାରି ହୋଇ ବନେ    ପ୍ରାଣ ଧରି ଫଳାସନେ
କାଳଯାପି ପ୍ରଶମନେ ପ୍ରଶାନ୍ତ ମନେ

୧ ଶୀଘ୍ର, ୨ ଚର, ୩ ଶୀଘ୍ର, ୪ ହରିଣ ହରିଣୀ, ୫ ବ୍ୟାଧ, ମାସଭେଦୀ, ୬ ପତିବ୍ରତା ସ୍ତ୍ରୀ, ୭ ଅମଙ୍ଗଳ, ୮ରବ, ୯ବକଳ, ୧୦ମାଂସ, ୧୧ଭକ୍ଷଣ, ୧୨ଷଡ଼ରିପୁ

୧୩ଗଜଧ୍ୱଜ ୧୪କାର୍ମୁକ ଗୁଡ
୧୫ହବି କରୁ ହୁତାଶନେ ୧୬ହବି ଅଜାଡ଼ି ।
ସଦା ମତ୍ତ ପାଳ ପାଳ    ମାତଠାରୁ ଶୁଣି ଗାଳି
ବଦନେ ବୋଳୁଛ କାଳି ଦେଖନ୍ତି ଲୋକେ
ନାନା ନିର୍ଯ୍ୟାତନା ପାଇ    ରହିଛୁ ପ୍ରାଣ ନଯାଇ
ଭୀମ ଭୁଜବଳ ଥାଇ ଜୀବନ ଶୋକେ
ଦ୍ରୁପଦ ନନ୍ଦିନୀ କାନନେ
ଯାପୁଅଛି ପୂର୍ବ କଥା ପକାଇ ମନେ ।
ପୌରୁଷହୀନତା ଭବେ    ଦିଅଇ ପ୍ରେଷ ମାନବେ
ଜନ୍ମାଏ ବାଧ୍ୟ ଗୌରବେ ସବୁ ଯୁଗରେ
ଅବିରତ ନେଲେ ସର୍ଗ ୧୭ ବଢ଼ଇ ମନୀଷ ସର୍ଗ ୧୮
ଆଳସ୍ୟ କରିଲେ ସର୍ଗ ୧୯ ଜୟ ଯୁଦ୍ଧରେ
ମିଳେ ଯଦି ଆଦେଶ ତବ
ଭାଳଏ ଆଣିବେ ଜଣି ଦ୍ରୁତ ବିଭବ
ସେମାନେ ଅତି ସାହସୀ    ମୁହୂର୍ତ୍ତକେ ଦେବେ ଗ୍ରାସି
ଦୁର୍ଯ୍ୟୋଧନ ସୈନ୍ୟରାଶି କାହିଁକି ଭୟ
ଜୀବକୁ ଜୀଇକ ଧାରି    ଏସିନା ଭବ ବେଭାରି
ନକଲେ ଆଶୁ ବୈରୀର ଅରାତ ଜୟ
ହେବ ନାହିଁ କେବେ ସମ୍ଭବ
ଦିନୁ ଦିନ ଶକ୍ତିଶାଳୀ ହେବ ଶାତ୍ରବ
ଏଥନ୍ତେ ପ୍ରେମ ନନ୍ଦନ    ଶୁଣି ପାର୍ବଣୀ ବଚନ
ରହିଁ ଅଗ୍ରଜ ବଦନ ଭାଷିଲେ ଖର
ନକର କେବେ ଭାବନା    ବିନା ଯୁଦ୍ଧେ ଦୁର୍ଯ୍ୟୋଧନ
ଫେରିବ ପ୍ରତି ଅର୍ପଣ ରାଜ୍ୟ ଆମର
ନେଇଅଛି ତାହା ବ୍ୟାଜରେ
ହେବନାହିଁ କେବେ ଲବ୍ଧ ବିନା ୨୦ଊର୍ଜ୍ଜରେ
୨୧ ସର୍ଗହୀନ ମଣିଷର    ନରହେ ଐଶ୍ୱର୍ଯ୍ୟଭର
ବ୍ୟସନୀ ନହୋଇ ନର ରହିବ ଭବେ

୧୩ ରଜଚିହ୍ନ, ୧୪ ଧନୁ, ୧୫ ଯଜ୍ଞ, ୧୬ ଘିଅ, ୧୭ ସର୍ଗ-ଯତ୍ନ, ୧୮ ଉତ୍ସାହ, ୧୯ ତ୍ୟାଗ ପାର୍ବତୀ-ଦ୍ରୌପଦୀ କାର୍ପାସୀ-କର୍ମଶୀଳ ଜୀର-ଖଣ୍ଡା ଜାରକ-ଖଣ୍ଡା ଭବ-ପୃଥିବୀ ଶାତ୍ରବ-ଶତ୍ରୁ ପ୍ରେମନନ୍ଦନ-ଭୀମ, ପବନ ନନ୍ଦନ ୨୦ଊର୍ଜ୍ଜ-ବଳ, ଚେଷ୍ଟାରେ ୨୧ଉତ୍ସାହହୀନ,

ଆଚରଣ ୧ଖଣ ପାଶ	୨ଭୁଞ୍ଜ କର ସବୁ ଗ୍ରାସ
ଦୁଃଖ ସାଗରେ ସନ୍ନ୍ୟାସ କରି କୌରବେ
ଲଭୁଛନ୍ତି ମହା ଆନନ୍ଦ
ହାଏ ଜନ୍ମ ମନ୍ତ୍ର ପୁଣି ଶକୁନି ମନ୍ଦ
ଅସାବଧାନଜନିତ	ମୋହକୁ ଛାଡ଼ ତ୍ୱରିତ
ହେବେ କି ଭଲ ନାଶିତ ଶାସବେ ତବ
କଲେ ତାର ପ୍ରତିକାର	ହେବ ଲଘୁ ଦୁଃଖଭାର
ତୁଟିବ ମନୁ ବିକାର ଲଗୁ ୩ ଆହବ
ଭ୍ରମାର୍ଜୁନ ବଳ ଦେଖା
ହେଲେ ସିନା କଉରବେ ପାଇବେ ଶିକ୍ଷା
ଦୁର୍ଯ୍ୟୋଧନ ରଖି ଦ୍ୱେଷ	ଦେଇଛି ବହୁଧା ୪ଙ୍କ୍ଲେଶ
ଧାତେ ଯାର ନଯାଇ ଲେଶ ଧାରେ ମାନସ
ପୌରୁଷ ଅବଲମ୍ବନ	କରି ତାର ଗରଜନ
ଛଡାଇ ୫ପବନନନ୍ଦନ ଲଭିବ ଯଶ
ସ୍ୱପକ୍ଷର ଦେଖି ଉନ୍ନତି
ସହିବ କି କେତେବେଳେ ଉଦ୍ୟୋଗୀ ମତି
ବସୁଦେବ ତୃଣପରି	ଦେଖେ ନମୀ ମାନ କରି
ଅବମାନନା ନଡରି ଶତ୍ରୁ ଯାହାରେ
କରେ ପ୍ରଗାଢ଼ ଯତନ	ହୋଇ ଅତି ଅସହନ
୬ ସାହସ ଅବଲମ୍ବନ କରି ୭ ପ୍ରଭାରେ
ରଖଇ ଜାରନ୍ଧ ଭୁବନେ
ଅନୁସରି ତ୍ରିବର୍ଗକୁ ୮ ସଦା ଜୀବନେ
ଦ୍ୱିଷତ ବିନାଶ ଗତି	ଦେଖେ ସଦା ସୁଧୀମତି
ନ ବଢ଼ୁରି ନିଜ କ୍ଷତି ମରି ଯିବାରେ
ତୁମକୁ ଦେଖି ବିପନ୍ନ	ଅବସନ୍ନ ମୋର ମନ
ନକରି ତରେ ଚନ୍ଦନ ଶତ୍ରୁ ଯାହାରେ
ପଉରୁଷ କରି ୯ନଷ୍ଟ
ଜାଣି ଜାଣି ବନ ମଧ୍ୟେ ପାଉଛ କଷ୍ଟ
ପାବନ ବନେ ଖୁନ୍ତି	କହନ୍ତି କୌନ୍ତେୟ ଶୁଣି
ତାଙ୍କ ଗୁଣ ଗୁଣି ଗୁଣି ହୋଇ ଆନନ୍ଦ

୧କପଟ, ୨ ସମ୍ପତ୍ତି, ୩ ଯୁଦ୍ଧ, ୪ କ୍ଳେଶ, ୫ ବାୟୁ ୬ ବଳ, ୭ ଯୁଦ୍ଧ, ୮ ଆୟୁ, ବ୍ୟୟ, ବୃଦ୍ଧି

ସନ୍ନ୍ୟାସ-ନିକ୍ଷେପ

ତୁମ୍ଭେ ବିନା କେହ୍ନ ଭବେ	ସମର୍ଥ ହେବେ କି ଲଭେ
କହିବାକୁ ଗଉଭବେ ନରଣି ଛଳ
ଯୁକ୍ତିଯୁକ୍ତ ଉକ୍ତି ତୁମ୍ଭର
ଶ୍ରବଣେ ମୋହିତ ହେଲା ହୃଦ ଅମ୍ଭର
୯ ଜଯାସୁ ପ୍ରବଳ ଅତି	ହେବା ହେତୁରୁ ସମ୍ପ୍ରତି
ଅମର ନାହିଁ ଶକତି ରଣେ କରଣେ
ପୂର୍ବୁ ଭାବ ନାଭ କ୍ଷତି	କରିଲେ କରମଗତି
ନ ଘଟେ କେବେ ବିପତ୍ତି ୧୦ ଦଣ୍ଡ ପ୍ରାଙ୍ଗଣେ
ବିଧିଯୁକ୍ତ ନ ହେଲେ ସଦା
ସିଦ୍ଧିଲାଭ ନ ଘଟଇ କାର୍ଯ୍ୟରେ କଦା
ଯେମନ୍ତ କେଦାରେ କୃଷୀ	ସିଞ୍ଚି ସିଞ୍ଚି ଜଳ ରାଶି
ଶସ୍ୟ ରଖି ଘାସ ନାଶି ଫଳାଏ ଫଳ
ତେମନ୍ତ ବିବେକ ଜଳ	ହୃଦ କ୍ଷେତେ ଅବିରଳ
ସେଚନେ କଲେ ସଫଳ କାର୍ଯ୍ୟ ସକଳ
୧୧ବର୍ଗ କରି ଶତ୍ରୁ ୧୨ଅମର୍ଷ
ପ୍ରତିବଶ କରି ଯତ୍ନସହ କରି ବିମର୍ଶ ୧୩
ଶତ୍ରୁ ଅଭ୍ୟୁଦୟ ସହି	ଯାଏ ହୃଦେ ଶାନ୍ତି ବହି
ସତତ ସତର୍କ ରହି ସୁଧୀ ପୁରୁଷ
ଆପଣା ଶରୀରୁ ଜାତ	କୋପ ନକଲେ ନପାତ
ଘଟଇ କର୍ମେ ବ୍ୟାଘାତ ଉକ୍ତି ପରୁଷ
ନ କର ମାରୁତି ନନ୍ଦନ
ଚପଳ ଇନ୍ଦ୍ରିୟଚୟକରୁ ଦମନ
ଦେଖି ଦୁର୍ଯ୍ୟୋଧନ ଧନ	ହୋଇ ସନ୍ତୋଷ ବ୍ରାଜନ
ନ୍ୟାୟ ପଥୁ ତେକଜନ କେତେ ଭୂପାଳ
ନିଜ ସ୍ୱାର୍ଥ ସିଦ୍ଧି ପାଇଁ	କପଟ ସ୍ନେହ ଲଗାଇ
ତାର ସନ୍ନିଧାନେ ଯାଇ ଯାପନ୍ତି କାଳ
ଆଣିବ ଯେବେ ୧୪ ପ୍ରସର
ଧରିବେ ମୋ ପକ୍ଷ ଆଶୁ ଯୋଦ୍ଧା ପ୍ରବର
କର୍ତ୍ତବ୍ୟକୁ ହେଳା କରି	ଅକର୍ତ୍ତବ୍ୟ ଅନୁସରି
ଅନ୍ୟାୟ ମାର୍ଗ ବିଚରି ରାଜଶାସନ
ତର୍ଷ୍ଟ ଛିନ୍ନ ବହୁକାଳ	ସ୍ୱତଃ ଉଠି ପ୍ରଜାକୁଳ
ଜାଳିବେ ବିଦ୍ରୋହ ଅନଳ ଦ୍ୟନ୍ତି ପୀଡ଼ନ

୯ ଶତ୍ରୁ ୧୦ ଯୁଦ୍ଧ ୧୧ତ୍ୟାଗ ୧୨ କ୍ରୋଧ ୧୩ ବିବେଚନା ୧୪ ଯୁଦ୍ଧ

ଅନ୍ତରଙ୍ଗ ଅମାତ୍ୟଚୟ
କରନ୍ତି ଅସଦ୍‌ଯୋଗ ହୋଇ ନିର୍ଭୟ
ଜଗତେ ବର୍ଦ୍ଧିତବାନ    ଉଦ୍ଧତ ଶତ୍ରୁ ଉତ୍‌ଥାନ
ଅବାଚାର ଅଭିମାନ ଭୁଜ ଦର୍ଶନେ
ଅସ୍ପୃଶ୍ୟ କାର୍ଯ୍ୟରତ    କରି ଅପସବ୍ୟ୧ ଗତ
ଆଣେ ନିକାମ୨ ବିପତ୍ତି ଦେଖୁ ଭୁବନେ
ଯଥାକାଳ ଜଗି ରହିବ
ନିବୃତ୍ତିର ପ୍ରବୃତ୍ତିକୁ ସବୁ ସହିବ
ହୋଇଲେ ଇନ୍ଦ୍ରିୟ ବଶ    ଅବଶଂ ସଦା ୩ଅରସ
ବଢେ ତାର ଅପଯଶ ଲୋକ ମୁଖରେ
ପକ୍ଷପାତ ବ୍ୟବହାର    ଯଶୋଲିପ୍ସୁ ପରିହାର
କଲେ ଅଶାନ୍ତ ସହାଇ ସହଜ ଖରେ
ବଚନ ଏ ଭବ ବେଭାର
ହୁଡ଼ିଲେ ମଣିଷ ଅରେ ଦୁଃଖ ଅପାର
ଏକାଳେ ଆସି ୪ପାବନ    ସହସା ଦେଲେ ଦର୍ଶନ
ପ୍ରବେଶି ଦ୍ୱୈତବନ ଯୁଧିଷ୍ଠି ପାଶେ
ଅଶ୍ରୁ ଲୋଚନା ଦ୍ରୌପଦୀ    ଆଶ୍ରମୁ ଆସି ସପଦ
ଭକ୍ତିଭରେ ତାଙ୍କୁ ବନ୍ଦ କୌଶିକ ନାଶେ
ନିବେଦନ୍ତେ ବିଷାଦଭରେ
ଆଶ୍ୱାସି କହିଲେ ଋଷି ତାଙ୍କୁ ସାଦରେ
ଅସାଧୁ ସଂସର୍ଗ ଭବେ    ପତନ ଆଣଇ ଜବେ
ଯୁଦ୍ଧ ଜୟ ଆଶାଲଭେ ନନ୍ଦଏ ମନେ
ଦୁର୍ଯ୍ୟୋଧନ ଦୁଃଶାସନ    ମିଶି ଭାସ୍କର ନନ୍ଦନ
ସନ୍ତତ ସନ୍ଦେହାପନ୍ନ ଇଷ୍ଟ ସାଧନେ
ଇହମର ବୈରୀ କର
କରିବ ଉପାରେ କର୍ମ କେବେ ନଡରି
ଦୁର୍ଯ୍ୟୋଧନ ମହାକୃଷ୍ଣ    ପ୍ରତିହିଂସା ତା ପ୍ରକୃତି
ବଢ଼ୁଛି ଏବେ ତା ୫ଉନ୍ନତି ଅଛି ତା ୬ନ୍ନମ
ଭୀଷ୍ମ ଦ୍ରୋଣ କର୍ଣ୍ଣବୀରେ    ରହିଛନ୍ତି ତା ସାଥିରେ
ପରାକ୍ରମରେ ମହୀରେ ନୁହେ କେ ସମ
ନ କଲେ ପୂର୍ବରୁ ପ୍ରୟାସ
ଘଟିବ ୭ମନସି ପାଣ୍ଡବଙ୍କ ୮ପର୍ଯ୍ୟାସ

୧ ବଦଗୋତ୍ର ଚଡ଼ି, ୨ ବନ୍ଧୁନ, ୩ ରଜା, ୪ ବ୍ୟାସ,
୫ ସୌଭାଗ୍ୟ, ୬ ଶତ୍ରୁ, ୭ ନିଶ୍ଚୟ, ୮ ବିନାଶ

ଅନାଇଁ ୯କପିକେତନ    ଭାଷିଲେ ତହୁଁ ପାବନ
"କରିବ ଯୋଗ ସାଧନ ଏକ ଲୟରେ
ଶୁଚିବନ୍ତ ହୋଇ ନିତ    ୧୦ପ୍ରାଶନେ ନରଖି ପ୍ରୀତି
ଅବଲମ୍ବି କାଷ୍ଠାମାତ୍ର ଛନ୍ଦ କାଳରେ
ଆଚରିଲେ ଏପରି ବ୍ରତ
୧୧ଗୀର୍ବାଣ ସକଳ ହେବେ ଅତି ଉଷତ" ।
ଏମନ୍ତ ଭାଷନ୍ତେ ବ୍ୟାସ    ମାନସେ ବହି ଉଲ୍ଲାସ
କରିବାକୁ ଯୋଗାଭ୍ୟାସ କଲେ ସ୍ୱୀକାର,
କରି ୧୨ଇନ୍ଦ୍ରଦର୍ଶ ଭରସା    ଶ୍ୱେତବାହନ ତପସା
ଯିବାରୁ ତାଙ୍କ ନିକଷା ତେଜ ବିକାର
ଶିଖାଇଲେ ତପୋନିୟମ
ତୁଟିଗଲା ୧୩କପିଧ୍ୱଜମନୁ ୧୪ଉଦ୍‌ଭ୍ରମ ।
ଯାତ୍ରାକାଳେ ସୁପ୍ରସନ୍ନ    ଥିଲେ ରମଣୀ ଲପନ
ଯାତ୍ରୀକ କରି ଦର୍ଶନ ଲଭେ କୁଶଳ,
ଯାଜ୍ଞସେନୀ ଆଗୁଜାଣି    ଅବରୋଧେ ନେତ୍ରପାଣି
କୃଷ୍ଣଙ୍କୁ ଦେଇ ମେଲାଣି ୧୫ଭୃଶ ଚଞ୍ଚଳ
ଭାଷିଲେ ସକଳ ବୁଝାଇ,
ଫୁଲମାଳ ଗଳେ ତାଙ୍କ ମୋଦେ ପିନ୍ଧାଇ ।
"ସଜିଅଛୁ ଆଗୁ ବଧି    ପଙ୍କେ ବୁଡ଼ିଥିବା ନିଧି
ଉଦ୍ଧରି ଲଭିବ ସିଦ୍ଧି ବୋଲି ମନରେ,
ଘୋଷୁଥିବ ମନ୍ତ୍ରର    ଘୁଲକେ ପୂଜି ଶଙ୍କର
ଚଇଣ ବନ୍ଦ ୧୬କୃଷ୍ଣର ହର୍ଷ ଆସ୍ୟରେ
ଭାଷିଲେ ତାହାଙ୍କୁ କୁଣ୍ଢାଇ
ନିଜ ଜରିବ ଦୁଃଖ ଭଳେ ମନେ ପକାଇ ।
ନାନା ୧୭ଉପାଳମ୍ଭ ସହି    ହୃଦୟ ଦେଉଛି ଦହି
ଜୀବନ ଧରିଛି ରହି ବନ ଦେଶରେ
୧୮ଅନନ୍ୟା ବିଜେତା ପତି    ପାଇ ଥୟ କରେ ମତି
ମୋ ଭଳି ହତଶ୍ରୀ ସ୍ତ୍ରୀ ଇହ ଲୋକରେ
ଜାତ ହୋଇ ନଥିବେ କେହି
ଧିକ ଧିକ ଏ ଜୀବନ ଧିକ ଏ ଦେହି ।

୯ ଅର୍ଜ୍ଜୁନ ୧୦ ଭୋଜନ ୧୧ ଦେବତା ୧୨ ଦେବତା
୧୩ ଅର୍ଜ୍ଜୁନ ୧୪ ଆକୁଳତା ୧୫ ଅତିଶୟ ୧୬ ଅର୍ଜ୍ଜୁନ
୧୭ ତିରସ୍କାର ୧୮ ପୃଥିବୀ

ଅଧ୍ୟବସାୟୀ ସକଳ ଦୁରୂହ କର୍ମ୍ମ ସଫଳ
କରି ସାଧନ୍ତି ମଙ୍ଗଳ ସନ୍ତତ ଭବେ,
ତୁମେ ସୁଯୋଗ୍ୟ ସନ୍ତାନ ନିବାରିବ ଅପମାନ
[୧]ଶାଶ୍ୱତ [୨]ଆମର୍ଶମାନ ମାନସେ ଜବେ
ରଖି ତୃପ୍ତି କର [୩]ନିର୍ଜ୍ଜରେ
ଅଭୀଷ୍ଟ ସାଧିତ ହେଉ [୪]ଦଭ୍ର କାଳରେ ।
କୌରବଙ୍କ ଅବସାନ ହେଲେତ ରହିବ ମାନ
ବିବସନ ଅପମାନ ଘାରେ ହୃଦୟ
ଶ୍ୱାପଦ ସଙ୍କୁଳବନ ଲଙ୍ଘିବ ଘନାଘନ
ବ୍ରତ କରି ସମାପନ ତୋଷି [୫]ଅବ୍ୟୟ
[୬]ଅପବର୍ଗ ଯଥା କାଳରେ
ବାନ୍ଧବ ପୁଲକେ କରି ସଦ୍‌ଭବ୍ୟରେ" ।
[୭]ପାର୍ବଙ୍କର ଘନ ଘନ କପଟ ଶୂନ୍ୟ କଥନ
ଶୁଣି [୮]ମଘବାନନ୍ଦନ ଗାମ୍ଭୀର୍ଯ୍ୟ ବହି
କହିଲେ "ପାଉଛି [୯]ପ୍ରେଷ ନପାଇ ପୂର୍ବଜାଦେଶ
ଯାଉନାହିଁ ତ ଲେଶ ସକଳ ସହି
ପଡ଼ିଅଛି ଘୋର କାନନେ
ଲିଖନ୍ତିବାକାଳ ସଖି, ନାହିଁକି ମନେ" ?
"ଖାଣ୍ଡବ ବନରେ ସହି ବାସବ ବିପକ୍ଷେ ରହି
ଦେଇଥିଲି ତାଙ୍କୁ ଦହି ପଡ଼େ ମନରେ
ଗାଣ୍ଡୀବ କୋଦଣ୍ଡ ଧରି ରହିଅଛି କ୍ଳୀବ ପରି
ଭ୍ରାତାକଥା ଅନୁସରି ହକତଭରେ,
ହେବ ପୂର୍ଣ୍ଣ ତବ କାମନା
ସରିଲେ ନିଭୃତବାସ ନୁହ ବିମନା ।
ପୂଣ୍ୟାହରେ ଆଶ୍ରମରୁ ଦର୍ଶନ ଇଚ୍ଛାରେ [୧୦]ଖରୁ
ବିଦା ମାଗି କୃଷ୍ଣମୁଖରୁ ଗଲେ ଅର୍ଜ୍ଜୁନ,
[୧୧]ଶାଶ୍ୱତ ଆଦେଶ ପାଇ କାନ୍ଧରେ ପକ୍ଷ ବସାଇ
ବନଦେବୀ ପଠାଇ ଶୁଭ [୧୨]ଶକୁନ
ମାର୍ଗେ ମାର୍ଗେ କରି ଲୋକନ
ଅନନ୍ତର ଅନ୍ତର୍ଦ୍ଧାନ ହେଲେ ପାବନ ।

୧ ବ୍ୟାସ ୨ ଉପଦେଶ ୩ ଦେବତା ୪ ଅଳ୍ପ ୫ ଶିବ ୬ ସିଦ୍ଧିଲାଭ ୭ ଦ୍ରୌପଦୀ ୮ ଅର୍ଜ୍ଜୁନ ୯ କ୍ଲେଶ ଘନଘନ-ସଦା ୧୦ ଶିବ ୧୧ ବ୍ୟାସ ୧୨ ଚିହ୍ନ ୧୩ ବ୍ୟାସ

## ପଞ୍ଚମ ସର୍ଗ
## ( ଶରତ୍‌କାଳ ବର୍ଣ୍ଣନା )

[୧]ତପାତ୍ୟୟ ଅନ୍ତେ ପ୍ରବେଶ ହେବେ ଶରତକାଳ,
ଅପସରି ଗଲା [୨]ଅକ୍ଷରୁ ଏବେ ଜଳଦଜାଳ ।
[୩]ଗ୍ରାସନ୍ତଭସନ୍ତୀ ଭାସ୍ୱର ହୋଇ ଦିଶେ ଶୋଭନ,
କୁମୁଦମା ହସି ଉଠିଲା ଦେଖି ପ୍ରିୟ ବଦନ ।
[୪]ତମୋରିଙ୍କର ପ୍ରେକ୍ଷଣ ବହୁଦିନୁ ନପାଇ,
ଚକୋରଚକୋରୀ ଦୁଃଖରେ ଥିଲେ ମୁହଁ ଶୁଖାଇ ।
ଜଳସ୍ଥଳନଭ [୫]ପ୍ରଦ୍ୟୋତେ ବିଚ୍ଛୁରିତ [୬]ଭୁଙ୍ଗୀରେ,
ପୁଲକେ ମିଳିଲେ [୭]ମାଳଞ୍ଚ ଦୁହେଁ ମିଶି ଅଧୀରେ ।
[୮]ସ୍ରୋତସ୍ୱତୀସରସୀ [୯]ଅକ୍ଷର ହସିଲେ ବିମଳ,
ଦିନୁଦିନ [୧୦]ବପ୍ରେ ବହୁଳ ହେଲେ [୧୧]ଝଷମଣ୍ଡଳ ।
[୧୨]ବପ୍ରମାନଙ୍କରେ [୧୩]ସ୍ତିମିତ ବସି [୧୪]କାଶ୍ୟପମକ୍ଷ
[୧୫]ବସାରଗତକ ଆନନ୍ଦେ କରୁଅଛନ୍ତି ଲକ୍ଷ୍ୟ ।
ଧାନତୃଣେ ପୂରି ରହିଛି ପୁଣି କେଦାରମକ୍ଷ,
ପରିହିତ ଶ୍ୟାମ ଶାଢ଼ୀରେ ଅବା [୧୬]ବାରସ୍ତ୍ରୀବକ୍ଷ ।
ବାଳକବାଳିକା ନିବଦ୍ଧ ମକା ବାଡ଼ରେ ପଶି,
କଷି ଖୋଜି ଖୋଜି ଆଣନ୍ତି ମକାପୋଡ଼ାରେ ରସି ।
ଜହ୍ନି ଫୁଲ ଫୁଟି ବାଡ଼ରେ [୧୭]ଭୂରି କାନ୍ତିକଜଳୀ,
[୧୮]ବୃଷଳୀମାନଙ୍କ ମାନସ ଅବା ନେଉଛି କଳି ।
ଜହ୍ନି ଓଷା ଲାଗି ସେମାନେ ତୋଳି ତୋଳି ତା ଫୁଲ,
ସାଙ୍ଗସାଥି ହୋଇ ପ୍ରଦୋଷେ ଓଷା କରନ୍ତି ଭୁଲ ।
[୧୯]ମାଳଞ୍ଚରେ ଫୁଟି ମାଳତୀ ସୁରଭିତ କାନନ,
ତା ସହିତ ମିଶି ଶେଫାଳୀ ହରେ ଜୀବର ମନ ।
ଅସିତା ଅପରାଜିତାର ରୂପ ମଣ୍ଡି କେଶବ
ଏ [୨୦]ଜଳଦକ୍ଷୟେ ହେଲେ କା ଧରାତଳେ [୨୧]ସମ୍ଭବ

୧ ବର୍ଷାକାଳ ଶେଷରେ ୨ ଆକାଶରୁ ୩ ଚନ୍ଦ୍ରତାରା ୪ ଚନ୍ଦ୍ର ୫ ଆଲୋକ ୬ ଗୀତ ୭ ଚନ୍ଦ୍ରକିରଣ ୮ ନଦୀ ୯ ଜଳ ୧୦ କ୍ଷେତ ୧୧ ମାଛ ୧୨ କ୍ଷେତ୍ର ୧୩ ନିଶ୍ଚଳ ୧୪ ବଗସମୂହ ୧୫ ମାଛ ୧୬ ପୃଥିବୀ ୧୭ ସୁନା ୧୮ ବାରବର୍ଷରୁ ସାନ ବାଳିକା ୧୯ ଗୀତ ୨୦ ଶରତ୍‌କାଳ ୨୧ଉତ୍ପନ୍ନ

୧ପୂତ ତୃଣ ପୂର୍ଣ୍ଣ ଭୂଖଣ୍ଡେ ପଶି ୨ଭୂଦେବଭର,
ତା ସଂଗ୍ରହ କଲେ ୩ନଭସ୍ୟ ଦେଖି ଭବ୍ୟବାସର
୪ବନହାସ ଫୁଟଲ ଧରଣୀ ଦିଶେ ଧବଳମୟ,
ଖସି ପଡ଼ିଲେକ ୫ଅନଙ୍ଗୁ କେତେ ନକ୍ଷତ୍ରଚୟ ।
୬କର୍ବୁରିତ ବନ ପ୍ରଦେଶ ପୁଣି ବାନ୍ଧବମାସର,
ବଳୟିତ ଶ୍ୟାମ ଲତାରେ ୭ଉର୍ବୀରୁହ ନିକର ।
୮ଶଶିପ୍ରଭ ଫୁଲ ବିକସି ବନେ ସପ୍ତଚ୍ଛଦରେ,
୯ବୈଖାନସ ମନ ମୋହୁଛି ଏହି ଶରତକାଳରେ ।
କଇଁଚକାକୁଣ୍ଡ ଲେଖନ ଫଳେ ବ୍ରତନେତ,
୧୦ବାହୁଜେ ୧୧ବିଘସ କରନ୍ତି ହୋଇ ମହା ଉଷତ
୧୨ନଭସ୍ୟ ସୁନ୍ଦର ଚତୁର୍ଥୀ ବିଘ୍ନରାଜ ଜନମ,
ଅଧୀତ ସକଳ ହୁଅନ୍ତି ପୁଷ୍ପଫଳର ଯମ ।
ଚୁଣ୍ଡାଚୁଣ୍ଡି କରି ସେତକ ମଣ୍ଡି ମହା ଆନନ୍ଦେ,
ଶିରଃଫଳଜଳ ଅର୍ପନ୍ତି ଗଜାନନଙ୍କୁ ମନ୍ଦେ ।
ବୃହୁଁ ବୃହୁଁ ହେଲ ଦଶରା ଘରେ ଘରେ ଉତ୍ସବ,
ପଲ୍ଲବିତ ନବ ବସନେ ନରନାରୀ ସରବ ।
୧୩ପିତୃପ୍ରସୂ ଦେଖି କେଦାରେ ୧୪ବ୍ୟାଘ୍ରନାସ୍ୟକପଶି
୧୫ଶକଳୀକୁଳୀରକୁଳଙ୍କୁ ମୋଦେ ଦେଉଛି ଧ୍ୱଂସି ।
୧୬ମଧୂଳା ଉତ୍ସଙ୍ଗେ ୧୭ବରଜା ବସୁରିତ ପ୍ରଖର,
ଚରି ଚରି ପେଟ ଭରନ୍ତି କଲେ ଗୋରୁ ପ୍ରକର ।
୧୮ଧୃତରାଷ୍ଟ୍ରବ୍ରାତ କୌତୁକେ ଧୃତରାଷ୍ଟ୍ରୀ ସଙ୍ଗରେ,
ଖଣ୍ଡେ ଖଣ୍ଡେ ୧୯ବିଷଣ୍ଡ ଖେଳୁଛନ୍ତି ସରରେ ।
୨୦ଅବଲକ୍ଷ ପକ୍ଷ ସଂଗୃହ କେତେ କୂଳକୁ ଆସି,
୨୧ଇତରେତର ବା ଘଷନ୍ତି ଚଞ୍ଚୁ ପ୍ରେମ ପ୍ରକାଶି ।
୨୨ପ୍ରାବୃଷ୍ୟଉତ୍ପାତ କଞ୍ଜତ ନାହିଁ ପ୍ରବାହମାର,
୨୩ଜମ୍ବାଳ ବିହୀନ ହେଲାଣି କ୍ରମେ ରସା ଶରୀର ।

ଭର୍ତ୍ତୃବିୟୋଗିନୀ ନାୟିକା ପରି ଦିଶେ ମଳିନ,
୨୪କଦମ୍ବ କଦମ୍ବ ହେବାରୁ ଏବେ ପ୍ରସୂନ ହୀନ ।
ଶିଶ୍ୱକ କୁସୁମ ବରଣ କାର କେଦାରେ ଯାଇ,
ଲୋହିତ ଚଞ୍ଚୁରେ କଳମ କେଣ୍ଡା ଖାଏ ଛିଣ୍ଡାଇ ।
୨୫ଆଶ୍ୱିନୀ ରଜନୀ ଆସିଲା ଧରି ୨୬ଅର୍ଜ୍ଜୁନୀ ବେଶ,
ନବବାସ ପିନ୍ଧି ପିଲାଏ ଖେଳନ୍ତେ ପ୍ରବେଶ ।
ବାଟେ ବାଟେ ବୃଷ୍ୟ ବୀକ୍ଷଣ କରି କରି ବାସବ,
ଅବତରି ଯକ୍ଷ ସ୍କନ୍ଧରୁ ପ୍ରବେଶିଲେ ଅଟବୀ ।
ପ୍ରାନ୍ତର ପ୍ରଦେଶ ଦିଶଇ ଏବେ ୨୭ଅର୍ଜ୍ଜୁନମୟ,
ଛପିଲେଣି ଲତାକୁଞ୍ଜରେ ଯାଇ ୨୮ଅର୍ଜ୍ଜୁନଚୟ ।
ପରେକ୍ଷ୍ୟ ବ୍ରୀହି କଳପ ଅବନତ ଶିରରେ,
ନମିଲେ କି ଅବା ଅର୍ଜ୍ଜୁନ ଦେଖି ଯୋଗୀ ବେଶରେ ।
୨୯ଗୋମଣ୍ଡ ସଙ୍ଗରେ ୩୦ମହୋକ୍ଷ କରି ଗତି ମନ୍ଥର,
ଚରୁଥିବା ଦୃଷ୍ଟି ଗୋଚର ହେଲା ଅର୍ଜ୍ଜୁନଙ୍କର ।
୩୧ଗୋପୀନ ଆପୀନୁ କ୍ଷରନ୍ତ ହେବା କ୍ଷୀର ପ୍ରଚୁର,
ବତ୍ସମାନେ ପିଇ ପିପାସା କ୍ଷୁଧା କରନ୍ତି ଦୂର ।
ନଗରୁ ପ୍ରାଙ୍ଗଣରେ ଗୋପିକା କରେ କଳସି ଧରି,
ବତ୍ସପାନ ଅନ୍ତେ ଆଣନ୍ତି ଦୁଗ୍ଧ ଦୋହନ କରି ।
ନବ ଯଉବନା ଗୋପୀଙ୍କ ଜିତ କୋକିଳ ଗାନ,
୩୨ମୃଗୀକଦମ୍ବକ ଶୁଣନ୍ତି ହୋଇ ୩୩କୃତାବଧାନ ।
ସରୋବର ଜଳ କି ଅବା ହେଲେ ବିସ୍ମିତ ଅତି,
ଚଳିତ ସଞ୍ଜୀବ ନୟନ ଦେଖି ଅର୍ଜ୍ଜୁନ ଗତି ।
ଉଦ୍‌ବର୍ତ୍ତନ ଗତ ମୀନଙ୍କ କରି ଅବଲୋକନ,
ପଥଶ୍ରମବାଧା ପଥିକ କରେ ଅପନୋଦନ ।

## ହିମାଳୟ ଦୃଶ୍ୟ

ଅଗ୍ରେ ହିମାଚଳ କରି ଦର୍ଶନ,
ତାମଧ୍ୟେ ପଶିଲେ ୩୪ଶ୍ୱେତବାହନ ।

୧ କୁଶ ୨ ବ୍ରାହ୍ମଣସମୂହ ୩ ଭାଦ୍ରବମାସ ୪ କାଶତଣ୍ଡୀ ୫ ଆକାଶ ୬ ନାନାବର୍ଣ୍ଣଯୁକ୍ତ ୭ ବୃକ୍ଷ ୮ ଶୁଭ୍ର ୯ ବନବାସୀ ୧୦ ଶୁକ ୧୧ ଭକ୍ଷଣ ୧୨ ଭାଦ୍ରଶୁକ୍ଳ ସାମ-ରମଣୀୟ ୧୩ ସନ୍ଧ୍ୟା ୧୪ ବାଲୁଆ ୧୫ ମାଛ କଙ୍କଡ଼ା ୧୬ ପୃଥିବୀ ୧୭ ଦୁବ ୧୮ ହଂସ ସମୂହ ୧୯ ମୃଣାଳ ୨୦ ଶୁଭ୍ର ୨୧ ପରସ୍ପର ୨୨ ବର୍ଷାକାଳୀନ ୨୩ ପଙ୍କ

୨୪ କଦମ୍ବସମୂହ ୨୫ ଆଶ୍ୱିନ ପୂର୍ଣ୍ଣିମା ୨୬ ଶୁକ୍ଳ-ବର୍ଣ୍ଣ ଯୁକ୍ତ ୨୭ ତୃଣମୟ ୨୮ ମୟୂର ସମୂହ ୨୯ ଗାଈସମୂହ ୩୦ ବଡ଼ଷଣ୍ଢ ସମୂହ ୩୧ ଗାଈର ମୋଟା ପହ୍ନା ୩୨ ମୃଗୀସମୂହ ୩୩ ମନୋନିବେଶ କରି ୩୪ ଓଲଟପାଲଟ ।

୧ତାପନେ ତାପନେ ଭେଦ ନପାରି,
୨ଅମାତମା ପରି ତମସ ଭରି ।
ମଧ୍ୟାହ୍ନେ କାନନ ଲତାଗୁଳ୍ମରେ,
ବନ୍ଧୁରିତ ହୋଇ ଚଉଦିଗରେ ।
ଗଜକ୍ଷତତଟା ୩ତନେଶୀ ୪ନକମଳେ
ଦିଶୁଛନ୍ତି ମନୋରମ କମଳେ,
ବହି ଆସୁଅଛି ଜାହ୍ନବୀଜଳ,
କଳ କଳ ନାଦେ ଅତି ଚପଳ ।
ହିମାଦ୍ରିର ଶୋଭା କରି ଲୋକନ,
ଅର୍ଜୁନଙ୍କୁ ଯକ୍ଷ ଭାଷେ ଏସନ ।
"ଦେଖ ୫ଅଶେଷ ପଡ଼ ତୁଷାର ରାଶି,
ଯାଉଛି କି ବେଗେ ଗଙ୍ଗାରେ ଭାସି ।
ନଭସ୍ପର୍ଶ କଲପର ଶିଖର—
ନିକର ହିଟଇ ପଡ଼ ଶୀକର ।
ଉଦ୍ଭାସିତ ହୋଇ ମଣିମୟୂଖେ,
ସନ୍ଧ୍ୟାରାଗ ଛଟା ରଜନୀମୁଖେ ।
କୁସୁମିତ ନାନା ଲତା ସକଳ,
ବେଢ଼ିଛନ୍ତି ବେଢ଼ ଏହି ଅଚଳ ।
ପାଦପମଣ୍ଡିତ ଦେଖ ଗହନ,
ହୋଇଅଛି ସଦା କେଡ଼େ ୬ଗହନ ।
ରୁଚିର ପଲ୍ଲବ ପ୍ରସୂନ ଫଳେ,
ଯୋଗୀଙ୍କ ସେବାଏ ନତ ସକଳେ ।
ଏ ଧରେ ତପସ୍ୟା କରି ଗଉରୀ,
ଶେଷେ ପତି ରୂପେ ଲଭିଲେ ୭ଭୂରି ।
ହେଉନାହିଁ ଜୀର୍ଣ୍ଣ କେବେ ପଲ୍ଲବ,
ହରଗୌରୀ ବାସେ ସିନା ସମ୍ଭବ ।
ଜନ୍ମଜରାଶୂନ୍ୟ ଭବାନୀ ପତି,
ଯୋଗସାଧନାରେ ସତତ ବ୍ରତୀ ।
କରନ୍ତି ବସତି ଏହି ଗହନେ,
ଲଭେ ଲୋକ ମୁକ୍ତି ତାଙ୍କ ଦର୍ଶନେ ।
ଚନ୍ଦ୍ରଲେଖା କରି ହର ଶିରରୁ,
ସ୍ରବ ତଉଡ଼େ ତମ ବନଦେଶରୁ ।
ନୁହେ ଭୋଗଭୂମି ଏ ହିମାଚଳ,
ମୁକ୍ତିକାମୀଙ୍କ ଏ ତପସ୍ୟା ସ୍ଥଳ ।
ବିବିଧ ବର୍ଣ୍ଣର ମଣି ନିକର,
ପ୍ରତିବିମ୍ବି ଘନେ କି ମନୋହର ।
ଅବଳୟୁକ୍ତା ହୋଇଛନ୍ତି ୮ସିନ୍ଧୁଏ,
ପହିଁ କ୍ରୀଡ଼ୁଛନ୍ତି ସୁଖେ ୯ମିନ୍ଧୁଏ ।
ଶତଦଳଭ୍ରାତ ବାତ ଶୀତଳ,
ଜଳେ ନୃତ୍ୟ କଲପର ପ୍ରତ୍ୟଳ ।
ନବଦୂର୍ବା ଧରିବାରୁ ଶାଦ୍ୱଳ,
୧୦ତାମରସବନ ଦିଶେ ଶ୍ୟାମଳ ।
ରସିକ ୧୧ରୋଲମ୍ବ ୧୨ବସିନୀ କୋଳେ,
ବସି ଚୁମ୍ବନ୍ତାଲୁ ଆସବ ଭୋଳେ ।
କୁଲେ ପକ୍ଷୀଏ ପାଦପ ଡାଳେ,
ବସି କୂଜୁଛନ୍ତି ମୋଦେ ଏକାଳେ ।
ସମୃଦ୍ଧି ସମନ୍ୱ ଏଥରୁ ଦେଖ,
ଦୂରୁ ଦିଶୁଅଛି ନଳସ୍ୱ ପରି ।
ଦେଖ ଠାବେ ଠାବେ ୧୩ଭୋଗିବଲ୍ଲଭ,
୧୪ଭୋଗିକାନ୍ତ ଯୋଗେ ବ୍ୟାପେ ସୌରଭ ।
ଅକାଳେ ସୁରଭି ସୌରଭ୍ୟ ପାଇ,
ଯୋଗୀମନ ପିକ ହିଏ ଭୁଲଇ ।
ଅଗ୍ରେ ଇନ୍ଦ୍ରକୀଳ ଜଗଧର,
ଦିଶୁଅଛି ଦୂରୁ କେଡେ ସୁନ୍ଦର ।
ହିରଣ୍ମୟକାନ୍ତି କରି ଧାରଣ,
ଯୋଗୀଜନ ମନ କରେ ହରଣ ।
୧୫ମହାହି ବର୍ଜିତ ଏ ବନଦେଶ,
ଯିବ ଅପଶର ପାଇବ କ୍ଲେଶ ।
ଇନ୍ଦ୍ରପ୍ରିୟ ରୂପକ ଅଶ୍ମନକର,
ତୁଅନ୍ତୁ ଆପୂଭ ଚୂର୍ଣ୍ଣ ଚୁମ୍ବର ।
ଆଚର ତପସ୍ୟା ଇନ୍ଦ୍ରକୀଳରେ,
ଅହୋରାତ୍ର ରହି ଅପ୍ରମତ୍ତରେ ।
ହିଅନ୍ତୁ ୧୬ଜାପାଳୀ ସାଧୁ ଉତ୍ସାହ,
ହେଉ ନିର୍ବିଘ୍ନରେ ତପ ନିର୍ବାହ ।
ଗଲା ଯକ୍ଷ ବହି ପ୍ରିୟ ବଚନ,
ରହିଲେ ଏକାକୀ ପୃଥାନନ୍ଦନ ।

୧ ସୂର୍ଯ୍ୟକିରଣ ୨ ଅମାବାସ୍ୟାର ରାତିପରି ଅନ୍ଧାର ୩ ନଦୀ ୪ ଜଳ ୫ ପଥର ୬ ଦୁଷ୍ପ୍ରବେଶ୍ୟ ୭ ଶିବ

୮ ନଦୀ ୯ ହାଙ୍ଗର ୧୦ ପଦ୍ମ ୧୧ ଭ୍ରମର ୧୨ ପଦ୍ମିନୀ ୧୩ ଚନ୍ଦନବୃକ୍ଷ ୧୪ ପବନ ୧୫ ବଡ଼ସାପ ୧୬ ଶିବ

## ଷଷ୍ଠ ସର୍ଗ

## ଇନ୍ଦ୍ରକୀଳରେ ଅର୍ଜୁନ ପ୍ରବେଶ

୧ପୁରୁହୂତ ସୁତ     ଆରୋହନ୍ତେ ଧୀରେ
ଇନ୍ଦ୍ରକୀଳ ଅନନ୍ତର,
୨ବହୁତରୁଲତ     ୩ଜଗତୀରୁହରୁ
ପଡ଼ିଲା ପୁଷ୍ପପ୍ରକର ।
୪ବହଳ ବପ୍ରସ୍ଥ     ୫ବାନୀର ବନକ
ଅବନତ ମସ୍ତକରେ,
ଅର୍ଜୁନ ଦର୍ଶନେ     କରିଲ ପ୍ରଣତି
ଅତି ବିନମ୍ର ଭାବରେ !
୬ବପ୍ରକ୍ରୀଡାସକ୍ତ     ବାରଣମାନଙ୍କୁ
ଦେଖି ୭ବପ୍ର ପାରୁଶରେ,
୮ଅମ୍ଭୋଜ ବଜାଇ     ଘଉଡ଼ାଇ ଦେଲେ
ସେମାନଙ୍କୁ ସେଥୁଁ ଦୂରେ ।
ଚକ୍ରବାକୀ ଏକ     ୯ନେଣୀ ତଟେ ବୁଲି
କରୁଥିବା ଅନ୍ୱେଷଣ,
କରୁଣ କୂଜନେ     କାନ୍ତକୁ ନପାଇ
କଲେ ସେ ତହିଁ ବୀକ୍ଷଣ ।
ଯାଉ ଯାଉ ମାର୍ଗେ     ଗଙ୍ଗାନୁଗାମିନୀ
୧୦ରମାମାନ ଅତିକ୍ରମି,
ଗିରିର ସୀମନ୍ତ     ବନପ୍ରାନ୍ତ ଭୂମି
ଲଂଘିଲେ ସେ ଭ୍ରମି ଭ୍ରମି ।
ଫଳିତ ଫୁଲ୍ଲିତ     ବ୍ୟାପ୍ତ ସାନୁ ଦେଶ
ଲଂଘିଲେ ୧୧ବିବିକ୍ତ ଅତି,
ସେ ୧୨ସୁତ୍ରାମା ସୁତ     ତପସ୍ୟା ନିମିତ୍ତ
ବଳାଇଲେ ତହିଁ ମତି ।
ବିଷୟ ନିବୃତ୍ତି     ମୁଖ୍ୟ ସୁଖ ବୋଲି
ବୁଝୁଥାଏ ଯେଉଁ ଜନ,
ସେହି ଏକା ସିନା     ବସୁନ୍ଧରା ତଳେ
କରିପାରେ ସଂଯମନ ।

୧ ଇନ୍ଦ୍ର ୨ ଟବନ ୩ ବୃକ୍ଷ ୪ ନଦୀତଟ ୫ ବେତସ ୬ ଶିଙ୍ଗ ବା ଦାନ୍ତରେ ମାଟି ଖୋଳିବା ୭ ତଟ ୮ ଶଙ୍ଖ ୯ ନଦୀ ୧୦ ନଦୀ ୧୧ ନିର୍ଜନ ପର୍ବତସ୍ଥାନ ୧୨ ଇନ୍ଦ୍ରପୁତ୍ର ଅର୍ଜୁନ

### ତପ

ତପଲାଗି ୧୩ଦର୍ଭାସନ     କରି ମହେନ୍ଦ୍ର ନନ୍ଦନ
ଆରମ୍ଭିଲେ ଆରାଧନା ଏକ ୧୪ସର୍ଗରେ,
୧୫ଜୀବନ ନିରସ କରି     ୧୬ସୁଗ୍ରୀବ ସୁଗ୍ରୀବ ସ୍ମରି
୧୭ପୂତ ପୂତ ପୂତ ଧରି ଭକତିଭରେ
ଅହୋରାତ୍ର ଉଜାଗରରେ
୧୮ବ୍ୟାଳକୀର୍ଣ୍ଣ ୧୯ଦର୍ଭଠର ୨୦ଜଟୀ ମୂଳରେ
୨୧ମଣ୍ଡଳୀମୂଳେ ୨୨ମଣ୍ଡଳୀ ବଳୁ ଛୁହେଁ ଗଳାଗଳି
ନଥିବାରୁ ବା ୨୩କୁଣ୍ଡଳୀ ତପଃ ସାଧନ,
ଏକାନ୍ତେ ଅର୍ଜୁନଙ୍କର     କରି ଅଗ୍ରଗାମୀ ତର
ପେଷିଲେ କି ତାକୁ ହର ତାର ନାଶନ
କରିବାକୁ ଦେଖାଇ ଭୟ
ଡରେ କି କେବେ ତହିଁରେ ୨୪ଅକୁତୋଭୟ ।
ହେବାରୁ ଆତ୍ମ ପ୍ରତ୍ୟୟ     ଚହଳ ଲାଗି ହୃଦୟ
ଦର୍ଶନଲାଗି ଅବ୍ୟୟ ଅନ୍ୟ ଭାବନା
ନଥିଲା ମାନସେ ଲବେ     ଗଉରବେ ଲାଗି ଭାବେ
ପ୍ରୟାସୀ ସଦା ମାନବେ ଧନ୍ୟ ସାଧନା
ପ୍ରାଣପ୍ରତି ମମତା ମନେ
ନଥାଏ ବା ତାପସର ସିଦ୍ଧି ସାଧନେ ।
ଦେଖି ତାଙ୍କ ଆଚରଣ     କୁରଙ୍ଗ କୁରଙ୍ଗୀଗଣ
କରନ୍ତି ତପ ପ୍ରେକ୍ଷଣ ଉତ୍ସୁକମନେ,
ପ୍ରସୂନ ପ୍ରଦାନ ପାଇଁ     ଶାଖାଗ୍ର ଶାଖୀ ନୁଆଇଁ
ରହିଲେ କି ସଦା ତହିଁ ଯଶ ଅର୍ଜ୍ଜନେ,
ବଶୀଭୂତ ହୋଇ ପବନ
ତପୋଜନିତ କ୍ଲାନ୍ତି ବା କରେ ନୋଦନ ।
ପାସୋରି ଗାର୍ହସ୍ଥ୍ୟ ପ୍ରୀତି     ଧୃତାୟୁଧ ହୋଇନଥି
ଆଚରିଲେ ତପୋଚିତ ଶୁଦ୍ଧ ୨୫ସ୍ୱାନ୍ତରେ,
ଦିନୁଦିନ ବଢେ ୨୬ଦାନ୍ତ     ତାପସଙ୍କ ଦେହର କାନ୍ତି
ବନରକ୍ଷି ମନେ ଭ୍ରାନ୍ତ ଜନ୍ମାନ୍ତେ ଖରେ,

୧୩ କୁଶ ୧୪ ଏକାଗ୍ରଚିତ୍ତରେ ୧୫ ବାୟୁ ଭକ୍ଷଣ କରି ୧୬ ଇନ୍ଦ୍ର ଓ ଶିବ ୧୭ ପବିତ୍ର ଶଙ୍ଖ ଓ କୁଶ ୧୮ ହିଂସ୍ରଜନ୍ତୁ ପରିପୂର୍ଣ୍ଣ ୧୯ ନିଭୃତ ସ୍ଥାନ ୨୦ ବରଗଛ ୨୧ ବରଗଛ ୨୨ ସାପ ୨୩ ମୟୂର ୨୪ ନିର୍ଭୀକ ୨୫ ଚିତ୍ତ ୨୬ ତପଃ କ୍ଲେଶ ଜନିତ ସହିଷ୍ଣୁତା

ବର୍ଣ୍ଣିର ବର୍ଣ୍ଣିର ସକଳେ,
୧ପଦ୍ମଶରେ ଜଣାଇଲେ ଭସ୍ମବନ୍ଧୁଳେ ।
କଣ୍ଠୀ ଆବରଣେ ୨ଚୀର    ଭସ୍ମଭୂଷ ପରି ଶରୀର
ଦିଏ କି ଚଢ଼ ତମିର ବନଦେଶର
ଭୀଷଣ ଭୁଜଙ୍ଗ ଡରେ    ଭୁଜବେନୀ ଦେଖି ଅରି
ନପଶେ ପାଶକୁ ଡ଼ରି ଋଷିଙ୍କର
ଦେଖି ତାଙ୍କ ତପଃସାଧନା
ଭାବି ଭାବି ହେଲେ କିବା ଅଥୟମନା ।
ଶୈଳଜେଷ୍ଠୀଙ୍କ ବଚନ    ଶ୍ରବଣେ ୩ପାକଶାସନ
୪ବାସବ ବୋଲି ଭାବନ କରିଲେ ମନେ
ଟଳେଇବାକୁ ଭକତ    ଡକାଇ ଅପ୍‌ସରାତତି
ପେଷନ୍ତେ ବନେ ଝଟତି ତପୋନାଶନେ
ଇନ୍ଦ୍ରଙ୍କଠାରେ ୫ସିତାଶ୍ବଙ୍କର,
ମୋଦଭରେ ବାହାରିଲେ ୬ରାମାନିକର ।

## ଅପ୍‌ସରାମାନଙ୍କ ଆଗମନ

ଆରୋହି ସ୍ୟନ୍ଦନେ ତ୍ରିଦଶବଧୂଏ ଗନ୍ଧର୍ବସଙ୍ଗତେ,
ପ୍ରବେଶିଲେ ଆସି ମହାଶୈଳର ମେଖଳା-ଦେଶରେ ।
ଅବତରି ତହୁଁ କମନୀୟ କାନ୍ତ କାନନଦେଶର,
କଲେ ଲୋକନ ବିହାରେ ମାନସ ବିକଳ୍ପ ସଞ୍ଚରି ।
ବିଲୋଳିତ କେଶା ନାୟିକାନିକର ବିମୁଗ୍ଧ ହୃଦୟେ
ପୁଷ୍ପଭରା ଶାଖୀଚୟ ଦେଖିଗଲେ ୭ପ୍ରସୂନାବଚୟେ ।
ଉନ୍ମିଷିତ ପୁଷ୍ପନୟନେ ଶାଖୀଏ ଆଦର ସହିତ,
ସୁରବଧୂବୃନ୍ଦ ଦେଖୁଥିଲେ ଡରି ହୋଇଣ ପ୍ରଣତ ।
କେତେ କୌତୁହଳ ଉଗୁଳାଉଥିଲେ କାହାରି କାହାରି,
ପୀନ ପୟୋଧର ପୁଷ୍ପ ଯୋଗରେ ପାଣ୍ଡୁବର୍ଣ୍ଣ ଧରି ।
ଏକାଳେ ୮ଅରୁଣ ଅସ୍ତୋନ୍ମୁଖ ହୋଇ ଦଶିଲେ ପାଟଳ
୯ଅରୁଣ ବରଣେ ଶୋଭିଲା ୧୦ବାରୁଣୀ ୧୧ବିୟତମଣ୍ଡଳ
ମୁଦିତ ହୋଇ କି ୧୨ସହସ୍ରମରୀଚି ଶରୀର ସୌଷ୍ଠବେ
ଲୋଉଟନ୍ତି ମିଶେ ୧୩ବାହିନୀପତି ମଧୁର ଆରବେ
ନାନାଜାତି ଫୁଲେ ସଜାଇ କୁନ୍ତଳ ଅପ୍‌ସରାବ୍ରତତି,
୧ଉଦଗଦ୍ରି ଦୃଶ୍ୟ ଦରଶନ କରି ପାପିଲେ ୨ବସନ୍ତ
ଅସ୍ତାଚଳଚୂଡ଼େ ଉଡ଼ନ୍ତେ ୩ପତଙ୍ଗ ଯେ ଯାହାମାଡରେ,
ଉଭିଲେ ୪ପତଙ୍ଗେ ଶାବକ ସଙ୍ଗରେ ଶମିତ ଭାବରେ
୬ନିଶାଦ ସମୟେ ମନ୍ଦମନ୍ଦ ଭାବେ ଘୋଟନ୍ତେ ତମିର,
ଖାଦ୍ୟ ଅନ୍ବେଷଣେ ନିଶାଚରଯେ ହୋଇଲେ ଅସ୍ଥିର ।
ଅବନତ ମୁଖେ ରହିଲେ ନଳିନୀ ନଦେଖି ରବିଙ୍କ,
କାମିନୀ ବିୟୋଗ ଯାମିନୀରେ ଅତି ବାଧିଲେ ୭ରଥାଙ୍ଗ ।
କେତକୀ କୁସୁମ କେଶର ସଦୃଶ ପାଣ୍ଡୁବର୍ଣ୍ଣ ୮ଅଂଶୁ,
ପୂରୁବ ଦିଗରେ ଏକୋଇଲେ ଶୋଭିଲେ ବିସ୍ତାରି ହିମାଂଶୁ
୯ତମସ୍ତୋମ ଚୂର୍ଣ୍ଣେ ମଧୁନା ବକ୍ଷରୁ ହୁଅନ୍ତେ ଅନ୍ତରି,
ନପାରିଲେ ସହି ବିରହୀ ରଥାଙ୍ଗ ଦେଖି ଇନ୍ଦୁକର ।
ମନୋହର ଦ୍ରବ୍ୟ କେତେ ବେଳେ ହେଲେ ନଦିଏ ଆନନ୍ଦ
ଦୁଃଖିତ ପ୍ରାଣୀର ହୃଦୟେ ଧରିରେ ଦେଖାଇଲେ ଫନ୍ଦ
୧୦ଗଭସ୍ତି ସନ୍ତତି ୧୧ଅତାଳପାତାଳ ବ୍ୟାପନ୍ତେ କ୍ରମଶଃ
ଭାରିକାବଧୂଏ ଚଉପାଶେ ବେଢ଼ି ରହିଲେ ୧୨ଶଶାଙ୍କ
ଚନ୍ଦ୍ରିକା ପିପାସୁ ଚକୋର ଚକୋରୀ ଶାଖିଶାଖାପରେ,
ଗୃହକୁ ଅନାଇଁ ରହିଥାନ୍ତି ବସି ସହର୍ଷ ସ୍ୱାନ୍ତରେ ।
ସରୋବରେ ଜଳେ ହସି ଉଠିଲେଣି ପାଖୁଡ଼ା ମେଲାଇ,
କୁମୁଦିନୀ ନଭେ ୧୩ସୁଧାସୂତଙ୍କର ଦରଶନ ପାଇ ।
ନିଶିଥିନୀ ଶେଷ ହେଲା କ୍ରମେ କ୍ରମେ ଶୟନ ବର୍ଜ୍ଜନ,
କରି କାମିନୀଏ ସାରିଲେ ତକ୍ଷଣେ ଶରୀର ମାର୍ଜନ ।
ଧୀରେ ଧୀରେ ୧୪ଧ୍ୱାନ୍ତ
ଧରାଗଲା ଗୁଡ଼ି ଉଇଁଲେ ୧୫ଧ୍ୱାନ୍ତାରି,
ଅଳକ୍ତକ ରସେ ରଞ୍ଜାଇଲେ ପାଦ ପ୍ରାତଃକୃତ୍ୟ ସାରି ।
ପ୍ରାଭାତିକାତପ ଉତ୍ତୁଙ୍ଗ ଶୃଙ୍ଗରେ ହେଲା ସୁଖପ୍ରଦ,
କ୍ରମେ କ୍ରମେ ଏଣେ ବସୁନ୍ଧରା ବକ୍ଷ ଦିଶିଲା ବିଶଦ
କେତେ ଶୋଭାଲାଗି ନୟନେ କଜ୍ଜଳ କପୋଳ ତଳକ,
ଗ୍ରଥିତ ପ୍ରସୂନ ମାଳା ଉରେ ହେଲା ଆନନ୍ଦ ଦାୟକ ।
ପ୍ରିୟଙ୍କ ସଂସର୍ଗ ଲଭିବା ମାନସେ ତପସ୍ୟା ସ୍ଥାନରେ,
କୁଚ କଳଶକୁ ଦେଖାଇ ଦେଖାଇ ପ୍ରବେଶିଲେ ଶରେ

୧ ଇନ୍ଦ୍ର ୨ ବଳ୍କଳ ୩ ଇନ୍ଦ୍ର ୪ ଅର୍ଜ୍ଜୁନ ୫ ଅର୍ଜ୍ଜୁନ
୬ ସୁନ୍ଦରୀ ନାରୀ ୭ ଫୁଲ ତୋଳିବା ୮ ସୂର୍ଯ୍ୟ
୯ ସିନ୍ଦୂର ୧୦ ପଶ୍ଚିମ ୧୧ ଆକାଶ ୧୨ ସୂର୍ଯ୍ୟ
୧୩ ସମୁଦ୍ର

୧ ହିମାଳୟ ୨ ରାତ୍ରି ୩ ସୂର୍ଯ୍ୟ ୪ ପକ୍ଷୀ ୫ ନିସ୍ତବ୍ଧ
୬ ସନ୍ଧ୍ୟା ୭ ଚକ୍ରବାକ ୮ କିରଣ ୯ ଅନ୍ଧାର ସମୂହ
୧୦ କିରଣ ସମୂହ ୧୧ ସର୍ବତ୍ର ୧୨ଚନ୍ଦ୍ର ୧୩ଚନ୍ଦ୍ର
୧୪ ଅନ୍ଧାର ୧୫ ସୂର୍ଯ୍ୟ

ତଦନ୍ତେ ସମାଏ ୧ତପସ୍ୱୀ ଦର୍ଶନେ ଗମିଣ ଉତ୍ସୁକେ
ତପସ୍ୟା ଭଙ୍ଗିବା ନିମିନାନାଭଙ୍ଗି କରିଲେ କୌତୁକେ
୨ବାରୁଣୀକ ପିଇ ତରୁଣୀଏ କେତେ ଲଭି ଉନ୍ମାଦନ,
କୁଣ୍ଠାକୁଣ୍ଠି ହୋଇ ପ୍ରେମେ ପରସ୍ପର ଦିଅନ୍ତି ଚୁମ୍ବନ ।
କେହବା ନବୋଢ଼ା ବ୍ରୀଡ଼ାକୁ ବରଜି ନୀବୀବନ୍ଧ ବାସ,
ଦେଉଥିଲେ ଟେକି ଟାଣିବାକୁ ମନ ପ୍ରକାଶି ଉଲ୍ଲାସ ।
ମର୍ଯ୍ୟାଦାକୁ ଲଙ୍ଘି ୩ପୀବର ସ୍ତନରେ ପୀନ ପୟୋଧରେ
ଉଚ୍ଛୃଙ୍ଖଳ ହୋଇ କରିଲେ ତାଡନ ପ୍ରମଦାନିକର ।
କୌଣସି ନାୟିକା ଅନିମେଷ ନେତ୍ରେ ଅର୍ଜୁନ ରୂପକୁ
ନିରୀକ୍ଷଣ କରି ଠିଆହୋଇଲା ପାଶେ ଦେଖାଇ ଉରକୁ ।
ନିଜ କର୍ଣ୍ଣୋତ୍ପଳ ସ୍ୱହସ୍ତରେ ଧରି କେହବା ରମଣୀ,
ମୁନି ଉରୋଦେଶ କରିଲା ତାଡନ ଆସି ସେହିକ୍ଷଣି ।
ନ ପାରି ଦୃଷ୍ଟି ଟହଲେ
୪ତାଟସ୍ଥ୍ୟ ୫ତଦ୍‌ଗତ ୬ଚିତ୍ତରେ,
ବାଳ ତପୋତେଜ ଦର୍ଶିଲେ ମଳିନ ଏକାଳେ ଅପ୍‌ସରେ
ବିସ୍ମୟାଭିଭୂତ ହୋଇ କାମିନୀଏ ଆଚରି ବଞ୍ଚନା,
ବଳାତ୍କେ ବୀଣାକୁ ବୀଭତ୍ସୁ ଅଟଳ ନହୋଇ ୭ଉନ୍ମନା
ସକଳ କୌଶଳ ହେବାରୁ ନିଷ୍ଫଳ ଚଟୁଳା ଯୋଷିତେ
୮ହୋଇ ଅନ୍ୟମନା ଗନ୍ଧର୍ବ ନିକଷା ଫେରିଲେ ତ୍ୱରିତେ
୯ତୁହିନ ରହିତ ୧୦ପୁଷ୍ପମାସ କଲା ଏକାଳେ ପ୍ରବେଶ
ଶୁଭ କୁହରିତ ଆତାଳପାତାଳ କାନନ ପ୍ରଦେଶ ।
୧୧ଆସଙ୍ଗ ୧୨ଅଳିଏ ଆଶ୍ରାକଲେ ଯାଇ ମୃଣାଳମବନେ
ମଳୟ ମାରୁତ ଅବିରତ ବ୍ୟସ୍ତ ସୁରଭି ବଣ୍ଟନେ ।
ଗନ୍ଧର୍ବ ୧୩ନିବନ୍ଧ ସୁରାଙ୍ଗନା ନୃତ୍ୟ ୧୪ସୁରଭି ସମୟେ
କିନ୍ତୁ ବିକ୍ରିୟା ନକଲା ପ୍ରବେଶ ୧୫ଶ୍ୱେତାଶ୍ୱ ହୃଦୟେ
ହରିସୁତ ଜିଷ୍ଣୁ ନ ହୁଅନ୍ତେ ବଶ ସୁରବଧୂଚୟ,
ଗନ୍ଧର୍ବ ସଙ୍ଗରେ ଲେଉଟିଲେ ଦୁଃଖେ ଆପଣା ନିଳୟ

୧ ଅର୍ଜୁନ ୨ ମଦ୍ୟ ବିଶେଷ ୩ ମୋଟା ୪ ଅର୍ଜୁନ
୫ ଏକାଗ୍ର ୬ ଚିତ୍ତରେ ୭ ଅନ୍ୟମନସ୍କ ୮ ବ୍ୟାକୁଳ
ନହୋଇ ୯ କାକର ୧୦ ବସନ୍ତ ୧୧ ସତତ
୧୨ ଭ୍ରମରମାନେ ୧୩ ଗୀତ ୧୪ବସନ୍ତ ୧୫ ଅର୍ଜୁନ

## ସପ୍ତମ ସର୍ଗ

## ଅର୍ଜୁନଙ୍କ ଆଶ୍ରମରେ ଇନ୍ଦ୍ରଙ୍କ ପ୍ରବେଶ

ମନେରଖି ଶତ୍ରୁଦ୍ୱେଷ   ନିର୍ବିକାରେ ୧ଗୁଡ଼ାକେଶ
ତପସ୍ୟାମଗ୍ନ ସନ୍ଦେଶ ୨ଘନବାହନ
ଅପ୍‌ସରା ମୁଖୁ ଶ୍ରବଣେ   ଅର୍ଜୁନାଶ୍ରମ ବୀକ୍ଷଣେ
ବାହାରି ଅଳପ କ୍ଷଣେ ହୋଇ ପ୍ରସନ୍ନ
୩ଅଧ୍ୱକ୍ଲାନ୍ତ ପଳିତ ପରି,
ପ୍ରବେଶିଲେ ମୁନି ଅଗ୍ରେ ଛଳନା କରି ।
ଖଣ୍ଡିଏ ଯଷ୍ଟି ହସ୍ତରେ   ଜଟାଜୁଟ ମସ୍ତକରେ
୪ସିତକେଶ ଭ୍ରୂଯୁଗରେ ଜୀର୍ଣ୍ଣ ୫ଅଜର
ତାହାଙ୍କୁ କରି ଦର୍ଶନ   ପ୍ରେମରେ ୬ପ୍ରମନନ୍ଦନ
ଦିଅନ୍ତେ ପାଶେ ଆସନ ଏମନ୍ତ ଗିର
ଶ୍ରମଦୂର କରିବା ପରେ
ଭାଷିଲେ ସେ ବର୍ଷୀୟାନ କଥାନ୍ତରରେ ।
ମାଦୃଶ ବ୍ୟକ୍ତି ଏ ଭବେ   ବିଷୟୁ ନିବୃତ୍ତି ଲଭେ
ମାତ୍ରୁଟି ନିଷ୍ଠ ଗଢ଼ିବେ ପଡ଼ି ମୋଚନେ,
ସୌମ୍ୟ କଳେବର ତବ   ତଥା ଗୁଣେ ସଉଷ୍ଠବ
ଉଭୟ ଗୁଣ ଦୁର୍ଲଭ ତବ ସାଧନେ
ସୁବର୍ଣ୍ଣରେ ସୁଗନ୍ଧ ଯୋଗ,
ତେଜନ୍ତ ୭ଅକ୍ଷରରେ ଯୌବନ ଭୋଗ ।
ଦେଖି ଯଉବନ ଶିରି   ଫଳଉଛୁ ଥିରି ଥିରି
୮ଘନାନ୍ତ ଜୀମୂତ ପରି ବୟସୁ ଭୋଗେ,
ଆସକ୍ତି ରଖି ମାନବ   ପାଉଛି ଧିଦା ୯ଆଗ୍ରବ
ଗୌରବ ସିନା ନିୟତ ଲାଳସା ଯୋଗେ
ଦୁଃଖପୂର୍ଣ୍ଣ ଜୀବଜୀବନ
ଆପାତ ସୁଖକୁ ସାଧୁ କରେ ବର୍ଜନ ।
କଲ୍ୟାଣକାରିଣୀ ବୁଦ୍ଧି   ଉପେକ୍ଷି ନିୟତ ୧୦ଋଦ୍ଧି
କରିବାକୁ ଚିତ୍ତଶୁଦ୍ଧି ରହେ ଜାଗ୍ରତ
ତପେ ହିଂସାପରାୟଣ   ହୋଇ ଆୟୁଧ ଧାରଣେ
ଅଟଇ ମହା ଦୂଷଣ ଅନବରତ

୧ ଅର୍ଜୁନ ୨ ଇନ୍ଦ୍ର ୩ ପଥ ୪ ଶୁକ୍ଳ ୫ ଦେହ
୬ ଅର୍ଜୁନ ୭ ତପସ୍ୟା ୮ ଶରତ୍‌କାଳ ୯ କ୍ଲେଶ
୧୦ ସମ୍ପତ୍ତି

ମୁକ୍ତିକାମୀ ଶରୀର ବ୍ରତ
ନରଖି ଆସ୍ଥା ଛନ୍ଦଇ ପରମଗତି ।
ପ୍ରାଣୀଙ୍କି ଜନ୍ମାଏ ଭୟ    ତୁମର ଏ ବାହୁଦ୍ୱୟ
କରିବାକୁ ଶତ୍ରୁଜୟ ତୁମ କାମନା
ଶାନ୍ତମାର୍ଗ ପରିହରି    ଭୀଷଣ ଆୟୁଧ ଧରି
ବସିଛ ତପସ୍ୟା କରି ବୃଥା ଭାବନା
ତୁମର ଏ କର୍ମ ଜଟିଳ
କରୁଛ ପଙ୍କିଳ ଯିନା ସ୍ୱଚ୍ଛ ସଲିଳ ।
୧ପୁରୁଷାର୍ଥଶତ୍ରୁ ଧନ    କ୍ଳେଶସାଧ୍ୟ ଉପାର୍ଜନ
ଉପୁଜେ ନାନା କଷଣ ତାର ରକ୍ଷଣେ
ନଜାଣି ଭବେ ୨ଅବ୍ୟକ୍ତ    ଧନପ୍ରତି ଅନୁରକ୍ତ
କୋହ୍ନ କେବେ ଅନାସକ୍ତ ଚପଳ ପଣେ
ଅନର୍ଥର ହେତୁ ସମ୍ପତ୍ତି
ଅବେଗରେ କରେ ସଦା କୁଟିଳଗତି ।
ଅର୍ଥଲୋଭ ପରିହରି    ସମାଧି ଆଶ୍ରୟ କରି
ଯୋଗଧର୍ମ ଅନୁସରି ଅଛ ଏଠାରେ
ଆପଣା ପୀଡ଼ା ଯେପରି    ପରର ବାଧା ସେପରି
ଭଲମନ୍ଦ ନ ବିଚାରି ଯେଉଁ ସଂସାରେ
କରୁଅଛୁ କରମମାନ,
ଅସହାୟେ ଭୋଗଇ ସେ ଦୁଃଖବିତାନ ।
ନ୍ୟାୟକୁ ଅବଲମ୍ବନ    କରିଥାଏ ତପୋଧନ
ସମରୋତ୍ସାହ ବର୍ଜନ କରି ସତ୍ତ୍ୱରେ
ନାଶିକା ଚକ୍ଷୁ ଶ୍ରବଣେ    ଥାଆନ୍ତି ଇନ୍ଦ୍ରିୟଗଣ
ନପଶି କାର ଶରଣ ସ୍ୱଚ୍ଛ ଅନ୍ତରେ
ଅନ୍ତଃ ଶତ୍ରୁ କରି ଦମନ
ଯଶଲଭ ତପେ କରି ଜଣ ଭୁବନ ।
ଜୀବନଟା ବିଷୟୁକ୍ତ    ଅନନ୍ତୁଳ୍ୟ ବୋଲି ଉକ୍ତ
ଥିବାରୁ ଯୋଗୀଏ ମୁକ୍ତ ହେବା ନିମିତ୍ତେ,
କରନ୍ତି ଉଦ୍‌ଯୋଗ ନିତ    ବିଷୟେ ନରଖି ପ୍ରୀତି
ଅବଲମ୍ବି ଧୃତ ଶାନ୍ତ ପ୍ରଶାନ୍ତ ଚିତ୍ତେ
ଗୁଣାର୍ଜନ ଅଟେ ଦୁର୍ଲ୍ଲଭ
ଜଳର ବୁଦ୍‌ବୁଦ୍‌ ପରି ଯିନା ବୈଭବ ।

୧ ମୁକ୍ତ ୨ ମୂର୍ଖ

ନରୁମାଚ ପ୍ରିୟାପ୍ରିୟ    ନଜାଣେ ଅଜତେନ୍ଦ୍ରିୟ
କରେ ଘୃଣା ପୂଜମାୟ ଦେଖନ୍ତି ଜନେ,
ପୁନର୍ଜନ୍ମ ନିବର୍ତ୍ତକ    ମୋକ୍ଷନ୍ନି ସୁଖଦାୟକ
ପାସୋର ମନ୍ଦୁ ଦୂଷକ ସ୍ୱାର୍ଥସାଧନେ
ସ୍ୱପ୍ନତୁଳ୍ୟ ଅର୍ଥାନୁସର
ପୁରୁଷରେ ହୁଏ ଭୃତ୍ୟ ବଳଦ ପରି ।
ସ୍ୱାର୍ଥସାଧନ ନିମିତ୍ତ    ପରାଧୀନ ଅନୁରତ
ତେଜିଲେ ଶସ୍ତ୍ର ଭାରତ ପାଇବ ମୁକ୍ତି
ଭାଷିବା ଅନ୍ତେ ବାସବ    ଓଜସ୍ୱୀ ଅର୍ଥ ଗୌରବ
ଅର୍ଜ୍ଜୁନ ସିଦ୍ଧସମ୍ପ୍ରତି ଅକୈତବ ମଧୁର ଉକ୍ତି
ଉତ୍ତରନ୍ତେ ଅତି ଗମ୍ଭୀରେ
ଶତ୍ରୁହନ୍ତା ସେ ଗୁଡ଼ାକ ଶୁଣିଲେ ଧୀରେ ।

## ଅର୍ଜ୍ଜୁନଙ୍କ ପ୍ରତ୍ୟୁକ୍ତି

କହନ୍ତି ବିଜୟ    "ଜାତିରେ କ୍ଷତ୍ରିୟ
କୁନ୍ତୀଦେବୀଙ୍କ ମୁଁ ତନୟ,
୧କୃଷ୍ଣ ଦ୍ୱୈପାୟନ    ଉପଦେଶ କ୍ରମେ
ରଖିଅଛି ତାପ ହୃଦୟ,
ବୃଦ୍ଧ ହେ, ବୈରନିର୍ଯ୍ୟାତନ ନିମିତ୍ତ
୨କମ୍ବୁବାହନ ଉପାସନା ଲାଗି
ହୋଇଅଛି ଯୋଗେ ୩ଆସକ୍ତ ।
କପଟ ପାଶେ ମୋ    ଅଗ୍ରଜ ୪ଅଜାତଶତ୍ରୁ
ସର୍ବସ୍ୱ ହରାଇ ପଣରେ,
ପାଞ୍ଚାଳୀକ ହେନ    ଅନୁଜ ସହିତ
ପ୍ରବେଶିଲେ ବନ ଦୁଃଖରେ,
ବୃଦ୍ଧ ହେ, ବୈରାଗ୍ୟ ଆସିବ କପରି
ସନ୍ତାପିତ ୫ସ୍ୱାନ୍ତ ହେଉଅଛି ଘୋର
୬ଶାବକେ ହାରାଇ ଯେପରି ।
ଅଗ୍ରାହ୍ୟ କରି    ସଭାରେ, ଆମର
ବସନ ଆକର୍ଷି ରାଗରେ,
ମର୍ମଚ୍ଛିଦ ବାକ୍ୟ    କରିଲେ ପ୍ରୟୋଗ
ଗାଙ୍ଗେୟ ଦ୍ରୋଣାଦି ଆଗରେ

୧ ବ୍ୟାସଦେବ ୨ ଇନ୍ଦ୍ର ୩ ଉପବିଷ୍ଟ ୪ ଯୁଧିଷ୍ଠିର
୫ ଚିତ୍ତ ୬ ଶତ୍ରୁମାନେ

ବୃଦ୍ଧଦେବ, ଯାଜ୍ଞସେନୀ କେଶଅମ୍ବର,
ଦୁର୍ଯ୍ୟୋଧନାଦେଶେ ଦୁଃଶାସନ ଆସି
କଲା ଆକର୍ଷଣ ସଭାର ।
ତରସ୍ୱୀ ତ- ହୋଇ ଅମ୍ଭେ ପାଞ୍ଚଭାଇ
ହରିଣ ସଦୃଶ ଆହାରେ,
ନାନାକ୍ଲେଶସହି କଟାଉ ସମସ୍ତ
ଘୋର ବନଦେଶ ବିହାରେ
ବୃଦ୍ଧଦେବ,ମାନହୀନ ବ୍ୟକ୍ତି ଭବରେ
ତୃଣଠାରୁ ମଧ୍ୟ ହୀନ ବିବେଚିତ
ହୋଇଥାଏ ଲୋକମତରେ ।
ଗୁଣପ୍ରିୟ ଭ୍ରାତ କୌନ୍ତେୟ ସହିତେ
ନିକୃଷ୍ଟ ଅବସ୍ଥା ଆମର
ନଲଙ୍ଘି ମର୍ଯ୍ୟାଦା ସତ୍ୟ ରକ୍ଷାକରି
ସହୁଛନ୍ତି ଦୁଃଖନିକର
ବୃଦ୍ଧଦେବ,ମନସ୍ୱୀ ପୁରୁଷ ମାନସ
କଳୁଷ ନହୋଇ ସ୍ୱଚ୍ଛତାକୁ ଧରି
ବିକସେ ଅପୂର୍ବ ୧ସହସ ।
ପ୍ରତାପ ସମ୍ପନ୍ନ ମାନୋନ୍ନତ ଜନ
ସାରଧର୍ମ ପାଳି ମର୍ତ୍ତ୍ୟରେ
ବଇରିବିଧ୍ୱଂସ କରି ଚକ୍ଷୁମନେ
ରଖଇ କୀରତ କୁଳରେ
ବୃଦ୍ଧଦେବ,ଜୟଶ୍ରୀ ଲୋଡଇ କେବଳ
ଦଇବୁ ଆଶିଷ ଯେପରି ଏକର୍ମ
ହେବ ଅବଳମ୍ବେ କୁଶଳ ।
ଊଷୀର କ୍ଷେତ୍ରରେ ଶାଳାବୀଜବୁଣା
ଘଟଇ ବିଫଳ ଯେସନ
ସଙ୍ଗତ ନଜାଣି ଉପଦେଶ ଦେବା
ହୁଅଇ ଅଗ୍ରାହ୍ୟ ତେସନ
ବୃଦ୍ଧଦେବ,କୁମୁଦବାନ୍ଧବ ୨ବିକାଶେ

ଉଦିତ ହୋଇଲେ ସରୋଜମା ମନ
ମାତ୍ର ଉଠିବ କି ୩ବିକାଶେ ?
ସିନ୍ଧୁର୍ମିସଦୃଶ ଚପଳ ସୁଖକୁ
ନଇଚ୍ଛୁ ଅନିତ୍ୟ ସଂସାରେ
ସମୁଚ୍ଛେଦ ଲାଗି ଆପଣା ଶତ୍ରୁକୁ
ବଂଶଲକ୍ଷ୍ମୀଙ୍କର ଉଦ୍ଧାରେ
ବୃଦ୍ଧଦେବ,ନୋହିଁଲେ ଚେଷ୍ଟିତ ପୁରୁଷ
ଇହଲୋକେ ତାର ବଢ଼ିବ କିପରି
ଗୁଣୀଙ୍କ ସଭାରେ ପୌରୁଷ ।
କହ ତପୋଧନ ଶତ୍ରୁ ନଜିଣି
ଯେ ପୁରୁଷ ଶାନ୍ତ ଆଚରେ,
ପୁରୁଷ ନାମର ସାର୍ଥକତା ନାହିଁ
ଲଭେ ଦୋଷଭ ଲୋକରେ
ବୃଦ୍ଧଦେବ,ପରାମୃଷ୍ଟା ଦେଲେ ବ୍ୟସନେ
ନିର୍ମଳ ଚନ୍ଦ୍ରରେ କଳଙ୍କ ସଦୃଶ
ରହଇ ଲାଞ୍ଛନ ଜୀବନେ ।
ଜନ ଅପବାଦ ନଡରି ଆଚରେ
ସର୍ବଦା ଧୂର୍ତ୍ତତା ଯେ ଜନ
ଅମର୍ଷ ଅଶନି ନିକ୍ଷେପଣେ କରି
ଘଟାଇବ ତାର ନିଧନ
ବୃଦ୍ଧଦେବ,ନରକରେ କେ ନିନ୍ଦା ଭବରେ
ଶତ୍ରୁକୃତ ପାପ ପଙ୍କକୁ ନଧୋଇଲେ
ସେମାନଙ୍କ ଜୀବୀ ଅସ୍ତ୍ରରେ
ଶୁଣି ସହସ୍ରାକ୍ଷ ବାସବାଙ୍କ ଠାରୁ
ଏମନ୍ତ କରୁଣ ବଚନେ
ସ୍ୱରୂପ ପ୍ରକାଶ କରି ତତକ୍ଷଣେ
ଆଲିଙ୍ଗି ଭାଷିଲେ ଏସନ
କାପଳୀ,ସେବନ କର ଯାଇ ଶରେ
ସନ୍ତୁଷ୍ଟ ହେଲେ ସେ ନିବେଦିବ ତାଙ୍କୁ
ଯେପରି ଜିଣିବ ସମରେ ।

୧ ଶକ୍ତି ୨ ଆକାଶେ ୩ ଉଲ୍ଲାସେ

## ଅଷ୍ଟମ ସର୍ଗ
## ଅର୍ଜ୍ଜୁନଙ୍କ ତପସ୍ୟା

୧ଜମ୍ଭୂତ ତିରୋଧାନ ପରେ ବଳୟୂ,
୨ସପ୍ତାଶ୍ୱ ଅଭିମୁଖେ କରିଲେ ଲୟ ।
ପୁଲକେ ଏକପାଦେ ହେଲେ ସେ ଠିଆ,
ବାହ୍ୟାଭ୍ୟନ୍ତର ଶୁଚିଛି ଛାଡ଼ିଲେ ଖିଆ ।
୩ନଗପତିସନାଭି ହେଲେ ଅଚଳ,
କାମନା ସିଦ୍ଧିଲାଗି ହୃଦ ଅଟଳ ।
ମହାମନା ଲୋକର ଧୈର୍ଯ୍ୟ ଦୁର୍ଜ୍ଜେୟ,
ମଣନ୍ତି ଜୀବନକୁ ସର୍ବଦା ହେୟ ।
ସ୍ୱଚିତ୍ତ ପଦ୍ମପଦେ ମନ ନବଳେ,
ସୁକୃତ ପୁରୁଷର ଧ୍ୟାନ ନଷ୍ଟଳେ ।
ରଜତମ ଉଭୟେ ହେଲେ ପରାସ୍ତ,
ସତ୍ତ୍ୱଗୁଣେ ଲୋକର ଚିତ୍ତ ପ୍ରଶସ୍ତ ।
ବଳ୍କଳେ ବପୁକୁ କଲେ ଧାରଣ,
ଟଳିଉଛନ୍ତି ଦେଖି ବାରଣଗଣ ।
ନଶୀଥେ ପ୍ରଜ୍ୱଳିତ ଜ୍ୱଳନସମ,
ଦିଶୁଥିଲା ୪ଅଜିର ତେଜସୁଷମ ।
ଚଉଦିଗରେ ଦନ୍ତପ୍ରଭା ପ୍ରସରି,
ଶୋଭୁଥିଲା ଏକାଦଳ ପୂର୍ଣ୍ଣେନ୍ଦୁପରି ।
ନତ୍ୟ ସବନ ଲାଗି ଯିବା ଚରଣ,
ଧରଣୀକି କମ୍ପିତ କଲେ କ୍ଷେପଣ ।
କାର୍ମୁକ ଦେଖି ମନେ ହୁଏ ପ୍ରତୀତ,
୫ଦମ୍ଭୋଳିଧରି ଧନୁ ପରା ପତିତ ।
ଦୁର୍ଦ୍ଧର୍ଷ ଜ୍ୟୋତି ଦେଖି ମହର୍ଷିଗଣ,
୬କାଳେଶପାଶେ ଯାଇ ନେଲେ ଶରଣ ।
ନିକାଳଙ୍କିତା ଶମ୍ଭୁ ଦର୍ଶନ ପାଇଁ,
ଶଇଳ ଶିଖରକୁ ଦେଲେ ଅନାଇଁ ।
ସୌମ୍ୟମୂରତି ଧରି ଚନ୍ଦ୍ରଶେଖର,
ସାକ୍ଷାତ ଦେଲେ ଅସି ମୁନିନିକର ।

ମସ୍ତକେ ଜଟାଜୂଟ ଅହି କଣ୍ଠରେ,
ସ୍କନ୍ଧ ଶୋଭିତ ପଞ୍ଚ ଉପବୀତରେ ।
ତ୍ରିଭୁବନରଞ୍ଜି ପରି ୭ଭୁସ୍ମ ଦିଶଇ,
୮ବିଭାବଚନ୍ଦ୍ର ତେଜ ସରି ନୁହଇ ।
ଆଗରେ ଠିଆ ହୋଇ ତାପସେଚୟ,
ଭାଷିଲେ ଅର୍ଜ୍ଜୁନଙ୍କ ତପବିଷୟ ।
"ଜଗତକୁ ଜିଣିବା ଇଚ୍ଛା ବା କରି,
ଦିଶନ୍ତି ତେଜୋବନ୍ତ ତପ ଆଚରି" ।
ଏମାନଙ୍କ ଉଦନ୍ତ ଶୁଣି ଶବରି,
"ଶତ୍ରୁ ସଂହାର ଲାଗି ପୃଥାକୁମର ।
ଅର୍ଜ୍ଜୁନ ନବଜନା ମୋର କରନ୍ତି,
ନଜାଣନ୍ତି କପରି ତାପସପନ୍ତି ।
ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଅନୁରୋଧରେ,
ଦାନବ ବଧ ଲାଗି ପ୍ରଜାହିତରେ ।
ଜନମିଛନ୍ତି ମର୍ତ୍ତ୍ୟଲୋକେ ଅର୍ଜ୍ଜୁନ,
ଶାସ୍ତ୍ର ଆଦେଶମତେ ଯୋଗେ ମଗନ ।
ମୂକ ନାମେ ଦଇତ ଏକ ବାହାରି,
ଅର୍ଜ୍ଜୁନ ତପ ସୁକୃତ୍ୟେ ବୈରୀ ।
ତାଙ୍କ ନିଧନ ଲଗି ହେଲଣି ବ୍ୟଗ୍ର,
୯ଭୂଦାର ରୂପ ଧାଏ ତାହାଙ୍କ ଅଗ୍ର ।
ପାପାସକ୍ତ ନିରତ ସେହି ରାକ୍ଷସ,
ବିନାଶ କରି ତାକୁ ରଖିବ ଯଶ ।
ମୋ ସଙ୍ଗେ ଆସ ତୁମେ ଋଷି ସକଳ,
ଦେଖିବ, ଦୈତ୍ୟ ଚେଷ୍ଟା ହେବ ବିଫଳ" ।
ଏମନ୍ତ କହି ୧୦ଖରୁ କିରାତ ବେଶ,
ଧରି ଆସିଲେ ଖରେ ସେ ବନ ଦେଶ ।
ଶୂଳ ପରଶୁ ଶର ଧନୁ ଧାରଣ,
କରି ଆସିଲେ ସଙ୍ଗେ ପ୍ରମଥଗଣ ।
କୁସୁମିତ ଲତାଗ୍ରେ କେଶ ମଣ୍ଡିତ,
ବହିବର୍ହ କପୋଳେ ଅତି ଶୋଭିତ ।
ନୟନ ଦିଶୁଅଛି ଅରୁଣ ବର୍ଣ୍ଣ,
୧୧ଅଜଗବ ନିକ୍‌କଣେ ବଧିର କର୍ଣ୍ଣ ।

୧ ଇନ୍ଦ୍ର ୨ ସୂର୍ଯ୍ୟ ୩ ହିମାଳୟ ୪ ଶରୀର ସନାଭି-ସଦୃଶ ସବନ-ସ୍ନାନ ୫ ଇନ୍ଦ୍ର ୬ ଶିବ ୭ ଜଟା

୮ ବ୍ୟାପ୍ତ ୯ ବରାହ ୧୦ ଶିବ ୧୧ ଅଜଗବ-ଶିବଙ୍କ ଧନୁ

ବନପ୍ରାନ୍ତର ଦୃଶ୍ୟ ଦେଖି ସକଳେ,
ବୁଲିଲେ ଶୂକରଆଡେ ମୃଗୟା ଛଳେ ।
ମାର୍ଗରେ ଇତସ୍ତତ ହରଣକରୀ,
ଚଳାଇ ଯାଉଥିଲେ ତକ୍ଷଣେ ଡରି ।
ପ୍ରବଳ ଭପୁ ହେତୁ ବାଳ ଚମରୀ,
୧ବେଣୁ ଗୁଳ୍ମେ ଛପିଲା ମାଆଙ୍କୁ ଧରି ।
ଗଜମଦ ବାସିତ ୨ସଟା କେଶରୀ,
ଜୃମ୍ଭାମାରି ରହିଲା ନିଃଶଙ୍କ ଚରି ।
ଏଣେ ଦେଖିଲେ ଆଗେ ଭୀମଅନୁଜ,
ବରାହ ବପୁ ଧରି ମୂକ ଦନୁଜ ।
ବୃକ୍ଷମୂଳ ବଦାରି ସ୍କନ୍ଧ ଘର୍ଷଣ,
କରି ଆସେ ଦେଖାଇ ଯୁଦ୍ଧ ଲକ୍ଷଣ ।
ଭାବିଲେ ମନେ ମନେ "ଏହି ଭୂଦାର,
ଆସୁଛି କରିବାକୁ ମୋତେ ସଂହାର ।
ଛଦ୍ମ ବରାହ ମାତ୍ର ଜଣେ ଦଇତ,
ନ ବଧିଲେ ଏହାକୁ ହେବ ଅହିତ ।
ମନ ହୁଏ ପ୍ରସନ୍ନ ଯାର ଦର୍ଶନେ,
ସେ ସିନା ମିତ୍ର ବୋଲି କହନ୍ତି ଜନେ ।
ନିରବେଧ ଋଷି ପୁଣି ଜିତାତ୍ମା,
ଉଦ୍ଭବେ କର୍ପାଣ୍ଟିକେ ଦେଖି ଦୁରାତ୍ମା
ଅବା ଦୁର୍ଯ୍ୟୋଧନାଦି ମୋର ନିଧନେ
ବରାହ ରୂପେ ଏହାକୁ ପେଷିଲେ ବନେ ।"
ଏବଂଭୂତ ବିତର୍କେ ଶକ୍ରକୁମର,
ଯୋଖିଲେ ଗାଣ୍ଡୀବରେ ସୁତୀକ୍ଷ୍ଣ ଶର ।
ନିଯୋଗ କାଳେ ୩ଅବ୍ଦ ଶବ୍ଦ ସଦୃଶ,
ହେଲା ଜାତ ତହିଁରୁ ନିନାଦ ଭୃଶ୪
ସହସା ଆସି ଶଙ୍କୁ ପ୍ରବେଶ କରି,
କ୍ଷେପିଲେ ନାରାଚେକ ପିନାକ ଧରି ।
ସଙ୍ଗେ ସଙ୍ଗେ ଅର୍ଜୁନ ନ୍ୟାସିଲେ ବାଣ,
ଉଭୟ କାଣ୍ଡ ଭେଦିଗଲା ତା ପ୍ରାଣ ।
ଶିବ ପ୍ରେରିତ ଶର ନେବା ମାନସେ,
ବରାହ ପାଶେ ଗଲେ ୫ଐନ୍ଦ୍ର ରଭସେ ।

ବନେଚରେକ ଜାଣି ଅର୍ଜୁନ ମନ,
ନ ନେବାକୁ ସେ ବାଣ କଲା ବାରଣ ।
"ସଦାଚାର ପଦ୍ଧତି ନଛାଡ଼ି ଲବେ,
ନ୍ୟାୟ ମାର୍ଗେ ରହନ୍ତି ତାପସେ ଭବେ ।
ଅମାର୍ଗରୁ ନିବୃତ୍ତ ହେବାକୁ ଲୋକେ,
ଦିଅନ୍ତି ଉପଦେଶ ଯୋଗିଏ ୬ଲୋକେ ।
୭ନିଶିତ ଶର ପ୍ରଭୁ ଯୋଗେ ଆମ୍ଭର,
ଦୈତ୍ୟମାତ୍ର ସାଧିଲେ ଇଷ୍ଟ ତୁମ୍ଭର ।
ଚମୂପତିଙ୍କ ବିନା କିଏ ଏ ଭବେ,
ନିହିଂସନେ ସମର୍ଥ ହୁଅନ୍ତା ଲବେ ?
ତୁମ ଭଳି ସଜ୍ଜନ କରିଲେ କୋପ,
କୃତଜ୍ଞତା ଜଗତୁ ଯାଇବ ଲୋପ ।
ଆପଦର ବନ୍ଧୁ ଯେ କିରାତପତି,
ତାଠାରେ ରହୁ ସଦା ତୁମର ମତି ।
ବିଦ୍ୱାନ ବ୍ୟକ୍ତି ଆମ୍ଭ ସ୍ୱାମୀ ଚରିତ,
ଶ୍ରବଣେ ହେଉଛନ୍ତି ସଦା ମୋହିତ ।
ସମ୍ପର୍କ ରଖି ଆମ୍ଭ ସ୍ୱାମୀଙ୍କ ସଙ୍ଗ,
ତପସ୍ୟା ଫଳ ଲଭ ତୁଚ୍ଛ ନିଗ୍ରହ ।
ପ୍ରବଳ ଶତ୍ରୁ କରେ ଧନ ହରଣ,
ତେଣୁ ମିତ୍ରତା ପାଶେ ପଶ ଶରଣ ।
ଅମାର୍ଗରୁ ନିବୃତ୍ତ ହେଲେ ପୁରୁଷ,
ଲୋକ ମୁଖରେ ସିନା ଲଭେ ପୌରୁଷ ।
ଅନ୍ୟ ବ୍ୟକ୍ତି ପ୍ରେରିତ ୮ବିଶିଖ ପ୍ରତି,
ମନସ୍ୱୀ ପୁରୁଷର ନିବୃତ୍ତ ମତି ।
ଫଣୀର ଶିରୋମଣି ନେବାକୁ ବଳେ,
ଉଦ୍ୟମ କଲେ ଶେଷେ ବିଷମ ଫଳେ ।
ତ୍ୟଜନ କର ତୁମ୍ଭେ ଚପଳ କର୍ମ,
କିଏ ସହିବ କହ, କଲେ ଅକର୍ମ" ।
ଘୋଷିଲା ବନେଚର ତାଙ୍କ ମାର୍ଗଣ୯
ନକଲେ ପ୍ରତ୍ୟର୍ପଣ ଲାଗିବ ରଣ ।

୧ ବାଉଁଶ ୨ ଜଟା ୩ ମେଘ ୪ ଅତିଶୟ ୫ ଅର୍ଜୁନ

୬ ଲୋକେ-ଜଗତେ ୭ ଦାଢ଼ୁଆ ୮ ଶର ୯ ଶର

## ନବମ ସର୍ଗ

## ଅର୍ଜୁନଙ୍କ ପ୍ରତ୍ୟୁକ୍ତି

ପ୍ରଗଲ୍‌ଭ ଭାରତୀ କିରାତର ଶୁଣି
୧ବାସବ ବିକ୍ଷୁବ୍‌ଧ ମାନସେ
ନୋହି ବିଚଳିତ ସୁଖାବହ ବୋଲି
ଭାଷିଲେ ୨ଚଞ୍ଚଳେ ସାହସେ
"ବ୍ୟାଧ ହେ, ପୁଣ୍ୟବାନ ଲୋକ ସଭାରେ,
ମନୋଗତଭାବ କରନ୍ତି ପ୍ରକାଶ
ନ ଅଟେ ଶାଠ୍ୟ ଅନ୍ତରେ ।
ଫଳ ବିବେଧିର କର୍ମ କରିବାକୁ
ଉଦ୍ୟତ ନୃପତି ତୁମ୍ଭର,
ଏବେ ବ୍ୟତିକ୍ରମ କଥାମାନ କହି
ଭିଆଅ ଅହିତ ଲୋକର
ବ୍ୟାଧ ହେ, ସତତ ସଂସାରେ ସଜ୍ଜନ,
ସାଧୁ ଆଚରଣ ଅବଲମ୍ବି ହୃଦେ
ରକ୍ଷିଯାନ୍ତି ଯଶ ଭୁବନେ ।
ଅକ୍ଷୟ ତୂଣୀର ତଥା ୩ଶିଳୀମୁଖ
ଦେଇଛନ୍ତି ମୋତେ ଅନଳ
ତେବେ କେଉଁଠାରେ କିରାତ ସାମ୍ୟକେ
ଅଛି ମୋ ଆଦର କନଳ
ବ୍ୟାଧ ହେ, ଭିଆଇବା ଲାଗି ପ୍ରୟାସ,
କରୁଛ ତୁଚ୍ଛାକୁ ଏକୁଟିଆ ଦେଖି
ଉପୁଜାଇ ମନେ ବିଶ୍ୱାସ ।
ନିଜ ଦୋଷଚୟ ଘୋଡାଇବା ଲାଗି
ନିର୍ଦ୍ଦୋଷ ବ୍ୟକ୍ତିକ ଦୋଷରେ
କଲ ଅଭିଯୁକ୍ତ ଭଲେଇ ହେବାକୁ
କିରାତ ନୃପତି ଆଗରେ
ବ୍ୟାଧ ହେ, ହେଲ ବୁଦ୍ଧିଭ୍ରଷ୍ଟ ତୁମ୍ଭର
ଶରାପହରଣେ ମୋତେ ଶଙ୍କା କରି
ପିଅ ନାହିଁ କେବେ ଜହର ।

ବନାଶ୍ରିତ ମୃଗ କୌଣସି ବ୍ୟକ୍ତିର
ନୁହେ ପରିଗ୍ରହ ଏଭଳିବେ
ଯେ ମାତେ ପ୍ରଥମେ ନିହତ୍ୟା ସେ ପିନା
ପ୍ରାଣିହିଂସା କରି ଗଲବେ
ବ୍ୟାଧ ହେ, ଅଭିମାନ ଛାଡ ମନରୁ,
ଆତ୍ମରକ୍ଷା ଲାଗି ଅଜଗବ ନ୍ୟାସ
କରିଅଛି ପିନା ଭପ୍ୟରୁ ।
୪ମୃଗୟୁ ୫ମୃଗକୁ କରୁଅଛି ବଧ
ଅବିରତ ସ୍ୱାର୍ଥ ନିମିତ୍ତ
ତପସ୍ୱୀମାନଙ୍କ ଉପକାର ବୋଲି
କହିବା ନୁହଇ ଉଚିତ
ବ୍ୟାଧ ହେ, ଦୁର୍ଦ୍ଦିଙ୍କ ନାରାଚେ ୬ଭୂଦାର
ଶରୀରେ ପ୍ରବେଶ କରି ଏକାବେଳେ
ଘଟିଛି ତାହାର ସଂହାର
ବର୍ଣ୍ଣାଶ୍ରମ ଧର୍ମ ରକ୍ଷଣ ରୂପକ
ବିଶୁଦ୍ଧ ବୃତ୍ତି ଯେ ଆଚରେ,
ଜାତହୁଁନ ମୃଗ ଜୀବନ ନାଶକ
ହିଂସା ପରିପୂର୍ଣ୍ଣ ସଙ୍ଗରେ
ବ୍ୟାଧ ହେ, ବନ୍ଧୁତା ବାନ୍ଧବ କପଟ
୭କ୍ଷୋଣୀ କେବେବି ୮ଗୋମାୟୁ ସହିତ
୯ଯେ ନୃପ ଜଗତେ ତପୋରତଠାରେ
କରୁଛି ଅସୂୟା ପ୍ରକାଶ
ସେ କପଟ ପୁଣି ମିତ୍ର ହେଲେ ତାର
ହୃଦୟେ ଆସିବ ଉଚ୍ଛ୍ୱାସ
ବ୍ୟାଧ ହେ, ନୀଚ ଲୋକ ସହ ମିତ୍ରତା
କଲେ ବା ସଜ୍ଜନ ଗୁଣ ନାଶଯାଇ
ଫୁଟି ଉଠିବ ତା ହୀନତା" ।

୧ ଅର୍ଜ୍ଜୁନ ୨ ଚଞ୍ଚଳ ୩ ଶର ୪ ବ୍ୟାଧ ୫ ପଶୁ ୬ ବରାହ ୭ ହସ୍ତୀ ୮ ବିଲୁଆ

## ଅର୍ଜୁନଙ୍କ ସଙ୍ଗେ କିରାତ ବେଶଧାରୀ ପ୍ରମଥମାନଙ୍କ ଯୁଦ୍ଧ

୧ପାଶିବେଶ ଧାରୀ ପ୍ରଥମ ଶୁଣି କୃଷ୍ଣ ବଚନ,
ପଦ୍ମସ୍ଥଳ ଯାଇ ୨ତପସୀ ପାଶେ ୩ହରଚନ୍ଦନ ।
ଗାଣ୍ଡୀବୀ ଭର୍ଷିତ ଗଞ୍ଚନେ କୋପେ ୪ପୁଙ୍ଗବଙ୍କଠୁ,
ପଠାଇଲେ ସେନାମାନଙ୍କୁ ଧରଣେ ବୌଦ୍ଧରେ ୫ପୃଷ୍ଟକଠୁ
ଅମ୍ଭୋନିଧି ଉର୍ମି ସଦୃଶ ମାଡ଼ି ଆସି ସେମାନେ,
ବନଭୂମି ଅବରୋଧିଲେ ସବ୍ୟସାଚୀ ସନ୍ଧାନେ ।
ଜୟ ଜୟ ନାଦେ କମ୍ପିଲ ଗିରିଗୁହା ସକଳ,
ଜ୍ୟାଘୋଷ ମିଶନ୍ତେ ତହିଁରେ କମ୍ପିତ ସେ ସ୍ଥଳ ।
ବିଶାଳ ବକ୍ଷରେ ଆଚ୍ଛାଦି ଦଶଦିଗ୍ ମୁଖ ଜବ,
ସେନା ମଣ୍ଡଳର ଉପରେ ଦେଖେ ରହିଲେ ୬ଭବ ।
ଏତାଦୃଶ କାର୍ଯ୍ୟ ଦର୍ଶନେ ଧରି ୭ଅଙ୍କୁଷ ଚୟ,
୮ଅସମ୍ଭ୍ରମେ ଚକ୍ଷୁ ନିବେଶ କଲେ ତହିଁ ବିଜୟ ।
୯କୃଶାନୁ ସଦୃଶ ଶରୀର ଦୀପ୍ତ ଦେଖି ତାଙ୍କର,
ଭୟରେ ସ୍ତମ୍ଭିତ ହେଲେଣି ଏଣେ ଶିବାନୁଚର ।
ଅସମର୍ଥ ହେବେ ବୀରେ ଜଣେ ଜଣେ ଯୁଝିଲେ,
ସଙ୍ଘଶକ୍ତି ଆବଶ୍ୟକତା ଅଛି ବୋଲି ବୁଝିଲେ ।
ଏକତ୍ର ପ୍ରମଥେ ନିକ୍ଷେପ କଲେ ୧୦ବିକର୍ଷ ଚୟ,
ଚତୁର୍ଦ୍ଦିଗ ବ୍ୟାପି ନିର୍ଦ୍ଧାରେ ହେଲା ଜାତ ବିସ୍ମୟ ।
ତହୁଁ ୧୧ଜିଷ୍ଣୁ ୧୨ଇଷୁ ବନ୍ଧନେ ଗାଣ୍ଡୀବକୁ ଉଠାଇ
ଉଲ୍କାପରି ଶିବ ସୈନ୍ୟଙ୍କ ପରେ ପଡିଲା ଯାଇ ।
ଲକ୍ଷ୍ୟଭେଦୀ ୧୩ଶରସଂଘାତ ଦେଖି ଶିବାନୁଚରେ,
କଲ୍ପାନ୍ତ କାଳକ ଆସିଲା ବୋଲି ଭାବିଲେ ଡରେ
ବହିଗତ ନୋହି ସମର୍ଥ ହେଲେ ତାପସ ଶରେ ।
୧୪ଅକ୍ଲମ ଛେଦନ ଭେଦନ ପାଞ୍ଚନାଦ କର୍ମରେ,
ସଙ୍କୁଚିତ ଚନ୍ଦ୍ର ପ୍ରଭାରେ ଯଥା ପଙ୍କଜତତି,
ଲେଖ ହେଲେ ୧୫ଭଲୁ ସେନାଏ ପାର୍ଥ ମାଗଣେ ଅତି

୧ ବ୍ୟାଧ ବେଶଧାରୀ ୨ ଶୀଘ୍ର ୩ ଶିବ ୪ ଶିବ
୫ ଉତ୍ଥାନ ଚନ୍ଦ୍ର ୬ ଶିବ ୭ ଶରମାନ ୮ ସ୍ଥିରଭାବରେ
୯ ଅଗ୍ନି ୧୦ ଶରମାନ ୧୧ ଅର୍ଜୁନ ୧୨ ଶର
୧୩ ଶରସମୂହ ୧୪ ପରିଶ୍ରମରେ କ୍ଳାନ୍ତି ବୋଧ
ନକରିବା ଅଶ୍ରାନ୍ତ ୧୫ ଶିବ

ଏକ ମାତ୍ର ଅର୍କ ଯେପରି ଏକସ୍ଥାନରେ ରହି,
ନାନାସ୍ଥାନେ ଥିବା ଲୋକଙ୍କ ହେନେ ଦୃଷ୍ଟି ପଡଇ ।
ବାଣବର୍ଷି ପାର୍ଥ ସେପରି ରହି ଏକ ସ୍ଥାନରେ,
ଭୃଗୁ ୧ସେନାଙ୍କର ନୟନ ପଥେ ପଡ଼ିଲେ ଖରେ ।
ଗୃଧ୍ରଆଡ଼ୁ ଛିପ୍ର ବେଗରେ ଆସେ ତାପସଶର,
ଛିନ୍ନଭିନ୍ନ ହୋଇ ବ୍ୟାହତ ହେଲେ ଶିବାନୁଚର ।
କାହୁଁକିବା ବେଳେ ଏମାନେ ହୋଇ ନିରସ୍ତ୍ରବଳ,
ପୁରୋବର୍ତ୍ତୀରୁଦ୍ର ଦେଖି ତା ହେଲେ ରୌଦ୍ରେ ବିହ୍ୱଳ
ବାରବାର କଲେ ବାରଣ ଏବେ ଏମନ କହି,
"ନକର ବିନାଶ ଯଶକୁ ଯୁଦ୍ଧ ପ୍ରସରେ ରହି ।
ଦ୍ୱିଗୁଣିତ ତେଜ ଧରଣ ଚଣ୍ଡ ଭାସ୍କର କର,
ହସିଲା ଦେବେ ଦିଶନ୍ତି ତୁମ୍ଭ ୨ଅସ୍ତ୍ରବିସର ।
ପଶୁତୁଲ୍ୟ ତୁମ୍ଭମାନଙ୍କୁ ମଣି ଏହି ପୁରୁଷ,
ମୋ ସମ୍ମୁଖେ ନାଶକରୁଛି ତୁମ୍ଭ ଯଶ ପୌରୁଷ ।
ଶୂରାଭିମାନ ନ ଛାଡ଼ି ରହ ରଣ ଭୂଇଁରେ,
ପରାଙ୍ମୁଖ ହୋଇ ପଳାନ୍ତି କେତେବେଳେ କି ବୀରେ
କଳଙ୍କର ଦୋଷ ଲୁବ୍ଧ ଭର୍ତ୍ତା ରଖିଲା ପରି,
ଯାବନ୍ତ କୁକର୍ମ ଘୋଡାଇ ଦେବେ ସ୍ୱାମୀ ତୁମରି ।
୩ଈଶାନଙ୍କ ତୁଣ୍ଡୁ ଏକାଳେ ଶୁଣି ଉକ୍ତି ଅଭୟ,
ସନ୍ତାପିତ ୪ପିନାକିମାନଙ୍କ ସ୍ଥିର ହେଲା ହୃଦୟ ।
୫ବାର୍ଦ୍ଧଘ୍ନ ୬ବାର୍ଦ୍ଧଘ୍ନ ମଧ୍ୟରେ ଲଗେ ତୁମୂଳ ରଣ
୭ଏ ତୁମୂଳ ଦେଖୁଥାଆନ୍ତି ମୋଦେ ପ୍ରମଥଗଣ ।

## କିରାତାର୍ଜୁନ ଯୁଦ୍ଧ

୮ଅଜଗବେ ୯ଅଜଗବ ଖଞ୍ଜି କ୍ଷେପନ୍ତେ ୧୦ଭୈରବ
ଶୁଭିଲା ଶବ୍ଦ ରୌରବ୧୧ କମ୍ପିତ ବନ
୧୨କୃତହସ୍ତ ଧନଞ୍ଜୟ ନବହି କମ୍ପିତ ଭୟ
୧୩ଶବର ୧୪ସୁପର୍ବାଚ୍ୟୁ କରି ଖଣ୍ଡନ
ଗାଣ୍ଡୀବକୁ ବନ୍ଧି ସ୍କନ୍ଧରେ
ଭଣାଇନେ ସଞ୍ଚରିଲେ ଶଉର୍ଯ୍ୟଭରେ

୧ଶିବ ୨ଖଣ୍ଡାସମୂହ ୩ଶିବ ୪ସେନା ୫ଶିବ ୬ଅର୍ଜୁନ
୭କଳହ ୮ପିନାକ ୯ବାଣ ୧୦ଅଲୌକିକ ୧୧ଭୟଙ୍କର
୧୨ ଶର କ୍ଷେପଣେ ନିପୁଣ ୧୩ ଅର୍ଜୁନ ୧୪ବାଣ

ପ୍ରସନ୍ନ ସଦା ମାନସ ୧ସହଦେଜତର ସାହସ
ନଥିଲା ହୃଦେ ସାଧ୍ୱସ୨ ଶସ୍ତ୍ର ତାଡ଼ନେ
ଭ୍ରମିବାର ୩ଗୁଡ଼ାକେଶ ⁴ଅବଲୋକି ଗୁଡ଼ାକେଶ୫
୫ନିବେଶ କର ନିବେଶ ଅତି କୋପନେ
ଦେଖାଇ ନିଜର ବିହାନ୍ତ୬
କାଦମ୍ବକଦମ୍ବ ନ୍ୟାସ କଲେ ୭ଅଶ୍ରାନ୍ତ
୮କଲ୍ଲୋଳ ଷେବେ ୯ଅଚଳ ତଥ୍ୟ ରହ୍ୱି ଅଚଳ
ତୂଣୀରୁ ଙ୍କର ମଣ୍ଡଳ କାଢ଼ି ବହନ
ରୁନ୍ଧି ୧୦ଆତାଳ ପାତାଳ ତତକ୍ଷଣେ ଦେଲେଜାଳ
୧୧ପୁନବସୁ ୧୨ବିଶିଖାଳ କପିକେତନ୧୩
ହେଲା ସ୍ୱନେ ବଧିର କାନ
ବିଦ୍ୟୁନ୍ମାଳା ଭର ଶୋଭି ଶରବିତାନ୧୪
ଜଗଦୀଶ ମାର୍ଗଣ ଲଭି ବିକାଶ,
ଜଗଦୀଶ ମାର୍ଗଣ ଦେଲେ ବିକାଶ ।
ଜଗଦୀଶ ମାର୍ଗଣ ଅତି ବିକାଶ,
ଜଗଦୀଶ ମାର୍ଗଣ ସ୍ଥିତି ବିକାଶ ।

ଜଗଦୀଶ (ପୃଥ୍ୱୀପତି) ଅର୍ଜୁନଙ୍କର ଶରମାନ ବିସ୍ତାର ଲଭି (ବିକାଶ) (ଜଗତ୍ + ଈଶ) ଶିବଙ୍କର ଶର ଗୁଡ଼ିକୁ ବିନାଶ (ବିଷମଗତି) ଦେଲେ ଅର୍ଥାତ୍ ଭଗ୍ନାବସ୍ଥା ପାଇଲେ ଜଗଦୀଶମାରଗଣ (ଦାନବମାନେ ଅତି ବିକାଶ (ଉଲ୍ଲାସ) ଲଭକଲେ ଅର୍ଥାତ୍ ଆନନ୍ଦିତ ହେଲେ । ଜଗଦୀଶ ଶିବଙ୍କର ମାର୍ଗଣ (ଅନ୍ୱେଷଣକାରୀ) ଦେବର୍ଷିମାନେ ବିକାଶ — ଆକାଶରେ ରହିଲେ ଅର୍ଥାତ୍ ଯୁଦ୍ଧ ଦେଖିବା ଇଚ୍ଛାରେ ଆକାଶରେ ରହିଲେ ।

## ଦଶମ ସର୍ଗ

ଶୌର୍ଯ୍ୟବୀର୍ଯ୍ୟ ଦେଖି ଶ୍ୱେତବାହନର
୧୫ଅବତାର ବୋଲି ଭାବିଲେ ହର,
କଲେ କଷ୍ଟ ଏବେ ନାନା ଉପାୟରେ
କରିବାକୁ ହ୍ରାସ ଶକ୍ତି ତାଙ୍କର ।

"କ୍ଷୋଭାମାନଙ୍କର ହୁଂକାର ଶବ୍ଦ
ଶୁଣାଯାଉ ନାହିଁ ଆଜ ସମରେ,
ତେଜୟୁକ୍ତ ଶସ୍ତ୍ର ହୋଇ ଉଲ୍ଲସିତ
ଦିଶୁନାହିଁ କାହିଁ ବ୍ୟୋମଦେଶରେ ।
ପ୍ରକୃତ କିରାତ ନୁହେ ଏ ପୁରୁଷ
ରଖିଛି ପ୍ରଚ୍ଛନ୍ନ ନିଜ ଆକାର,
ଶଶଲାଞ୍ଛନର ଶିଖକୁ ଧାର୍ଯ୍ୟଣ
କରି ଦୃଶ୍ୟ ହୁଏ ଶୂନ୍ୟ ବିକାର ।
ଶସ୍ତ୍ର ଛିଦ୍ର ଅଳ୍ପ ଦେଖି ସୁଦ୍ଧା ଅତି
ପ୍ରହାର ବିଷୟେ ହୁଏ ଉଦ୍ୟତ,
ନିଜଛିଦ୍ର ବହୁ ଥିଲେହେଁ ତାହାର
ଘୋଡ଼ାଇ ଦେବାକୁ ସଦା ଜାଗ୍ରତ ।
ବିହାୟସେ ଯଥା କୁମୁଦବାନ୍ଧବ-
କାନ୍ତି ପ୍ରସ୍ଫୁରନ ସ୍ଫୂର୍ତ୍ତି କରଣେ,
ଶସ୍ତ୍ର ବୋଧନ ଅତିକ୍ରମେ କ୍ଷମ
ମୋ ଶକ୍ତି ହ୍ରାସ ବ୍ୟାଧ ମାର୍ଗଣେ ।
ଆକାଶ ମାର୍ଗକୁ ଦୁଇଖଣ୍ଡ କରି
ଦେବାପାଇଁ ଅବା ଏହି କିରାତ,
ଧାରି ଧାଇ ଧନୁ ଟାଣି ପରାକ୍ରମେ
କରାଉଛି ହୃଦେ ସାଧ୍ୱସ ଜାତ ।
ଭାବି ଏହାପରି ବାସବ ଏଥନ୍ତେ
ପ୍ରସ୍ୱାପନ ଅସ୍ତ୍ର କରି ପ୍ରହାର,
୧ସପ୍ତସପ୍ତିଙ୍କର ତେଜକୁ ଘୋଡ଼ାଇ
କରିଦେଲେ ଦଶଦିଗ ଅନ୍ଧାର ।
ସୁମେରୁ ଶୃଙ୍ଗରୁ ଅର୍କବିମ୍ବ ଛୁଟି
୨କିରୀଟ ମୌଳିରୁ ଜ୍ୟୋତି ବାହାରି,
ତମୋମୟୀ ଗୁପ୍ତା କରିଦେଲା ଦୂର
ଶଶଧର କାନ୍ତି ଊର୍ଦ୍ଧ୍ୱ ବିସ୍ତାରି ।
ନମ୍ର ଭ୍ରୂ ଅନନ୍ତ ପ୍ରସ୍ୱାପନ ଅସ୍ତ୍ର
ହଟିଲା ନର୍ମଳ ଘନ ପଟଳ,
ନାନାବର୍ଣ୍ଣ ଯୁକ୍ତ ଶାଣିତ ଆୟୁଧ
ଧରିଲେ ଏକାଳେ ଭୈରବ ବଳ ।

୧ ଅଲୌକିକ ୨ ଭୟ ୩ ଅର୍ଜୁନ ୪ ଶିବ ୫ ଯୁଦ୍ଧ ୬ ବିକ୍ରମ ୭ ସଦା ୮ ଯୁଦ୍ଧ ୯ ପର୍ବତ ୧୦ ସର୍ବସ ୧୧ଶିବ ୧୨ଶରସମୂହକୁ ୧୩ ଅର୍ଜୁନ ୧୪ଶରସମୂହ ୧୫ ବିଷ୍ଣୁ ଅବତାର

୧ ସୂର୍ଯ୍ୟ ୨ କିରୀଟ ମସ୍ତକରୁ

ପ୍ରସ୍ୱାପନ ଅସ୍ତ୍ର ହୁଅନ୍ତେ ଶିଥିଳ
ଭୁଜବୀର୍ଯ୍ୟଶାଳୀ କପିକେତନ,
ଭୁଜଙ୍ଗ ପାଶାସ୍ତ୍ର କରିଲେ ପ୍ରେରଣ
କରିବାକୁ ୧ତୂର୍ଣ୍ଣ ଶତ୍ରୁ ବନ୍ଧନ ।
ବିଷାଗ୍ନି ପ୍ରଯୁକ୍ତ ଭୁଜଗେନ୍ଦ୍ର ଭୟେ
ନଭସ୍ଥଳତ୍ୟକ୍ତ ୨ବକାଶବାଟ,
ଶତ ଶତ ଜିହ୍ୱା ବାରମ୍ବାର ଚାଳି
କଲେ ଅବରୋଧ ଭୁଜଗଆଠ ।
ସର୍ପମାନଙ୍କର ଉନ୍ନମିତ ଫଣା
ମଣ୍ଡଳୁ ନିର୍ଗତ ନିଶ୍ୱାସ ଧୂମ,
ସୂର୍ଯ୍ୟମଣ୍ଡଳକୁ ଗ୍ରାସ କଲାପରି
ହେଉଥିଲା କାର ମନେ ବିଭ୍ରମ ।
୩ଘୋରଘୋରତର ୪ତାର୍କ୍ଷ୍ୟ ସମୂହଙ୍କୁ
୫ତାର୍କ୍ଷ୍ୟ ମନ୍ତ୍ରଯୋଗେ କଲେ ବାରଣ,
୬ଚକ୍ରୀ ୭ତାର୍କ୍ଷ୍ୟଙ୍କର ରଣକଉଶଳ
କୌତୁକେ ଦେଖନ୍ତି ପ୍ରଥମଗଣ ।
ସର୍ପାସ୍ତ୍ର ପ୍ରଭାବ ରହୁ ଦେହେମେ
କ୍ରମେ କ୍ରମେ କ୍ଷଣେ ଲଭନ୍ତେ ହ୍ରାସ,
ଆଗ୍ନେୟାସ୍ତ୍ର କୃଷ୍ଣ କରିଲା ନିକ୍ଷେପଣ
ଜନମାଇ ବୈରିମନେ ବିସାସ ।
ତର୍କ ଗର୍ତ୍ତରେ ଊର୍ଦ୍ଧ୍ୱ ଅଧୋଦେଶେ
୮ଜ୍ୱାଳାଜାଲ ବ୍ୟାପି ପ୍ରାଣିନାଶନ,
ସମୀର ସଂଯୋଗେ ସ୍ଫୁଲିଙ୍ଗ ବିସ୍ତାର
ଲାଗିଲା ଜ୍ୱଳନ ଝଡ଼ି ଜ୍ୱଳନେ ।
ଗିଳ ଦେଲା ପରି ଦିଶନ୍ତେ ୯ଲୋକଙ୍କୁ
ପର୍ଜନ୍ୟାସ୍ତ୍ର ୧୦ଯତୀ କଲେ କ୍ଷେପଣ,
ତହିଁରୁ ବାହାରି ୧୧ବଳାହକମାଳ
ଅବିରଳ ଜଳ କଲେ ବର୍ଷଣ ।
ଆଷାଢ଼ ପାତରେ ନିର୍ବାପିତ ଶିଖା
ଜଳପାତ ପଡ଼ି ତପ୍ତ ଲୌହରେ,
ପାବକ ଶରୀରୁ ଉପୁଜାଇ ଧ୍ୱନି
ବାହୁଡ଼ିଲା ଧୂମ ଚଉଦିଗରେ ।

୧ ଶୀଘ୍ର ୨ ଆକାଶବାଟ ୩ ତୀବ୍ର ୪ ସର୍ପ ୫ ଗରୁଡ଼ ୬ ଶିବ ୭ ଅର୍ଜ୍ଜୁନ ୮ ଶିଖାସମୂହ ୯ ଜଗତ ୧୦ ତୀବ୍ର ୧୧ ମେଘ ସମୂହ, ଉନ୍ନମିତ-ଉପରକୁ ଉଠିଥିବା

ଆପନ୍ନ ବାରକ ଆଗ୍ନେୟାଦି ଅସ୍ତ୍ର
ହୁଅନ୍ତେ ସମାପ୍ତ ଇନ୍ଦ୍ରନନ୍ଦନ,
ଅବଲମ୍ବି ଧୈର୍ଯ୍ୟ ପୁନଶ୍ଚ ୧ଆହବେ
ନିବେଶିବା ଲାଗି କଲେ ଭାବନ ।
ନେତ୍ରଯୁଗଳରୁ ମହାସର୍ପ ବିଷ
ସଦୃଶ କ୍ରୋଧାଗ୍ନି ପଡ଼ୁଛି ଝରି,
ବାହାରିଲେ ୨ଯୂତେ ଅଦ୍ଧ ଶବ୍ଦ ପରି
ଗର୍ଜୁଥିବା ଚାପ ହସ୍ତରେ ଧରି ।
ଶମ୍ଭୁଙ୍କ ଧନୁରୁ ନିର୍ଗତ ଇଷୁଙ୍କୁ
ନିବାରଣ ଲାଗି ଦୃଢ଼ ମନରେ,
ଶୂରତ୍ୱ ଦେଖାଇ ଧରଣୀକୁ ଜିଷ୍ଣୁ
କଲେ ଆଚ୍ଛାଦନ ଶରଜାଳରେ ।
ଉତ୍କଟ ୩ଉତ୍କଟ- ପଟଳ ପ୍ରକ୍ଷେପି
୪ଗଣ୍ଡକସେନାଙ୍କୁ ଦେଲେ ସନ୍ତାପ,
ମାତ୍ର ୫ଖଣ୍ଡପରଶୁ ରହିଲେ ଅଖଣ୍ଡ
ଫଳଶୂନ୍ୟ ହେଲା ଜିଷ୍ଣୁ ପ୍ରତାପ ।
୬ହୈମନ ୭ସପ୍ତାଶ୍ୱ ତେଜପୁଞ୍ଜ ଯଥା
ନ ଦିଅଇ ବାଧା କେବେ ପ୍ରାଣୀଙ୍କୁ,
ତଥା ପୃଥାସୁତ ୮ଶିଖଣ୍ଡି ନିକ୍ଷେପ
ନ ଲାଗିଲା ବ୍ୟଥା ପଶୁପତିଙ୍କୁ ।
ନିଜ ସୈନ୍ୟଠାରେ ଅର୍ଜ୍ଜୁନଙ୍କ କୀର୍ତ୍ତି
ବଢ଼ାଇବା ଲାଗି ୯ତ୍ରିପୁରହର,
ଏକ ପଦେ ଏକ ଜୟ ପରାଜୟ
ରଣେନ୍ଦ୍ରପ୍ସା ଇଚ୍ଛା ଥିଲା ତାଙ୍କର ।
ବୃଷ୍ଟି କରୁଥିବା ରବି ଘନସ୍ୱନ
ହୁଅନ୍ତି ଶଙ୍କିତ ଗୋବୃନ୍ଦ ଯଥା,
୧୦କପିଧ୍ୱଜ ଧନୁ ଧ୍ୱନି ଶ୍ରବଣରେ
୧୧ଧ୍ରୁବଧ୍ୱଜଗଣ ତ୍ରସ୍ତେ ତଥା ।
ଜଳଜନ୍ତୁ ଦ୍ୱାର ନଦୀ ମୁଖାଗତ
ଜଳଜନ୍ତୁଜାଳ ଭକ୍ଷିତ ଯଥା,

୧ ଯୁଦ୍ଧ ୨ମେଘ ୩ ଶର ୪ ଶିବ ୫ ଶିବ ୬ହେମନ୍ତକାଳୀନ ୭ ସୂର୍ଯ୍ୟ ୮ଶର ୯ ଶିବ ୧୦ ଅର୍ଜ୍ଜୁନ ୧୧ ଶିବ ସେନାମାନେ

୧ପୁନବସୁ ପ୍ରଭ ଫାଲ୍‌ଗୁନ ପ୍ରେରନ୍ତ
୨ପୃଷତ୍କ ପ୍ରକର ପୀଡ଼ିତ ତଥା ।
ବାସବ ବିକ୍ରମ ବିକାଶ ସାକ୍ଷାତେ
କଲେ ବାଣବୃଷ୍ଟି ୩ଭୂରିବାର୍ଦ୍ଧ,
କିନ୍ତୁ ସେ ଗୁଡ଼ିକ ମର୍ମସ୍ଥାନେ ଆସି
ନବାଜିବା ଯୋଗୁଁ କ୍ଷିପ୍ତ ୪ବ୍ରାତ୍ୟାଦ୍ଧ ।
ନିଜ ସାୟକଙ୍କୁ ଉର୍ଦ୍ଧ୍ୱଗାମୀନ ଦେଖି
କୈଳାସନିବାସୀ କଷ୍ଟ ୫ମାର୍ଗଣ,
ନେଲେ ଅଯତ୍ନର କଉଶଳ କରି
୬ସୂର କଳପରି ବାରି ଶୋଷଣ ।
ନିଷଙ୍ଗରେ ଶରା ଶୂନ୍ୟ ହେବା ଦେଖି
ପୃଥାସୂନୁ ମନ ଅତି ବିଷଣ୍ଣ,
ଚେତନୋହନ୍ତ ପ୍ରାଣପରି ଥିଲା
ସେ ତୂଣୀର ଦେଖି ସ୍ୱାମୀ ୭ଦ୍ୱାସନ ।
ଅନନ୍ତର ୮ଖିରୁ ଅର୍ଜ୍ଜୁନ ଗାତ୍ରରୁ
ମାଯାନର କଞ୍ଚୁକ ନେଲେ ଛଡ଼ାଇ,
ଧନୁର୍ମୁକ୍ତ ଶିବ ଶରେ ସେ ପୀଡ଼ିତ
ହସିଲେ ଏକାକ ପ୍ରଭୁ ବଡ଼ାଇ ।
ପୁନଃ ପୁନଃ ହାତି କଲେହେଁ ନିବେଶ
ନଥିଲ ତୂଣୀରେ କଛୁ ୯ପୃଷତ୍କ
ଭୁଜବଳେ ତହୁଁ ଆରମ୍ଭିଲେ ରଣ
ବୁଝି ନପାରି ସେ ୧୦ଧୂର୍ଜ୍ଜଟିକୁ ।
ସାତ୍ତ୍ୱଗୁଣଯୁକ୍ତ ତାପସଙ୍କୁ କ୍ଷଣ
ବଜ୍ର ଅସ୍ତ୍ରାଘାତେ କରନ୍ତି କ୍ଷତ,
ପୁଷ୍ପିତ କିଂଶୁକ- ପରି ଦିଶୁଥିଲ
୧୧ଅନାରତ ଦେହୁ ବୋହି ରକତ ।
ଅନନ୍ତର ଧନ୍ୱ୧୨ କ୍ରୋଧେ ଧରିଲେ
ପିଟି ଗୁନ୍ଫ କରି କେଶରେ ଧନ,
କୁଳିଶ ସଦୃଶ କଠିନ ଗାଣ୍ଡୀବ
ଉଠାଇ ପିଟିଲେ ୧୩ଘନବାହନ ।
ସେ ଗାଣ୍ଡୀବ ଧନୁ ଅବ୍ୟକ୍ତ ଆତ୍ମାରେ
ଅନ୍ତର୍ଲୀନ ହେବା ଦେଖି ଅର୍ଜ୍ଜୁନ,

ଭଗ୍ନ ମନୋରଥ ହୋଇ ରଣ ସ୍ଥଳେ
ଦୁଃଖରେ ନିକଟେ ହେଲେ ମଗନ ।
ଧୃତ ଅନ୍ତର୍ଦ୍ଧାନ ପରେ ସବ୍ୟସାଚୀ
୧ଶଙ୍କୁର ଦୁର୍ଲଙ୍ଘ୍ୟ ୧ଙ୍କାରକ ଧରି,
ଜନ୍ମାଇଲେ ଭୟ ପ୍ରମଥଙ୍କ ମନେ
ହାଟକ ଗଡ଼ରେ ଘୋଷେ ସଞ୍ଚରି ।
ଅନ୍ତରୀକ୍ଷେ ପୁଣି ପ୍ରତିବମ୍ବି ଜଳେ
ହେଉଥାଏ ଦୃଶ୍ୟ ସପ୍ତାଶ୍ୱ ଯଥା,
ଦ୍ୱିମୂର୍ତ୍ତି ରୂପରେ ନଭେରଣ ସ୍ଥଳେ
ଦେଖିଲେ ପ୍ରମଥେ ସିତାଶ୍ୱ ତଥା ।
ଜିଷ୍ଣୁ ଧୃତ ୨ଙ୍ଗର ୩ଜପୂର୍ତ୍ତ ମାର୍ଗଣେ
ଖଣ୍ଡ ହୋଇ ଚଳେ ଉଡ଼ନ୍ତେ ଖରେ,
ଗୋଟାଇ ପାଷାଣ ପୋପାଡ଼ନ୍ତେ ତାଙ୍କୁ
ନିବାରିଲେ ୪ଭବ ଅମୋଘ ଶରେ ।
ନୋହି ସର୍ଗହୀନ ବାସବନନ୍ଦନ
ମାଂସ୍ତ୍ର ବନରୁ ତରୁ ଉପାଡ଼ି,
ହୋଇ ବେଗଗାମୀ ୫ଘୋରଘୋରତର
ଉତ୍ତମାଙ୍ଗ ପରେ ଦେଲେ କାହ୍ନଡ଼ି ।
୬ଈଶାନ ତକ୍ଷଣେ ବୃକ୍ଷମାନଙ୍କର
ବଲ୍‌କଳ ପଲ୍ଲବ କୁସୁମ ନେଇ,
କଲେ ବଳି ପୂଜା ରଣଭୂମିସ୍ଥିତ
ଗୀର୍ବାଣ ମାନଙ୍କୁ ଚନ୍ଦନ ଦେଇ ।
ତଦନ୍ତେ ଖାଣ୍ଡୀବୀ ଶୀଘ୍ରବାଣବେଗ
ନମାନି ପ୍ରବେଶି ପ୍ରତିମୁଖରେ,
ନିଜ ମୁଷ୍ଟିଦ୍ୱୟ ଛେଚିଲେ ସୁଦୃଢ଼େ
୭ଜଟାଧରଙ୍କର ଉର ଦେଶରେ ।
୮ଭଗାତ୍ମ ହୋଇ ଉଦାର ଅବିନୟ ବ୍ୟବହାର
ପୁନଶ୍ଚ ଉରେ ପ୍ରହାର ବାସବଙ୍କର
ସେନ୍ଦ୍ର ବଶ ଗଲେ ସର୍ବ ମାନସେ କୋପ ନବହି
ରହନ୍ତା କି କେବେ ମଣି ଧର୍ଗିଲେ ହର
ଭକତର ଶୁଦ୍ଧି ଗୁହାରି
ଭକ୍ତି ଯୋଗୁ ଭବାର୍ଣ୍ଣବୁ କରନ୍ତି ପାରି ।

୧ ଶିବ ୨ ଶର ୩ ଶିବ ୪ ଅର୍ଜ୍ଜୁନ ୫ଶର ୬ସୂର୍ଯ୍ୟ
୭ ଦୁର୍ଭାଗ୍ୟ ୮ ଶିବ, ଜଳଜନ୍ତୁ-କୁମ୍ଭୀର ୯ ଶର
୧୦ ଶିବ ୧୧ ସଦା ୧୨ ଅର୍ଜ୍ଜୁନ ୧୩ ଶିବ

୧ ଖଣ୍ଡା ୨ ଖଡ୍ଗ ୩ ଶିବ ୪ ଶିବ ୫ ଶିବ
୬ ଶିବ ୭ ଶିବ ୮ ଶିବ

## ଏକାଦଶ ସର୍ଗ

ଅର୍ଜୁନ ମୁଷ୍ଟି ପ୍ରହାରନ୍ତେ ଶଙ୍କର,
ଧନୁ ତୂଣୀର ତେଜି ଲୌହ ମୁଦ୍‌ଗର ।
ସଦୃଶ ବଦ୍ଧ ମୁଷ୍ଟି କରି ରୋଷରେ,
୧ସ୍ତୁକ ମାଡ ଦେଲେ କୃଷ୍ଣ କନ୍ଧରେ ।
୧ବଉ ମୁଷ୍ଟି ଧ୍ୱନ ହୋଇ ଘୂର୍ଣ୍ଣିତ,
ପାଷାଣ ଶବ୍ଦପରି ପ୍ରତିଧ୍ୱନିତ ।
ତହିଁରୁ ଉପୁଜିବା ତୀବ୍ର ଯାତନା,
ସହିଲେ ସବ୍ୟସାଚୀ ହୋଇ ଉନ୍ମନା ।
ସୁଖ ଦୁଃଖ ଗଣନା ବୀରଚରଣେ,
ନଥାଏ କେବେ ହେଲେ ରଣ ପ୍ରାଙ୍ଗଣେ ।
ଅସାଧାରଣ ଧୈର୍ଯ୍ୟଧାରନ୍ତି କୃଷ୍ଣ,
ଯୁଝିବା ଲାଗି ପୁଣି ହେଲେ ଉଦ୍ୟତ ।
୧ଶଶୀକଳାମଣ୍ଡଳ ବାହୁ ଯୁଗଳ,
ଧରିଲେ ନିଜ ଭୁଜେ ଭୂତେଶ ଚଞ୍ଚଳ ।
୨ହିସ୍ରାନ୍ତକ ଉଠି ଯାନ୍ତେ ନଭକୁ,
ଧରିଲେ ତତକ୍ଷଣେ ତାଙ୍କ ପାଦକୁ ।
ପାଦ ଗ୍ରହଣ ହେତୁ ୩ଭର୍ଗ ତୃପତ,
ଆଲିଙ୍ଗି ପାର୍ଥେ ହେଲେ ଅତି ମୁଦିତ ।
୪ଶବର ରୂପ ଛାଡି ଦେଇ ୫ଶବର,
ଧରନ୍ତେ ନିଜ ରୂପ ଶିବ କୁମାର ୬
ପ୍ରଣାମ କଲେ ଧରି ପଦଯୁଗଳ,
ପଡ଼ୁଛି ନେତ୍ରୁ ଝରି ଆନନ୍ଦ ଜଳ ।
ପୂର୍ବପରି ନିଷଙ୍ଗ ନିଜ କାନ୍ଧରେ,
ଥିବାର ଦେଖିଲେ ସେ ପୂର୍ଣ୍ଣ ଶରରେ ।
ବିସ୍ମିତ ହୋଇ ଆରମ୍ଭିଲେ ସ୍ତବନ,
କରିବା ଲାଗି ତାଙ୍କ ମନ ପ୍ରସନ୍ନ ।
ବର୍ଦ୍ଧିଷ୍ୟମାଣ ହଂସେ ପକ୍ଷୀତରି ଭେ,
ବ୍ୟୋମକୁ ଆଲିଙ୍ଗନ କରନ୍ତେ ପରା ।

୧ ଶିବ ୨ ଶିବ ୩ ଶିବ ୪ ବ୍ୟାଧ ୫ଶିବ ୬ଅର୍ଜୁନ

## ଅର୍ଜୁନଙ୍କ ସ୍ତୁତି

ଅପରାଜିତ ହେ, ଅନାଦ୍ୟନନ୍ତ,
ବିଦ୍ୟମାନ ସୃଷ୍ଟି ସର୍ଜନା କାନ୍ତ ।
ଅଟ ଛାର ତୁମ୍ଭେ ସ୍ୱୟଂ ରକ୍ଷକ,
ଦୁଷ୍ଟ ପୁରୁଷର ମୁକ୍ତି ଦାୟକ ।
ବନସ୍ପ ପ୍ରଣାମ ନକରି ଜନେ,
ହେଉଛନ୍ତି ଘାଣ୍ଟି ସଦା ଜୀବନେ ।
କାମକ୍ରୋଧ ଲୋଭ ମୋହ ମାତ୍ସର୍ଯ୍ୟ,
ବଡରିପୁ ହେତୁ ନୁହେ ଆଶ୍ଚର୍ଯ୍ୟ ।
ସର୍ବଂସହ୍ୟକାଶ ହିଂସା ଚକ୍ରର,
ଅଣୁଅଛି ଲୋକ ଶୋକସମ୍ଭାର ।
ଦମିଅଛ ଶତ୍ରୁ ଯୋଗବଳରେ,
ବଧୂଯୁକ୍ତ ହୋଇ ଅର୍ଦ୍ଧ ଅଙ୍ଗରେ ।
ଅନିଷ୍ଟ ନିବୃତ୍ତି ଇଷ୍ଟ ପ୍ରାପତ,
ଯେତେ ତୁମ୍ଭଠାରେ ଥିଲେ ଭକତ ।
କରି ଅନୁଭବ ଜନ୍ମଯାତନା,
ସେବକରେ ଭକ୍ତ ମୋକ୍ଷ କାମନା ।
ନିଷ୍ଠୁର ଆପଣ ପ୍ରଣତ ଜନେ,
ଲଭନ୍ତି କରୁଣା ସ୍ନେହେ ଲୋଚନେ ।
ଜଗତ୍‌ବନ୍ଦ୍ୟ ବ୍ରହ୍ମା ପ୍ରାତଃ ସଞ୍ଜରେ,
କରନ୍ତି ବନ୍ଦନା ଭକ୍ତିଭରେ ।
ପରାର୍ଥ ସାଧନେ ତୁମ୍ଭ ତତ୍ପର,
ସ୍ୱାର୍ଥ ନ୍ୟାସୀକ ତା ନୁହେ ଗୋଚର ।
ତୁମ୍ଭର ବିଦ୍ୱେଷୀ ନରକ ଗତି,
ଲଭୁଅଛି ସିନା ନ ଶିଖି ନତି ।
ତତ୍ତ୍ୱଜ୍ଞାନ ହୀନ ପୁରୁଷ ଭବେ,
ତୁମ୍ଭର ମହିମା ନଜାଣେ ଲବେ ।
ଜାତିଭେଦ ନାହିଁ କାହାରିଠାରେ,
ସମଭାବାପନ୍ନ ତୁମ୍ଭେ ସଂସାରେ ।
ତୁମ୍ଭକୁ ଯେ ସେବେ ଭକ୍ତି ପୂର୍ବକ,
ହୁଅ ତାର ତୁମେ ମୁକ୍ତିଦାୟକ ।
ସ୍ୱକର୍ମେ ସାଧକ ଲଭେ ନିସ୍ତାର,
ଦୋଷାଦୋଷ ତୁମେ କର ବିଚାର ।

ଗର୍ବ ଚରମ ଅଙ୍ଗାଭରଣ,
ଜ୍ୱଳନ୍ମଣି ଅହି କଟିଭୂଷଣ ।
ଶବଭସ୍ମ କରଅଛ ଚନ୍ଦନ,
ମସ୍ତକୁ ନର୍ଗତ ଶଶିକରଣ ।
ପାପପୁଣ୍ୟ କର୍ମେ ସାକ୍ଷୀସ୍ୱରୂପ,
ନଜାଣି ମଣିଷ କରେ ବିଦ୍ରୂପ ।
ତୁମଠାରେ ପ୍ରୀତିଯୁକ୍ତ ମଣିଷ,
ଲଭଇ କୈବଲ୍ୟ ହେ ଜଗଦୀଶ ।
ନୁହ ଉପମେୟ ବା ଉପମାନ,
କରନ୍ତି ଯୋଗୀଏ ତୁମ ସନ୍ଧାନ ।
ନଥିବାରୁ ତୁମ ଉତ୍ପତ୍ତିନାଶ,
"ନିତ୍ୟ" ବୋଲି ଭବେ ପାଅ ବିକାଶ ।
ଦୁରାତ୍ମାମାନଙ୍କ ଆପଣେ ଗତି,
ପଶୁଛୁ ଶରଣ ଯେବେ ବିନତି ।
ହେ ଈଶ, ମୋ ଦୋଷ କର ମାର୍ଜ୍ଜନ,
ଅନୁକମ୍ପା କରି ହୁଅ ପ୍ରସନ୍ନ ।
ଶବ୍ନାଟକାଙ୍କ ଅସ୍ତ୍ର ପ୍ରଦାନ,
କର ଅର୍ଜ୍ଜୁନର ରଖ ସମ୍ମାନ ।
ଶ୍ୱେତବାହନଙ୍କ ଶୁଣି ବଚନ,
ଆଲିଙ୍ଗନ କରି ଦେଲେ ସାନ୍ତ୍ୱନା ।
ଧନୁର୍ବେଦ ପାଠ ତାଙ୍କୁ ପଢ଼ାଇ,
ପାଶୁପତ ଅସ୍ତ୍ର ଦେଲେ ବଢ଼ାଇ ।
ଇନ୍ଦ୍ରାଦି ପ୍ରବେଶି ଶମ୍ଭୁ ଆଜ୍ଞାରୁ,
ନାନାଅସ୍ତ୍ର ଦେଇ ଗଲେ ସେଠାରୁ ।
ଆଶିଷ ପ୍ରଦାନ କରି ମହେଶ,
ଲେଉଟିବା ଲାଗି ଦେଲେ ଆଦେଶ ।

## ଦ୍ୱାଦଶ ସର୍ଗ

ଅଭୀଷ୍ଟ ସାଧନେ ନିର୍ଭୟେ ଫାଲ୍‌ଗୁନ
ଗମନାନ୍ତେ ଏକୁଟିଆ,
ଅନ୍ୟାନ୍ୟମାନଙ୍କୁ ରହିବାକୁ ତହିଁ
ବୋଧହେଲା ନିରୁଟିଆ ।
ଗନ୍ଧମାଦନକୁ ଯିବା ଅଭିଳାଷେ
ଛାଡ଼ି ହାଇତ କାନନ,
ଦାୟୂବନ୍ଧୁ ସହ ୧ଧାର୍ତ୍ତରାଷ୍ଟ୍ରଙ୍କ ସେବେ
ଗଲେ ୨ଶ୍ୱସନନନ୍ଦନ ।
ଅର୍ଜ୍ଜୁନ ଦର୍ଶନ ମାନସେ ସେମାନେ
ଗଲାବେଳେ ପଦବ୍ରଜେ,
ବହନ୍ତେ ପବନ ହୋଇଗଲା ବୋଲି
ଅବଯୂବ ୩ରଜବ୍ରଜେ ।
ଯାଉଁ ଯାଉଁ ବ୍ରଜେ (ପଥେ) ପୁଲିନ୍ଦାଧିପତି
ଦେଖି ସ୍ୱରାଜ୍ୟପ୍ରାନ୍ତରେ,
ସେମାନଙ୍କୁ ନେଇ କଲେ ଯଥୋଚିତ
ସତ୍କାର ଅତି ଆଦରେ ।
ପରଦିନ ପ୍ରାତେ ହିମାଦ୍ରି ଶିଖରେ
ପଡ଼ନ୍ତେ ୪ରବିତାପେ,
ବାହାରି ସେମାନେ ବିଷମ ଦୁର୍ଗମ
ମାର୍ଗେ କରିଲେ ଗମନ ।
ପ୍ରବେଶ କରନ୍ତେ ଗନ୍ଧମାଦନରେ
ବହିଲା ବାୟୁ ସହସା,
ଦେଖୁ ଦେଖୁ ଧୂଳି ଶିଳାବୃଷ୍ଟି ସହ
ହେଲା ଅଘୋର ବରଷା ।
ବାତାହତ ୫ରତ- ପର୍ଣ୍ଣୀ ପରି କମ୍ପି
ପଡ଼ନ୍ତେ ପାଞ୍ଚାଳୀ ତଳେ,
ନକୁଳ ସଶୋକେ ଉଠାଇ ତାହାଙ୍କୁ
ଧଇଲେ କୋଳେ ତତ୍କାଳେ ।
ସହଦେବ ଭୀମ ଆସିଲେ ଦଉଡ଼ି
ବିବଶା ଦେଖି ପାଞ୍ଚାଳୀ,
ବିଳପିଲେ ଅତି ୬ପଚ୍ଚରଣ୍ଡ ଭୂପ
ପୂର୍ବକଥା ଘୋଳି ଘୋଳି ।
ଦୁଗ୍‌ଧଫେନ ପରି କୋମଳ ଶଯ୍ୟାରେ
କରନ୍ତି ଯେହୁ ଶୟନ,
ଧରଣୀଶାୟୀ ହୋଇ ଏବେ ସେ କପରି
ହେଉଛନ୍ତି ଅତି ବିବର୍ଣ୍ଣ ।
୭ସଶଳ୍ୟ ଗାତ୍ରକୁ ଆଉଁଷି ମାରୁତି
ତୁଳନ କଲେ ବ୍ୟଜନ,

---

୧ ଦ୍ରୌପଦୀ ୨ ବାୟୁନନ୍ଦନ ୩ଧୂଳିସମୂହ ୪କିରଣ
୫ କଦଳୀ ୬ ଯୁଧିଷ୍ଠିର ୭ ପୀଡାଯୁକ୍ତ

ଚାହିଁବାରୁ ଚେତା ଅଗ୍ରଜ ସଧୀରେ
ଦେଲେ ତାଙ୍କୁ ଆଶ୍ୱାସନ ।
ଗନ୍ଧମାଦନର ଉତ୍ତୁଙ୍ଗ ଶୃଙ୍ଗକୁ
କରିବାକୁ ଆରୋହଣ,
ବହୁ ବାଟ ଚାଲି ବର୍ଷାମାଡ଼ ଖାଇ
ଅବଶ ପାଣ୍ଡବଗଣ ।
ହୋଇ ଉପଗତ ଘଟୋତ୍କଚ ଦୈତ୍ୟ
କରନ୍ତେ ଭୀମ ସ୍ମରଣ,
ପ୍ରଣମି ସକଳ ମହାଆବେଗରେ
କଲେ ଜିଜ୍ଞାସା କାରଣ ।
କାନ୍ଧେ ନେବା ଲାଗି ଶ୍ରାନ୍ତା ୧ପାଞ୍ଚାଳୀ
ବୋଲନ୍ତେ ୨ପ୍ରେମନନ୍ଦନ,
କରନ୍ତେ ଶ୍ରବଣ ମହା ମୋଦଭରେ
କରିଲ ତାଙ୍କୁ ବହନ ।
ବର୍ଷାକାଳୀନ କମନୀୟ ଶୋଭା
ଦେଖି ଦେଖି ଅରଣ୍ୟର,
ଯାଉଥିଲେ ବୀରେ ପବନଗତିରେ
ହୋଇ ଲସରପସର ।
ପ୍ରମତ୍ତ ୩ଶୁଣ୍ଡାଳ ଶୁଣ୍ଡ ଟେକି ତାର
ଭାଙ୍ଗୁଥିଲା କାହିଁ ଡାଳ,
କେଶରୀ ଗର୍ଜ୍ଜନ ଶୁଣି ଘନ ଘନ
ବ୍ୟାଘ୍ରକ ପକାଏ ତାଳ ।
କଳ କଳ ନାଦେ ଯାଉଥିଲା ବହି
କାହିଁ ବା ଝରଣା ଜଳ,
୪ସାରଙ୍ଗ ସାରଙ୍ଗୀ ଲଟିରୁ ବାହାରି
ଖାଉଥିଲେ କାହିଁ ୫ଦଳ ।
୬ଶାଡଧାରେ ରମି ମୁଣ୍ଡ ପୋତି ପୋତି
ଅରଣା ମହିଷ ଦଳ,
ଚରୁଥିଲେ ସୁଖେ ବସ୍ତ୍ର .ଶ୍ୱ ସଙ୍ଗେ
ଦେଖି ଭୂଇଁ ସମତଳ ।
ଖାଉଥିଲେ ଶାଖାମୃଗ ଠାବ ଠାବ ଡାଳେ
୭ପତତ୍ରୀଏ ପକ୍ୱଫଳ,

ଚଞ୍ଚୁକୁ ପ୍ରସାରି ଥରେ ଥରେ ପିଇ
ନବ ବର୍ଷାର ଜଳ ।
୮କଳପ୍ରିୟ ଡେଇଁ ଏଡାଳୁ ସେ ଡାଳ
ହୁଁକାର ଶବଦ କରି,
ଖାଉଥିଲେ ବସି ଦଶନ୍କେ ବୃକ୍ଷରେ
ମୋଦେ ଜାମୁଫଳ ଧରି ।
ଧାଡି ଧାଡ଼ି ହୋଇ ପାଦପନିଚୟ
ବେଢ଼ାଇ ଲତାବସନ,
ଚରନ୍ତି ହରଣ ପଥ ଦାରୁଣରେ
ପଥିକ ନୟନ ମନ ।
ବିଚିତ୍ର ୯ଶିଖଣ୍ଡୀ ୧୦ଶିଖଣ୍ଡୀର ଦେଖି
୧୧ଶିଖଣ୍ଡିମା ଆଗ୍ରହରେ,
ଧରିବାକୁ ତାକୁ କରନ୍ତେ ଉଦ୍ୟତ
ବସିଲା ଶିଖିଶିଖରେ ।
ନରନାରାୟଣ ଆଶ୍ରମ ୧୨ନିକଟ
ହେବାରୁ କାନ୍ଧୁ ଓହ୍ଲାଇ,
ଗଲେ ପଦବ୍ରଜେ ୧୩ଭଦ୍ରା ଅପଘନେ
ଧବଳବାସ ଗୁଡାଇ ।
ବନ୍ଧୁରର ଦେଖି ରହିଲେ ସେଠାରେ
ଧନଞ୍ଜୟ ଦରଶନେ,
ମହର୍ଷିଏ ଆସି ପାଣ୍ଡୁନନ୍ଦନଙ୍କୁ
ତୋଷିଲେ ଆଶୀର୍ବଚନେ ।
ଛଅ ଦିନଅନ୍ତେ ଶତଦଳଟିଏ
ମରୁତେ ହୋଇ ଆନୀତ,
ଈଶାନଦିଶାରୁ ପାଞ୍ଚାଳୀ ସମ୍ମୁଖେ
ଭୂତଳେ ହେଲା ପତିତ ।
ଗୋଟାଇ ତାହାକୁ ସୁରୁଚିର ଦେଖି
୧୪ପୃଥୁଶୃଙ୍ଗୀକ ଦେଖାଇ,
"କହିଲେ କେତୋଟି ଏପରି ମୋଲାଗି
କରି ଆନୟନ ଯାଅ" ।
ବୋଲି ଏହାପରେ ୧୫ମନ୍ତ୍ୟଯଜ୍ଞଜନା
ଗଲେ ସ୍ୱାମୀ ୧୬ନିକଟ,

୧ ଦ୍ରୌପଦୀ ୨ ବାୟୁନନ୍ଦନ ଭୀମ ୩ ହାତୀ ୪ହରିଣ
୫ ପତ୍ର ୬ ଦୁବଘାସ ୭ ପକ୍ଷୀମାନେ

୮ କପି ୯ ମୟୂର ପୁଚ୍ଛ ୧୦ ମୟୂର ୧୧ଦ୍ରୌପଦୀ
୧୨ସମୀପ ୧୩ଦ୍ରୌପଦୀ ୧୪ଭୀମ ୧୫ ଦ୍ରୌପଦୀ୧୬ସମୀପ

୧ସ୍ୱକସୁତ ଏଣେ    ୨ସ୍ୱକ ଆହରଣେ
ପ୍ରସ୍ଥାଣ କଲେ ୩ଅଞ୍ଜସା ।
ଶଇଳ ଉପରେ    ବିଚରଣ କରି
ଚୌଦିଗେ ନେତ୍ର ବୁଲାଇ,
ହେଲେ ୪ପୂର୍ବସର    ଆଉ କେତେଦୂର
ସନ୍ଧାନ ତାର ନପାଇ ।
୫ଅୟନେ ଅୟନେ    ଦେଖି ଅଦ୍ରି ଶୋଭା
ଲଭିଲେ ପରମତୋଷ,
ବନ୍ୟଜନ୍ତୁଗଣ    ହୋଇ ଭୀତତ୍ରସ୍ତ
କଲେ ଅନୁଭବ ୬ପ୍ଲୋଷ ।
ଯାଇ କିଛୁଦୂର    ସରୋବରଟିଏ
ପାବନ କଲେ ଦର୍ଶନ,
ତୀରପଟେ ଯାର    ଘେରି ରହିଥିଲା
ସୁରମ୍ୟ ୭ଶିଳୀନ୍ଧ୍ରବନ ।
ପବମାନ ଯୋଗେ    ଦୋହଲି ୮ପଲାଶ
ଝଞ୍ଜୁଥିବା ପରସର,
ହେଉଥିଲା ବୋଧ    ସେ ଦୃଶ୍ୟ ଦର୍ଶନେ
ମାନସେ ଆଗନ୍ତୁକଙ୍କ ।
ଶୁକ୍ଳ ନୀଳବର୍ଣ୍ଣ    ୯ଶତଚ୍ଛଦଦଳ
ଫୁଟି ସେହି ସରୋବରେ,
ଆରମ୍ଭିଲେ କ୍ରୀଡ଼ା    ମହାବଳବନ୍ତ
୧୦ବୃକୋଦର ହରଷରେ ।
ବହୁକ୍ଷଣ ପରେ    ବନରୁ ବାହାରି
କରନ୍ତେ ମହାଶବଦ,
କେଶରୀ ୧୧କୁଞ୍ଜର-    ମାନଙ୍କୁ ସେ ନାଦ
ହେଲା ଅତି ଭୟପ୍ରଦ ।
ସେ ୧୨ମୋଚକ ବନେ    କରୁଥିଲେ ବାସ
ହନୁମାନ କପିପତି,
ଭୀମ ଆସିବାର    ବାରପାରି ସେହି
ଅବରୋଧିଲେ ସରଣି ।
ପ୍ରସୁପ୍ତ ପରାଏ    ୧୩ପ୍ରସୂବନେ ରହି
ପୁଚ୍ଛ ପିଟି ଥରେ ଥରେ,

ଚମକାଉ ଥିଲେ    ମହା ବନ ଦେଶ
ଶଙ୍କାହୀନ ହୃଦୟରେ ।
ସେ ନାଦ ଶ୍ରବଣେ    ୧୪ପୃଦ୍ଧୃଶୃଙ୍ଗୀତନୁ
ହେଲା ଅତି ରୋମାଞ୍ଚିତ,
ଜାଣିବା ନିମିତ୍ତ    ଦମ୍ଭେ ଉମ୍ଭାବନେ
ପ୍ରବିଷ୍ଟ ହେଲେ ଭରତ ।
ପାଚିଲା କଦଳୀ    ଦେଖି ହେଲେ ଭୋଳ
ମୋଦେ ତୋଳି ତୋଳି ଜବେ,
ଦେଉଥିଲେ ଗିଳି    ବୁଭୁକ୍ଷିତ ଭଳି
ନଜର କାହାକୁ ଲବେ ।
ଇତସ୍ତତ ତହିଁ    ବୁଲି ବୁଲି ଶେଷେ
ଦେଖିଲେ ସେ କପିବର,
୧୫ପବରୁକ ପରେ    ବସିଥିଲେ କରି
ସଙ୍କୁଚିତ କଳେବର ।
ତହୁଁ ୧୬ବୃକୋଦର    ୧୭ଭୁଞ୍ଜଘୋଷ ତୁଲ୍ୟ
କରିବାରୁ ମହାନାଦ,
ସେ ଶବଦ ଶୁଣି    ୧୮ମହାନାଦଚୟ
ମଣିଲେ ମହା ପ୍ରମାଦ ।
ବୋଇଲେ ୧୯ଆନିଳ    ୨୦ଆନିଳି ଅନାଇଁ
ଛଳନାପୂର୍ଣ୍ଣ ବାକ୍ୟରେ,
"ମାନବ ଜାତିରେ    ଜନମି ସଂସାରେ
କୃପା ନାହିଁ ହୃଦୟରେ ।
୨୧ଆରାମେ ଆରାମେ    ଶୋଇଥିଲୁ ଆମ୍ଭେ
ହୋଇ ଜରା ପ୍ରପୀଡ଼ିତ,
କେଉଁଠାରୁ ଆସି    ୨୨ପ୍ରସଭେ ପ୍ରବେଶି
କଲ ମୋତେ ୨୩ପ୍ରବୋଧିତ ।
ଶିଷ୍ଟାଚାର ଲଙ୍ଘି    ବାଳକ ସଦୃଶ
ପଶିଲ ପରିବାସରେ,
ଯା ଯୋଗେ ଲେପିଲ    ଲାଞ୍ଛନ ଜୀବନେ
ଆଶ୍ରିତ ହୋଇ ସ୍ୱାର୍ଥରେ ।
ଶୟାନ ପ୍ରାଣୀଙ୍କି    ଉଠାଇବା କେହି
ଅଟଇ ମହା ଅଧର୍ମ,

୧ ଭୀମ ୨ ପଦ୍ମ ୩ ଶୀଘ୍ର ୪ ଅଗ୍ରସର ୫ ପଥ ୬ କ୍ଳେଶ ୭ କଦଳୀବନ ୮ ପତ୍ର ୯ ପଦ୍ମ ୧୦ ଭୀମ ୧୧ ହାତୀ ୧୨ କଦଳୀ ୧୩ କଦଳୀ

୧୪ ଭ୍ରମ ୧୫ ପଥରେ ୧୬ ଭୀମ ୧୭ ବଜ୍ର ୧୮ ସିଂହ ବାଘ ୧୯ ହନୁମାନ ୨୦ ଭୀମ ୨୧ ଉପବନରେ ୨୨ ବଳକାରେ ୨୩ ଉଠେଇଲ

ମାତ୍ର ବଳଦର୍ପେ ଆରମ୍ଭିଲ ସିନା
ଏତାଦୃଶ ଦୁରକର୍ମ ।
କହି ଏ ବଚନ ତହୁଁ ହନୁମାନ
ଦେଲନ୍ତେ ପରିଚୟ,
ଦୁହିଁଙ୍କ ମଧ୍ୟରେ ବିସ୍ମୃତ ସମସ୍ତ
ହେଲା ବଚନ ୧ବିନିମୟ
ହସି ହସି ହନୁ ବୋଇଲେ ଏ ୨ପଥରେ
ଯିବାକୁ କରିଛ ମନ,
ନମାନି ଗମନ କଲେ ଏ ଅପଥେ
ଘଟିବ ତୁମ ନିଧନ ।"
ଘଟିଯାଉ ଯାହା ଛାଡ଼ିଦିଅ ୩ଅଧ୍ୱ
ଅନ୍ୟଥା ପାଇବ କ୍ଳେଶ,
ବୋଲି ଉତ୍ତରନ୍ତେ ପାବନି, ଭାଷିଲେ
ପ୍ରତ୍ୟୁତ୍ତରେ ୪ପ୍ଲବଗେଶ ।
ବ୍ୟାଧିଯୁକ୍ତ କୁଷ୍ଟ ୫ଅଥର୍ବ ପୁଚ୍ଛକୁ
କରିବାକୁ ୬ଉଦ୍ଧାରିତ,
ବିବିଧ ଉପାୟେ କରିଲେ ପ୍ରୟାସ
ହୋଇ ଭୀମ ଉତ୍ସାହିତ ।
ନପାରିଲେ ତିଳେ ଟଳି ଲାଙ୍ଗୁଳକୁ
ବୋହିଲା ୭ଖର ଅଙ୍ଗରୁ,
ଅସମର୍ଥ ହୋଇ ଉଭାହେଲେ ପାର୍ଶ୍ୱେ
ଅଧୋବଦନେ ଲାଜରୁ ।
ତଦନ୍ତେ ଆନନ୍ଦେ କୃତାଞ୍ଜଳିପୁଟେ
ପଚାରନ୍ତେ ପରିଚୟ,
ବୋଇଲେ ସେ "ମୋର ନାମ ହନୁମାନ
ଅଟେ ପବନ ତନୟ ।"
ନିଜକୁ ଚିହ୍ନାଇ ଜିଜ୍ଞାସନ୍ତେ ଭୀମ
"ଡେଇଁଲ ସିନ୍ଧୁ କି ରୂପେ" ?
ଏ ବଚନେ ହନୁ ଅଙ୍ଗକୁ ପ୍ରସାରି
ଦେଖାଇ ଦେଲେ ତତ୍କ୍ଷଣେ ।
କରି ତା ଦର୍ଶନ ଭୀମସେନଙ୍କର
ପଶିଲା ଆତଙ୍କ ମନେ,

୧ବିନିମୟ, ୨ପଥ, ୩ପଥ, ୪ହନୁମାନ, ୫ଅବଶ, ଅକର୍ମଣ୍ୟ, ୬ଉଠେଇବାକୁ, ୭ ଝାଳ

ସଙ୍କୁଚିତ କରି ତନୁ ହନୁ ବୋଲେ
"ସାହାହେବ ରଣାଙ୍ଗନେ ।"
ଅତଃପର ହନୁ ଧର୍ମ ୮ଆମର୍ଶଣ
ଦେଇ ହେଲେ ଅନ୍ତର୍ହିତ,
୯ବନଜ ୧୦ମାର୍ଗଣେ ଦୁର୍ଗମ ମାର୍ଗରେ
୧୧ମାର୍ଗିକ ଗଲେ ତ୍ୱରିତ ।
ଯାଉ ଯାଉ ବ୍ରଜେ ଦେଖି ଦେଖି ଦୃଶ୍ୟ
ପ୍ରବେଶିଲେ କୈଳାସରେ,
ଯହିଁ କଞ୍ଜନଦୀ ଆସୁଥିଲା ବହି
ମିଶିବାକୁ ସାଗରରେ ।
୧୨ସରୋରୁହେ ନଦୀ ଦିଶୁଛି ଶୋଭନ
ବିଟପୀ ଲତା ତଟରେ,
ବିବିଧ ବିହଗେ କରୁଥିଲେ କେଳି
ରାବ ଲଳିତ କଣ୍ଠରେ ।
କୁନ୍ତୀସୂନୁ ଭୀମ ତା ସମୀପେ ଯାଇ
ପିଇ ସୁଶୀତଳ ଜଳ,
ଦେଖିଲେ ଚାରୁଶେ ସରୋବରଟିଏ
୧୩ସମ୍ବଳ ଯାର ବିମଳ ।
୧୪ଶରଦଣ୍ଡଭରା ୧୫ଷଣ୍ଡାଳୀଭିତରେ
୧୬ବିଷଣ୍ଡ ଖଣ୍ଡକୁ ଚାଟି,
ହଂସକାରଣ୍ଡବେ କରନ୍ତି ବିହାର
ଚଳ ଚଳ କରି ପାଣି ।
୧୭ତରସ୍ୱୀ ୧୮ତରସ୍ୱୀ ତନୟ ସନ୍ତୋଷେ
ପ୍ରବେଶନ୍ତେ ତା ଭିତରେ,
୧୯ତାମିସ୍ର ସମୂହ ଗୋଡ଼ାଇଲେ ତାଙ୍କୁ
୨୦ହିଂସନେ ରୋଷଭରେ ।
ଅନାଦର କରି ସେମାନଙ୍କୁ ଭୀମ
କମଳ ଆଣିଲେ ତୋଳି,
ପଦ୍ମାକରଟିରେ ଡେଇଁଲେ ପୁଲକେ
ବଦନେ ପରାଗ ବୋଳି ।

୮ଉପଦେଶ, ୯ପଦ୍ମ, ୧୦ଅନ୍ୱେଷଣରେ, ୧୧ପଥିକ ଅର୍ଥାତ୍ ଭୀମ, ୧୨ପଦ୍ମ, ୧୩ଜଳ, ୧୪ପଦ୍ମ, ୧୫ପୋଖରୀ, ୧୬ପଦ୍ମନାଡ଼, ୧୭ବଳବାନ, ୧୮ବାୟୁ, ୧୯ରାକ୍ଷସ, ୨୦ ବଧ

୧ଏକିମୃତବଗ	ଦେଖି ତାହାଙ୍କର
ଆସି ୨ନକ୍ତଚର ଚୟ,
ପ୍ରସଭେ ନେବାକୁ	ସେ ଫୁଲ ଗୁଡ଼କ
ଦେଖାଇଲେ ତାଙ୍କୁ ଭୟ ।
ଜାତରେ ୩ଯକ୍ଷ ଗଣ	ପୁଣି ବଳୀଶ୍ରେଷ୍ଠ
ଉଭରବେ କମ୍ପ ଏଥିତେ,
ଶତ ଶତ ଦୈତ୍ୟ	କଲେ ସେ ନିପାତ
ସରସନ୍ନିଧେ ଅଚିରେ ।
କେତେ ରଣଭଗ୍ନ	ନିରୂପାୟ ହୋଇ
ଉତ୍ତୁଙ୍ଗ ଶୃଙ୍ଗକୁ ଯାଇ,
୪ଉଡ୍ଡ଼ ପଥ ପଥେ	ଧନପତି ପାଶେ
୫ଉଭସେ ଦେଲେ ଜଣାଇ ।
ସେମାନଙ୍କ କଥା	ଶ୍ରବଣ କରି ସେ
"ମିଅନ୍ତୁ ବୋଲି କହାନ୍ତେ,
ସେଠାରୁ ସତର	ଅନୁମତି ମାଗି
ଫେରିଲେ ଦନୁଜେ ଅନ୍ତେ ।
ଭୀମ ୭ବିବର୍ତ୍ତିନ	ହେବାରୁ ବିଳମ୍ବ
ମନସ୍ୱୀ ପାଣ୍ଡୁନନ୍ଦନେ,
କରିଲେ ଗମନ	ପାଞ୍ଚାଳୀ ସହିତ
ନଭସ୍ତର ସହ ବନେ ।
ଘଟୋତ୍କଚ ଦୈତ୍ୟ	୭ସଭିସିଜସଭ
ଆଗୁଁ ଥିଲା ଅବଗତ,
ସେମାନଙ୍କୁ ନେଇ	ପାବନ ନିକଷା
ହେଲା ଜବେ ଉପଗତ ।
ତୋଳଥିବା ୮ସ୍ତବକ	୯ସ୍ତବକସୂତ ନେଇ
ବାଅନ୍ତେ ପାଞ୍ଚାଳୀ କରେ,
ତା ଶୋଭା ଦର୍ଶନେ	ମାଳଗୁନ୍ଥି ଦେଲେ
୧୦ଭବପ୍ରତିମା କଣ୍ଠରେ ।
୧୧ପଙ୍କଜମାଳିକୀ	କଲେ ପ୍ରଣିପାତ
ଅବନତ ମସ୍ତକରେ,
୧୨ପାର୍ଥ ପ୍ରତୀକ୍ଷାରେ	ରହିଲେ ସେଠାରେ
ସଭିବେ ହରଷଭରେ ।

କିଛିକାଳ ଅନ୍ତେ	କୁବେର ସଦନେ
ଗମନେ ବଳାନ୍ତେ ମନ,
ଦୈବବାଣୀ ଶୁଣି	ବଦରିକାଶ୍ରମେ
କଲେ ସେଥୁ ବିବର୍ତ୍ତନ ।
ଦିନେ ଭୀମସେନ	ମୃଗୟା ନିମିତ୍ତ
ଯାଇଥିଲେ ବନଦେଶ,
ଏ ସୁଯୋଗ ନେଇ	ଜଟାସୁର ଦୈତ୍ୟ
ଆଶ୍ରମ କଲା ପ୍ରବେଶ ।
ଦ୍ରୌପଦୀଙ୍କ ନେଇ	ପାଣ୍ଡବ ସହିତ
କଲାବେଳେ ପଳାୟନ,
ଖସି ତା ହସ୍ତରୁ	କନିଷ୍ଠ ପାଣ୍ଡବ
କଲେ ତାକୁ ଆକ୍ରମଣ ।
୧କୋଟେ ପାବନି	ପହଞ୍ଚି ସହସା
ତାସଙ୍ଗେ କଲେ ସମର,
ତାଙ୍କ ଗଦାଘାତେ	ଉତ୍ତମାଙ୍ଗୁ ତାର
ସ୍ରବିଲା ରୁଧିର ଝର ।
ଜାନୁ ଭଙ୍ଗିବାରୁ	ପଡ଼ିଲା ତକ୍ଷଣେ
ଦଇମରି ହୋଇ ଛନେ,
କ୍ଷଣକ ମଧ୍ୟରେ	ଯିବାରୁ ଜୀବନ
ଆନନ୍ଦ ଋଷି ସକଳେ ।
୧ବ୍ୟାଳାକୀର୍ଣ୍ଣ ବନ	ବାଥି ଅତିକ୍ରମି
ଏ ଅନ୍ତେ ପାଣ୍ଡବଗଣ,
୨ଉଦଗଦ୍ରୀ ପୃଷ୍ଠେ	ହୋଇ ଉପନୀତ
କଲେ ମୋଦେ ବିହରଣ ।
ରମ୍ୟ ଭୂମ୍ୟେ ଦେଖି	ବୃଷପର୍ବାଶ୍ରମେ
ରହିଲେ ସପ୍ତ ଦିବସ,
ଅନ୍ୟତ୍ର ଗମନେ	ବଳାଇଲେ ମନ
ଶତ୍ରୁ କରିବେ ଧ୍ୱଂସ ।
ଭବିଷ୍ୟତବେତ୍ତା	ମନସ୍ୱୀମୁନିଙ୍କ
ଅନୁଜ୍ଞା କରି ଗ୍ରହଣ,

୧ ଏହିପରେ ୨ ରାକ୍ଷସ ୩ ଯକ୍ଷବିଶ୍ୱ ୪ ଆକାଶ ଶୀଘ୍ର ୫ ... ୬ ଲେଉଟିବା ୭ ପଦ୍ମପୁଷ୍କରିଣୀ ୮ ପଦ୍ମ ୯ ପବନ ସୁତ ଭୀମ ୧୦ ଶିବଜ ୧୧ପୁଷ୍କରିଣୀ ୧୨ ଅର୍ଜୁନ

୧ ହିଂସ୍ରଜନ୍ତୁ ସାପ ପ୍ରଭୃତି ଦ୍ୱାରା ବ୍ୟାପ୍ତ ୨ ହିମାଳୟ

ବାହାରିଲେ ଯାତେ ଉଦୀଚୀ ଦିଗରେ
ସଙ୍ଗେ ଧରି ବିପ୍ରଗଣ,
ଗନ୍ଧମାଦନକୁ ମାଲ୍ୟବାନ ବାଟେ
ଗମନ୍ତେ ପାଣ୍ଡବଚୟ ।
୧ଅଭ୍ରଂଲିହ ଅଦ୍ରି ଉଠି ଉଠି ମାର୍ଗେ
ସର୍ବେ ଶ୍ରାନ୍ତ ଅତିଶୟ ।
ପୁଷ୍ପିତ ବଲ୍ଲରୀ- ୨ପର୍ଣ୍ଣୀପର୍ଣ୍ଣାବଳୀ
ଦୋହଲି ଦୋହଲି ଧୀରେ,
୩ଗନ୍ଧବହ ଯୋଗେ ୪ଅଧ୍ୱଗପଟଳୀକି
ଦେଉଥିଲା ବିଞ୍ଚି କରେ ?
ଚତୁଃପାର୍ଶ୍ୱେ ଶୋଭା କରେ ସେମାନଙ୍କ
ବିଷାଦ ଦୁଃଖକର୍ଷଣ,
ରସବନ୍ତ ଫଳ ସକଳ ହରଷେ
କରନ୍ତି ନିତି ଭକ୍ଷଣ ।
୫ଜଳଚରଭରା ସରସୀ ନିକର
ଦିଶୁଥିଲା ମନୋହର,
ତହିଁ ଶତଦଳ ଦେଖିବାରୁ ୬ଉଦ୍ବୁଦ୍ଧ
ଧାଇଁଲେ ରସି ଭ୍ରମର ।
୭ତାମରସ-ରସ- ଆସବକୁ ଶୋଷି
ଅଳସେ ପଡ଼ିଲେ ଶୋଇ,
୮ତ୍ରିଯାମା ଶେଷେ ଚଳାଇଲେ ଉଡ଼ି
ମୟୂଖରେ ମୁଖ ଧୋଇ ।
ପକ୍ୱପୁଷ୍ପଫଳେ ପରିପୂର୍ଣ୍ଣ ବନ
ହରିଲା ମନ ତାଙ୍କର,
"ସିଦ୍ଧହେଲୁ" ବୋଲି କହି ଯୁଧିଷ୍ଠିର
ରହିଲେ ସେହି ବାସର ।
ଅଷ୍ଟିଷେଣାଶ୍ରମେ ଏଅନ୍ତେ ପାଣ୍ଡବେ
ଗଲେ ଉତ୍ଫୁଲ୍ଲ ଲୋଚନେ,
ହୋଇ ଉପନୀତ ପୂଜି ମହର୍ଷିଙ୍କି
ତୋଷିଲେ ଅଭିବାଦନେ ।
ଆଭ୍ୟର୍ଥନା କରି ଅଷ୍ଟିଷେଣା ଋଷି
ନେଲେ ଆଶ୍ରମ ତାଙ୍କରି,

ବୀଭତ୍ସୁ ଆସିବା ପର୍ଯ୍ୟନ୍ତ ରହିଲେ
ଦେଖି ଦୃଶ୍ୟ ଅରଣ୍ୟର ।
ଏଣେ ୯ଐନ୍ଦ୍ର ଅସ୍ତ୍ର ଲଭି ୧୦ରୁଦ୍ରଠାରୁ
ପ୍ରଣମି ତାଙ୍କ ପଦରେ,
ବିଦାମାଗି ତହୁଁ ପ୍ରଫୁଲ୍ଲ ଚିତ୍ତରେ
ଗଲେ ଗନ୍ତବ୍ୟ ମାର୍ଗରେ ।
ଯାଉ ଯାଉ ପଥେ ବାସବ ସହିତ
ହେବାରୁ ଭେଟ ତାଙ୍କର,
ଅମରାବତୀକୁ ନେଇଗଲେ ସଙ୍ଗେ
ଶ୍ରଦ୍ଧାବଦ୍ଧ ପରାଶର ।
ନୃତ୍ୟଗୀତ ପୁଣି ଅସ୍ତ୍ରେ ନିପୁଣତା
ଅରଜି ପାଣ୍ଡୁନନ୍ଦନ,
ଅମରାବତୀରୁ ଲେଉଟିବା ଲାଗି
ବଳାଇଲେ ଏବେ ମନ ।
ବାସବ ଆଜ୍ଞାରେ ମାତଳି ସ୍ୱର୍ଗରୁ
ତାହାଙ୍କୁ ଘେନି ରଥରେ,
ଅଷ୍ଟିଷେଣାଶ୍ରମେ ହେଲେ ଅବତୀର୍ଣ୍ଣ
ଯୁଧିଷ୍ଠିରଙ୍କ ପାଶରେ ।
୧୧ଜଳପ୍ରିୟ ପରି ରହିଥିଲେ ତହିଁ
୧୨ଶବ୍ଦଭେଦୀଙ୍କ ସକାଶେ,
ହେଲେ ପ୍ରମୋଦିତ କୃଷ୍ଣା ପାଣ୍ଡୁସୁତେ
ଲେଉଟିବାରୁ କୁଶଳେ ।
୧୩ଅଗ୍ରଜ ୧୪ଅଗ୍ରଜ ପାଦ ପୂଜା କରି
ଅନୁଜଙ୍କୁ ଆଲିଙ୍ଗନ,
କରି ସବ୍ୟସାଚୀ ୧୫ସତ୍ୟସନ୍ଧା ପାଶେ
ତଦନ୍ତେ କଲେ ଗମନ ।
ଶକ୍ରଦତ୍ତ ଦ୍ରବ୍ୟ ତାଙ୍କ କରେ ଦେଇ
ପ୍ରବୋଧିଲେ ହରଷରେ,
ଅଭ୍ୟର୍ଥିତ ହୋଇ ମାତଳି ସ୍ୱର୍ଗକୁ
ଲେଉଟିଗଲେ ରଥରେ ।
କପିଧ୍ୱଜଠାରୁ ସକଳ ବୃତ୍ତାନ୍ତ
ଶୁଣିବାକୁ ଆଗ୍ରହରେ,

୧ ଅତ୍ୟୁଚ୍ଚ ପର୍ବତ ୨ ବୃକ୍ଷ ୩ ପବନ ୪ ପଥିକ ସମୂହ ୫ ଜଳଚର ପୂର୍ଣ୍ଣ ୬ ବିକାଶିତ ୭ ପଦ୍ମ ୮ ରାତ୍ରି

୯ ଅର୍ଜୁନ ୧୦ ଶିବ ୧୧ ଚାତକ ୧୨ ଅର୍ଜୁନ ୧୩ ଯୁଧିଷ୍ଠିର ୧୪ ବ୍ରାହ୍ମଣ ୧୫ ଦ୍ରୌପଦୀ

ଡାକି ସାୟଂକାଳେ ଭ୍ରାତାମାନେ ତାଙ୍କୁ
ବସାଇଲେ ସମୀପରେ ।
ଦିବାଦନ ଠାରୁ ଲେଉଟିବା ଯାଏଁ
ଘଟିଥିଲା ଯାହା ଯାହା,
ଗୋଟି ଗୋଟି କରି ସେମାନଙ୍କ ଆଗେ
ବର୍ଣ୍ଣିଲେ ବାଭ୍ରସ୍ତ୍ର ତାହା ।

## ତ୍ରୟୋଦଶ ସର୍ଗ

ଭ୍ରମି ଭ୍ରମି ବନେ ପାଣ୍ଡବ ନବନ୍ଧ
ଫେରନ୍ତେ କାମ୍ୟକ ବନେ,
ସତ୍ୟଭାମା ସହ ଆସିଲେ କଂସାରି
ସେମାନଙ୍କ ଦରଶନେ ।
ହେଲେ ଉପବିଷ୍ଟ ତାଙ୍କର ପାଞ୍ଚାଳୀ
ଧୃଅନ୍ତେ ପରସ୍ପର ପରସ୍ପର,
ଯାବତ ବିଷୟ ପୁଚ୍ଛିଲେ କେଶବ
କୁତୂହଳେ ଅନନ୍ତର ।
କଥା ହେଉ ହେଉ ହେଲେ ଉପାଗତ
ମାର୍କଣ୍ଡେୟ ମହାଋଷି,
ଦରଶନ ଲଭି ୧ତପୋଧନଙ୍କର
ସକଳ ହୋଇଲେ ଖୁସି ।
ପଚିଶ ବର୍ଷରି ଭେଣ୍ଡିଆ ପରି ସେ
ଦିଶୁଥିଲେ ତପୋଧନ,
ସହସ୍ର ସହସ୍ର ବର୍ଷ ଜୀବା ବୋଲି
କହନ୍ତି ଗଙ୍ଗା ନନ୍ଦନ ।
ପାଣ୍ଡବ କେଶବ ୨ଉପବାଶି ସବେ
କରନ୍ତେ ତାଙ୍କ ଅର୍ଚ୍ଚନା,
ସେମାନଙ୍କ ସଙ୍ଗେ କଲେ ସମ୍ଭାଷଣ
ସେ ଅଜରି ମହାମନା ।
ତାଙ୍କଠାରୁ ଧର୍ମ କଥା ଶୁଣିବାକୁ
ସବେ ହେଲେ ଉପବିଷ୍ଟ,
ଆଗ୍ରହୀ ଥିବାରୁ ସେମାନଙ୍କୁ ଜାଣି
ବୋଇଲେ ସେ ବ୍ରହ୍ମନିଷ୍ଠ ।

"ପୂରୁବେ ପୁରୁଷ ନଥିଲା ପାଂଶୁଳ
ଅବା ବିଦ୍ୱେଷ ମନରେ,
ପୁଣ୍ୟଶୀଳ ପୁଣି ସତ୍ୟବାଦୀ ହୋଇ
ଚଳୁଥିଲା ଏଭବରେ ।
ଗୁରୁ ସେବାରତ ଶୁଚିବନ୍ତ ହୋଇ
କରି ତପସ୍ୟାନୁଷ୍ଠାନ,
ଆଚରି ସଂଯମ ବ୍ରହ୍ମ ସନ୍ଧାନରେ
କରୁଥିଲା ସଦା ଧ୍ୟାନ ।
ନଥିଲେ ନାସ୍ତିକ ଅଥବା ୩ସ୍ୱସ୍ତିକ
ପୁଣ୍ୟକର୍ମେ ଥିଲା ମତି,
ମୃତ୍ୟୁ ପରେ ଜୀବ ସ୍ୱକୀୟ କର୍ମରେ
ଲଭଇ ଅମୃତ ଗତି ।
କୃତକର୍ମ ଫଳେ ସୁଖ ଅବା ଦୁଃଖ
ଭୋଗ୍ୟ ସଦା ମଣିଷରି,
କ୍ଷୟ ହେଲେ ପ୍ରାଣ ପୁଣି ସୂକ୍ଷ୍ମ ଦେହେ
ମିଳନ ଘଟେ ଜୀବରି ।
ବହିରି ଧନରେ ଅଶୁଭ କର୍ମରେ
ମାତିଲେ ଇହଲୋକରେ,
ଲଭେ ସୁଖ ସିନା ମଣିଷ ମୁହୂର୍ତ୍ତେ
ପ୍ରମାଦ ପରଲୋକରେ ।
ଧର୍ମ ସମ୍ବନ୍ଧୀୟ ଆମର୍ଶନ ଦେଇ
ମାର୍କଣ୍ଡେୟ ତପୋବ୍ରତ,
କୃଷ୍ଣ ସତ୍ୟଭାମା ଆଶ୍ୱାସନା ଦେଇ
ଗଲେ ଦ୍ୱାରକା ଭରତ ।
ଖରବର୍ଷା ଶୀତ ସହି ପାଣ୍ଡୁସୁତେ
ଯାପନ୍ତି ଦିନ ଦୁଃଖରେ,
ଉଦ୍ୟାନ ଶୋଭନ ୪କ୍ଷୋମେ ଦୁର୍ଯ୍ୟୋଧନ
ବିତାଏ କାଳ ସୁଖରେ ।
ଉପଦେଷ୍ଟା ସବେ ୫ଭାନୁସୁନୁ କର୍ଣ୍ଣ
୬ପିଶୁନ ଶକୁନ ପୁଣି,
ରଚ୍ଚି ଦୁର୍ଯ୍ୟୋଧନ ଚଳାଏ ଶାସନ
ସେମାନଙ୍କ କଥା ଶୁଣି ।

---

୧ ତପୋବୃଦ୍ଧ ୨ ବ୍ରାହ୍ମ

୩ ଲମ୍ପଟ ୪ ଅଟ୍ଟାଳିକା ୫ ସୂର୍ଯ୍ୟପୁତ୍ର ୬ ଖଳ

ଦେଖାଇ ହେବାକୁ     ସ୍ୱକୀୟ ବିଭୂତି
ଏମାନେ ହେଲେ ବାହାର,
ଆଭୀର ପଲ୍ଲୀକି     ଯିବାଲାଗି ଗଲେ
୧ପଟ୍ଟବ୍ରତଙ୍କୁ ପଚାରି ।
ଦ୍ୱୈତ ବନରେ     ପାଣ୍ଡବେ ଥିବାର
ଅମ୍ବିକାସୁତ ନୃପତି,
ସୁଦ୍ଧୁ ଅବଗତ     ହୋଇ ସେମାନଙ୍କୁ
ଦେଲେ ନାହିଁ ଅନୁମତି ।
କୌଶଳେ ମଗାଇ     ତାହାଙ୍କୁ ଶକୁନି
ହସ ହସ ବଦନରେ,
ଲେଉଟି ସେଠାରୁ     ଯିବାଲାଗି ଘୋଷେ
ସଜବାଜ ହେଲେ ଖରେ ।
ଉଲ୍ଲାସରେ ମାତି     ଗଲେ କୁରୁପତି
ଶକୁନି କର୍ଣ୍ଣ ସହିତ,
ପଛେ ପଛେ ତାର     ସୁସଜ୍ଜିତ ଅସ୍ତ୍ରେ
ଗଲେ ଚମୂ ଅପ୍ରମିତ ।
ଦ୍ୱୈତ ବନସ୍ଥିତ     ଘୋଷ ଅଭିମୁଖେ
ସେମାନେ କଲେ ପ୍ରୟାଣ,
ବନେ ରହୁଥିବା     ଗନ୍ଧର୍ବ ସଙ୍ଗରେ
କଲେ କନ୍ଦଳ ଉଆଣ ।
କ୍ଷଣେ ପରାଙ୍‌ମୁଖ     ହୋଇ କୁରୁବଳ
କରିବାରୁ ପଳାୟନ,
୨ଅଂଶୁମାଳୀ ସୁତ     ସୈନ୍ୟଦଳ ସହ
କଲେ ସେଠାରୁ ଗମନ ।
ପୁରୁଷ ବଚନ     କହି ସେମାନଙ୍କୁ
କରନ୍ତେ ବାଣ କ୍ଷେପଣ,
୩ଅଦଭ୍ର ଗନ୍ଧର୍ବ     ହୋଇ ହତାହତ
କଲେ ପରିହାର ରଣ ।
ଏ ସନ୍ଦେଶ ପାଇ     ଚିତ୍ରସେନ କୋପେ
ପ୍ରବୃତ୍ତ ହୋଇ ୪ପ୍ରସରେ,
ଯୁଝନ୍ତେ ମାୟାସ୍ତ୍ରେ     କୌରବବାହିନୀ
ପଳାଇଗଲେ ଭୟରେ ।

୧ ଧୃତରାଷ୍ଟ୍ର ୨ସୂର୍ଯ୍ୟସୁତ କର୍ଣ୍ଣ ୩ବହୁଳ ୪ସମରେ

ଅଚଳ ସଦୃଶ     ଅଟଳ ଭାବରେ
ରହି ତପନନନ୍ଦନ,
ଲଢ଼ନ୍ତେ ସମର     ଦୁର୍ଯ୍ୟୋଧନ ମିଶି
ଗନ୍ଧର୍ବେ କଲେ ବେଷ୍ଟନ ।
ବଧ ଅଭିଳାଷୀ     ହୋଇ କର୍ଣ୍ଣଙ୍କର
ଭାଙ୍ଗନ୍ତେ ୫ପତ୍ରୀ ତାଙ୍କର,
ଆତ୍ମପରିତ୍ରାଣ     ଲାଗି ୬ସୂତସୁତ
ବସି ପୃଷ୍ଠେ ୭ପ୍ରମଥର ।
କଲେ ପଳାୟନ     ୮ପ୍ରସର ପ୍ରାଙ୍ଗଣୁ
ନରହି ସେଠାରେ କ୍ଷଣେ,
ତହୁଁ ଅରିନ୍ଦମ     ଦୁର୍ଯ୍ୟୋଧନ ଆସି
ଲାଗିଲେ ୯ପତ୍ରୀକ୍ଷେପଣେ ।
ବେଢ଼ି ଚାରିପଟୁ     ଗନ୍ଧର୍ବ ୧୦ନିବହ
ପକାଇ ତାଙ୍କୁ ଭୂତଳେ,
ଦୁଃଶାସନ ପାଶେ     ହୋଇ ଧାବମାନ
ପ୍ରହାରିଲେ ବକ୍ଷସ୍ଥଳେ ।
ସେ ଦୁଇ ଭାଇଙ୍କି     ରାଜପତ୍ନୀ ସହ
ଚିତ୍ରସେନ ଆସି ଖରେ,
ମହାବଳଶାଳୀ     ଗନ୍ଧର୍ବଙ୍କୁ ଡାକି
ରଖାଇଲେ ବନ୍ଧନରେ ।
ଏ ଘଟଣା ଦେଖି     ହିତୈଷୀ ମନ୍ତ୍ରୀଏ
ଯାଇ ପାଣ୍ଡବ ନିକଟେ,
କରି ପ୍ରଣିପାତ     ନିବେଦିଲେ ତୂର୍ଣ୍ଣ
ହେବାକୁ ସାହା ସଙ୍କଟେ ।
ଏ ବଚନ ଶୁଣି     ଭାଷିଲେ ପାବନି
"ଯେ ପାଞ୍ଚେ ପର ଅନିଷ୍ଟ,
ଅବହେଳ ଭବେ     ଘଟୁଥାଏ ସିନା
ଦଇବ ତାର ଅରିଷ୍ଟ" ।
କହନ୍ତି ଅଗ୍ରଜ     ଶୁଣି ଅନୁଜୋକ୍ତି
ନକହ ବାକ୍ୟ ଏପରି,
କରି ଚିନ୍ତା ବସି     କୌରବେ ସଙ୍କଟୁ
ଲଭିବେ ମୁକ୍ତି ଯେପରି ।

୫ରଥ ୬ସୂର୍ଯ୍ୟପୁତ୍ର କର୍ଣ୍ଣ ୭ଅଶ୍ୱ ୮ସମର ୯ଶର
୧୦ ଗନ୍ଧର୍ବସମୂହ

ଜ୍ଞାତି ମଧ୍ୟେ ଭେଦ    ନକରେ ବିନାଶ
କେତେବେଳେ କୁଳଧର୍ମ,
ପଶିଲେ ଶରଣ    ନିସ୍ତାରିବା ଶତ୍ରୁ
ମହାଜନର ଏ କର୍ମ ।
ଜାଣେ ଚିତ୍ରସେନ    ବହୁଦିନୁ ଏଥି
ରହିଅଛୁ ବାସକରି,
ଆମ୍ଭଙ୍କୁ ଅବଜ୍ଞା    ଦେଖାଇ ନେଉଛୁ
ଲଳନାମାନଙ୍କୁ ଧରି ।
୧କୁଳସ୍ତ୍ରୀ ମାନଙ୍କର    ନିପୀଡ଼ନ ହେତୁ
ଲୋକର କୁଳ ବିନଷ୍ଟ,
କୁଳଧର୍ମ ଧ୍ୱଂସ    ହେବାରୁ ହେଉଛୁ
ମନେ ଜାତ ଅତି କଷ୍ଟ ।
ଯାଇ ଅତିଶୀଘ୍ର    ବନ୍ଧନୁ ମୋଚନ
କର କଉରବଗଣ,
ଜ୍ଞାତିର ବିପଦେ    ସାହାଯ୍ୟାନୁଷ୍ଠାନ
ମହାମନାର ଲକ୍ଷଣ” ।
ଧର୍ମରାଜଙ୍କର    ଏ ବାକ୍ୟ ଶ୍ରବଣେ
ଚଳିଲେ ଆଶୁ ଆହବେ,
ଅସ୍ତ୍ରଶସ୍ତ୍ର ଧରି    ୨ରଥୋପରେ ଚଢ଼ି
ରଥୀ ଶାର୍ଦ୍ଦୁଳ ପାଣ୍ଡବେ ।
ଗନ୍ଧର୍ବମାନଙ୍କୁ    ଦେଖି ସମକ୍ଷରେ
୩ସିତାଶ୍ୱ ମୃଦୁବଚନ,
“କହିଲେ ସହାସ୍ୟେ    ଦେଇଦାସ ତୁହିଁ
ଅର୍ଜିଲି ଏବେ ନିଧନ ।
ହାନ୍ଦ୍ୟ ନ ଭଅଇ    ତ୍ୟଜ କୌରବଙ୍କୁ
ଲଳନାମାନଙ୍କ ସହ,
ନକଲେ ଏକ୍ଷଣି    କୃତାନ୍ତ ସଦନେ
ଯିବେ ଗନ୍ଧର୍ବନିବହ” ।
୪ଅପାର୍ଥ ହେବାରୁ    ୫ପାର୍ଥର ବଚନ
ଲାଗିଲା ତୁମୂଳ ରଣ,
କୋପଭରେ ୬ଜିଷ୍ଣୁ    ସେମାନଙ୍କ ପ୍ରତି
କଲେ ୭ମାର୍ଗଣ ବର୍ଷଣ ।

ଗନ୍ଧର୍ବେ ତତ୍କାଳେ    ପରାଜୟ ଲଭି
ଚିତ୍ରସେନଙ୍କୁ କହନ୍ତେ,
ଆସିଲେ ୮ଶୂନ୍ୟରୁ    ସେ ଗନ୍ଧର୍ବରାଜ
ମାୟାସ୍ତ୍ର ଧରି ଏ ଅନ୍ତେ ।
ବହୁ ଗଦା ହାଣି    କଲେହେଁ ସମର
ପରନ୍ତପ ଧନଞ୍ଜୟ,
ସେ ଗୁଣ୍ଡକୁ ଆଶୁ    କଲେ ଖଣ୍ଡ ଖଣ୍ଡ
ପେଷି ୯କଙ୍କପତ୍ରଚୟ ।
ସେ ଗନ୍ଧର୍ବରାଜ    ଲଭି ପରାଜୟ
ପ୍ରବେଶି ପାର୍ଥ ନିକଟେ,
କଂପିଲେ ତାହାଙ୍କୁ    ସହାୟ ହେବାରୁ
ଦୁର୍ଯ୍ୟୋଧନର ସଙ୍କଟେ ।
ଲଳନାଙ୍କ ସହ    ଫିଟି ସଞ୍ଜନରୁ୧୦
ଦୁର୍ଯ୍ୟୋଧନ ଦୁଃଶାସନ,
ଫେରିଲେ ହସ୍ତିନା    ବିଷଣ୍ଣ ବଦନେ
କରି ପାଣ୍ଡବ ଦର୍ଶନ ।
ନୁହଇ ଚଳିତ    ମନୀଷ ବିଭବେ
କେବେ ତାର ଇଚ୍ଛାମତେ,
ଯେତେବେଳେ ଯାହା    ଘଟଇ ଜୀବନେ
ଦଇବର ଅନୁଗତେ ।
ଦ୍ୱୈତବନ ତ୍ୟଜି    କାମ୍ୟକକୂପାନ୍ତେ
ପୁନଶ୍ଚ ପାଣ୍ଡୁନନ୍ଦନେ,
ବ୍ୟାସଦେବ ଆସି    ଦେଲେ ଦରଶନ
ସେମାନଙ୍କୁ ସେ କାନନେ ।
କୃଶାଙ୍ଗ ଥିବାର    ଦେଖି ପୌରମାନେ
ବାଷ୍ପ ଗଦ୍‌ଗଦ ସ୍ୱରରେ,
“କହିଲେ ତପସ୍ୟା    ନକରି କିଏସେ
ପାଉଛି ସୁଖ ଭବରେ୧୧
ସୁଖ ଦୁଃଖ ଭୋଗ    ପର୍ଯ୍ୟାୟ କ୍ରମରେ
କରିଛି ସତତ ଭବେ,
ତେଣୁ ସୁଖେ ହୃଷ୍ଟ    ନୋହି ବା ଦୁଃଖରେ
ନକରିବ ଶୋକ ଲବେ ।

୧ କୁଳସ୍ତ୍ରୀ ୨ ରଥ ୩ ଅର୍ଜୁନ ୪ ନିଷ୍ଫଳ ୫ ଅର୍ଜୁନ
୬ ଅର୍ଜୁନ ୭ ଶର

୮ ଆକାଶରୁ ୯ ଶର ୧୦ ବନ୍ଧନରୁ
୧୧ ପୃଥିବୀରେ

ସତ୍ୟ ସରଳତା- ସମ ଶୁଦ୍ଧାଚାର
ନିବାସ କଲେ ମାନସ,
ଅଧର୍ମରେ ରୁଚି ରହୁଥାଏ ଯାର
ସେ ନୁହେ କେବେ ତାପସ ।
ଇହଲୋକେ କର୍ମ କରିବ ଯେପରି
ସେପରି ପରଲୋକରେ,
ଭୋଗିବ ତା ଫଳ ମଣିଷ ୧ମନସି
ତେଣୁ ରହ ସଂଯତରେ ।
ଦମପରାୟଣ ହୁଅନ୍ତି ସଂଯୋଗ
ବ୍ୟସନେ ସଦା ଅରୁଚି,
କଳୁଷ ପଙ୍କରେ ନପଡ଼ି ରଖନ୍ତି
ମନ କରନ୍ତିର ଶୁଚି ।
ଅନ୍ୟାୟରେ ଧନ ଅର୍ଜ୍ଜି ବାଣ୍ଟିଲେ
ଦାତାର ନୁହେ ମଙ୍ଗଳ,
ବିଶୁଦ୍ଧ ଚିତ୍ତରେ ଦେଲେ ଅଳ୍ପ ଦାନ
ମିଳଇ ଅନନ୍ତ ଫଳ ।
ବୁଝାଇ ବୁଝାଇ ପାଣ୍ଡବ ମାନଙ୍କୁ
ବ୍ୟାସଦେବ ଅନ୍ତର୍ହିତ,
ପାଞ୍ଚାଳୀକି ଛାଡ଼ି ଏମାନେ ତଦନ୍ତେ
ଗଲେ ମୃଗୟା ନିମିତ୍ତ ।

## ଚତୁର୍ଦ୍ଦଶ ସର୍ଗ

ବିବାହ ବେଶରେ ସିନ୍ଧୁଦେଶ ନୃପ
ଏ ସମୟେ ଆସି ବନେ,
ହେଲେ ବିମୋହିତ ଆଶ୍ରମ ଦୁଆରେ
କୃଷ୍ଣାର ରୂପ ଦର୍ଶନେ ।
କୋଟିକାସ୍ୟ ଯାଇ କଲା ସମ୍ଭାଷଣ
ଜୟଦ୍ରଥ ଆଦେଶରେ,
ପରିଚୟ ଲଭି ଯାଜ୍ଞସେନୀଠାରୁ
ଫେରିଲା ଆହ୍ଲାଦଭରେ ।
"କୃଷ୍ଣାକୁ ଦେଖିବା" କହି ଜୟଦ୍ରଥ
ବାହାର ନିଜ ବିମାନେ,
ଏକାକିନୀ ଥିବା ପୂର୍ବୁ ଜ୍ଞାତହୋଇ
ଗମିଲା ତା ସନ୍ନିଧାନ,
ଶୁଭ ସମାଚାର ପଚାରି ପଚାରି
ସରିବାରୁ ଦୁହିଁଙ୍କର,
ପାଣ୍ଡବଙ୍କ ନିନ୍ଦା ଆରମ୍ଭି ଭାଷିଲା
ପତ୍ନୀ ହେବାକୁ ତାଙ୍କର ।
ତାଦୃଶ ବଚନ ଶ୍ରବଣେ ପାଞ୍ଚାଳୀ
କୋପଭରେ ଥରି ଥରି,
ଭାଷିଲା ସଦମ୍ଭେ ନୃପକୁ ଅନାଇଁ
କଟୁ ଭାଷା ଏହିପରି ।
"ରାଜାର କର୍ତ୍ତବ୍ୟ ବୁଝିନାହୁଁ ମୂଢ଼
ଜନମି ରାଜକୁଳରେ,
ଏକାକିନୀ ଦେଖି ଆସିଅଛୁ ଧାଇଁ
ଏତେ ନିର୍ଲ୍ଲଜ ମୁହଁରେ ।
୨ବିଶ୍ରବାନନ୍ଦନ ଜାନକୀ ହରଣେ
ରାମ ନଥିବା କାଳରେ,
କି ଦଶା ଭୋଗିଲା ହେତୁକର ମନେ
ଫେରିଯା ଏଠାରୁ ତ୍ୱରେ ।
ତମତମ ହୋଇ କହେ ପୁନରପି
ଦେଖାଉ କମ୍ପା ଏଛଡ଼ି,
ମୋର ୩ଅଭିଷଙ୍ଗେ ୪ପୁଂସ୍ତ୍ୱଶୂନ୍ୟ ହୋଇ
ଆଜୀବନ ଯିବୁ ସଢ଼ି ।
୫ତାର୍କ୍ଷ୍ୟଗର୍ଭେ ହସ୍ତ ଭର୍ତ୍ତିକରି କିଏ
ରହିଚି କି କେବେ ପ୍ରାଣେ,
୬ତାର୍କ୍ଷ୍ୟର ଭୁଜାଗ୍ରୁ ବରତ୍ତି ଯିବାକୁ
ଭାବିଛୁ କି ତୋର ବାଣେ ।
ଶୃଗୁଲୋମ କିଏ ଆଣିଚି ଉପାଡ଼ି
ପ୍ରସୁପ୍ତ ସିଂହ ମୁଖରୁ,
ଅଥବା ଓଡ଼ାଇ ଖଣ୍ଡେ ଯଷ୍ଟି ଯେଣି
ମତ୍ତ ଦନ୍ତୀକି ଯୂଥରୁ" ।
ଇତ୍ୟାଦି ବଚନେ ପାପୀ ଜୟଦ୍ରଥ
ପାଞ୍ଚାଳୀକି ଟାଣି ଟାଣି,

୧ ମନୁଷ୍ୟ

୨ ରାବଣ ୩ ଅଭିଶାପ ୪ ନପୁଂସକ ୫ ସର୍ପ
୬ ଅର୍ଜ୍ଜୁନ ୭ ରଥ

ବସାଇ [୧]ସ୍ୟନ୍ଦନେ   କଲେ ପଳାୟନ
ଧୃତେ ଧରି ତାର ପାଣି ।
ଏତାଦୃଶ ଦୃଶ୍ୟେ   [୨]ସୌବନ୍ତକ ଧୌମ୍ୟ
ଧାଇଁଲେ ପଛେ ରଥର,
ପାଣ୍ଡବେ ସହସା   ଫେରିବାରୁ ଧାଇଁ
ଭଷିଲ୍ ହୋଇ କାତର ।
କ୍ଷିପ୍ରେ ଭୀମାର୍ଜ୍ଜୁନ   ବାହୁଡ଼ାଇ ପଣୀ[୩]
ବେଗେ ଗୋଡ଼ାଇ ଗୋଡ଼ାଇ,
ସେ ସିନ୍ଧୁରାଜକୁ   ଟାଣି ଟାଣି ଜବେ
ବମାନୁ ଦେଲେ ଗଡ଼ାଇ ।
ଗୁମ୍‌ଆଁ ହୋଇ ସେ   ଦଉଡ଼ ଦଉଡ଼
କଲବେଳେ ପଳାୟନ,
ସ୍ୟନ୍ଦନୁ [୪]ସ୍ୟନ୍ଦନ   ନନ୍ଦନ ଓହ୍ଲାଇ
ବଖତା କଲେ ମର୍ଦ୍ଦନ ।
ଘୋଷାରି ଘୋଷାରି   [୫]ଶିରସିଜ କାଟି
ଅଣାଇଲେ ଆଶ୍ରମକୁ,
ମୁଣ୍ଡିତ ହେବାର   ଦେଖି ଯୁଧିଷ୍ଠିର
ଛାଡ଼ିଲେ ଜୟଦ୍ରଥକୁ ।
କାମ୍ୟକ କାନନେ   ପାଣ୍ଡବମାନଙ୍କୁ
ହୋଇଥିବାରୁ ଦୁଃଖାବହ,
ପୁନରପି ଗଲେ   ଦ୍ୱୈତ ବନକୁ
[୬]ନାଥ୍ୟାଯଜ୍ଞବନା ସହ ।
[୭]ଅଗ୍ରଜନ୍ମା ଜଣେ   ଧନେ ଆକୁଳରେ
[୮]ପୁରୋଜନ୍ମାଙ୍କ ପାଶରେ,
ଆସି ନିବେଦିଲା   ଅରଣୀ ମନ୍ଥନ
ଦଣ୍ଡ ହରିଣ ଶୃଙ୍ଗରେ ।
ଲଗି ସେହି ମୃଗ   ଅରଣ୍ୟ ମଧ୍ୟକୁ
ପଳାଇଲା କୁଦାମାରି,
ସେ କାଠ ଦୁଇଟି   ଆଣି ମୋ ହାତରେ
ଦିଅ ତାକୁ ଉଦ୍ଧରେ ମାରି ।
[୯]କଳହଂସ କଥା   [୧୦]କଳହଂସ ଶୁଣି
ଅନୁଜମାନଙ୍କୁ ଧରି,

୧ ରଥ ୨ ପୁରୋହିତ ୩ ରଥ ୪ ବାୟୁପୁତ୍ର ଭୀମ ୫ କେଶ ୬ ଦ୍ରୌପଦୀ ୭ ବ୍ରାହ୍ମଣ ୮ ବଡ଼ଭାଇ ଯୁଧିଷ୍ଠିର ୯ ବ୍ରାହ୍ମଣ ୧୦ ରାଜଶ୍ରେଷ୍ଠ

ଅରଣ୍ୟ ଭିତରେ   ପଶିଲେ ସତ୍ୱରେ
ସେ ହରିଣ ଅନୁସରି ।
ଅନତିଦୂରରେ   ବିନ୍ଧିଣ ତାହାକୁ
ପ୍ରକ୍ଷେପନ୍ତେ ପକ୍ଷୀରାଜ,
ସେ ଗୁଡ଼ିକ ଯାଇ   ପଡ଼ିଲା ଭୂତଳେ
ଶରୀରେ ତାର ନବାଜ ।
ନିମିଷେ ସେ ମୃଗ   ହୁଅନ୍ତେ ଅଦୃଶ୍ୟ
ତୃଷାର୍ତ୍ତେ ପାଣ୍ଡବେ ଯାଇ,
[୧୦]ଯକ୍ଷବାସ ସ୍ଥଳ   ତଳେ ମନ ମାରି
ଶୋଇଲେ କୁଶ ବିଛାଇ ।
କିଛିକ୍ଷଣ ପରେ   [୧୧]ଅର୍ଣ୍ଣ ଆନୟନେ
ଅନୁଜବତଂସ ଗମି,
ପଲ୍ୱଳ ଗୋଟିଏ   ଦେଖିଲେ ଶେଷରେ
ଏଣେତେଣେ ଭ୍ରମି ଭ୍ରମି ।
ଅଦୃଶ୍ୟ ପୁରୁଷ   ତହିଁ ସେ ସ୍ଥାନରେ
କରନ୍ତେ ତାଙ୍କୁ ବାରଣ,
ନମାନି ତା କଥା   ପିଇବାରୁ ନୀର
ନ ରହିଲା କା ଚେତନ ।
ହେବାରୁ ବିଳମ୍ବ   ପୁରୋଜନ୍ମା ଚହୁଁ
ଭ୍ରମି ଭ୍ରମି ସେ କାନନେ,
ଦେଖିଲେ [୧୨]ଯୁଷ୍ଟଜେ   ପଲ୍ୱଳ ପାରୁଶେ
ପଡ଼ିଛନ୍ତି ଅଚେତନେ ।
ନପାଇ କାରଣ   ଚିନ୍ତା କରୁ କରୁ
କହେ ଦଇବ ପୁରୁଷ,
"ମନା କରୁ କରୁ   ପିଇଲେ ଯେ ପାଣି
କହି ବଚନ ପରୁଷ ।
ମୋ ପ୍ରଶ୍ନ ଉତ୍ତର   ଦେଲେ ନିସ୍ତରିବେ
ଅନୁଜେ ତୁମ୍ଭର",
ଏହା କହି କେତେ   ପ୍ରଶ୍ନ ପଚାରିଲେ
ଯୁଧିଷ୍ଠିରଙ୍କୁ ସତ୍ୱର ।
ସଠିକ ଉତ୍ତର   ଦେବାରୁ କୌନ୍ତେୟ
ପାଇଲା ମନ ତାଙ୍କରି;

୧୧ ବଟଗଛ ୧୨ ଜଳ

ସଙ୍ଗେ ସଙ୍ଗେ ଲଭି    ଜବନ ଉଠିଲେ
ବୀର ୧ପୃଷ୍ଠଜ ନକର ।
ହୋଇଲେ ଅଦୃଶ୍ୟ    ସେ ମହାପୁରୁଷ
୨ପୂର୍ବଜଙ୍କୁ ବରଦେଇ,
ଫେରିଲ ୩କୌନ୍ତେୟ    ନିଜ ଆଶ୍ରମକୁ
ସେମାନଙ୍କୁ ସଙ୍ଗେ ନେଇ ।
ବୁହୁଁ ବୁହୁଁ ବାର    ବରଷ ହୁଅନ୍ତେ
ନିଭୃତ ସ୍ଥାନକୁ ଯାଇ,
ଅଜ୍ଞାତ ନିବାସେ    କରିଲେ ମନ୍ତ୍ରଣା
ରାଜ୍ୟଭ୍ରଷ୍ଟ ପାଞ୍ଚଭାଇ ।
ସାରି ଆଲୋଚନା    ଗୋପନେ ରଖି ତା
ଗଲେ ପାଣ୍ଡବ ପାଞ୍ଚାଳୀ,
ବିରାଟ ଦେଶକୁ    ୪ପ୍ରାଂଶୁ ଶିବାଶିଖେ
ରଖିନିଜ ଅସ୍ତ୍ରାବଳୀ ।

## ପଞ୍ଚଦଶ ଅଧ୍ୟାୟ

ଏକାଗ୍ର ଚିତ୍ତରେ    ଦୁର୍ଗା ସ୍ତୁତି କରି
ପକାଇ ପ୍ରଚ୍ଛନ୍ନ ବେଶ,
ପରିହରି ଶୋକ    ଯାଇ ପାଞ୍ଚଜଣ
ନୃପ ସଭାରେ ପ୍ରବେଶ ।
ଦ୍ରୁପଦ ନନ୍ଦିନୀ    ଅନ୍ତଃପୁର ପାଶେ
ବୁଲୁଥିଲେ ସତର୍କରେ
୨ମହିଷୀଙ୍କ ଦୃଷ୍ଟି    କିଛିକ୍ଷଣ ପରେ
ପଡ଼ିଲା ତାଙ୍କ ଉପରେ
ପଠାଇ ଧାଈକି    ସଙ୍ଗେ ସଙ୍ଗେ ତାକୁ
ଡାକି ନେଲେ ଉଆସକୁ,
୫ନୃପାଦେଶ ଲଭି    ପୁଲକିତ ମନେ
ରଖିଲେ କେଶ ବେଶକୁ ।
୬ଦବେଦର ସଖା    ହେଲେ ଯୁଧିଷ୍ଠିର
ରାନ୍ଧୁଣିଆ ବୃକୋଦର,
ପାର୍ଥ ନୃତ୍ୟକାରୀ    ତୁରଙ୍ଗମାଧ୍ୟକ୍ଷ
ନକୁଳ ମାଦ୍ରୀକୁମାର ।

୧ସାନଭାଇ, ୨ବଡ଼ଭାଇ ୩ଯୁଧିଷ୍ଠିର ୪ଡେଙ୍ଗା,ଉଚ୍ଚ ୫ଶମୀଗଛ ୬ ପଶାଖେଳ

ସୈରିନ୍ଧ୍ରୀ ଭାବରେ    ରହିଲେ ଦ୍ରୌପଦୀ
ଗୋରକ୍ଷକ ସହଦେବ,
ଏମାନଙ୍କୁ ଲଭି    ମହାତୁଷ୍ଟ ହେଲେ
ମତ୍ସ୍ୟଦେଶ ନରଦେବ ।
ସୁରୁଖୁରୁ ଭାବେ    ଦଶମାସ କାଳ
ଯାପିଲେ ସେଥି ସକଳ,
ହୃଦ କ୍ରୋଧାନଳେ    ଜଳୁଥିଲା ସିନା
ଦେଖାନ୍ତି ଆନନ୍ଦଛଳ ।
୭ସୁଭୃଶ ୮ସୁଭଗା    ସୈରିନ୍ଧ୍ରୀକି ଦିନେ
୯ଅକାଣ୍ଡେ ଦର୍ଶନ କରି,
ସମ୍ଭୋଗ ମାନସେ    ସମ୍ବୋଧି ସ୍ୱସାକୁ
ବୋଇଲା କୀଚକ ଏପରି ।
"କିଏ ଏ ଲଳନା    ଚଞ୍ଚଳଲୋଚନା
ସର୍ବାଙ୍ଗ ସୁନ୍ଦରୀ ନାରୀ,
ଦେଖିଲା ବେଳରୁ    ଏରୂପ ମାଧୁରୀ
ହେଉଛି ହୃଦୟ ଭାରି ।"
ତଦନ୍ତେ ୧୦ଦ୍ରାବକ    ବଦନ ବୁଲାଇ
ହୋଇ କୃଷ୍ଣା ସନ୍ନିହିତ,
ମନ ବଢ଼ିବାକୁ    ବୋଲେ ତୋଷାମୋଦେ
"ହେଲା ତୋହର ପଣିତ ।"
ନିଖୁଣାଙ୍ଗ ଦେଖି    ମନ ଗଲା ଲାଗି
ଆର୍କିଲା ରୂପ ବାଳାର,
ପୁରୁଣାକୁ ଛାଡ଼ି    ନୂଆରେ ଆଦର
ଯେସନ ୧୨ଧବ କେଶର ।
ମୃଗେନ୍ଦ୍ର ସୁନାରି    ପ୍ରଣୟୀ ହେବାକୁ
ଶୃଗାଳ ଇଚ୍ଛଇ ଯଥା,
ନୃପେନ୍ଦ୍ର ପତ୍ନୀର    ସମ୍ଭୋଗ ନିମିତ୍ତ
କୀଚକ ବାଞ୍ଛିଲା ତଥା ।
ବିଷର୍ଣ୍ଣ ବଦନା    ନିତ୍ୟଯଉବନା୧୩
ବୋଲନ୍ତି ୧୪ରାଜକ ରହିଁ,
"ଅଭବ୍ୟ କର୍ମରେ    ଭବନ୍ତି ଭ୍ରମରେ
ମଜିବା ଶୁଣିଛ କାହିଁ

୭ଅତିଶୟ ପଡ଼ି ଯାହାକୁ,୮ଅତିଶୟ ଭଲପାଏ,୯-ଅକସ୍ମାତ,୧୦ଲମ୍ପଟ,୧୧ନୀତ,୧୨ସ୍ୱସାଙ୍,୧୩—ଦ୍ରୌପଦୀ, ୧୪ ରାଣୀ

ଏଭଳି ବଚନ  କେବେ କି ଶୋଭନ
ପୁରୁଷ ୧ପୁଷ୍କଳ ତୁଣ୍ଡେ ।
ପଶିଲେ କୁକର୍ମେ  ଟଳିବ ଅବଶ୍ୟ
ଅକାଳ ଚଣ୍ଡକ ମୁଣ୍ଡେ ।"
ମାୟାମୋହେ ଅନ୍ଧ  ହୋଇ ଦୁରାଶୟ
ଅନୁଚିତ ଅଭିଳାଷ
କରି ପରିଣାମେ  କ୍ଷଣିକ ସୁଖରେ
ଘଟାଏ ନିଜ ବିନାଶ ।
ନିରାଶେ କୀଚକ  ସୁଧାରି ସମୀପେ
ପୁନଶ୍ଚ କହେ ଏମନ୍ତ
"ଉପାୟ ବିଧାନ  କରି ସଇରନ୍ଧ୍ରୀ
ଅଧୀନ ହେବ ଯେମନ୍ତ" ।
ହେବାରୁ ଅପାର୍ଥ  କଢାଇ ୨ପ୍ରୟାସ
ଭଗିନୀ ସଙ୍ଗେ ଆଳାପ,
କରି ଲେଉଟିଲା  ସ୍ୱକୀୟ ଆବାସେ
ମାନସେ ବହି ସନ୍ତାପ ।
ନଥିଲେ ହେଁ ଇଚ୍ଛା  ଲବେ ସୈରନ୍ଧ୍ରୀରି
ପେୟ ଆନୟନ ପାଇଁ,
ପେଷିଲା ଭଗିନୀ  କୀଚକ ସଦନେ
ପ୍ରସଭେ ତାକୁ ମଙ୍ଗାଇ ।
ଅଗତ୍ୟା ସଶୋକେ  କୀଚକ ସଦନେ
ଗଲେ ବେନେ ଡରି ଡରି,
୩ପାଂଶନ ସହସା  ପୁଲକିତ ଚିତ୍ତେ
ପକାଇଲା ତାକୁ ଧରି ।
ଛଡ଼ାଇ ତା କର  କଲା ୪ଅପକ୍ରମ
ନୃପଙ୍କୁ କରି ଭରସା
ଗୋଡ଼ାଇ ଗୋଡ଼ାଇ  ୫ପାଂଶୁଳ କୀଚକ
ପ୍ରବେଶିଲା ତା ନିକଷା ।
ଭୂପଙ୍କ ସମୀପେ  ଆକର୍ଷି କୁନ୍ତଳ
ନିକ୍ଷେପ କଲା ଭୂତଳେ
୬ତୂଷ୍ଣୀମ୍ଭୂତ ହୋଇ  ଧର୍ମରାଜ ଭୀମ
ଦେଖୁଥିଲେ ସଭାସ୍ଥଳେ ।

୧ ଶ୍ରେଷ୍ଠ ୨ ଦୁରାତ୍ମା ୩ ଦୂଷକ ୪ ପଳାୟନ
୫ ପାପିଷ୍ଠ ୬ ନୀରବ

୭ସଂରମ୍ଭେ ପ୍ରବୃଦ୍ଧ  କୀଚକ ସହାରେ
ଉତ୍ଥିତ ହୁଅନ୍ତେ ଭିତରେ
ଧର୍ମରାଜ ତାଙ୍କୁ  ଇଙ୍ଗିତେ ବାରଣ
କଲେ ଉଦ୍‌ବିଗ୍ନ ମନରେ ।
ରାଜେନ୍ଦ୍ର ମହିଷୀ  ମହୀତଳେ ପଡ଼ି
ସହିଲା ଯାହା ଦୁର୍ନୟ୮
ସେ ଦୃଶ୍ୟ ଦର୍ଶନେ  ପଥର ହୃଦୟ
ତରଳି ଯିବ ନିଶ୍ଚୟ ।
ଦୁରନ୍ତ ଅନ୍ୟାୟେ  ମ୍ରିୟମାଣା କୃଷ୍ଣା
ସଭାଦ୍ୱାର ନିକଟରେ,
ରହି ତିରସ୍କାର  କଲେ ବିରାଟଙ୍କୁ
ବାଷ୍ପାକୁଳ ଲୋଚନରେ ।
ବାଣୀ ଯୁଧିଷ୍ଠିର  କଲାରୁ ବାରଣ
ଫେରି ସୁଦେଷ୍ଣା ଭବନେ,
ସକଳ ବୃତ୍ତାନ୍ତ  ଭାଷନ୍ତେ ମହିଷୀ
ପ୍ରବୋଧିଲେ ଦୁଃଖ ମନେ ।
ପ୍ରବୋଧନ ଦେଲେ  ବୁଝିବ କି ମନ
ନ ପଡ଼ିଲା ତା ପଲକ,
ଉପୁଜିଲା ହୃଦେ  ରାଜେନ୍ଦ୍ର ତନୟେ
ହେଲେଣି ତ ନପୁଂସକ ।
ମରମେ ମରମେ  ନବାଧେ କାହାକୁ
ଅପରର ପଦାଘାତ,
ବାହୁନି ବାହୁନି  କାନ୍ଦିଲେ ବିକଳେ
ଶିରୋପରେ ମାରି ହାତ ।
ଶୟନାବସଥେ  ଗଲେ ଭୀମଙ୍କରି
ଦେଖି ନିଶୀଥ ସମୟ,
ନିଦରୁ ଉଠାଇ  ପାଶେ ବସି ଭାଷେ
କୀଚକ ବଧ ବିଷୟ ।
ବିପତ୍ତି ଖାତରେ  ପକାଇ ବିଧାତା
ଦହୁଅଛି ମୋତେ ନିତି,
ମୋ ରୂପ ମାଧୁରୀ  ୯ଈକ୍ଷଣେ କୀଚକ
ହୃଦୟେ ଉପୁଜେ ପ୍ରୀତି ।

୭ କ୍ରୋଧ ୮ ମନ୍ଦଶକ୍ତ ଶୟନ+ଆବସର
ଶୋଇବା ଘର ୯ ଦର୍ଶନ

ଶତ ଶତ ଦାସୀ ଖଟୁଥିଲେ ଆସି
ଯାହାର ପୟର ତଳେ,
ବିରାଟ ନଗରେ ଆଜ ସେ ବଞ୍ଚୁଛି
ମାର୍ଜନ କରି କୁନ୍ତଳେ ।
ଅନୁଭବୀ ବିନା ଜାଣି କେ ପାରିବ
ସୁଖ ଅବା ଦୁଃଖ ଭବେ,
ବିଏ ଯା ଯାତନା ପ୍ରସବ ବେଦନା
୧ଶୂନ୍ୟା କି ଜାଣିବ ଲବେ ।
କେବେ କେଉଁ ପ୍ରାଣୀ କି ଅବସ୍ଥା ଭୋଗେ
ନପଡ଼େ ସହଜେ ଜଣା,
କାଳଗତି ନିତି ଦେଖି ଦେଖି ଲୋକେ
ବୁଝାକୁ ହୁଅନ୍ତି ବଣା ।
ପୁରୁଷ ୨ସମ୍ମୁଖେ କୀଚକ ଯାହାକୁ
ଦେଇଥିଲା ପରାଭବ,
ପ୍ରତିଫଳେ ତାର ସଂହାର ନିମିତ୍ତ
ମଗିଲେ ବଳୀପୁଙ୍ଗବ ।
ବୁଝାବୁଝି ହୋଇ ଆନନ୍ଦେ ପାଞ୍ଚାଳୀ
ନିଶା ଆସିବାରୁ ପାଇ,
୩ଆନର୍ତ୍ତ ସ୍ଥାନଟି ଦେଖାଇ କୃଷ୍ଣାକୁ
ଆବାସେ ଦେଲେ ପଠାଇ ।
ମଦାନ୍ଧ କୀଚକ ନିଶା ଅବସାନେ
ଆସି ସୈରନ୍ଧ୍ରୀ ପାଶେ,
ଗୁପ୍ତକଥା ଭାଷେ ପକାଇବା ଲାଗି
ତାକୁ ପ୍ରଲୋଭନ ପାଶେ ।
୬୦ ଦାଉ ସାଧିବାକୁ ଛଳେ ମାଗିଯାଇ
ସ୍ଥିରକରି ବେଳସ୍ଥାନ,
ସଜ ହୋଇଗଲା ଜଣାଇବାକୁ ତା
ବୃକୋଦର ସନ୍ନିଧାନ ।
କୀଚକ ସହିତ କଥୋପକଥନ
ଭୀମସେନଙ୍କୁ ଗୋପନେ,
ଯାଇ କହିବାରୁ ନୃତ୍ୟ ସଦନେ ସେ
ରହିଲେ ପୂର୍ବୁ ପ୍ରଚ୍ଛନ୍ନେ ।

୧ ବାଞ୍ଝା ୨ ଅଗାଡ଼ି ୩ ନୃତ୍ୟ ୪ ମଦ ୫ ଦ୍ରୌପଦୀ
୬ ବାୟୁନନ୍ଦନ ଭୀମ

୪ମଧୁମାଧବୀକ ପିଇ ସେ ଲମ୍ପଟ
ସାୟାହ୍ନେ ନୃତ୍ୟ ମନ୍ଦିରେ,
ସତ ବୋଲି ମଣି ସୈରନ୍ଧ୍ରୀ ବାଣୀ
ପ୍ରବେଶିଲା ଧୀରେ ଧୀରେ ।
୫ଶିଖଣ୍ଡିନୀ ଛନ୍ଦ କିଆଁ ବା ଜାଣିବ
ହୋଇଛି ଅନ୍ଧ ମଦନେ,
ମହମହ ବାସେ ପିନ୍ଧା ଆଭରଣ
କୁଙ୍କୁମ ବୋଳା ବଦନେ ।
ମନ୍ଦମନ୍ଦ ହସି ପୁଲକିତ ଚିତ୍ତେ
କରନ୍ତେ ଅଙ୍ଗ ସ୍ପର୍ଶନ,
୬ସ୍ପର୍ଶନନନ୍ଦନ କୁଣ୍ଢାଇ ତାହାକୁ
ତତକ୍ଷଣେ କଲେ ମର୍ଦ୍ଦନ ।
ଧରି ପକାଇଲା କୀଚକ ଏକାଳେ
ତାଙ୍କର ଭୁଜଯୁଗଳ,
ବୋଧ ହେଲା ମନେ ଯୁଝୁଥିଲା ପରି
ବେନି ମତ୍ତ ଦନ୍ତାବଳ ।
ବଳିଷ୍ଠ କୀଚକ କଉଶଳ କରି
ପକାନ୍ତେ ଭୀମକୁ ତଳେ,
ଉଠି ଭୀମ ତାର ୭ଶିରୋଧିକ ମୋଡ଼ି
ପ୍ରହାରିଲେ ବକ୍ଷସ୍ଥଳ ।
ବହୁକ୍ଷଣ ଯାଏ ହେଲେ କୋଡ଼ା କୋଡ଼ି
ପରସ୍ପର ବେନି ବୀର,
ଶେଷେ କୀଚକର ମହାବଳୀ ଭୀମ
ବିଦୀର୍ଣ୍ଣ କରିଲେ ଶିର ।
ମୃତକଳ୍ପ ଦେଖି ଭୀମସେନ ତାର
୮ଅସ୍ର କରି ଆକର୍ଷଣ,
ବାହୁଦ୍ୱୟେ ଛନ୍ଦି ପୋପାଡ଼ି ଦେବାରୁ
ଭଜିଲା ଆଶୁ ମରଣ ।
ହସ୍ତପଦ ଶିର ଚୂର୍ଣ୍ଣୀଭୂତ କରି
ମାଂସ ପିଣ୍ଡପରି କରି,
ଦେଖାଇଲେ ଭୀମ ପାଞ୍ଚାଳୀକି ଡାକି
୯ଶୟଦ୍ୱୟେ ତାକୁ ଧରି ।

୭ ବେକ ୮ କେଶ ୯ ହସ୍ତ

ତହୁଁ ପୃଥୁଶୃଙ୍ଗୀ ଧୂଆଧୋଇ ହୋଇ
ପଶିଲେ ୧ସୂଦଶାଳାରେ,
ସ୍ତମ୍ଭୀଭୂତ ହେଲେ ସକଳ ନଗରେ
କୀଚକ ମୃତ୍ୟୁ ବାର୍ତ୍ତାରେ ।
ଲଭନ୍ତି ମରଣ ଏ ଭାବେ ଯେପରି
ରୋଗୀଏ ଅପଥ୍ୟ କରି
ପରପତ୍ନୀ ଠାରେ ମାନସ ରଖିଲେ
ଦୁର୍ଦ୍ଦଶା ଘଟେ ସେପରି ।
ପୋଷ୍ୟବର୍ଗ ଯେତେ କୀଚକର ଅଛି
ଦେଖି ଈଦୃଶ ଘଟଣା,
ସୈରିନ୍ଧ୍ରୀ ହେତୁରୁ ପ୍ରାଣଗଲା ବୋଲି
କରିଲେ କୁତ୍ସାରଟନା ।
କୀଚକ ମରଣ ସୈରିନ୍ଧ୍ରୀ କାରଣ
ବୋଲି କହି ନୃପତିକି,
୨ପଞ୍ଚ ବସ୍ତୁ ସଙ୍ଗେ ଦହନ ନିମିତ୍ତ
ଆଣିଲେ ଅନୁମତିକି ।
ପରିବାରେ ତାଙ୍କୁ ଓଟାରି ଓଟାରି
ବାନ୍ଧିଲେ ଶବ ସଙ୍ଗରେ,
ତ୍ରାସିତା ହୋଇ ସେ ଡାକିଲେ ଆତୁରେ
ରକ୍ଷିବାକୁ ବୀରବରେ ।
"ଶୁଣିଲିଣି" ବୋଲି କହି ବୃକୋଦର
୩ପ୍ରାକାର ଲଙ୍ଘି ତୁରିତେ,
ସେମାନଙ୍କ ପଛେ ପଛେ ଗୋଡ଼ାଇଲେ
ତାର ନିସ୍ତାର ନିମିତ୍ତେ ।
ଦିଶୁଥିଲେ ଭୀମ ଭୀମ ସିଂହ ପରି
ଦେଖି ତାଙ୍କୁ ବଂଶଧରେ,
୪ଅନ୍ତଶଯ୍ୟା ପାଶେ ବନ୍ଧନ ଫିଟାଇ
ଛାଡ଼ିଦେଲେ ଭୟେ ଡରେ ।
ଦ୍ରୌପଦୀ ୫ଦୃଶାରୁ ଲୁହ ପୋଛି ଦେଇ
ସବଂଶେ ସଂହାର କରି,
ଲେଉଟିଲେ ଭୀମ ଅଣବାଟେ ପଶି
ମୁଦେ ତାଙ୍କୁ ସଙ୍ଗେ ଧରି ।

୧ ରନ୍ଧନଶାଳା ୨ ଶବ ୩ ପ୍ରାଚୀର ୪ ଶ୍ମଶାନ
୫ ଆଖି

କୀଚକ ମରଣ ପରଦିନ ଠାରୁ
ନୃପତି ପୁଣ୍ୟଶ୍ଲୋକଙ୍କୁ,
କରନ୍ତି ଆଦର କୀଚକ ସଦୃଶ
ଦେଖି ସହଜ ଗୁଣକୁ ।

## ଷୋଡ଼ଶ ସର୍ଗ

ତ୍ରୟୋଦଶ ଦିନ ବାକି ଆଉ ଅଛି
ପୂରିବାକୁ ନିର୍ବାସନ,
ପାଣ୍ଡବ ସନ୍ଧାନେ ଅସମର୍ଥ ହୋଇ
କଲେ ଗୃହେ ପ୍ରତ୍ୟାବର୍ତ୍ତନ ।
ଫେରିଲେ ଚରଙ୍କୁ ପରିଷଦ ମଧ୍ୟେ
ମନ୍ତ୍ରଣାକାରୀ ସକଳ,
କରୁଥିଲେ ତର୍କ ପାଣ୍ଡବ ସନ୍ଧାନ
ହେବ କିପରି ସଫଳ ।
ନିଷ୍ଫଳ ସନ୍ଦେଶ ଦେବାରୁ ସେମାନେ
ପୂର୍ବଜ ଦୁଃଶାସନର,
ଲୋଡ଼ିଲେ ପ୍ରଥମେ ନିରାଶ ମାନସେ
ଆମର୍ଶନ କର୍ଣ୍ଣଙ୍କର ।
କର୍ଣ୍ଣ ପରେ ଦ୍ରୋଣ ଭୀଷ୍ମ କୃପାଚାର୍ଯ୍ୟ
ଯେ ଯାହାର ଅଭିମତ,
ଦିଅନ୍ତେ ସୁଶର୍ମା କହେ କରିବାକୁ
ତୂର୍ଣ୍ଣ ମତ୍ସ୍ୟଦେଶାଯୁକ୍ତ ।
ସ୍ୱୀକୃତ ହେବାରୁ ଦୁର୍ଯ୍ୟୋଧନ ଭୂପ
ସେନାବାହିନୀ ଗହଣେ,
ସୁଶର୍ମା ଆଗରେ ଗଲେ ମତ୍ସ୍ୟଦେଶ
ଗୋଧନ ଅପହରଣେ ।
ପ୍ରବେଶି ସେଠାରେ କରନ୍ତେ ଉଦ୍ୟତ
ଗାଈପଲ ନେବାପାଇଁ,
ବିରାଟ ନୃପଙ୍କୁ ଜଣାଇଲା ବ୍ୟଗ୍ରେ
ଗବାପ୍ରଷ୍ଠ ଧାଇଁ ଯାଇ ।
ଚତୁରଙ୍ଗ ସେନା ପାଣ୍ଡବ ସହିତ
ଧରି ମତ୍ସ୍ୟଦେଶ ପତି,

ଗଲେ ସେହିକ୍ଷଣି ଶତାଙ୍ଗେ ଆରୋହି
ଉଡ଼ାଇ କେତନଛତ୍ର ।
ବହୁକ୍ଷଣ ଯାଏ ଉଭୟ ଦଳରେ
ଲାଗନ୍ତେ ଲଢ଼ାଇ ଅତି,
ପରାଜୟ କରି ବିରାଟଙ୍କୁ ନେଲେ
ବାନ୍ଧି ତ୍ରିଗର୍ତ୍ତାଧିପତି ।
ଏ ଦୃଶ୍ୟ ଦର୍ଶନେ ଅଗ୍ରଜ ପାଣ୍ଡବ
ପାବନିଙ୍କ ଠାରି ଠାରି,
ପେଷିବାରୁ ବ୍ୟଗ୍ରେ ଦୁହିଁଙ୍କ ମଧ୍ୟରେ
ଲାଗିଲା ସମର ଘୋର ।
ଅନନ୍ତର ଭୀମ ସୁଶର୍ମାଙ୍କୁ ଧରି
ନିଷ୍ଠୁର ମାଡ଼ ଚଢ଼ାଇ,
ମୋଡ଼ା ମୋଡ଼ି କରି ବାହୁଦ୍ୱୟେ ଜବ
ବିମାନୁ ଦେଲେ ଗଡ଼ାଇ ।
ଡେଇଁପଡ଼ି ରଥୁ ସଙ୍ଗେ ସଙ୍ଗେ ତାଙ୍କୁ
ଦଅନ୍ତେ ପୁନଃ କଚଡ଼,
ତ୍ରିଗର୍ତ୍ତ ରାଜାର ସେନାଏ ତକ୍ଷଣେ
ପଳାଇଲେ ଯୁଦ୍ଧଭୂଇଁ ।
ଧୂଳିଧୂସରିତ ସୁଶର୍ମାଙ୍କୁ ବାନ୍ଧି
କୌନ୍ତେୟ ନିକଟା ଆଣି,
ପଚାରିଲେ ତାଙ୍କୁ "କପଟାଇ ଅକର୍ମେ
ପ୍ରବେଶିଲୁ ଜାଣି ଜାଣି ।
ଯୁଧିଷ୍ଠିର ମୁଖୁ ଶୁଣି ଭୀମସେନ
ମୁକ୍ତ କଲେ ଦୁରାତ୍ମାଙ୍କୁ,
କହିଲେ ଭବିଷ୍ୟେ ଏତାଦୃଶ କର୍ମେ
ନପଶିବା ଲାଗି ତାଙ୍କୁ ।
ଭୁଜବଳଶାଳୀ ସଂଯମନଶୀଳ
ପାଣ୍ଡବେ ସେଦିନ ରାତି,
ପୁହାଇଲେ ସୁଖେ ପ୍ରସନ୍ନ ପ୍ରାଙ୍ଗଣେ
କୁଣ୍ଠେ ମୋଚ୍ଚ କରି ଗ୍ଲାନି ।
ସୁଶର୍ମା ସ୍ୱଗୃହେ ଗମନ୍ତେ ବିରାଟ
ପାଣ୍ଡବମାନଙ୍କ ସହ,
ଫେରି ସେମାନଙ୍କୁ ଦେଲେ ଧନରତ୍ନ
ଜିଣିବାରୁ ଏ ବିଗ୍ରହ ।

ଏଣେ ସୁଯୋଧନ ସୈନ୍ୟ ମୁଖୁ ଶୁଣି
ସୁଶର୍ମାର ପରାଜୟ,
ଗୋଧନ ହରଣ ମାନସେ ଆସିଲା
ଘେନି ମହାରଥିଚୟ ।
ପ୍ରସରେ ପ୍ରହାର କରିବାରୁ ଅଗ୍ରେ
ଗୋପାଳଙ୍କୁ ଗୁହାଳରେ,
ମୁଖ୍ୟ ଗୋରକ୍ଷକ ଧାଇଁଆସି ଦେଲା
ସନ୍ଦେଶ ରାଜନଗରେ ।
ସାରଥି ବିହୀନ ଥିବାରୁ ଉତ୍ତର
ଚିନ୍ତିତ ହେବା କାଳରେ,
ସୈରିନ୍ଧ୍ରୀ ଆସି କହିଲେ ସମର୍ଥ
ବୃହନ୍ନଳା ଏ କର୍ମରେ ।
ଏଅନ୍ତେ ଉତ୍ତର ଡାକି ବୃହନ୍ନଳା
ରଥରେ ସାରଥି କରି,
କୌରବ ଗହଣେ ପଶିବାକୁ ଗଲେ
ସଙ୍ଗରେ କୋଦଣ୍ଡ ଧରି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ମହାରଥି ଦେଖି
ଉତ୍ତର ହେବାରୁ ସ୍ତ୍ରସ୍ତ,
୧ପତାକୀ ଗୃଳନେ ଆଦେଶି ତାହାଙ୍କୁ
ହେଲେ ସେ କୋଦଣ୍ଡ ହସ୍ତ ।
ଚଳନ୍ତୁ ଉତ୍ତର ଭଙ୍ଗ ହୋଇ ରଥୁ
ଓହ୍ଲାଇ ପଳନ୍ତେ ଡରେ,
୨ଶବ୍ଦଭେଦୀ ତାର ଆକର୍ଷି କୁନ୍ତଳ
ଧରି ପକାଇଲେ ତ୍ୱରେ ।
୩ପିଙ୍ଗୀଶିଖେ ଥୋଇ ଥିବା ଅସ୍ତ୍ରଚୟ
କଢ଼ାଇ ତାର ହସ୍ତରେ,
ଗାଣ୍ଡୀବକୁ ଧରି ୪ଅକ୍ଷେ ଚଢ଼ି ହେଲେ
ଉଭା ବିପକ୍ଷ ଆଗରେ ।
ଅର୍ଜୁନ ବୋଲି ସେ ଦେଇ ପରିଚୟ
ବଜାଇଲେ ୫କମ୍ବୁଥରେ,
ସେ ମହାନାଦରେ ଉତ୍ତର ଭୟରେ
ବସି ପଡ଼ିଲେ ରଥରେ ।

---

୧ ରଥ ୨ ଅର୍ଜୁନ ୩ ଶମୀଗଛ ୪ ରଥ ୫ ଶଙ୍ଖ

କମ୍ପିଲ ବସୁଧା ଗିରିଗୁହାମାନ
ଭୟଙ୍କର ଧ୍ୱନି ଶୁଣି,
୧ବର୍ତ୍ତିକ ଶକୁନ ୨ଜମ୍ବୁକ ନିଚୟ
ରବିଲେ ଶଙ୍କିତ ପୁଣି ।
ଚଢ଼ିଲ ଲାଗିଲେଣି ବିପକ୍ଷୀୟ ଦଳେ
ଛାଡ଼ ଦେବାକୁ ଗୋଧନ,
ମୁଖ ପ୍ରସନ୍ନତା ନଥିଲା କାହାର
ସମସ୍ତେ ଆତଙ୍କେ ସନ୍ନ ।
ଆପଣା ପ୍ରଉଢ଼ ଦେଖାଇ କହନ୍ତି
୩ସୂତପୁତ୍ର ହର୍ଷମନେ,
ଗଡ଼ାଇବ ୪ତାର୍କ୍ଷ୍ୟ ଏକ୍ଷଣି ୫ତାର୍କ୍ଷ୍ୟଙ୍କୁ
ଦେଖିବେ ଜଗତ ଜନେ ।
ହୁଅନ୍ତୁ କିରୀଟୀ ଅଥବା ବିରାଟ
ଯୁଝି ଯୁଝି ଏକୁଟିଆ,
ମହାୟୁ ହସ୍ତରୁ ବିମୁକ୍ତ ବିଶିଖେ
ଅବଶ୍ୟ ହେବେ ହାଳିଆ ।
ଅର୍ଜୁନ ହୃଦୟେ ଏକାଦଶ ବର୍ଷ
ଅନିଶ ଯୋଗ ସାଧନେ,
କାରୁଣ୍ୟ ରସର ହୋଇଛି ସଞ୍ଚାର
ବୋଲି ବୋଧ ହୁଏ ମନେ ।
୬ଚକ୍ରୀକ ୭କାଶ୍ୟପି କରଇ ଆୟତ୍ତ
ଅନାୟାସରେ ଯେମନ୍ତ,
କର୍ଣ୍ଣ ୮ବାଜୀ ବାଜ ହେବ ଅବନତ
ଅବାଧେ କୃଷ୍ଣ ତେମନ୍ତ" ।
"ତହୁଁ କୃପ ଆକ୍ଷେପେ ନୁହଇ ସହଜ
ଜିଣିବାକୁ ଧନଞ୍ଜୟ,
ଦେଶକାଳ ବୁଝେଁ ଅନୁକୂଳ ହେଲେ
ହୁଅଇ ସମରେ ଜୟ ।
ଏକାକୀ ଅର୍ଜୁନ ପାଞ୍ଚବର୍ଷ କାଳ
ପାଳି ବ୍ରହ୍ମଚର୍ଯ୍ୟ ବ୍ରତ,
ରୁଦ୍ରଙ୍କୁ ଅରଣ୍ୟେ କରିଥିଲେ ତୁଷ୍ଟ
ଜାଣିଛି ଏହା ଜଗତ ।

ଏକାକୀ ଏ ଯୁଦ୍ଧେ ଗନ୍ଧର୍ବରାଜଙ୍କୁ
ଦେଇଥିଲା ପରାଭବ,
ତାଙ୍କୁ ହରାଇବା କୌରବ ପକ୍ଷରେ
ହେବ କି କେବେ ସମ୍ଭବ ।
କହ କର୍ଣ୍ଣ, କେବେ ଏକାକୀ ସମରେ
କାହାକୁ କରିଛ ବଶ,
ଆପଣା ବଡ଼ାଇ ଦେଖାଇ କାହିଁକି
କରିବ କୁଳ ବିଧ୍ୱଂସ ।
ଅର୍ଜୁନ ସଙ୍ଗରେ ଯୁଝିବାକୁ ଶକ୍ର
ଶଙ୍କିତ ହେବେ ନିଶ୍ଚୟ,
୯କରିପ ନଥାଇ କରି ପ୍ରବେଷ୍ଟେ ସିଂହ
ସରିବେ କରୀନ୍ଦ୍ର ଭୟ ।
ତା ସହିତ ଯୁଝି ପଡ଼ିବ ମନସି
କରାଳ କାଳ କବଳେ,
କେ ତରିଛି ସିନ୍ଧୁ ମହାଶିଳା ଗଳେ
ବାନ୍ଧି ନିଜ ଭୁଜବଳେ ।
ତୁମରି ମନ୍ତ୍ରଣେ ହେଗନ୍ତ କଷଣ
କୁରୁକୁଳ ଅବତଂସ,
ନ ଘେନିଲେ ମନା ସମୂଳେ କୌରବେ
ଲଭିବେ ଜବେ ବିଧ୍ୱଂସ ।
ଯୁଦ୍ଧ ଜୟ କରି ଲଭଇ ସନ୍ତୋଷ
ଏ ଭବେ ବୀର ପୁରୁଷ,
ନିରମନା ସିନା କହୁଥାଏ ବସି
ସଦା ନିଜ ପଉରୁଷ ।
ନିର୍ଦ୍ଦୋଷ କରମ କରି ବସୁଧାରେ
କରି ଧନ ଉପାର୍ଜ୍ଜନ,
ଜନ ନେବେ ଘୃଣ୍ୟ ଚୌର୍ଯ୍ୟବୃତ୍ତି ସଦା
କରିଲେ ଅବଲମ୍ବନ ।
୧୦କ୍ରବ୍ୟ ଲୋଭେ ବ୍ୟାଧ ତୁଲ୍ୟ ଦୁର୍ଯ୍ୟୋଧନ
ନିଠୁର ସ୍ୱଭାବ ହେଉଛ,
କପଟ ଉପାୟେ ଅର୍ଜିଅଛ ରାଜ୍ୟ
ଲୁଣ୍ଠନା ପ୍ରଦାନ ଗୁଚ୍ଛ ।

୧ ଶାଗୁଣା ୨ ଶୃଗାଳ ୩ କର୍ଣ୍ଣ ୪ ରଥରୁ ୫ ଅର୍ଜୁନ
୬ ସର୍ପ ୭ ଗରୁଡ଼ ୮ ଶର

୯ ମାହୁନ୍ତ ୧୦ ମାଂସ

ପାଣ୍ଡବମାନଙ୍କ ଆନନ୍ଦ ତରୁର
ମୂଳକୁ ଛେଦନ କରି,
ଓଟାରି ଓଟାରି ପୁରୁଷ ସଭାକୁ
ଆଣିଲ ପାଞ୍ଚାଳୀ ଧରି ।
ସତେକି ସେକଥା ଯାଉଛି ପାସୋରି
ଏବେ ଅର୍ଜ୍ଜୁନ ମନରୁ,
ନଶୋଭେ ବଡ଼ମା କ୍ଷାନ୍ତ ହୁଅ କର୍ଣ୍ଣ
ନିଷ୍ଫଳ ଯୁକ୍ତିତର୍କରୁ" ।
୧ଶିବେତର ଚକ୍ଷୁ ଦଶିଲେହେଁ ତଦା
ନମାନି କୃପବଚନ,
ଅନାଇଁ ତାହାଙ୍କୁ "କାପୁରୁଷ" ବୋଲି
ଚିଙ୍ଗାସିଲା ଦୁଃଶାସନ ।
ନବୁଝି ନହୋଇ ୨ଆହାବୁ କୌରବେ
ହେଲେ ଦଳବଦ୍ଧ ରଣେ,
ଏକାଳେ ଅର୍ଜ୍ଜୁନ ଆକର୍ଷି ୩ଚକ୍ଷ୍ୱାସ
କଲେ ଘୋଷ ଉଚ୍ଚୈଃସ୍ୱରେ ।
୪ସ୍ୟନ୍ଦନ ନିକ୍ୱଣ୫ ମର୍କଟ ନିନାଦ
ପୁଣି ଗାଣ୍ଡୀବରଧ୍ୱନ,
ମିଶି ୬ଦରଘୋଷ କୁରୁବଳଙ୍କର
ହୃଦୟ କଲା ମନ୍ଥନ ।

## ସପ୍ତଦଶ ସର୍ଗ

"କହୁଛନ୍ତି ଦ୍ରୋଣ ହେଉଅଛି ବୋଧ
ଦୁଇ ଦୁଇ ଆସି ଶର,
ପଦକର୍ଣ୍ଣ ଛୁଇଁ ପଡ଼ିଲେଣି ତଳେ
ପ୍ରବନ କରି ଆମ୍ଭର ।
ବହୁଦିନ ପରେ ଦେଉଛନ୍ତି ଦେଖା
ପ୍ରିୟଶିଷ୍ୟ ଧନଞ୍ଜୟ,
ଘୃତଧାରାଯୁକ୍ତ ବହ୍ନି ତୁଲ୍ୟ ରୂପ
ଦେଖି ପ୍ରଫୁଲ୍ଲ ହୃଦୟ" ।
"ଚଲାଅ ୭ବିଶିଖ ଯେଉଁଠାରେ ଅଛି
ଅଭିମାନୀ ଦୁର୍ଯ୍ୟୋଧନ,

୧ ଅମଙ୍ଗଳ ୨ ଯୁଦ୍ଧରୁ ୩ ଧନୁ ୪ ରଥ ୫ ଶବ୍ଦ
୬ ଶଙ୍ଖଶବ୍ଦ ୭ ଶର

କହିଲେ ୮ସିତାଶ୍ୱ ୯ସ୍ୱପତାକ ଏହା
ଦେଖାଇ ୧୦ଅସ୍ତ୍ର ଲେଚନ ।
ଧ୍ୱଜମ ଉଚରେ ଗଲାବେଳେ ୧୧ତାର୍କ୍ଷ୍ୟ
୧୨ତାର୍କ୍ଷ୍ୟମାନଙ୍କ ଗର୍ଜ୍ଜନ,
ଶୁଭନ୍ତେ ସେ ଶବ୍ଦ କଉରବଙ୍କର
କଲାକ ଗର୍ବଗଞ୍ଜନ !
୧୩ଯୁଦ୍ଧରେ ୧୪ପୁଷ୍କର ୧୫ପ୍ରକର ପ୍ରକ୍ଷେପେ
୧୬ପୁଷ୍କର ହେଲା ଆଚ୍ଛନ୍ନ,
ଆତ୍ମପର କିଛି ନ ହେବାରୁ ବାଛି
ମଣିଲେ ସୈନ୍ୟ ନିଧନ ।
ଲୋଭେ ପଡ଼ି ମତ୍ସ୍ୟ ଗ୍ରାସି ବଡ଼ିଶୀକ
ମରଣ ଲଭଇ ଯଥା,
ଗୋଧନ ଆଶାରେ ଯୁଦ୍ଧରେ ପ୍ରବେଶି
ଦୁର୍ଯ୍ୟୋଧନ ସୈନ୍ୟ ତଥା ।
ବୀଭତ୍ସୁ ତାର୍କ୍ଷ୍ୟରୁ ଭୂତମାନଙ୍କର
ଶୁଣି ଅମାନୁଷ ସ୍ୱନ,
ପୁଚ୍ଛ ଟେକି ଟେକି ହେଲେ ଧାବମାନ
ଅବାଚୀ ଦିଗେ ଗୋଧନ ।
ଗାଣ୍ଡୀବ କୋଦଣ୍ଡେ ଗୁଣକରି ଏଣେ
କୌରବ ପକ୍ଷୀ ସକଳ,
ଖୋଜୁଥିଲେ ରଣ ଗାଣ୍ଡୀବୀ କର୍ଣ୍ଣଙ୍କୁ
ପରଖିବାକୁ ତା ବଳ ।
କର୍ଣ୍ଣର ସୋଦର ଏକାଳେ ହାବୁଡ଼େ
ପଡ଼ନ୍ତେ ଅର୍ଜ୍ଜୁନଙ୍କର,
ଗୋଟିଏ ପକ୍ଷୀରେ ପଡ଼ିଲା ଭୂଇଁରେ
ହୋଇ ଛିନ୍ନ କଳେବର ।
ସୋଦର ନିଧନେ ବ୍ୟତିବ୍ୟସ୍ତ ହୋଇ
ଛଦନ୍ତେ ଆସିଲା କର୍ଣ୍ଣ,
ଅର୍ଜ୍ଜୁନ ଦର୍ଶନେ ସନ୍ନ ହୋଇ ଅବା
ଦିଶିଲା ଅତି ବିବର୍ଣ୍ଣ ।
ବହୁକ୍ଷଣ ଧରି ବେନି ଭଇ ମଧ୍ୟେ
ଲାଗିଲା ଘୋର ପ୍ରସର,

୮ ଅର୍ଜ୍ଜୁନ ୯ ସାରଥି ୧୦ ଉକ୍ତ ୧୧ଅର୍ଜ୍ଜୁନ ୧୨ଅଶ୍ୱ,
୧୩ ଯୁଦ୍ଧ ୧୪ ଶର ୧୫ ସମୂହ ୧୬ ଆକାଶ

୧ସୂର୍ଯ୍ୟ ସୁତ ଏଣେ    କଲେ ପଳାୟନ
ବାଜିବାରୁ ତୀକ୍ଷ୍ଣ ଶର ।
ଏକ କର୍ଣ୍ଣୀ ପକ୍ଷୀ    ମଗ୍ନ ରହିବାରୁ
କର୍ଣ୍ଣର କର୍ଣ୍ଣ ମୂଳରେ,
ତାଙ୍କ ୨ପତାକିନୀ    ଦେଖି ଦେଇ ତାହା
ଯୁଦ୍ଧୁ ପଳାଇଲେ ଡରେ ।
କର୍ଣ୍ଣ ପଳାୟନ    ଦେଖି ଦୁର୍ଯ୍ୟୋଧନ
ଚିନ୍ତାଗ୍ରସ୍ତ ହୋଇ ଅତି,
ପ୍ରାଣ ବିକଳରେ    ସିତସପ୍ତି ପ୍ରତି
ନିକ୍ଷେପିଲା ୩ପକ୍ଷତତି ।
ହାସ କରି ତାକୁ    ନିବାରଣ ଲାଗି
୪ଇଷ୍ୱାସେ ଗୁଣ ଚଢ଼ାଇ
କ୍ଷଣକ ମଧ୍ୟରେ    ବର୍ଷନ୍ତେ କାଦମ୍ବ୫
ପ୍ରସରୁ ଗଲା ପଳାଇ ।
ଅସ୍ତ୍ର ଜର୍ଜରିତ    କୌରବ ଶରୀର
ସିତସପ୍ତି ଶରାଘାତେ,
ଦିଶୁଥିଲା ଅବା    ପଳାଶ ପାଦପ
ହୋଇଛି ମଣ୍ଡି ଲତାନ୍ତେ୬
ବିଜୟ ୭ଅବ୍ଦ ପରି    ୮ଭୈରବ ରବରେ
ବ୍ୟାଘ୍ରଭୟେ ପକ୍ଷୀ ପରି,
ବିପକ୍ଷ ବାହିନୀ    ଗଲେ ଇତସ୍ତତ
ନିଜନିଜ ରାହା ଧରି ।
ଅରାତି ରୂପକ    ପାଦପ ଉପାଡ଼ି
ଦେବାରୁ ଶ୍ୱେତବାହାନ,
୯ପ୍ରାଜକ ଉତ୍ତର    ଆନନ୍ଦ ବିଭୋର
ହୋଇ ଚଳାଇଲେ ସ୍ୟନ୍ଦନ ।
ସୁଭାଓଟନେ ବୁଲା    ଉଗ୍ର ହୋଇ ତହୁଁ
କୃପଙ୍କ ୧୦ଅଙ୍ଗ ଆଗରେ,
ଟୁଣ୍ଡାଇ କୋଦଣ୍ଡ    ବନ୍ଧି ତୀକ୍ଷ୍ଣ କାଣ୍ଡ
କଲେ ଖଣ୍ଡ ଖଣ୍ଡ ଶରେ ।
ମହାକୋପେ କୃପ    ଡେଇଁ ପଡ଼ି ରଥୁ
ରହ ରହ ବୋଲି କହି,

୧ସୂର୍ଯ୍ୟପୁତ୍ର-କର୍ଣ୍ଣ ୨ସେନା ୩ଅର୍ଜ୍ଜୁନ ୪ଧନୁ ୫ଶର ୬ଫୁଲ ୭ମେଘ ୮ଭୟଙ୍କର ୯ସାରଥି ୧୦ରଥ

ଫୋପାଡନ୍ତେ ଗଦା    ଶୋଭିଲେ ବାଟରେ
ତାର୍କ୍ଷ୍ୟପଟରେ ତାର୍କ୍ଷ୍ୟ ଉଭେ
ଛେଦନ୍ତେ ବିଜୟ    କୃପ ଅସ୍ତ୍ରାଷ୍ଟ୧୧
କରିବାରୁ ଖଣ୍ଡ ଖଣ୍ଡ
ସକଳ ଉଦ୍ୟମ    ମହା କୃତବିଦ୍ୟ୧୨
କୃପଙ୍କର ହେଲା ପଣ୍ଡ ।
ଅସ୍ତ୍ରଚ୍ୟୁତ କୃପ    ପାଇ ପରାଭବ
ଲେଉଟିବାରୁ ଲାଜରେ,
ନ୍ୟାୟ ପରାୟଣ    ଭରଦ୍ୱାଜ ସୁତ
ଦ୍ରୋଣ ପ୍ରବେଶିଲେ ତ୍ୱରେ ।
ଭକ୍ତିଭରେ ବନ୍ଦି    ତାହାଙ୍କୁ ଅର୍ଜ୍ଜୁନ
ଭାଷିଲେ ତାଙ୍କୁ ବିନୟେ,
ବହୁ ଦିନ ପରେ    ଆସିଛି ବିଜୟ
ଯୁଦ୍ଧକୁ ଆସି ନିର୍ଭୟେ
ଗୁରୁଶିଷ୍ୟ ଦୁହେଁ    ହେଲେ ମୁହାଁମୁହିଁ
ଯେ ଯାହା କୋଦଣ୍ଡ ଧରି,
ସବ୍ୟସାଚୀ ପ୍ରତି    ପ୍ରକ୍ଷେପିଲେ ପକ୍ଷୀ
ଗୁରୁଦ୍ରୋଣ ଆଗକରି ।
ଦୂରରୁ ଗାଣ୍ଡୀବୀ    କଲେ ଖଣ୍ଡ ଖଣ୍ଡ
ନିନ୍ୟାସି ଅବ୍ୟର୍ଥ ଶର
ରଗେଇବା ଲାଗି    ତାଙ୍କୁ ଗୁରୁ ପୁଣି
ବିନ୍ଧିଲେ ୧୩ମୁଞ୍ଜନିକର ।
ଗୁରୁ ଶିଷ୍ୟଙ୍କର    ସଂଗ୍ରାମ ଦର୍ଶନେ
୧୪ବୃନ୍ଦାରକେ ହେଲେ ରୁଣ୍ଡ ।
ଦୁହିଁଙ୍କ ଯୁଦ୍ଧରେ    ଉଡ଼ିଗଲା ଜବେ
କେତେ ସେନାଙ୍କର ମୁଣ୍ଡ ।
ଜୟ ଆଶା ତଳେ    ନଥିବାରୁ ଦ୍ରୋଣ
ଗମନ୍ତେ ୧୫ଆଜିକି ଛାଡ଼ି
ବୀର ଅଶ୍ୱତ୍ଥାମା    ଆସିଲେ ସେଠାକୁ
ଡରେ ମୁଣ୍ଡ ଲଡ଼ଲଡ଼ ।
ବୁଢ଼ୁଙ୍ଗ ଦେଖାଇ    ଦ୍ରୋଣାତ୍ମଜ ଆଗେ
ଗାଣ୍ଡୀବର ଗୁଣ କାଟି

୧୧ ରଥଯନ୍ତ୍ର ୧୨ ସର୍ବବିଦ୍ୟାରେ ନିପୁଣ ୧୩ଶର ୧୪ ଦେବତାମାନେ ୧୫ ଯୁଦ୍ଧ

ପ୍ରଶଂସିତ ହେଲେ    କୌରବ ପକ୍ଷରୁ
ଶୁଭିଲ ବିଜୟ ଘାଟି ।
ଏକାକୀ ଯୁଦ୍ଧରେ    ନୋହି କ୍ଳାନ୍ତ ତେଜେ
ନୂତନ ୧ମୌର୍ବୀ ଲଗାଇ,
ନ୍ୟାସି ୨ଅସ୍ତ୍ର କଣ୍ଠ    ଅଶ୍ୱତ୍ଥାମାଙ୍କର
୩ସଂରମ୍ଭ ଦେଲେ ଛଡାଇ ।
ଦ୍ରୋଣାଙ୍ଗଜଙ୍କର    ପରାଜୟ ଦେଖି
ପୁନର୍ବାର କର୍ଣ୍ଣ ବୀର,
ଆସିବାରୁ ଜିଷ୍ଣୁ    ୪ପତ୍ରମାନ ବିନ୍ଧି
ତାହାଙ୍କୁ କଲେ ଅସ୍ଥିର,
"କୋପାବିଷ୍ଟ ହୋଇ    ଭାଷିଲେ ବିଜୟ
ପାଷାଣ୍ଡ ଭଲ ହରର,
କରଥିଲୁ ବୋଲି    ପଶାଖେଳ ବେଳେ
କରିବ ଆଗେ ସଂହାର ।
ପଳାଇ ଯୁଦ୍ଧରୁ    ପରାଜୟ ଲଭି
ଆସିଅଛୁ ଆଉଥରେ,
ଜୀବନ ଧାରଣ    କରିଛୁ କପଟ
ନମର ଲଜ୍ଜା ଭୟରେ ।
ବଞ୍ଚିଅଛୁ ତବେ    ଦୁର୍ଯ୍ୟୋଧନଙ୍କର
୫ଅଙ୍ଘ୍ରିକୁ ଲେହନ କରି
ଦେଖାଉଛୁ ମୁହଁ    ଆତ୍ମଶ୍ଳାଘା କରି
ସଭକୁ ତଳେ ନଡରି ।"
ପରୁଷ ବଚନ    ଶୁଣି ରାଧାସୁତ
ବିନ୍ଧିଲା ଗୋଟାଏ ଶର,
ଇଚ୍ଛିଥିଲା ପର    କପିକେତନର
ଛିଣ୍ଡାଇ ଦେବାକୁ କର ।
କୋପାନଳେ ଜଳି    ସିଦ୍ଧଲକ୍ଷ୍ୟ ଧନ୍ୱୀ୬
ନ୍ୟାସିବାରୁ ଇଷୁଚୟ,
କୋଦଣ୍ଡ ଖଣ୍ଡିତ    ଗୁଣ୍ଡକର ପୁଣି
ଭେଦିଲା କର୍ଣ୍ଣ ହୃଦୟ ।
ଛଟପଟ ହୋଇ    ପଳାନ୍ତେ ସପଦି୭
ଶୁଣି ଅତି ତିରସ୍କାର,

୧ ଗୁଣ, ୨ ଶର, ୩ ଗର୍ବ, ୪ ଶର ୫ ପାଦ
୬ ଅର୍ଜୁନ, ୭ ଶୀଘ୍ର

ଭୀଷ୍ମ ପାଶେ ତହୁଁ    ଗଲେ ୮ପତ୍ରୀ ଘେନି
ଦେବାକୁ ତାଙ୍କୁ ପ୍ରହାର ।
ସ୍ୟନ୍ଦନ ଚାଳନେ    ଅସମର୍ଥ ଯେଣୁ
ଲାଗୁଅଛି ବାଧା ଅତି,
ବୋଲି ଫାଲ୍‌ଗୁନଙ୍କୁ    କହନ୍ତି ଉତ୍ତର
ନଥିବା ପରି ଶକତି ।
"ରକ୍ତମାଂସ ପୁଣି    ମସ୍ତକ କେଶର
ଦୁର୍ଗନ୍ଧେ ହୋଇ ମୂର୍ଚ୍ଛିତ
୯କମ୍ବୁ ଧ୍ୱନି ପୁଣି    ଗାଣ୍ଡୀବ ନାଦରେ
ହେଉଅଛି ବିଚଳିତ ।
୧୦ଭୁଜଗୀଶ ସଦୃଶ    ୧୧ପତ୍ରୀ ବୃଷ୍ଟି ଦେଖି
ହୁଏ ଭୀତ ଅତିଶୟ,
ଭ୍ରମୁଥିଲା ପରି    ଦିଶେ ଭୂମଣ୍ଡଳ
କରେ ସ୍ପନ୍ଦନ ହୃଦୟ" ।
ଏତାଦୃଶ ଭାବ    ଦେଖି ଉତ୍ତରର
କହନ୍ତି ତହୁଁ ବିଜୟ,
"ରାଜବଂଶେ ଜନ୍ମି    ନହୋଇ କାତର
ଚଳାଅ ରଥେ ବିଜୟ ୧୨
ଯୁଦ୍ଧେ ଏକୁଟିଆ    କୌରବ ସଙ୍ଗରେ
ନକର ତିଳେ ଖାତର,
କାପୁରୁଷ ପରି    ରହିବ ଶମ୍ପରେ୧୩
ନୁହଇ ଧର୍ମ ଆମ୍ଭର ।
ସମ ବା ବିଷମ    ୧୪ରଣରେ ମଣିଷ
ହର୍ଷେ ରହିବ ସଦା
କୃଷ୍ଣ ବାଜୀ ବାଜ    ବିପକ୍ଷଙ୍କ ମତ
କୁତ କୁତ ହେବ ଗଦା ।"
ଦିଅନ୍ତେ ଉତ୍ତର    ଜିଷ୍ଣୁ ଉତ୍ତରକୁ
ଚଳାଇଲେ ସେ ବିମାନ,
ପକାଇଲେ କାଟି    ଶମ୍ବରେ ଭୀଷ୍ମଙ୍କ
୧୫ସ୍ୟନ୍ଦନ କେତନମାନ ।
ଏକାଣ୍ଡ ଦର୍ଶନ    କରି ଦୁଃଶାସନ
ଆସନ୍ତେ ଆଜି ସ୍ଥଳକୁ ।

୮ ରଥ ୯ ଶଙ୍ଖ ୧୦ ଶିଙ୍ଘ ୧୧ ଶର ୧୨ ରଥ
୧୩ ଯୁଦ୍ଧରେ ୧୪ ଯୁଦ୍ଧରେ ୧୫ ରଥ

ଅର୍ଜ୍ଜୁନ ପ୍ରହାରେ      ସନ୍ଧାନିଲା ଶର
ଆକର୍ଣ୍ଣ କର୍ଣ୍ଣମୂଳକୁ ।
ନିମେଷେ ୧ନିରାସ      କଲେହେଁ ନାଗର
ଚଢ଼ିଲା ଭୂତଳେ ଯାଇ,
ଦେଖି ତା ପ୍ରାଜକ*      ବାହୁଡ଼ିଲା ଆଶୁ
ସ୍ୟନ୍ଦନକୁ ଲେଉଟାଇ ।
ତଦନ୍ତେ ସକଳ      କୌରବ ପକ୍ଷୀୟ-
ହୋଇ ପୁଞ୍ଜୀଭୂତ ଥରେ,
କରିବାକୁ ଯୁଦ୍ଧ      ଫାଲ୍‌ଗୁନ ନିକଟେ
ପ୍ରବର୍ତ୍ତିଲେ ନିର୍ଭୟରେ ।
ଏମାନଙ୍କୁ ଦେଖି      କ୍ଷିପ୍ରହସ୍ତ କୃଷ୍ଣ
ଜାଣୁଥିଲେ ଯୋଧମାନେ,
କ୍ଷଣକେ ତାଙ୍କର      ତେଜସ୍ୱୀନ ରୂପ
ସକଳେ ହେଲେ ମ୍ଳାନେ ।
ଭୟ ପ୍ରଦର୍ଶନ      ଲାଗି ଧନଞ୍ଜୟ
ତୁରିତେ କ୍ଷେପନ୍ତେ ଶର,
୨ବାଜିରାଜି ବାଜି      ଭୂମିତଳେ ଭଗ୍ନ
ପଡ଼ିଲେ ୩ବାଜୀନୀକର ।
୪ଅନନ୍ତେ ସେ ପୁଣି      ହସି ସେମାନଙ୍କୁ
ଐନ୍ଦ୍ରାସ୍ତ୍ର କଲେ ସନ୍ଧାନ,
ତହିଁରୁ ବାହାରି      ହୁତାଶନ ଶିଖା
ଜାଳିଲା ସବୁ ବିମାନ ।
ପରାଣ ବିକଳେ      ପଳାଇଲେ ଛାଡ଼ି
ଯୁଦ୍ଧ ଭୂଇଁରୁ ସକଳେ ।
ମାତ୍ର ଗଙ୍ଗାସୂନୁ      ରଥ ଶୂନ୍ୟ ହୋଇ
ରହିଲେ ସଂଗ୍ରାମସ୍ଥଳେ ।
ମର୍ମଭେଦୀ ୪ସାୟେ      ୫ତାପତ୍ୟକୁ ଖ୍ରିଷ୍ଣୁ
କରିବାରୁ ଆକ୍ରମଣ,
ନିବାରି ତାହାକୁ      ପ୍ରାଣାନ୍ତଦ ପତ୍ରୀ
କଲେ କୃଷ୍ଣ ପ୍ରକ୍ଷେପଣ ।
ସୁବର୍ଣ୍ଣ ମଣ୍ଡିତ      କୋଦଣ୍ଡକୁ ତୂର୍ଣ୍ଣେ
କରନ୍ତେ ତାର୍କ୍ଷ୍ୟ ଛେଦନ,

ଅନ୍ୟ କାର୍ମୁକକୁ      ଧରି ୬ସୁରବନ୍ଧୁ
କଲେ ୭ବିଶିଖବର୍ଷଣ ।
ବଇରି ଗଞ୍ଜନ      ଫାଲ୍‌ଗୁନ ପ୍ରୀତରେ
ଖ୍ରିଷ୍ଣୁଙ୍କୁ କରି ପ୍ରଣାମ,
ଗାଣ୍ଡୀବ କୋଦଣ୍ଡେ      ତାଙ୍କୁ କ୍ଷିପ୍ରେ କଲେ
କାଣ୍ଡ ବୃଷ୍ଟି ଅବିରାମ ।
ସ୍ୟନ୍ଦନର ୮ସୂତ      ପୁରୁବସୁଙ୍କର
ସିତାଗ୍ର ସାୟ ଘାତରେ,
ମହାନଦ୍ରାଭଜ      ଟଳନ୍ତେ ତଳକୁ
ପଳାଇଗଲେ ସେ ଡରେ ।

## ଅଷ୍ଟାଦଶ ସର୍ଗ

ନିରାଶ ହୃଦୟେ      ଯୁଦ୍ଧରୁ ଓହରି
ଗାଙ୍ଗେୟ ଚିବାରୁ ଫେରି,
ଅବସନ୍ନ ଦେଖି      ତାଙ୍କୁ ସେ ସମୟେ
କଉରବେ ଗଲେ ଘେରି ।
୯କୁନ୍ତିଆ ଯୁଦ୍ଧ      ଯୁଝି ଶୁଝି ଧର୍ମ୍ମ
କୌରବ ରଥି ସହିତ,
ଅକ୍ଷତ ଶରୀର      ଥିଲା ତାହାଙ୍କର
ଦିଶୁଥିଲେ ଉଲ୍ଲସିତ ।
ପରାଜୟ ଲଭି      ସକଳ ଗଲେହେଁ
ପୁନର୍ବାର ଦୁର୍ଯ୍ୟୋଧନ,
ସଂଗ୍ରାମ ଅଙ୍ଗନେ      ଆସିଲା ସତ୍ୱର
ଭୂକମ୍ପାକୁ କରି ଗର୍ଜ୍ଜନ ।
୧୦ଅକାଣ୍ଡେ କାଣ୍ଡଟେ      ବିନ୍ଧନ୍ତେ ବାଜିଲା
୧୧କଶ୍ମଠୀ ଲଲାଟପଟେ,
ତହୁଁ ସେ ଯୋଧରେ      ନ୍ୟାସନ୍ତେ ପଡ଼ିଲା
ଦୁର୍ଯ୍ୟୋଧନ ବକ୍ଷପଟେ ।
ଆରେଡ଼ଣି ଦେଖାଇ      ହୋଇଲା ଧାବମାନ
ପୁନଶ୍ଚ ଫାଲ୍‌ଗୁନ ପାଶେ,
ଦେଖି ତାକୁ ୧୨ଜିଷ୍ଣୁ      ବଜାଇ ୧୩ଅମ୍ବୋଜ
ବୋଲେ ଅତି ପରିହାସେ ।

୧ନିକ୍ଷେପ ୨ଶର ୩ଅଶ୍ୱ ୪ଶର ୫ଅର୍ଜ୍ଜୁନ *ସାରଥି

୬ଭୀଷ୍ମ ୭ଶର ୮ସାରଥି ୯ଅର୍ଜ୍ଜୁନ ୧୦ଅକସ୍ମାତ
୧୧ଅର୍ଜ୍ଜୁନ ୧୨ଅର୍ଜ୍ଜୁନ ୧୩ଶଙ୍ଖ

୧ଅଦଭ୍ରୁ ବିଧାନ୨ ଠୁଳ କରି ପାଶେ
ଶୁଭୁନାହିଁ ଜୟ ନାଦ,
ସୁଝାଇବୁ ଆଜ ପଶା କ୍ରୀଡ଼ା ବେଳେ
ଦେଇଛୁ ଯା ପରିବାଦ ।
ପ୍ରାଣ ଠାରୁ ବଳି ଅଛୁକି ପ୍ରତ୍ୟେ
ଅଧିକ ପ୍ରିୟ ପଦାର୍ଥ,
କଳୁ ଯୁଦ୍ଧ ହାରି ଲେଉଟିଲେ ତୋତେ
କି ବୋଲିବେ ପ୍ରଜାସାର୍ଥ୩ ?
ଦୁର୍ଯ୍ୟୋଧନ ନାମ ବ୍ୟର୍ଥ ହେବ ସିନା
ପାର୍ଥର ଶିର ଘାତରେ,
ଆସିଅଛୁ କର୍ଣ୍ଣ ୫ତୀରକି ନଥାଇ
ଆଗରେ ଅବା ପଛରେ ।
୪ବାସବର ବଳ ଜାଣିଛ ତ ତୁମ୍ଭେ
ଗନ୍ଧର୍ବ ଯୁଦ୍ଧ ସମୟେ,
ନିଜ ନେତ୍ରେ ଦେଖି ଆଜ ଏ ସଂଗ୍ରାମେ
ଆସିଲ କର୍ଣ୍ଣ ନିର୍ଭୟେ ?
ପ୍ରାଣରକ୍ଷା ଲାଗି ପଳାଅ ସପଦି୬
ଆଜି ଏ ୭ଆଜି କ୍ଷେତ୍ରରୁ ।
ଭାବନ୍ତକି ସତେ ପଳାଇବ ବର୍ତ୍ତି
ଏଷଣି ପାର୍ଥ ହସ୍ତରୁ ।
କାହିଁ ସେ ଶକୁନି ଯାହାର ଭଣ୍ଡାମି
ତବ ତବ ବାଜେ ଭବେ ?
ଭଣଜାକୁ ପେଷି ଏକୁଟିଆ ରଣେ
ନମାଡ଼େ କି ଲାଜ ଲଭେ,
୮ଗନ୍ଧାକ୍ଷ ବାଞ୍ଚୁ ତୋ ଜାଣି ଜାଣି ସବୁ
ତୋ କଥାରେ ସଦା ବଶ,
ହେବାରୁ ନିକଟ ଅନ୍ତକାଳ ତୋର
ଘଟିଲାଣି ବୁଦ୍ଧିଭ୍ରଂଶ ।
କୁଳବୁଡ଼ା ବୋଲି ପଡ଼ିଲାଣି ହୁରି
ପଶିଲା କି ତୋ ୯ଶ୍ରବରେ,
ଜୀବନ ଧରି ତୁ ରହିଛୁ କପରି
ସତ କଳୁଷ ସାଗରେ୧୦

୧ ବଞ୍ଚିତ ୨ ସମ୍ପତ୍ତି ୩ ସମୂହ ୪ ଅର୍ଜୁନ ୫ ଶର
୬ ଶୀଘ୍ର ୭ ଯୁଦ୍ଧ ୮ ଅନ୍ଧ ୯ କାନ ୧୦ ସମୁଦ୍ରରେ

ଭୀମସେନ ଗଦା କରିଦେବ ଚଦା
୧୧ଟେକ୍ରା ନିଚୟଙ୍କୁ ରଣେ,
ସଂରକ୍ଷିବା ଲାଗି ନଥିବେ କେ ତୋର
ବନ୍ଧୁବାନ୍ଧବରୁ ଜଣେ ।
ଧିକ ତୋ ଜୀବନ ଅନ୍ୟର ନନ୍ଦନ
କରି ପାଞ୍ଚୁ ଅମଙ୍ଗଳ,
୧୨ଟେକ୍ରା ବୋଲି କର୍ଣ୍ଣ ହେଉଅଛୁ ଠେକ
ଭିଆଇ ନାନା କନ୍ଦଳ ।
ଫୁଟାଇଲେ ବାଣ ଫିଟି ଯାଉଅଛୁ
ହେଲାଣି କାଳ ନିର୍ବାଣ,
ଲୋକ ଅପବାଦେ ଡରି ଡରି ସିନା
ଦେଖାଉ ମୁହଁରେ ଟାଣ ।
୧୩କାଣ୍ଡାରୀ ବର୍ଜ୍ଜିତ ଦଦରା ଉଡ଼ୁପେ୧୪
ଦୁସ୍ତର ଭବ ସାଗର,
ପାରି ହେବା ଲାଗି କରୁ ମନ ଆଣ୍ଟ
ତଣ୍ଟି ଚିପି ଅପରର ।
ଥରୁଅଛୁ ହାତ ଠେକିବାକୁ ଧନୁ
ବାନ୍ଧିବୁ ୧୫ଶଙ୍କୁ କପରି,
କୁଳର ମହତ୍ତ୍ୱ ବୁଡ଼ାଇଲୁ ସିନା
ପରଦ୍ରବ୍ୟ ଅପହରି ।
ଲଜ୍ଜା ନାହିଁ କାହିଁ ରହିବ ନାହିଁଟି
ତୋର ଟାଣପଣ ଲବେ,
ଅଭିମାନ ବପେ ଲଭିବୁ ବିନାଶ
ଲୁଚିଲେ ହେଁ କାହିଁ ଭବେ ।
ଭକ୍ତି ନେଇ ଯେତେ ମନ୍ତ୍ରି ହୋଇଅଛୁ
ଟିକିନାହିଁ ତୋ ସଙ୍ଗରେ,
ଧରମ ସହାକୁ ଛାଡ଼ିଦେଇ ଏଣେ
ପଶିଲୁ ଅଣବାଟରେ ।
ପାଶେ ଥିବା ଲୋକେ ପାଉଥିବେ ଯେବେ
ଗାଉଥିବେ ଗୁଣ ସିନା,
କହ ଦେଖି କୁଟେ୧୬ ବସୁନ୍ଧରା ତଳେ
କିଏ ବଶ ଅର୍ଥବିନା ।

୧୧ ଖଳ ୧୨ ସମ୍ରାଟ ୧୩ ନାବିକ ୧୪ ନୌକା
୧୫ ଶର ୧୬ ମୂର୍ଖ

ପ୍ରାଣରୁ ଅଧିକ ଯାହାକୁ ତୁ ମଣୁ
ସାଥି ସେହି ସମୟରେ,
ଆପତ୍ତି ପଡ଼ିଲେ କେ ନୁହେ କାହାର
ହୁଏ କି ନେତ୍ରଗୋଚର ।
୧ଲାକ୍ଷାଗୃହ କଥା ପଡ଼ିଲେ ମନରେ
ହୃଦୟେ ହୁଏ କମ୍ପିତ,
୨ମଣ୍ଡା ପେଟେ ପିଇ ଭୁଣ୍ଡ କରୁଥିଲେ
ଚିରୁ କି ଦଣ୍ଡ ୩ ବରତ ।
ଭୀମକୁ ମଣ୍ଡାରେ ୪ମଧୁର ଦେଇ ତୁ
ଭସାଇଥିଲୁ ନଦୀରେ,
ସେହି ତୁ ୫ମହାକୁଣ ମାରୁତି ହାତେ ତୋ
ଉଡ଼ିବ ଶ୍ୱାସ ଅଚିରେ ।
୬ଅନ୍ନଦାସ ଯେତେ ଅଛନ୍ତି ତୋ ପାଶେ
ହିତକୁ ମଣି ଅହିତ,
ଫୋଡନ୍ତି ଯା କାନେ ନକରି ବହୁର
ଶ୍ରବଣେ ହେଉ ମୁଦିତ ।
୭ପରେତର ଯେତେ ଆଣିଛୁ ୮ଆନନ୍ଦେ
ଦଶନ୍ତି ୯ପରସ୍ୱ ପର,
ଭୁଜାକୁ ବାଉଳ ହେଉଅଛୁ ସିନା
ଅକର୍ମେ ପ୍ରବେଶ କର ।
ମନା କରୁ କରୁ ୧୦ସରଜସ୍କା ନାରୀ
ଟାଣିଲୁ ସଭା ପ୍ରାଙ୍ଗଣେ,
ତୋଭଳି ୧୧ଲମ୍ପଟ କଟକେ ତୋହର
ନଥିବେ ତ କେହି ଜଣେ ।
ତାର ପ୍ରାୟଶ୍ଚିତ ତୋ ୧୨ଲୋହିତେ କରି
କରିବ ପାପ ଖଣ୍ଡନ,
ବୋଲି ପାଞ୍ଚିଥିଲି ବହୁକାଳୁ ହୃଦେ
ମିଳିଲା ଏବେ ଦର୍ଶନ ।
୧୩ସ୍ୱର୍ଗାପଗା ୧୪ସ୍ୱଜ କର୍ତ୍ତି ଭରଦ୍ୱାଜ
ଚଳାଇଲେ ଋଷି ଧୀରେ,

୧ଜଉ ୨ମଦ ୩ ଯୁଦ୍ଧ ୪ବିଷ ୫ ଦାଢ଼ିନଥିବା ପୁରୁଷ
୬ଚାକର ୭ଆତ୍ମୀୟ ୮ସୁଖ ୯ମୃତ ୧୦ଋତୁବତୀ
୧୧ ଲମ୍ପଟ ୧୨ ରକ୍ତ ୧୩ ଗଙ୍ଗା ୧୪ପୁଷ୍ପ ୧୫ଖଳ

୧୫ବନ୍ଦନହବର୍ଗ ଲୋଡ଼ିଛୁ ଯେତେକ
ପଡ଼ିବେ କି ତୋ ପିଠିରେ ।
ତୋର ଦୁର୍ବୃତ୍ତିରେ ଭଦ୍ରା ସ୍ୱପ୍ନମତରେ
ଉପୁଜିଲି ଶୂନ୍ୟ କାନ୍ତି,
ଶତ ଶତ ପ୍ରାଣ ଭଜିଲେ ନିର୍ବାଣ
ବାକ ଧୂମାନୁଜ କାଣ୍ଡ ।
ରାଜକୁଳେ ଜନ୍ମି ରାଜପୁତ୍ର ହୋଇ
ଧରିଲୁ ତସ୍କର ବୃତ୍ତି,
କହୁଛୁରେ ୧୬କୃଶ ଜଳିଥିବା ଯାଏ
ନଘଟୁ ପୁନରାବୃତ୍ତି ।
ବକବ୍ରତ୧୭ ବୋଲି ୧୮ନଭସ୍ୱାନୁ ତୋତେ
ଜାଣନ୍ତି ଭବେ ସଜ୍ଜନ,
କୁରୁକୁଳ କ୍ଷୟ କରିବୁ ବୋଲି ତୁ
ବସିଲୁଣି ଜନଜନ ।
ମୋ ବଚନ ମାନି ଆଜ ୯ ଆଜକରୁ
ନରଗଲି ଏକଟି ଘୁଡ଼ି,
ମହାବଳୀ ଯେତେ ଆଶ୍ରିଛନ୍ତି ତୋତେ
ହାତୁ ଶଙ୍କା ଦେବେ କାଢ଼ି,
ପରକଥା ଶୁଣି ଏଠାରେ ପ୍ରବେଶି
ଗଲୁଣି ନଦୀରେ ବୁଡି,
ଅର୍ଜ୍ଜୁନ ହାବୁଡ଼ୁ ଜୀବନ ଧରିକି
କଟକେ ଫିରୁ ବାହୁଡ଼ି ।
ଯେତେକ କଟଣ ଦେଇଛୁ ପାଣ୍ଡବେ
ନନେଲେ ତା ପ୍ରତିଶୋଧ,
ଆଜ ଏ ୧୯ଆହବେ କପିକେତନର
ହେବକି ଶମିତ ବୋଧ ।
ମଉଳି ଗଲାଣି ବଦନ ତୋହର
ଦେଖିଲୁଣି କରେ ଭାଇ !
ଘୁଡ଼ିଦେଇ ଏବେ ଚଳିଯା ନଗରେ
ବିରାଟ ରାଜାର ଗାଈ ।
ଦେଖୁଛ ତ ଭାଇ ଆଗପଛ ହୋଇ
ମିଶନ୍ତି ସର୍ବେ ମାଟିରେ,

୧୬ପାପିଙ୍କୁ ୧୭ସ୍ୱାର୍ଥପର ୧୮ ଯୌବନରୁ ୧୯ ଯୁଦ୍ଧ

ଭାବିଲ କି ଜନେ    କି କର୍ମ କରୁଛ
ଥିବାଯାଏଁ ଏ ମହୀରେ ।
ସୁଖ ବୋଲି ଯାହା    ଭୋଗୁ ବର୍ତ୍ତମାନ
ଭବିଷ୍ୟେ ଦୁଃଖର କେତୁ,୧
ଘଟି ଯାଉଛି ଯା    ଜୀବନେ ତୁମର
କରି ବାରବାର ହେତୁ ।
କେ କରୁଛି ଚିନ୍ତା    ପ୍ରପଞ୍ଚ ଭିତରେ
ଅକିଞ୍ଚନ ପେଟଲାଗି,
ଅହଂମଦ ବଶେ    ପରସ୍ପର ଜନେ
ହୁଅନ୍ତି ସିନା ଅନୁରାଗୀ ।
ଅର୍ଜ୍ଜୁନ-ବଚନ-    ଅଙ୍କୁଶ ଆଘାତେ
ହୋଇ ମତ୍ତଦନ୍ତୀ ପରି
ପାପୀ ଦୁର୍ଯ୍ୟୋଧନ    ସଇନ ସହିତ
ଆସିଲା ଗର୍ଜ୍ଜନ କରି ।
ଚକ୍ର ୨ଶତାଙ୍ଗରେ    ପ୍ରବେଷ୍ଟ ହୁଅନ୍ତେ
ଅର୍ଜ୍ଜୁନ ତା ଧାରେଶ ଯାଇ,
ଲେଉଟାଇ ଦେଲେ    ୩ସପ୍ତି ଧ୍ୱଜ ୪ପତ୍ରୀ
ନିସ୍ତୁକ ମାଡ଼ ଚଟାଇ ।
ଖର୍ବ ହେଲା ଗର୍ବ    ଦଉଡ଼ ଦଉଡ଼
ଫେରିଲେ ସର୍ବେ ହତାଶେ
ଲେଉଟିଲେ ପାର୍ଥ    ଉତ୍ତର ସହିତ
ଗୋଧନ ଧରି ଉଲ୍ଲାସେ ।

ଶମୀ ଶିଖେ ରଖି    ଅସ୍ତ୍ରମାନ ଦୁହେଁ
ପ୍ରବେଶ କଲେ ନଗରେ,
ଉତ୍ତରଙ୍କ ଜୟ    ବାଇଦ ବାଜିଲା
ତତକ୍ଷଣେ ତତ୍ତଦଗରେ ।
ତିନ ଦିନ ପରେ    ଆନର୍ତ୍ତି ବୃତ୍ତାନ୍ତ
ଘଟିଥିଲା ଯାହା ଯାହା,
ଭାଷନ୍ତେ ଉତ୍ତର    ଶଂସିଲେ କୃଷ୍ଣଙ୍କୁ
ମତ୍ସ୍ୟାଧିପ ଶୁଣି ତାହା ।
ବନବାସ କାଳ    ପୂରିଯିବା ଅନ୍ତେ
କରିଲେ ଆତ୍ମ ପ୍ରକାଶ,
କଲୁ ପରଣାମେ    ବ୍ୟର୍ଥ ହେଲା ସବୁ
ଦୁର୍ଯ୍ୟୋଧନ ଅଭିଲାଷ ।
ପରିଚୟୁ ଲଭି    ପାଣ୍ଡବ ମାନଙ୍କ
ବିରାଟ ସୁତାଉଦ୍‌ବାହ,୫
୬ସିତ ସପ୍ତି ସୁତ    ଅଭିମନ୍ୟୁ ସହ
ତଦନ୍ତେ କଲେ ନିର୍ବାହ ।
୭ଦାରକର୍ମ ଶେଷେ    ପ୍ରଭୂତ ୮ପ୍ରାଭୃତ
ଦେଇ ମତ୍ସ୍ୟଦେଶ ପତି,
ଦୁର୍ଯ୍ୟୋଧନ ରାଜ୍ୟ    ଫେରାଇ ଦେବାକୁ
ପେଶିଲେ ଦୂତ ତଡ଼ିତ ।

---

୧ ଉତ୍ପାତଚିହ୍ନ ୨ ରଥ ୩ ଅଶ୍ୱ ୪ ରଥ
୫ ବିବାହ ୬ ଅର୍ଜ୍ଜୁନ ୭ ବିବାହ ୮ ଯୌତୁକ

# ପଢ଼ ବା ନପଢ଼

କପିଳ ଗୌତମ ନାମେ ଏ ଭାରତେ
ଥିଲେ ଜଣେ ମହାଋଷି,
ବିନମ୍ର ସ୍ୱଭାବ ଦେଖି ତାହାଙ୍କର
ହେଉଥିଲେ ସର୍ବେ ଖୁସି ।
ରାଗେଇଲେ ତାଙ୍କୁ ରାଗୁ ସେ ନଥିଲେ
କହୁଥିଲେ ମିଷ୍ଟକଥା,
ଥିବାରୁ ସନ୍ତୁଷ୍ଟ କାହା ମନେ କେବେ
ଦେଉ ନଥିଲେ ସେ ବ୍ୟଥା ।
୧କାବ୍ୟ ୨ଅଙ୍ଗୀରସ ସମ ଥିଲା ବୁଦ୍ଧି
ଜୀବନ ମଣି ଅସାର,
ହିମାଦ୍ରି ସମୀପେ ଆଶ୍ରମ ନିର୍ମାଣି
କଲେନ୍ତି ମୋକ୍ଷ ପ୍ରଚାର ।
ଆଶ୍ରମ ସମୀପେ ଅବ୍ଜ ସରୋବର
ପବନ ତୀର୍ଥ ସ୍ୱରୂପ,
ଥିବାରୁ ଗୌରବେ ବିହାର ଇଚ୍ଛାରେ
ଯାଉଥାନ୍ତି କେତେ ନୃପ ।
ଆଶ୍ରମର ଶୋଭା କରୁଥିଲା ବୃଦ୍ଧି
ପ୍ରଚୁର କୁସୁମ ଫଳ,
ବେଦ ପାରାୟଣ କରୁଥାନ୍ତି ତହିଁ
ଅବିରତ ଶିଷ୍ୟଦଳ ।

୧ କାବ୍ୟ—ଶୁକ୍ର  ୨ ଅଙ୍ଗୀରସ—ବୃହସ୍ପତି

ସିଂହମୃଗ ବ୍ୟାଘ୍ର ଭ୍ରମନ୍ତି ଏକତ୍ର
ଅହି ସହିତ ନକୁଳ,
ଅହିଂସାର ମନ୍ତ୍ର ଶିଖାଇ ଥିଲେ ବା
ତଟସ୍ଥ ତପସ୍ୱୀକୁଳ ।
ଇକ୍ଷ୍ୱାକୁ ବଂଶୀୟ ରାଜପୁତ୍ର କେତେ
ଆଶ୍ରମ ବାସୀ ହେବାକୁ,
ପିତା ମାତାଙ୍କର ଅନୁମତି ନେଇ
ଅଚିରେ ଗଲେ ସେଠାକୁ ।
ଅତି ଆନନ୍ଦରେ ଏମାନଙ୍କୁ ମୁନି
ଆଶ୍ରୟ ଦେଇ ମଠରେ,
ଶିଖାଇଲେ ନୀତି ଚଳିବ କପରେ
ମହାନ ରାଜବଂଶରେ ।
ରାଜପୁତ୍ରଙ୍କର ସମୃଦ୍ଧି ଇଚ୍ଛାରେ
ଜଳଘଟ ଦନେ ଧରି,
ଆକାଶକୁ ଉଠି ଭାଷିଲେ ତାପସ
ଏମାନଙ୍କୁ ଲକ୍ଷ୍ୟ କରି ।
"ଏହି କଳସରୁ ଯେଉଁ ଜଳଧାରା
ପଡ଼ିବ ଧରା ପୃଷ୍ଠରେ,
ତହିଁ ଚିହ୍ନ ରଖି ସ୍ଥାପିବ ନଗର
ମୋହର ମରଣ ପରେ ।"

କାଳକ୍ରମେ ମୁନି ସ୍ୱର୍ଗୀୟ ହୁଅନ୍ତେ
ଏହି ରାଜପୁତ୍ରଗଣ,
ଯୌବନ ଉନ୍ମତ୍ତ ହୋଇ ଗଜକୁଳ
କଲେ ସୁଖେ ବିଚରଣ ।
ସେ କାନନ ଗୁଡ଼ ତାପସମାନଙ୍କର
ବୃକ୍ଷାଯାନ୍ତେ ହିମାଳୟ,
ରାଜପୁତ୍ରବୃନ୍ଦ ସେ ଆଶ୍ରମ ପାଶେ
ସ୍ଥାପିଲେ ବହୁ ନିଳୟ ।
ରାଜପଥ ପୁଣି ବିଶାଳ ପ୍ରକାର
ସୁରପଟେ ତାର ତୋଳି,
ବଢ଼ାଇଲେ ଶୋଭା ସେ ପୁରର କ୍ରମେ
ଗଡ଼ଖାଇମାନ ଖୋଳି ।
ଦୀର୍ଘ ଦର୍ଶୀ ଦକ୍ଷ କୁଟ ମନ୍ତ୍ରୀମାନଙ୍କୁ
ବସତି ଦେଇ ଏଠାରେ,
ସଚିବ ରୂପରେ ସଦାଶୟ ବ୍ୟକ୍ତି
ରଖିଲେ ଶାସନଘରେ ।
ନଥିଲେ ଉଦ୍ଧତ ଅବା ଅବିଧାନ
ଏ ନଗର ଅଧିବାସୀ,
ବୁଦ୍ଧି ପରାକ୍ରମ ଭିନ୍ନ ଭିନ୍ନ ଗୁଣେ
ଉଠିଲା ଯଶ ବିକାଶି ।
ଏ ନଗର ଥିଲା ଧନର ନିଧାନ
ପୁଣି ତେଜର ଆଧାନ,
ବିଦ୍ୟାର ମନ୍ଦିର ଗୁଣୀଙ୍କ ନିବାସ
ବାହୁଶାଳୀଙ୍କ ଆଳନ ।
କପିଳ ଋଷିଙ୍କ ଆଶ୍ରମ ସ୍ଥାନରେ
ହେବାରୁ ପୁର ସ୍ଥାପିତ,
କପିଳ ବାସ୍ତୁଏ ବୋଲି ଚଉଦିଗେ
କ୍ରମଶଃ ହେଲା ବିଦିତ ।
ବୟସରେ ବଡ଼ ଗୁଣରେ ଗରିଷ୍ଠ
ଶ୍ରେଷ୍ଠ ପୁଣି ଆଚରଣେ,
ଅଭିଷିକ୍ତ କଲେ ଧୃତ ରାଜପଦେ
ରାଜପୁତ୍ର ମଧ୍ୟୁଁ ଜଣେ ।

ଆଧାନ—ଉତ୍ପାଦନ    ଆଳନ—ସ୍ତମ୍ଭ

## ଦ୍ୱିତୀୟ ସର୍ଗ

କିଛୁକାଳ ଅନ୍ତେ ଜନ୍ମିଲେ ଏଠାରେ
ଶୁଦ୍ଧୋଧନ ନାମେ ନୃପ,
ସାତ୍ତ୍ୱିକ ଗୁଣେ ସେ ଥିଲେ ବଳବାନ
କମନୀୟ ତାଙ୍କ ରୂପ ।
ଅସହନଶୀଳ ଅଭିମାନୀ ଅବା
ନଥିଲେ କେବେ ଉଦ୍ଧତ,
ପ୍ରଜାଙ୍କର ଦୁଃଖ ଶୁଣିବା ନିମିତ୍ତ
ସନ୍ତତ ଥିଲେ ଜାଗ୍ରତ ।
ଅପ୍ରିୟ ହେଲେହେଁ ହିତକର କଥା
ଶୁଣୁଥିଲେ ମନ ଦେଇ,
ଶାସୁଥିଲେ ରାଜ୍ୟ ଉଦାରତା ଗୁଣେ
କାହାକୁ ପୀଡ଼ା ନଦେଇ ।
ଶରଣାଗତକୁ ଆଶ୍ରୟ ପ୍ରଦାନ
ଆପନ୍ନଙ୍କୁ ରକ୍ଷା କରି,
ଗୌରବ କେତନ ଉଡ଼ାଇଲେ କ୍ରମେ
ଶାନ୍ତିମାର୍ଗ ଅନୁସରି ।
ସୌଜନ୍ୟ ଦେଖାଇ ବିଦ୍ୱାନମାନଙ୍କୁ
ବୃଦ୍ଧଙ୍କ ବଚନ ମାନି,
କରୁଥିଲେ କାର୍ଯ୍ୟ ତେଜି ଅଭିମାନ
ନକରି ସମ୍ମାନ ହାନି ।
ସଙ୍କଟ ସମୟେ ଧୈର୍ଯ୍ୟ ଅବଲମ୍ବି
ମିତ୍ରଙ୍କୁ କରି ପ୍ରସନ୍ନ,
ଧର୍ମରୁ ନ ଟଳି ପରାକ୍ରମ ବଳେ
କଲେ ଶତ୍ରୁ ଦମନ ।
ଶୂରତାରେ ସାରା ବସୁନ୍ଧରା ଜିଣି
ନିଜ କୁଳ ଟେକ କରି ବିସ୍ତାର,
ଦୁଃଖୀଜନଙ୍କର ଦୁଃଖ ମୋଚନାର୍ଥେ
ବାଣ୍ଟୁଥିଲେ ନିତି ଧନ ଅପାର ।
ମାୟା ନାମେ ଥିଲେ ରାଣୀ ତାହାଙ୍କର
ଯାର ଗର୍ଭୁଁ ଜାତ ଦୁଇ କୁମାର,
ଯଥା ସମୟରେ ସେ ବେନି ଜଣଙ୍କ
ଉପନୟନାଦି ହେଲା ସଂସ୍କାର ।

ଅଗ୍ରଜ ନାମକୁ ରଖିଲେ ଗୌତମ
ଅନୁଜର ନାମ ରଖିଲେ ନନ୍ଦ,
କମନୀୟ କାନ୍ତି ଦେଖି କନିଷ୍ଠର
ହେଉଥିଲେ ସର୍ବେ ମହା ଆନନ୍ଦ ।
ଆସନ୍ତେ ବୟସ ସିଦ୍ଧାର୍ଥ ହୃଦୟେ
ବୁଦ୍ଧ ରୋଗୀମୃତ କରି ଦର୍ଶନ,
ଅର୍ଦ୍ଧ ରଜନୀରେ ନିର୍ବାଣ ଇଚ୍ଛାରେ
ଗୃହତେଜି କଲେ ବନ ଗମନ ।
ଏ ଦୁଃଖ ସମ୍ବାଦ ଶୁଣନ୍ତେ ସକଳ
ରାଣୀ ମାୟାଦେବୀ ଅନ୍ତଃପୁରରୁ,
ପଡ଼ିଲେ ଧରାରେ ହୋଇ ପ୍ରମୀଳିତା
ଅଶ୍ରୁଧାର ଝରେ ଦୋନ ନେତ୍ରରୁ ।
ଏ ଘୋର ବାରତା ଜାଣନ୍ତେ ନୃପତି
ଅସ୍ଥିର ମନରେ ଚର ଡକାଇ,
ପଠାଇଲେ ଚର ବେଗକୁ ସହସା
ଆଣିବାକୁ ତାଙ୍କୁ ବାଟୁଁ ଫେରାଇ ।
ଅବିନାଶୀ ନିତ୍ୟ ପଦାର୍ଥ ଦର୍ଶନେ
ଯା ମନ ଧାଇଁଚି ବାଲ୍ୟ କାଳରୁ,
ଶୁଣିବକି ସେହି କାହା ଉପଦେଶ
ଲେଉଟିଲେ ଚରେ ଅଧ ବାଟରୁ ।
ନିର୍ଜନ ବନରେ ପ୍ରବେଶି ଗୌତମ
ଖୋଜା ଖୋଜି କରି ତପସ୍ୟା ସ୍ଥାନ,
ନିର୍ଭୟ ମାନସେ ପ୍ଲକ୍ଷ ବୃକ୍ଷ ମୂଳେ
ନିଶ୍ଚଳେ କଲେ ସେ ଦୁଷ୍କର ଧ୍ୟାନ ।
ବହୁକାଳ ପରେ ସିଦ୍ଧି ଲାଭ କରି
ଜିଣିଲେ ମାରର ଉଗ୍ରସେନାକୁ,
ପୁଣି ସେ ଲଭିଲେ ଦୃଢ଼ ତପୋବଳ
ଶେଷେ ଅବିନାଶୀ ପରମାର୍ଥକୁ ।
ଶାଶ୍ବତ ଅମୃତ ଦର୍ଶନ ଲଭି ସେ
ଗମି ଗୟା କାଶୀ ବାରାଣସୀକୁ,
ରହି କିଛି କାଳ ଧର୍ମ ଆମର୍ଶନେ
ତୋଷିଥିଲେ ସେଠା ଅଧିବାସୀଙ୍କୁ ।

ପ୍ଲକ୍ଷ—ପିପ୍ପଳୀ ମାର—କନ୍ଦର୍ପ

ନିଜ ଜନ୍ମଭୂମି କପିଳ ବାସ୍ତୁକୁ
ଲେଉଟିବା ଲାଗି ବଳାଇ ମନ,
ବହୁ ଶିଷ୍ୟ ସଙ୍ଗେ ପ୍ରବେଶି ଆନନ୍ଦେ
ପିତା ମାତାଙ୍କର ଲଭି ଦର୍ଶନ ।
ସମ୍ମାନ ବିଧାନ କଲେ ଗୌତମଙ୍କ
ରାଜା ଶୁଦ୍ଧୋଦନ ଡାକି ଜନତା,
ନିଜ କର୍ମଫଳ ଭବିଷ୍ୟତ ପ୍ରାପ୍ତି
ବୋଲି ପ୍ରଚ୍ଚରିତ ହେଲା ବାରତା ।
ସଦ୍‌ଗୁଣ ବିମୁଖ ଥିଲେହେଁ ଅନେକ
ବୁଦ୍ଧବାଣୀ ଶୁଣି ମହା ହରଷେ,
ମୁନି ସନ୍ନିଧାନେ ଆସୁଥିଲେ ନିତି
ଉପଦେଶ ପ୍ରାପ୍ତି ଲାଗି ମାନସେ ।
କପିଳ ବାସ୍ତୁରେ ଯବେ ତପୋଧନ
ଦେଉଥିଲେ ଆସି ଧର୍ମୋପଦେଶ,
କାମାସକ୍ତ ନନ୍ଦ ରହି ନିଜ ଘରେ
ନକରନ୍ତି ତହିଁ ମନୋନିବେଶ ।

## ତୃତୀୟ ସର୍ଗ

ଅନୁପମ ରୂପ ପତ୍ନୀର ଦେଖି ନନ୍ଦ ହରଷେ,
ମାତୁଥିଲେ ରତି କ୍ରୀଡ଼ାରେ ଅବିରତ ଦିବସେ ।
ବିଭୂଷିତ କରି ପତ୍ନୀକି ନବ ନବ ଭୂଷଣେ,
ଶୋଭା ପାନ ଲାଗି କେବେ ବା ଦେଖୁଥିଲେ ଦର୍ପଣେ
ଏକ ଅନ୍ୟ ପ୍ରତି ଆକୃଷ୍ଟ ହୋଇ ପ୍ରେମୀ ଯୁଗଳ,
କେ କାହାର ସଙ୍ଗ ନ ଛାଡ଼ୁଥିଲେ ସ୍ନେହ ବିହ୍ୱଳ ।
ଜଣେ ଜଣକର ଅଭାବେ ହେଉଥାଏ ଆକୁଳ,
ବୋଧ କରିବାକୁ ସହସା ଲୋକେ ହୁଅନ୍ତି ଠୁଳ ।
ଦେବ ଅଟ୍ଟାଳିକା ସଦୃଶ ରହି ସ୍ୱକୃ ହର୍ମ୍ୟରେ,
ସନ୍ତତ ଯାପନ୍ତି ସମୟ ପତ୍ନୀ ସହ ସୁଖରେ ।
ତଥାଗତ ବୁଦ୍ଧ ପ୍ରବେଶି ଗୃହ ଭିକ୍ଷା ସକାଶେ,
ସତ୍କାର ଅଭାବୁଁ ନନ୍ଦଙ୍କ ବାହୁଡ଼ିଲେ ନିରାଶେ ।
ସେତେବେଳେ ଜଣେ ରମଣୀ ହର୍ମ୍ୟ ଉପରେ ଥାଇ,
ବୁଦ୍ଧ ଫେରିବା ଦେଖନ୍ତେ ତୂର୍ଣ୍ଣେ ଦେଲେ ଜଣାଇ
ମହର୍ଷି ଆସିବା ଶ୍ରବଣେ ନନ୍ଦ ଦୁଃଖିତ ମନେ,
ପ୍ରିୟାଙ୍କ ଅନୁଜ୍ଞା ମାଗିଲେ ଯିବାଲାଗି ଦର୍ଶନେ ।

ଲୋତକ ଲୋଚନେ ସୁନ୍ଦରୀ ଯିବାଲାଗି ମାଗିଲେ,
ତେବେ ଫେରି ବୋଲି ସ୍ୱାମୀଙ୍କି ବାରମ୍ବାର ଭାଷିଲେ ।
ନିଜ ପୟୋଧରେ କରକୁ ସ୍ୱାମୀଙ୍କର ଲଗାଇ,
ବିଦାଦେଲେ ତାଙ୍କୁ ଯିବାକୁ ମୁଖ ଅତି ଶୁଖାଇ ।
ଗନ୍ତବ୍ୟମାର୍ଗକୁ ସୁନ୍ଦରୀ ନିର୍ନିମେଷ ନୟନେ,
ଦେଖୁଥିଲେ ପ୍ରିୟ ଯିବାର ବୁଦ୍ଧଙ୍କର ଦର୍ଶନେ ।
ମୁନିଙ୍କ ଦର୍ଶନ ଇଚ୍ଛାରେ ବ୍ୟଗ୍ରେ କଲେ ଗମନ,
ପାସୋର ନଗଲା ମନରୁ ନିଜ ପତ୍ନୀ ବଦନ ।
ଟାଣୁଥିଲା ତାଙ୍କୁ ଆଗକୁ ବୁଦ୍ଧ ପ୍ରତି ଭକତି,
କିନ୍ତୁ ପତ୍ନୀ ପ୍ରେମ ପଛକୁ ଝିଙ୍କେ ତାଙ୍କର ମତି ।
ପ୍ରତିକୂଳ ସ୍ରୋତେ ନଦୀର ନାବ ଅଥବା ମଡ଼,
ବାର ବାର ତାର ସଳିଳେ ଗତି ହେଉଛି ମୋଡ଼ ।
ଦିଶି ଯାଉଅଛି ମୁହଁରେ ପ୍ରିୟା ହସ ବଦନ,
ପୁଣି ଦେଖୁଛନ୍ତି ଆଗରେ ଗୌତମଙ୍କ ଗମନ ।
ଗୌରବ ସହିତ ଆଗକୁ ନନ୍ଦ ମନ୍ଦ ଗତିରେ,
ଯାଇ ପ୍ରଣମିଲେ ବୁଦ୍ଧଙ୍କୁ ମହା ହରଷଭରେ ।
କମଳପତ୍ରାକ୍ଷ ସୁଗତ ଅନୁଗ୍ରହ ଦେଖାଇ,
ଆଶୀର୍ବାଦ ଦେଲେ ନନ୍ଦଙ୍କୁ ଶିରେ କର ଲଗାଇ ।
ଘେନି ଯାଇ ତାଙ୍କୁ ସଙ୍ଗରେ ନିଜ ମଠକୁ ଗଲେ,
ସଂସାର ବିଷୟ ଭାଷିଲେ ଉପଦେଶ ଛଳରେ ।

## ଉପଦେଶ

କାହାକୁ ନଛାଡ଼େ ମୃତ୍ୟୁ ଧରଣୀ ମଧ୍ୟରେ,
ଉପୁଡ଼ାଏ ମହାବୃକ୍ଷ ପ୍ରତି ମୁହୂର୍ତ୍ତରେ ।
ନ ଦେଖିଛୁ କିହି କିଏ ବହୁ ରୂପ ତାର,
ପ୍ରସରିଛି ଚଉଦିଗେ ମହା ଶକ୍ତି ଯାର ।
କ୍ଷଣକେ ଓଟାରି ନିଏ ଲକ୍ଷ ଲକ୍ଷ ପ୍ରାଣୀ,
ନଶିଖେ ମଣିଷ ଲୋକେ ଏ ସକଳ ଜାଣି ।
ଅଜ୍ଞତା ଅନ୍ଧାର ଯୋଗୁଁ ନ ଦିଶଇ ବାଟ,
ସ୍ୱାର୍ଥ ସିଦ୍ଧି ଲାଗି ହିଂସା ଲଗାଇଛି ନାଟ ।
ଅର୍ଥ ଚିନ୍ତା କରି କରି ସରୁଛି ଆୟୁଷ,
ନେ ଇଚ୍ଛଇ ପିଇବାକୁ ଧରମ ପୀୟୂଷ ।
ଦୁନିଆଁ ଭିତରେ ନାହିଁ କେହି ବଡ଼ ସାନ,
୧ବୋଧିସତ୍ତ୍ୱ ସନ୍ନିକଟେ ସରବେ ସମାନ ।

ଅବଲମ୍ବି ନାନାବିଧ କୌଶଳ ଜୀବନେ,
ଲାଗିଅଛି ମନ ସଦା ଧନ ଉପାର୍ଜ୍ଜନେ ।
ଖାଲିହାତେ ଲେଉଟିବା ଦିନେ ନ ବିଚାରି,
ମମତା ଜାଲରେ ପଡ଼ି ହେଉଅଛୁ ଘାରି ।
ଯାହା ପାଇଁ ପାପରାଶି ଲଦୁଛ ମୁଣ୍ଡରେ,
ହେବକି ସାହାଯ୍ୟ ସେହି ଅନ୍ତିମ କାଳରେ ।
ସହଜ କି ପାରି ହେବା ଏଭବ ସାଗର,
ଅସାର କଳ୍ପନା କରି କାହିଁ ନିରନ୍ତର ?
ମାୟାଜାଲେ ପଡ଼ି ଯିନା ହୁଅ ଛଟପଟ,
କେ ନୁହେ ଚେଷ୍ଟିତ ଜାଣିବାକୁ ଏ କପଟ ।
ପ୍ରମଦା ବିହାର ଯିନା କରୁଅଛ ଧ୍ୟାନ,
କଳଙ୍କ ଜୀବନେ କେବେ ସତ୍ୟର ସନ୍ଧାନ ।
ଛପି ଛପି ଆସୁଅଛି ନିକଟକୁ କାଳ,
କେ ସମର୍ଥ ନିବାରଣେ ତାହାର ଜଞ୍ଜାଳ ।
ସ୍ୱପ୍ନସମ ଅସାର ଏ ପ୍ରମଦା ବିଳାସ,
ଆଧ୍ୟାତ୍ମ ତତ୍ତ୍ୱରେ ଦିଅ ଜୀବନକୁ ଝାସ ।
ରୂପ ବିନାଶକ ଜରା ଯୌବନକୁ ତାଡ଼ି,
ଯାଉଅଛି ଦୁଃଖେ କାଳ ଘରକୋଣେ ପଡ଼ି ।
ମୃତ୍ୟୁସମ ଭୟ କିଛି ନାହିଁ ଧରଣୀରେ,
କେତେତ ରୋଗ ପଶି ଦିଏ ଯାତନା ଶରୀରେ ।
ସଂସାର ରୂପ ଅରଣ୍ୟେ ହୋଇ ଭ୍ରମେ ଲୀନ,
କଲ୍ୟାଣକାରୀ ମାର୍ଗକୁ ଦେଖୁଅଛ ଭିନ୍ନ ।
କେ ଏଡ଼ି ପାରିବ ଲୋକେ ପ୍ରିୟାର ବିଯୋଗ,
ଏଥିଲାଗି ନକରେ କେ ନିତ ଶୋକ ଭୋଗ ।
ସ୍ନେହ ସମାନ ବନ୍ଧନ କିଛି ନାହିଁ ଭବେ,
ମୁକୁଳିବାକୁ ତହିଁରୁ ଦେଖ ପଥ ତେବେ ।
ମିତ୍ରମଧ୍ୟେ ଶ୍ରେଷ୍ଠ ସେହି ଯେ କରେ ମଙ୍ଗଳ,
ଇନ୍ଦ୍ରିୟ ଦାସ ନୋହିଲେ ଜୀବନ ସଫଳ ।
ପରର ଅଧୀନ ହୋଇ ନ ଅର୍ଜ ବିପତ୍ତି,
ମହାଭବଜାଲେ ପୋଡ଼ ଶୁଦ୍ଧକର ମତି ।
ପ୍ରଜ୍ଞା ରୂପ କବଚକୁ କରିଣ ଧାରଣ,
ହସି ହସି ଶେଷେ କର ମୃତ୍ୟୁକୁ ବରଣ ।
ବିନୟର ଆଶ୍ରୟ ନେଇ ରହେ ଯେଉଁ ଜନ,
ନପାରେ ପ୍ରବେଶ କରି ତା ପାଶେ ମଦନ ।

୧ ଶ୍ରମଣ

ମିଳୁଥିଲା ଶାନ୍ତି ବଦଳିଲା ରୂପ
ପାଳନ୍ତେ ଦୃଢ଼ ସଂଯମ ।
ହର୍ଷ ଅବା ଦୁଃଖ ନଥିଲା ମନରେ
ହୋଇ ସ୍ୱଭାବସଂପନ୍ନ,
ବୀତରାଗ ପରି ରହୁଥିଲେ ସ୍ଥିର
ନସେବ ଆଉ ମଦନ ।,
ଆସକ୍ତି ବିମୁଖ ହେବାର ସେ ଜାଣି
କହିଲେ ତହୁଁ ଗୌତମ,
"ହୋଇଛ ସମର୍ଥ ଇନ୍ଦ୍ରିୟ ନିଗ୍ରହେ
ଆଚରି ନୀତିନିୟମ ।
ମାନସିକ ରୋଗ ଥିଲା ବଳବାନ
ହୋଇଛି ଏବେ ବିନଷ୍ଟ,
ଅନାର୍ଯ୍ୟ ବ୍ୟକ୍ତିର ସାଧୁ ଆଚରଣ.
ଜଗତେ ଅତୀବ କଷ୍ଟ !
ସଦା ହିତକାରୀ ମିତ୍ରର ବଚନ
କରିବ ସିନା ପାଳନ,
ସୁଖେ ଦୁଃଖେ ଯେହୁ ସମଭାବାପନ୍ନ
କହନ୍ତି ତାକୁ ସଜ୍ଜନ ।
ଦେଖିଛ କି କାହିଁ ବସୁନ୍ଧରା ତଳେ
ଲୋଭୀ ମଣିଷର ଦାନ,
ଦୁର୍ବଳ ପାଖରେ ନୁଆଁଇଛି ମୁଣ୍ଡ
କେବେ କରେ ବଳବାନ ?
ମାନସିକ ଦୋଷ ନଗଲେ ହୃଦୟୁଁ
ମିଳେ କି କାହିଁ ଆନନ୍ଦ ?
ପ୍ରେମ ବଶୀଭୂତ ହୋଇ ଲୋକ କେବେ
ନ ଜାଣଇ ଭଲମନ୍ଦ ।
ବସିବା ନିମିତ୍ତ ଯେସନ ମଣିଷ
ପଥର ବୁହେ କାନ୍ଧରେ,
କାମ ଉପଭୋଗ ପାଇଁ ତୁମ୍ଭେ ମଧ୍ୟ
ଉଦ୍ୟତ ଧର୍ମ କାର୍ଯ୍ୟରେ ।
ଯେସନ କୃଷକ ଫଳପ୍ରାପ୍ତି ଲାଗି
କରଇ ବୀଜ ବପନ,
ବିଷୟ ତେସନ ଲକ୍ଷ୍ୟ ରଖି ଏବେ
କରୁଛ ଧର୍ମ ବର୍ଜନ ।
ଲାଭ ଆଶା ରଖି ବଣିକ ଯେସନ
ପଣ୍ୟଦ୍ରବ୍ୟ କରେ କ୍ରୟ,
ତେସନ ଜାଣୁଛି ଭୋଗଲାଗି ତୁମ୍ଭେ
ଧରମେ ରଖିଛ ଲକ୍ଷ୍ୟ" ।

କାମାଗ୍ନିରେ ତୁମ୍ଭ ହୃଦୟ ଜଳୁଅଛି ସନ୍ତତ,
ବୃଥା କ୍ଲେଶ ସହି କାହିଁକି ତୁମ୍ଭେ ଆଚର ବ୍ରତ ।
ଇଚ୍ଛାନାଙ୍କ ତଳେ ମାନସେ ବ୍ରହ୍ମଚର୍ଯ୍ୟ ପାଳନ,
ବାହ୍ୟରେ ଦେଖାଇ ହେଲେ ବା ଅଛି କି ପ୍ରୟୋଜନ
ଅଭିଲାଷ ସିଦ୍ଧ ହେବ କି ଅପ୍ସରାଙ୍କୁ ପାଇଲେ ?
ଲଭିବ ପରମ ଆନନ୍ଦ ତୃପ୍ତି ସିନା ଆସିଲେ ।
ସୁଖ ବା କିପରି ଆସିବ ଶାନ୍ତି ନଥିଲେ ମନେ
ପ୍ରୀତି ବିନା ରତି (ଆନନ୍ଦ)କିପରି ହେବ ଲାଭ ଜୀବନେ
ଆଧ୍ୟାତ୍ମ ଚିନ୍ତାରେ ମନକୁ ଅଗ୍ରେ କର ନିବେଶ,
ନ ରହିବ ତୃଷ୍ଣା କଦାପି ଜବେ ଘୁଞ୍ଚିବ କ୍ଲେଶ ।
ସଲିଳରେ କେତେ ସିନ୍ଧୁର ତୃପ୍ତି ଆସେ କି ଭବେ,
ଅବା କାଷ୍ଠଦ୍ୱାରା ସନ୍ତୋଷ ଅଛି ବହ୍ନିର ଲବେ ।
ଯେ ପର୍ଯ୍ୟନ୍ତ ତୃଷ୍ଣା ରହିଛି ମନେ ରହିବ ଦୁଃଖ,
ଛିନ୍ନ କଲେ ତାକୁ ପ୍ରଥମେ ବଳେ ଆସିବ ସୁଖ ।
ସମ୍ପଦେ ଅଥବା ବିପଦେ ଦିବସରେ ରାତିରେ,
ତୃଷ୍ଣାରେ ଆସକ୍ତ ବ୍ୟକ୍ତିକି କେବେ ଶୁଏ ଶାନ୍ତିରେ ?
ବିଷୟର ଅନ୍ୱେଷଣରେ ଦୁଃଖ ଉପୁଜେ ସଦା,
ତାର ପ୍ରାପ୍ତି ମଧ୍ୟ ସନ୍ତୋଷ ଦେଇ ନଥାଏ କଦା ।
ଦୁଷ୍କର କର୍ମରେ ମଣିଷ ସ୍ୱର୍ଗ ପ୍ରାପ୍ତ ହୁଅଇ,
ପ୍ରବାସୀ ପରାଏ ଲୋକକୁ ପୁନରପି ଫେରଇ ।
ସ୍ୱର୍ଗଭ୍ରଷ୍ଟ ହେବା ଲୋକର ପୁଣ୍ୟ ନଥାଏ ଲବେ ।
ପଶୁପକ୍ଷୀ ଅବା ବାନର ଜନ୍ମ ଲଭଇ ଭବେ ।
ସ୍ୱର୍ଗର ଉତ୍ତମ ପଦାର୍ଥ ଭୋଗ କରିବା ପରେ,
ସେଠୁ ଖସି ଦୁଃଖ ଭୋଗଇ ଲୋକ ମୃତ୍ୟୁ ଲୋକରେ ।
ପ୍ରାଣୀଠାରେ ଦୟା ହେବାରୁ ଶିବିରାଜ ବାଜକୁ
ସ୍ୱଶରୀର ମାଂସ ପ୍ରଦାନ ମାତ୍ରୁଁ ଗଲେ ସ୍ୱର୍ଗକୁ ।
ଏ ଦୁଷ୍କର କର୍ମ କରିବେହେଁ ପୁଣ୍ୟ ହେବାରୁ ଊଣା,
ଖସିଗଲେ ସ୍ୱର୍ଗୁଁ ନପାଇ ପରମେଶ କରୁଣା ।
କେତେ ନୃପତି ଆପଣା କର୍ମୁଁ ଯାଇ ସ୍ୱର୍ଗକୁ
କର୍ମକ୍ଷୀଣ ପରେ ଲେଉଟିଛନ୍ତି ମୃତ୍ୟୁ ଲୋକକୁ ।

ମୃତ୍ୟୁ ସମୟରେ ଦେହୀର ଦେଖି ଦେହ ଲକ୍ଷଣ,
ପ୍ରାଣଥିବାଯାଏ କରନ୍ତା ମନେ ମନେ ସ୍ମରଣ ।
କ୍ଷଣିକ ସୁଖରେ କାହାକୁ ଦିଅ ନାହିଁ ପ୍ରଶ୍ରୟ,
ସୁଖାବହ ହେବ ଅନ୍ତେ ମୋକ୍ଷମାର୍ଗ ଆଶ୍ରୟ ।
ସୂତ୍ରାବଦ୍ଧା ପକ୍ଷୀ ଲେଉଟେ ଯାଇ ଦୂରକୁ ଯଥା,
ଅଜ୍ଞାନ ସୂତ୍ରରେ ଆବଦ୍ଧ ଲୋକ ଫେରଇ ତଥା ।
ନକର ପ୍ରବେଶ ବନ୍ଧନେ ସୁଖ ଭୋଗ ଆଶାରେ,
ମୋକ୍ଷମାର୍ଗେ ଶାନ୍ତି ମିଳଇ ସଦା ବସୁନ୍ଧରାରେ ।
ପ୍ରତ୍ୟକ୍ଷରେ ଦେଖି ଜନ୍ମର ଦୁଃଖ ଅନବରତ,
ପୁନରପି ଜନ୍ମ ନହେବା ଲାଗି ହୁଅ ଜାଗ୍ରତ ।

## ଷଷ୍ଠ ସର୍ଗ

## ( ବିବେକ )

ଏବମ୍ବିଧ ଉକ୍ତି ଶ୍ରବଣେ ହେଲେ ଲଜ୍ଜିତ ନନ୍ଦ.
କାମଲିପ୍ତ ହୃଦେ ନଥିଲା ଏବେ ଲଭିଲେ ଆନନ୍ଦ ।
ବୈରାଗ୍ୟ ସମ୍ଭୂତ ଜାଗ୍ରତ ହେଲା ହୃଦେ ତାଙ୍କର,
ଅନିତ୍ୟ ଏ ଧରା ବିଚାରି ହେଲେ ଭୟେ କାତର ।
ସାରଥିର ରଥ ଭୁମାର୍ଗୁଁ ଆସେ ବାହୁଡ଼ି ଯେସ୍ନେ,
ନନ୍ଦ ମନୋରଥ ବିଷୟୁ ହେଲା ନିବୃତ୍ତ ତେସ୍ନେ ।
ଅପଥ୍ୟରୁ ରୋଗୀ ବିରତ ହୋଇ ସୁସ୍ଥ ଯେସନ,
ସ୍ୱର୍ଗ ତୃଷ୍ଣା ନଷ୍ଟ ହେବାରୁ ନନ୍ଦ ହୃଷ୍ଟ ତେସନ ।
ମନ୍ଦଗାମୀ ଗଜ ସଦୃଶ ଯାଇ ଗୁରୁଙ୍କ ପାଶେ,
ଅଶ୍ରୁବିଗଳିତ ନେତ୍ରରେ ନନ୍ଦ ଏମନ୍ତ ଭାଷେ ।
"ଅପସରାଙ୍କ ପ୍ରାପ୍ତି ବିଷୟେ ଇଚ୍ଛାନାହିଁ ମନରେ,
ସଂସାରର ଗତି ବିଚାରି ଦେଖି ହୃଦୟ ଥରେ ।
ସକଳ ସନ୍ତାପ ବିନାଶେ ହେଲି ଶରଣାପନ୍ନ,
ଧର୍ମର ସରଣୀ ଦେଖାଅ ତୁମ୍ଭେ ହୋଇ ପ୍ରସନ୍ନ ।
କ୍ଷଣ ଭଙ୍ଗୁର ଏ ସଂସାର ତାକୁ ବିଷମଗତି,
ଇନ୍ଦ୍ରିୟ ଦମନେ ସକ୍ଷମ ହେଉ ଏବେ ମୋ ମତି" ।

## ଉପଦେଶ

ସନ୍ମାର୍ଗ ପ୍ରବୃତ୍ତି ନନ୍ଦଙ୍କୁ ଅନାଇଁ
କହନ୍ତି ଗୌତମ ମୃଦୁ ବଚନେ
"ଇନ୍ଦ୍ରିୟ ରୂପକ ଚପଳ ଅଶ୍ୱକୁ
କରିଛ ଆୟତ୍ତ ରଖି ବନ୍ଧନେ ।
ଅନିତ୍ୟ ବିଷୟ ଉପଭୋଗେ ଲୋକ
ହୁଅଇ ଆସକ୍ତ ସାରା ଜୀବନ,
ଅବିନାଶୀ ସୁଖ ଲଭିବା ନିମିତ୍ତ.
କେ ନେଉଛି କାହିଁ ତାର ଯତନ ।
ଦୂରେ ଥିବା ସଲିଳ ଦର୍ଶନେ ପିପାସୁ
ପଥିକ ହରାଏ ଧୈର୍ଯ୍ୟ ଯେସନ,
କ୍ରୋଧ ହେତୁ ଲୋକ ଉଚ୍ଛୃଙ୍ଖଳ ଚରେ
ବିବେକ ବିଚ୍ୟୁତ ହୁଏ ତେସନ,
ରଜୋଗୁଣ ଦ୍ୱାରା ଆଜଯାଏଁ ସିନା
ଥିଲା ଅବରୁଦ୍ଧ ବୁଦ୍ଧି ତୁମ୍ଭର,
ଚଣ୍ଡ ଅନିଳର ଉଡ୍ଡୀନ ରଜରେ
ଯେମନ୍ତ ଆବୃତ ପ୍ରଭା ସୂର୍ଯ୍ୟର ।
ମୁଖେ ପ୍ରିୟକଥା ହୃଦେ କୁଟିଳତା
ଆଚରଣ କରି ମଣିଷ ଭବେ,
ସ୍ୱାର୍ଥ ସାଧନରେ ତତ୍ପର ହେଲେହେଁ
ପାଉଛି କି ଯଶ ଜୀବନେ ଲଭେ ?
ବିଷୟ ଲାଳସା ବିନାଶ ନିମିତ୍ତ
ହୋଇଛି ସମର୍ଥ ତୁମ୍ଭର ବୁଦ୍ଧି,
ଅଧୁନା ଜାଣୁଛି ଉପୁଜୁଛି ଶ୍ରଦ୍ଧା
ଧର୍ମତତ୍ତ୍ୱେ କରି ଅନ୍ତର ଶୁଦ୍ଧି ।
ଭୂମିରୁ ଉତ୍ପନ୍ନ ହେଉଅଛି ଅନ୍ନ
ଏ ଶ୍ରଦ୍ଧା ନଥିଲେ କୃଷକ ମନେ,
ଅଥବା ଅନ୍ନରେ ତାର ପ୍ରୟୋଜନ
କରନ୍ତା କି ଶ୍ରମ ବୀଜ ବପନେ ।
ସଦ୍ଧର୍ମକୁ ଶ୍ରଦ୍ଧା କରୁଛି ଗ୍ରହଣ
ଯଥା ହସ୍ତକରେ ଦାନ ଗ୍ରହଣ,
ତେଣୁ ତା ଅଙ୍କୁର ବଢାଇଲେ ଲୋକ
ଅକ୍ଲେଶେ କରିବ ତତ୍ତ୍ୱ ବୀକ୍ଷଣ" ।
ବୁଦ୍ଧଙ୍କ ବଚନେ ପ୍ରୋତ୍ସାହିତ ହୋଇ
ନିଜକୁ ମଣିଲେ କୃତାର୍ଥ ନନ୍ଦ,
ବିଶେଷାନୁରାଗ ଅନ୍ତର୍ହିତ ହୋଇ
ଉପୁଜିଲା ଧୀରେ ମହା ଆନନ୍ଦ ।
ଇନ୍ଦ୍ରିୟ ଯୋଗରୁ ସକଳ ଏ ମର୍ତ୍ତ୍ୟ
ପାଉଛନ୍ତି ପୀଡା ସାରାଜୀବନ,

ସମୟାନୁଯାୟୀ ଦେଉଥିଲେ ବୃଷ୍ଟି
ତୀକ୍ଷଣ ସନ୍ତାପ ହୁଏ ଖଣ୍ଡନ ।
କମଳରୁ ଜାତ କମଳ ପତର
ହୁଏ ନାହିଁ ଲିପ୍ତ କମଳେ ଯେସନେ,
ସଂସାରୁ ଉତ୍ପନ୍ନ ସଂସାରରେ ରହି
ମୁନିଏ ବିମୁକ୍ତ ବିଷୟୁଁ ତେସନେ ।
ନୋହି ସ୍ୱାର୍ଥାନ୍ୱେଷୀ ଉପଦେଶ ଛଳେ
ପ୍ରିୟ ଅବା ରୁକ୍ଷ ଦେଇ ଭାଷଣ,
ଲୋକଙ୍କୁ ଦୁଃଖରୁ ପରିତ୍ରାଣ ଲାଗି
କରନ୍ତି ସେମାନେ ଜୀବନେ ପଣ ।
ଅନନ୍ତର ବୁଦ୍ଧ ବୁଝାଇଲେ ତାଙ୍କୁ
ଯେପରି ନିର୍ଦ୍ଦୋଷ ହେବ ଆଚାର,
ନିର୍ମଳ ହୃଦୟେ କାଟିବାକୁ କାଳ
ସଦା ସନ୍ଥ ସଙ୍ଗେ କରି ସଂଚାର ।
ଶୁଦ୍ଧ ଆଚରଣେ ଅର୍ଜିବ ଜୀବିକା
ସ୍ୱଳ୍ପାହାରୀ ହେବ ପ୍ରାଣ ଧାରଣେ,
କପଟାଦି ଦୋଷ ବିସର୍ଜ୍ଜନ କରି
ନେଉଥିବ ଯତ୍ନ ଦୁଃଖ ୧ପ୍ରହାଣେ ।
ସନ୍ତୁଷ୍ଟ ଚିତ୍ତରେ ସଦ୍‌ବୃତ୍ତି ଆଚରି
ହେବ ଅବିରତ ମଧୁର ଭାଷି,
ହିଂସା ପ୍ରବୃତ୍ତିକି ପ୍ରଶ୍ରୟ ପ୍ରଦାନ
ନ ମୁଣ୍ଡାଅ କେବେ ପାତକରାଶି ।
ଦୁଃଖର ନିବୃତ୍ତି ନହେବା ପର୍ଯ୍ୟନ୍ତ
ମୁକ୍ତ ନାହିଁ ବୋଲି କରି ଚିନ୍ତନ,
ମୋକ୍ଷ ସମୀପରେ ପହଞ୍ଚିବା ପାଇଁ
କରୁଥିବ ଶିକ୍ଷା ଜ୍ଞାନ ଦର୍ଶନ ।
ପରାଧୀନ ବୋଲି ଭିକ୍ଷୁର ଜୀବିକା
ନକରି ଶୋଚନା ମାନସେ ତିଳେ,
ଶ୍ରେଷ୍ଠ ଜୀବନକୁ ଆଚରିଲେ ସିନା
ନିଶ୍ଚିତ ପରମ ଆନନ୍ଦ ମିଳେ ।
ଶାରୀରିକ ଅବା ମାନସିକ ସୁଖ
ଶିଖାଇବ ବ୍ରହ୍ମଚର୍ଯ୍ୟ କେବଳ,
ଶୁଦ୍ଧଶୀଳ ସିନା ଧରଣୀ ମଧ୍ୟରେ
ମଣିଷର ବନ୍ଧୁ ଶରଣବଳ ।
ସୂକ୍ଷ୍ମ ଦୋଷ ଦେଖି କରୁଥିବ ଭୟ
ନିଜବ୍ରତ ଦୃଢ଼େ କରି ପାଳନ,
ଦୁଃଖର ନିବୃତ୍ତି ଆସିବା ନିମିତ୍ତ
କରି ଆଚରଣ ଶ୍ରେଷ୍ଠ ଜୀବନ ।
ନିୟମରୂପକ ଚକ୍ରର ମଧ୍ୟରେ
ଧୈର୍ଯ୍ୟରୂପୀ ଧନୁ ଧରି ଦୃଢ଼ରେ,
ସ୍ମୃତି କବଚକୁ ପରିଧାନ କରି
କରି ଅବରୋଧ ତୃଷ୍ଣାକୁ ଶରେ ।
ଇନ୍ଦ୍ରିୟ ବଇରି କଲେତ ନିଗ୍ରହ
ସ୍ୱଚ୍ଛନ୍ଦେ ସଂସାରେ ସୁବିଧା ମିଳେ,
ଇନ୍ଦ୍ରିୟ ଅଧୀନ ହୋଇ ବିଷୟରେ
ନରଖ ଆକାଂକ୍ଷା ହୃଦୟେ ତିଳେ ।
ଇନ୍ଦ୍ରିୟ ନିକର ଯେ ଯାହା କ୍ଷେତ୍ରରେ
ରହିଛନ୍ତି ଛପି ଅନବରତ,
କଳବଳ କରି ମଣିଷକୁ ଭବେ
ଉଦ୍ଦେଶ୍ୟ ସଫଳ ଲାଗି ଉଦ୍ୟତ ।
ଯେମନ୍ତ ସାଗର ନ ଲଭଇ ତୃପ୍ତି
ଜଳରାଶି ଧରି ନିଜ ବକ୍ଷରେ,
ତେମନ୍ତ ଇନ୍ଦ୍ରିୟ ବିଷୟୋପଭୋଗେ
ନପାଏ ସନ୍ତୋଷ କେବେ ୧ଭବରେ ।
ଇନ୍ଧନ ଅନଳ ସଂମିଶ୍ରଣ ହେତୁ
ବହ୍ନି ପ୍ରଜ୍ୱଳିତ ହୁଅଇ ଯଥା,
ବିଷୟ କଳ୍ପନା ଦୁଇଟିର ଯୋଗେ
ହୁଏ ଉଦ୍ଦୀପିତ କ୍ଳେଶାଗ୍ନି ତଥା ।
ଏ ଭବେ ମନୀଷ ରହେ ବାନ୍ଧହୋଇ
ଅସାର କଳ୍ପନା ଫାନ୍ଦରେ ପଡ଼ି,
ଦୃଷ୍ଟି ଘ୍ରାଣ ସ୍ପର୍ଶ ଶ୍ରବଣ ଆସ୍ୱାଦ
ଦେଖୁଚି ଉନ୍ନତ ଘଡ଼ିକ ଘଡ଼ି ।
ଧର୍ମପ୍ରତି ପ୍ରୀତି ରଖୁଥିବ ନିତି
ମରଣ ଅବଶ୍ୟ ହୃଦୟେ ଜାଣି,

୧ ବିନାଶେ ।

୧ ପୃଥିବୀରେ

ଅନନ୍ତ ସନ୍ତାପ     ଆସି ବାର ବାର
ପୀଡୁଅଛି ଦେଖ ଲୋକଙ୍କୁ ଟାଣି ।
ମରଣ ଅବଶ୍ୟ     ଭଷି ହୃଦୟରେ
ପରମାର୍ଥ ଚିନ୍ତା କର ଜୀବନେ,
ନିଜ ଶ୍ରେୟ ଲଗି     ବନ୍ଧୁ ଜାତ କର
ଦିଅ ନାହିଁ ଦୁଃଖ ଅନ୍ୟର ମନେ ।
ଅକୁଶଳ ଚିନ୍ତା     ଅକୁଶଳ କର୍ମ
କରି ଲୋକ କିଏ ଲଭଇ ସୁଖ,
ଜରା ବ୍ୟାଧି ମୃତ୍ୟୁ     ଚଉଦିଗେ ଘେରି
ଶରୀରମାନଙ୍କୁ ଦେଉଛି ଦୁଃଖ ।
ଏ ଭବେ ଅଛିକି     ଏହିପରି ସ୍ଥାନ
ଯହିଁ ନାହିଁ ବ୍ୟାଧି-ଜରା-ମରଣ ?
ତେଣୁ ଆସକ୍ତିରୁ     ନିବୃତ୍ତି ନିମିତ୍ତ
ସଦା ଜୀବଲୋକ ଅସାର ମଣ ।
ସୁଖ ଦୁଃଖ ଦ୍ୱନ୍ଦ୍ୱ     ଦୁନିଆଁ ଭିତରେ
ଲାଗିଛି ସତତ ପଡ଼େ ନୟନେ,
ଅମୃତ ସମାନ     ପ୍ରଜ୍ଞାରସ ପିଇ
ତୃପ୍ତି ହୃଦୟରେ ଚଳ ଭବନେ" ।

## ଇନ୍ଦ୍ରିୟ ନିଗ୍ରହ

ଇନ୍ଦ୍ରିୟ ଉଦ୍‌ବେଗ ନ ଦେଇ ମନ,
ସମୂଳେ ନାଶ ଲାଗି କର ଯତନ ।
ଭସ୍ମାଚ୍ଛାଦିତ ବହ୍ନି ତୁଲ୍ୟ ଇନ୍ଦ୍ରିୟ,
ରହି ଦେହ ଭିତରେ ସାଧେ ଅପ୍ରିୟ ।
ସଲିଳେ ଶିଖୀ ଶାନ୍ତ ହେବା ସଦୃଶ,
ସଂଯମ ବଳେ ସିନା ସେମାନେ କୃଶ ।
ମଣିଷର ବଇରି ଇନ୍ଦ୍ରିୟତତି,
ଏମାନଙ୍କ ହେତୁରୁ ଘୋଟେ ବିପତ୍ତି ।
ଆବିଳ ଜଳ ସ୍ୱଚ୍ଛ କତକେ ଯଥା,
ସଂଯମେ ଚିତ୍ତଶୁଦ୍ଧି ହୁଅଇ ତଥା ।
ଦୂଷିତ ନିଜ ହୃଦ ହିଂସା ଦ୍ରୋହରେ,
ଜନ୍ମାନ୍ତେ ବନ୍ଧୁ ହୁଏ ସିନା ଶ୍ରେୟରେ ।
ଅମୃତ ଗୁଡ଼ ବିଷ କଲେ ଭକ୍ଷଣ,
ସଙ୍ଗେ ସଙ୍ଗେ ଘଟଇ ନିଜ ମରଣ ।
ପ୍ରିୟ ଅପ୍ରିୟ କଥା ବୃଥା ଚିନ୍ତନ,
ଆଜ ଯେ ହୁଏ ଶତ୍ରୁ କାଲି ସ୍ୱଜନ ।
ବ୍ୟାଘ୍ର ସଦୃଶ ଛପି ଛପି ଅନ୍ତକ,
ଓଟାରନିଏ ବଳବାନ ଯୁବକ ।
ତାହାକୁ ଜିଣିବାକୁ କେ ଅଛି ଭବେ,
ଯାର ଖାତର ନାହିଁ କାହାକୁ ଲବେ ।
ପିଲା ବା ବୁଢା ବୋଲି ଯେ ଭାବୁ ନାହିଁ,
ବିଶ୍ୱାସ ତାହାଠାରେ ରହିବ କାହିଁ ?
ଜଳ ବୁଦ୍‌ବୁଦ୍ ତୁଲ୍ୟ ଜାଣି ଜୀବନ,
କୁମାର୍ଗରୁ ନିବୃତ୍ତ ହେଉ ଏ ମନ ।
ଅକୁଶଳ ବୃତ୍ତକେ ନମିଳେ ଫଳ,
ଦୋଷଯୁକ୍ତ ଚିତ୍ତକୁ କର ନିର୍ମଳ ।
ତତ୍ତ୍ୱ ଗବେଷଣା ଲାଗି ନିଜ ମନରୁ,
ଚିତ୍ତମଳ ପ୍ରହାଣ କର ଆଗରୁ ।
ଔଷଧର ଉତ୍ପତ୍ତି ଭୂମି ଯେପରି,
ବିପତ୍ତିର କାରଣ ଜନ୍ମ ସେପରି ।
ସ୍ୱାଭାବିକ ପ୍ରବୃତ୍ତି ଥିବା ଜୀବର,
ବୃଦ୍ଧାବସ୍ଥାଦି ସଦା ହେତୁ ଦୁଃଖର ।
ଶମୀତରୁରୁ ବହ୍ନି ଉତ୍ପନ୍ନ ଯଥା,
ସନ୍ତାପ ଉପୁଜଇ ଚିତ୍ତରୁ ତଥା ।

## ଅମୃତ ପ୍ରାପ୍ତି

ନନ୍ଦ ତତ୍ତ୍ୱମାର୍ଗ ଉପଦେଶ ପାଇ,
ଏକାନ୍ତ ସ୍ଥାନରେ ପ୍ରବେଶିଲେ ଯାଇ ।
ଚିତ୍ତରୂପୀ କର୍ମ ଭୂମିରେ ବିଚରି,
ହେଲେ ଯୋଗାରୂଢ଼ ଦୃଢ଼ତ ଧୈର୍ଯ୍ୟଧରି ।
ମୋକ୍ଷ ପ୍ରାପ୍ତି ଲଗି ଜାପି ଦିନରାତି,
କରିଲେ ନିଗ୍ରହ ଇନ୍ଦ୍ରିୟ ଅରାତି ।
ତତ୍ତ୍ୱରୂପୀ ଦୀପ ଜାଳି ହୃଦୟକୁ,
କରିଦେଲେ ଦୂର ଅଜ୍ଞାନ ତମକୁ ।
ଦୁଃଖ ବୋଲି ବୁଝି ଅନିତ୍ୟ ସଂସାର,
କଲେ ଧୀରେ ଧୀରେ ହୃଦୟ ସଂସ୍କାର ।
ଶୁଦ୍ଧଶୀଳ ଯାନେ କରି ଆରୋହଣ,
ଚିତ୍ତଉଣାଙ୍ଗନେ କଲେ ବିଚରଣ ।

ମାନସିକ କ୍ଲେଶ କରନ୍ତେ ବିନାଶ,
ଉପୁଜଇ ଧୀରେ ହୃଦୟେ ଉଲ୍ଲାସ ।
ରାଗନାମ ମହା ଅରାତି କ ଖରେ,
କଲେ ସେ ବିଦୀର୍ଣ୍ଣ ଯୌଗିକ ଅସ୍ତ୍ରେ ।
ଯେସନ ମଣିଷ ନିଦାଘ ପୀଡ଼ିତ,
ଅବଗାହନରେ ହୁଏ ଅମୋଦିତ ।
କାମାଗ୍ନି ଦାହରୁ ଯୋଗବଳେ ନର,
ମୁକ୍ତି ଲଭି ହେଲେ ତେସନ ଆନନ୍ଦ ।
ରାତିରେ ନିଶ୍ଚିନ୍ତେ ଶୋଇଥିବା ଜନ,
ଶବ୍ଦେ ବାଧାପ୍ରାପ୍ତ ହୁଅଇ ଯେସନ ।
ଏକାଗ୍ରତା ପ୍ରାପ୍ତ ଆଧ୍ୟାତ୍ମକ ବ୍ୟକ୍ତି,
ହୁଏ ହଠହଠା ଘୋଟିଲେ ଆସକ୍ତି ।
ଶାନ୍ତ ସମାଧିରୁ ଉପୁଜଇ ସୁଖ,
ବିତର୍କେ ସତତ ହୁଏ ଜାତ ଦୁଃଖ ।
ଶାନ୍ତ କାମ୍ୟ ବ୍ୟକ୍ତି ସୁଖକୁ ବିକାର,
ବୋଲି ମନେକରି କରେ ପରିହାର ।
ସୁଖ ଦୁଃଖ ବୋଲି କିଛି ନାହିଁ ଭବେ,
ମନୋବିକାର ତା ଜାଣନ୍ତି ସରବେ ।
ପ୍ରଜ୍ଞାରୂପୀ ତରବାରି କରେ ଧରି,
ସଂସାର ବନ୍ଧନ ଦେଲେ ଛିନ୍ନ କରି ।

ଦୁର୍ଜ୍ଜୟ ମାରକୁ ଜିଣି ଜୀବନରେ,
ବୀରାଗ୍ରଣୀ ହୁଅ ଅନାସ୍ଥା ଭବରେ ।
ରାଜସିକ ଗୁଣ ଯୁକ୍ତ ଜଗତରେ,
କୃତଜ୍ଞତା ନାହିଁ କାହା ହୃଦୟରେ ।
ସଂସାର ଚକ୍ରରେ ପଡ଼ି ଜୀବଗଣ,
ଦୁଃଖ ଦୁର୍ଦ୍ଦଶାରେ ପାଆନ୍ତି କଷଣ ।
ଚେଷ୍ଟ୍ରାନ୍ ବୋଲି କହିବା କେମନ୍ତେ,
ପ୍ରଜ୍ଞାଚେଷ୍ଟ ଯାର ନାହିଁ ଏ ଜଗତେ ।
ଏଭବେ ଅଧମ ଅର୍ଥଭୋଗ ପାଇଁ,
ପାପଇ ସମ୍ପୂ ସଦା ଧାଇଁ ଧାଇଁ ।
ମହାଦୁଃଖ ଜାଲୁଁ ମୁକୁଳିବା ଲାଗି,
ସନ୍ମାର୍ଗ ପ୍ରବେଶେ କେବା ଅନୁରାଗୀ ।
ସଦ୍‌ଜ୍ଞାନ ରୂପକ ଧନୁଧରି କରେ,
ଇନ୍ଦ୍ରିୟ ନିଗ୍ରହେ କେ ବାହାରେ ଖରେ ।
ଶୋଷଣକୁ କରି ଭୂଷଣ ସମ୍ବୃତ,
ଦେଖାଏ କିଏ ବା ନିଜ କରାମତି ।
ଏ ଜୀବନ ପ୍ରତି ନରଖି ବିଶ୍ୱାସ,
କେ ଜାଣେ କେବେ ବା ଘଟିବ ବିନାଶ ।



# ନୈଷଧ

## ଉପକ୍ରମ

ମରଣ ଡାକରା କେ ପାରୁଛ ଏଡ଼ି,
ନିଅଇ ସେ ଟାଣି ଗୋଡ଼େ ଦେଇ ବେଡ଼ି ।
ଆଖି ଆଗେ ରଖ ମୃତ୍ୟୁକୁ ପ୍ରଥମେ,
ଦିନ ସାରିଦିଅ ସଦା ପରିଶ୍ରମେ ।
ମରଣ ସମୟେ କି ବୋଲିବେ ଜନେ,
ବେଳ ଥାଉଁ ଥାଉଁ ଗୁଣୁଛ କି ମନେ ?
ଯୌବନ ଭଙ୍ଗିମା କେତେ ଦିନ ପାଇଁ,
ଯାର ପଛେ ପଛେ ଜରା ଆସେ ଧାଇଁ ।
ଦିଶଇ ବିକୃତ ଯେତେ ଅବୟବ,
କରିଦିଏ ଚୂନା ୧ ଚିତ୍ତୁ ଗର୍ବ ତବ ।
ଯା ଆଶ୍ରୟେ ଦିନ ସରିବ ତୁମର
ବୋଲି ବିଶ୍ୱସୁଛ ସେ ହେଲଣି ପର ।
ଯାହାକୁ ଡାକୁଥିଲ ତୁମେ ଦିନେ,
ସେ ତ ଶୁଣୁନାହିଁ ତୁମ କଥା ଟନେ ।
ଦେଖ ଚଉଦିଗେ କୃତଘ୍ନତା ଫଣି,
ଲୋକର ମହତ୍ତ୍ୱ ଦେଉଛି ବିଧ୍ୱଂସି ।
ନ୍ୟାୟ ଲାଗି ସିନା କରୁଛ ଲଢ଼ାଇ
ପାଅ ଅପଯଶ ବିପକ୍ଷ ହରାଇ ।

୧ ଶୀଘ୍ର

## ନୈଷଧ

ପୁରୁଣା ନୂଆରେ ଲଗାଇ କଳହ,
ଦେଖୁଛି ଶୁକୁଟି ଖଳ ଅହରହ ।
ବିଶ୍ୱାସଘାତକ ଟେକିଲେଣି ମୁଣ୍ଡ,
ମିଛ ଗପିବାକୁ ନଡ଼ରେ ଯାତୁଣ୍ଡ ।
ଓଲମ ବିଲୋମ ସତତ ଦୁନିଆଁ,
ଟିକିକ କଥାରେ ଜଳୁଅଛି ନିଆଁ ।
ଜନମି ଏ ଦେଶେ କେତେ କେତେ ଋଷି
ମାତି ପାଳି ନିତି ହେଉଥିଲେ ଖୁସି ।
ହେଲେ ଅନସୂଆ ଦୁଶ୍ଚିନ୍ତା ପ୍ରବେଶ,
ନ ଆସଇ ନିଦ ନୟନକୁ ଲେଶ ।
ଉପୁଜ ତହିଁରୁ ନାନାବିଧ ରୋଗ,
ଆଣଇ ଅବଶ୍ୟ ପ୍ରାଣେ କ୍ଳେଶ ଭୋଗ ।
ସେତେବେଳେ ସବୁ ମଣିବ ଅସାର,
ବୃଥା ହେବ ଯେତେ ତୁମ କାରବାର ।
କା'ର ଲୀଳାଭୂମି ନୁହେ ଏ ସଂସାର,
କର ନାହିଁ କେବେ ବଳୁଆ ବିଚାର ।

ହାତେ ମାପି ଦେଇ ଗୃହିବ ଗୃହଖଣ୍ଡେ,
ବିଚାରିବ ସଦା "ଜୀବନଟା ଦଣ୍ଡେ" ।
ଭୋଗ ବିଳାସରେ ଦିଅ ନାହିଁ ମନ,
ମହତେ ଖଟାଅ ଉପାର୍ଜିତ ଧନ ।
ଗ୍ରାସି ଅଛି ଯାକୁ ମାୟା ମୋହ ଭବେ,
ଅଛି କି ତାହାର ହୃଦେ ଶାନ୍ତି ଲବେ ?
ଆପଣା ଛିଦ୍ରକୁ ଘୋଡାଇ ଜୀବନେ,
ପରଛିଦ୍ର ଖୋଜ ସଦା ମନେ ମନେ ।
ଦିନର କରମ ବିଚାରି ଶୟନେ,
ଭୁଲଥିଲେ କର ଯତ୍ନ ସଂଶୋଧନେ ।
କର୍ତ୍ତବ୍ୟ କର୍ମରେ ନହୁଅ ବିମୁଖ,
ଅଭିଳାଷ ଥିଲେ ପାଇବାକୁ ସୁଖ ।
ବିଚାର ନିଜିତ ଦୁନିଆଁ ବେପାର,
ଛାଡ ତେଜ ବେଳୁଁ ହୁଅ ହୁସିଆର ।
ଟାଣୁଅଛି ଯାକୁ ସ୍ୱାର୍ଥର ଦଉଡ଼ି,
ପରର କଥା ସେ ଯାଉଅଛି ହୁଡ଼ି ।
ଯାହାକୁ ମଣୁଛ ହୃଦୟର ମଣି,
ସେ ତ ପରିଣାମେ ତୁମ କାଳ ଫଣୀ ।
ସମ୍ପଦେ ବିପଦେ ତୁମ ସାହା ଯିଏ,
ନାମ ତାର ତୁଣ୍ଡେ ନଧର ଟିକିଏ ।
ଘାରଇ ଯାହାକୁ ଅବିରଳ ଲୋଭ,
ଅକର୍ମ କରଣେ ଅଛି କି ତା କ୍ଷୋଭ ?
ଧନ ଧନ ବୋଲି ଲୋକେ ହୋଇ ବାଇ,
କୁଳର ଗୌରବ ଦିଅନ୍ତି ବୁଡାଇ ।
ଧନ ଲାଗି ହୃଦେ ଜନ୍ମିଲେ ନୈରାଶ୍ୟ,
କଳେବର ଜୀର୍ଣ୍ଣ, କି ବିବର୍ଣ୍ଣ ଆସ୍ୟ ?
ବାତୁଳ ପରାୟେ ହେଉଥାନ୍ତି ନିତି,
ନ ଶୁଣି କା କଥା, ଅର୍ଜନ୍ତି ଅପ୍ରୀତି ।
ଦେଖାଇ କିଏ ବା ଆପଣାର ଛଟା,
ମୂଠାକ ପାଇଁକି କରୁଅଛି ହଠା ।
ଅବିରତ ମାତି ଧନ ଗରବରେ,
ଶତ ଶତ ଲୋକ ପଡ଼ନ୍ତି ଖାଲରେ ।
କେତେ ନୃପତିଏ ବିବେକ ହରାଇ,
ପାଇଛନ୍ତି ନିନ୍ଦା ଅପକର୍ମେ ଯାଇ ।

ଦେଖ ନୃପ ନଳ ଭୋଗିଲେ କି ଦଶା,
ହରାଇ ସର୍ବସ୍ୱ ଖେଳି ଖେଳି ପଶା ।
ଧନ ଲୋଭେ ସିନା ମାତିଲେ ବ୍ୟସନେ,
ଯୁଗେ ଯୁଗେ କଥା ରହିଲା ଭୁବନେ ।

## ପ୍ରଥମ ସର୍ଗ

ନିଷଧ ଦେଶରେ ୧କୃତ ଯୁଗେ ଥିଲେ
ନଳ ନାମେ ନୃପ କୀର୍ତ୍ତିସମ୍ପନ୍ନ,
୨ଷଡ଼ଙ୍ଗ ବେଦରେ ଦକ୍ଷତା ଅର୍ଜି
କରୁଥିଲେ ନିତି ପ୍ରଜାପାଳନ ।
୩ସଙ୍ଗରାଙ୍ଗଣରେ ୪ପ୍ରଣମି ଭୂପାଳେ
ହୁଅନ୍ତି ଉପରେ ଶରଣାପନ୍ନ,
ଅନଳ ସଦୃଶ ଉଜ୍ଜ୍ୱଳ କାନ୍ତିକି
ପାଉଥାଏ ଶୋଭା ହୃଷ୍ଟ ଆନନ ।
୫କବିବୁଧ ସହ ଯୁକ୍ତ ହୋଇ ମୋଦେ
ଦେବ ପାଟନେଶ୍ୱର ଉଦିତ ଯେସନେ,
୬କବିବୁଧ ମେଳେ ଲଭନ୍ତି ଆନନ୍ଦ
ନୃପ ନଳ କାଳ ଯାପନେ ତେସନେ ।
୭ଦିଗୀଶବୃନ୍ଦାଂଶ ଧାରଣରୁ ଅବା
ମୁଖର ୮ପ୍ରତିମା ନଥିଲା ଭବେ,
ପୀନତା ଧାରଣ କରି ବାହୁବେନି
ଦୁର୍ଦ୍ଧର୍ଷ ବୈରିଙ୍କି ଦମନ୍ତି ଯବେ ।
ସୁଗଠନ ବପୁ ବୀକ୍ଷଣେ ଜନଙ୍କ
କାମଦେବ ବୋଲି ଉପୁଜେ ଭ୍ରାନ୍ତି,
ନିର୍ନିମେଷ ନେତ୍ରେ ୯ତ୍ରିଦଶୀଏ ଅବା
ଦେଖୁଥିଲେ ତାଙ୍କ ୧୦ନବଦଶ କାନ୍ତି ।
ଜଗତେନ୍ଦ୍ରାଗ୍ରଣୀ ନଳ ଏ ସମୟେ
ଅନୁରୂପ କାନ୍ତ ଦମୟନ୍ତୀର
ଜନମୁଖୁଁ ଶୁଣି ପରିଣୟ ଲାଗି
ଚିନ୍ତା କରି କରି ହେଲେ ଅସ୍ଥିର ।

---

୧ ସତ୍ୟଯୁଗ ୨ ମିମାଂସା, ନ୍ୟାୟପୁରାଣ, ଧର୍ମଶାସ୍ତ୍ର
୩ ଯୁଦ୍ଧଭୂମିରେ ୪ ବିପକ୍ଷ ୫ ଶୁକ୍ର ଓ ବୁଧଗ୍ରହ
୬ କବି ଓ ପଣ୍ଡିତ ୭ ଇନ୍ଦ୍ରାଦି ଦିକ୍‌ପାଳ ସମୂହର
ଅଂଶ ୮ ଉପମା ୯ ଅପ୍ସରାମାନେ ୧୦ ଯୌବନ

୧ଆରାମ ବିହାର ୨କୈତବେ ନୃପତି
ଯିବାକୁ ସମ୍ପ୍ରତି ବୋଲାଇ ପତି,
୩ମନ୍ଦୁରା ଭିତରୁ ୪ଚଟୁଳ ୫ବାଜୀଙ୍କି
ଅଣାଇଲେ ଦେଖି ୬ଚଟୁଳ ଗତି ।
୭ସୂତବର୍ଗ ଭିତେ ସେମାନଙ୍କୁ ଯୋତି
ନୃପଙ୍କୁ ବସାଇ ଗମନ୍ତେ ଖରେ,
ନଗରବାସୀଏଁ ସ୍ପୃହାନ୍ୱିତ ହୋଇ
ସମ୍ବର୍ଦ୍ଧିଲେ ତାଙ୍କୁ ସମ୍ଭ୍ରମଭରେ ।
୮ଧୂଳି ପଟଳରେ ବିସ୍ତୃତ ଘୋଡାଇ
ପ୍ରବେଶନ୍ତେ ରଥ ଉପବନରେ,
ଅବରୋହି ନୃପ କରିଲେ ବୀକ୍ଷଣ
୯ବି-ଯୁକ୍ତ ବିଟପୀ ଚଉଦିଗରେ ।
ପାଦପପ୍ରସୂନ ସୌରଭ ସମ୍ପଦ
ବନାନିଳ ଆଣି ସେବନ୍ତେ ନଳ,
ମହା ମୋଦଭରେ ଶ୍ରାନ୍ତି ଦୂର କରି
ଭକ୍ଷିଲେ ଏ ଅନ୍ତେ ୧୦ମାଲୁର ଫଳ ।
ମଲ୍ଲିକା କୁସୁମ ସମ ବିକଶିତ
ଚମ୍ପକ କୋରକେ ଭୃଙ୍ଗ ଝଙ୍କାର,
ପୁଣି ରସାଳରେ ପିକ ସ୍ୱନ କଲ
ମନ ଉତ୍କଣ୍ଠିତ ନଳ ରାଜାର ।
କିଛିକ୍ଷଣ ପରେ ବନେ ଭ୍ରମୁଁ ଭ୍ରମୁଁ
ଦେଖିଲେ ସମ୍ମୁଖେ ଗୋଟିଏ ସର,
ଯାର ତଟ ପ୍ରାନ୍ତେ କରିଲେ ବିଶ୍ରାମ
ନିଷଧ ନୃପତି ୧୧ହୟନିକର ।

## ସର ଦର୍ଶନ

୧୨ସିତାସିତ ସରୋଜେ ୧୩ଭରିତ ସର,
ଯହିଁ କ୍ରୀଡନ୍ତି ମୋଦେ ୧୪ଭ୍ରମରଭର ।
ମୃଣାଳଖଣ୍ଡ ଲାଗି ୧୫ମୃଣାଳବଳୀ,
କେବେ ବା ପରସ୍ପର ଲଗନ୍ତି କଳି ।

୧ ଉପବନ ୨ ଛଳରେ ୩ ଅଶ୍ୱଶାଳା ୪ ମନୋହର
୫ ଅଶ୍ୱ ୬ ଚଞ୍ଚଳ ୭ ସାରଥିସମୂହ ୮ ଧୂଳିସମୂହ
୯ ପକ୍ଷୀଯୁକ୍ତ ୧୦ ବେଲ ୧୧ ଘୋଡା ସମୂହ
୧୨ ଶୁକ୍ଳକୃଷ୍ଣ ୧୩ ପୂର୍ଣ୍ଣ ୧୪ ସମୂହ ୧୫ ହଂସ

ତା ମଧ୍ୟେ ହିରଣ୍ମୟ ଗୋଟିଏ ହଂସ,
ଦର୍ଶନେ ଲୋଭିଗଲା ନୃପମାନସ ।
କୁତୂହଳ ଅବସ୍ଥା ତାଙ୍କର ଜାଣି,
ପକ୍ଷ ଘୋଡାଇ ଦେଲା ଶିରକୁ ଆଣି ।
ନିଦ୍ରାଗତ ଅବସ୍ଥା ଦେଖି ହଂସର,
କାୟକୁ ଖର୍ବ କରି ଗମି ସତ୍ୱର ।
ଧରିବାକୁ ତାହାକୁ ବଢାନ୍ତେ କର,
ଦଂଶିଲା ତାଙ୍କୁ କରି ବିକୃତ ସ୍ୱର ।
ପରନ୍ତୁ ନୃପ ତାକୁ ଆଣନ୍ତେ ଧରି,
ରହିଲା ମଉନେ ସେ କାତରେ ଥିର ।
ଖଗସଙ୍ଘ ସଙ୍କୁଳ ଉଡ଼ି ଝଟେଢ,
ଏସନ ଭାଷିଥିଲେ ନୈଷଧ ପ୍ରତି
ନିଦ୍ରାଣ ପତତ୍ରୀକି ଧରିବା ପାଇଁ,
୧ଜାତରୂପ ଲୋଭରେ ଆସିଲୁ ଧାଇଁ ।
ତପଃପାନ କରାଇ ପୋଷିଲେ ସାପ,
କେବେ ହେଲେ ଆପଦେ ନାଶେକ ତାପ ।
ସସାଗର ଧରାର ଯେତେ ପାଳକ,
ସେ ପୁଣି ହୋଇଅଛୁ ପକ୍ଷୀବାଧକ ।
ବିଧାତା ଇଚ୍ଛା ଧାଏଁ ଯେଉଁ ଦିଗରେ,
ତାକୁ କେ ଲଙ୍ଘିପାରେ ମହୀ ମଧ୍ୟରେ ।
ନୈଷଧ କରସ୍ଥିତ ହଂସ ଏପରି,
ବିଧୁରେ ଭାଷୁଅଛି ଲବେ ନଡ଼ରି ।
"ମୋ ହୈମ ପକ୍ଷ ଦେଖି ଆଶାରେ ବଶ,
ଯେଣୁ ଘଟିଲା ତବ ବିବେକ ଭ୍ରଂଶ ।
କେତେ ବା ହେବ ୨ଛଦେ ୩କମଳୋଦୟ,
ଏଡେ ଆଶାପ୍ରୀ କଲା ନୃପ ହୃଦୟ ।
ରଣ ଉଦ୍ଭଟ ୪ଭଟଙ୍କର ଏ ଭବେ,
୫ଶକୁନଠାରେ ହିଂସା ନଥାଏ ଲବେ ।
୬ବାରିରୁହଭୂରୁହ ମୂଳେ ପରାଣ,
ଧରିଛି ଯେତେ ତାର କରି କଲ୍ୟାଣ ।
ଏବଂଭୂତ ଭାଷିତ ଶୁଣି ଖଗର,
ହୃଦୟ ତରଳିଲା ନଳ ନୃପର ।

୧ ସୁନା ୨ ପକ୍ଷରେ ୩ ଶ୍ରୀବୃଦ୍ଧି ୪ ରାଜା ୫ ପକ୍ଷୀ
୬ ବାରିରୁହ+ଭୂରୁହ = ପଦ୍ମ, ବୃକ୍ଷ ଆଦି

## ହଂସ ବିଳାପ

ବିଧାତାଙ୍କୁ ନିନ୍ଦା କରି    ଉର୍ଦ୍ଧ୍ୱରେ ହଂସ ଏପରି
ଜନମୀକ ସ୍ମରି ସ୍ମରି କରେ କ୍ରନ୍ଦନ,
"ଅଟଇ ସେ ଜରାତୁରା    ମୁହିଁ ଅତି ଅଚତୁରା
ବିନାଶେ ହେବ ଆତୁରା ତାର ନନ୍ଦନ
୧ବରଟା ମୋ ନବ ପ୍ରସୂତି
କୃପାଳୁ ହୋଇ ଶ୍ରବଣ କର କାକୁତି ।
ନପାଇ ମୋର ୨ଈକ୍ଷଣ    ୩ଚକ୍ରମଣ୍ଡ ୪ଚଂକ୍ରମଣ
କରି କରି ଅନୁକ୍ଷଣ ପ୍ରିୟା ବିକଳେ
ନିଲଭି ଶୋକ ବିରତି    ରାବ ରାବ ପଡି,ପଡି
ହେବ ଛଟ ପଟ ଅତି ଭସି ପଲ୍ୱଳେ
୫ଅପ୍ରସ୍ଫୁଟିତେକ୍ଷଣ ଶାବକ
ମରଇ ପାଇବ ନିନ୍ଦା ହୋଇ ପାଳକ ।
ମୃଣାଳ ଧରି ଅଣ୍ଟରେ,    ଆସି ମରାଳ ସଞ୍ଚରେ
ମୋ ବାରତା ଦେଲେ ଖରେ ମୃତ୍ୟୁ ବରଣ
କରିବ ପ୍ରିୟା ୬ତରସା!    ନରଖି ପ୍ରାଣ ଲାଳସା
ହେବ ତୁମେ ଲୋକହସା କହାଁ କୃପଣେ,
ନିଅ ନାହିଁ ମୋର ପରାଣ,
ତୁମ ବିନା କିଏ ମୋତେ କରିବ ତ୍ରାଣ ।
ତାପରି ସଙ୍ଗ ଭିତରେ    ନଥିବେ ପକ୍ଷୀକୁଳରେ
ଅନାଇଁଥିବ ପଥରେ ମୋ ଆଗମନ,
ଅଜାଣତେ କିଛି ଦୋଷ    କରିଥିଲେ ତେଜ ରୋଷ
ମାନସେ ବହି ସନ୍ତୋଷ ରଖ ଜୀବନ,
ଅତୁଟ ତା ପତି ଭକତି
ଭାବନା ଭବସାଗରେ ନାହିଁ ମୋ ଗତି ।
ଭବର ଅନିତ୍ୟ ଗତି    ଜାଣି ମାନବବ୍ରତତି
ନପୂରିତ ସମ୍ପତ୍ତିମତି ପରଦ୍ରବ୍ୟରେ,
ଆଶାବଳେ ନିରନ୍ତର    ପୂରିଥାଇ ଗନ୍ଧାଗର
ନଜାଣି ଅନ୍ତରପର ପଡି ଲୋଭରେ
ଛାଡ଼ନାହିଁ କାଳ କାହାକୁ
ମୋତେ ମାରି କି କହିବ ମୋର ମାତାକୁ ।

୧ ଗର୍ଭ୍ୟା ୨ ଦର୍ଶନ ୩ ମଣ୍ଡଳଭ୍ରମଣ ୪ ଭ୍ରମଣ
୫ ଆଖିଫିଟି ନଥିବା ୬ ଶୀଘ୍ର,ହଠାତ୍

ମୋ ବିନାଶେ ୧ଅମ୍ବା ଶୋକେ, ନଖାଇ ରହିବ ଭେକେ
କି ବୋଲିବେ ମୋତେ ଲୋକେ ହେବ କି ଯଶ
ଶୁଣିଲେ ପ୍ରିୟା ମୋ ଦଶା    ସହସା ହୋଇ ବିବଶା
ଚିର ଶମନ ନିକଟା ନିପାତବଶ
ଜନନୀବିୟୋଗେ ୨ପରସୁ
ହେବେ କ୍ଷୁଧାକୁଳେ ତାର ଶିଶୁଏ ଆଶୁ ।
କରି ମୁଖ ପ୍ରକମ୍ପନ    ପୁନଶ୍ଚ ଚଂକ୍ରିତସ୍ୱନ
କା' ଆଗେ ଦୁଃଖ କଥନ କରିବେ ଆଜ
ମୋ ବିନାଶ ସମାଚାର    ୩କୁଳିଶ ତୁଲ୍ୟ ପ୍ରହାର
ଲଭିଛି କିଏ ନିସ୍ତାର ବିଧାତା ଦାଉ ।"
ମରାଳ ଭାଷନ୍ତେ ଏସନ
ଦୟାର୍ଦ୍ର ରାଜନ କଲେ ତାକୁ ମୋଚନ ।

## ଦ୍ୱିତୀୟ ସର୍ଗ

ଅନନ୍ତରେ ୪ଦ୍ୱିଜ ମୁକତ ଲଭି ହରଷ ଭରେ,
୫ତନୁରୁହଯୁକ୍ତ ତନୁକୁ ଝାଡ଼ିଦେଲା ବ୍ୟଗ୍ରରେ ।
କରି ୬ବିଲେଖନ ୭ପକ୍ଷତି ୮କୋଟିପୁଟେ ଭରତି,
କଲା ନିବାରଣ କାଟକୁଁ ୯ତନୁକଣ୍ଡୁ ପଣ୍ଡିତ ।
ତଡାଗ ସଂତ୍ରଜନକର ଗଲେ ବେଢି ହଂସକୁ,
ଉଚ୍ଚ ରବେ ରାବ ସକଳ ଲେଉଟିଲେ ସରକୁ ।
ଏଅନ୍ତେ ସେ ଦ୍ୱିଜ ପଲ୍ୱଳୁଁ ଆସି ନୈଷଧ କରେ,
କୁତୂହଳ ହୋଇ ଭାଷିଲା ବସି ପ୍ରମୋଦଭରେ ।
,,ହେସ୍ତୁର ସୁନ୍ଦର ରାଜନ ! ଧର୍ମ ଆଗମ ମର୍ମ
ବୁଝିି ମୋତେ ଗ୍ରହି ଅର୍ଜିଲ ଏବେ ସୁକୃତ କର୍ମ ।
୧୦ଆଖେଟ ନୁହଇ କ୍ଷତ୍ରୀର କେତେବେଳେ ଦୁଷ୍କୃତ
ସ୍ୱଆଶ୍ରୟ ଦ୍ରୁମ କରନ୍ତୁ ଦେଖ ଖଗେ ବିକୃତ ।
ଦୁର୍ବଳ ସ୍ୱକୁଳ ପାଳକ ୧୧ଯୂଥବର୍ଗ ନିରତ
୧୨ଅନବଦ୍ୟ ଗୁଣ ଭୂଷଣୁଁ ନୁହେ ୧୩ଏଣ ବିରତ
ଅପ୍ରିୟ ବଚନ ତୁମ୍ଭଙ୍କୁ କହି ଅର୍ଜିଛି ପାପ,
ତବ ହିତ ଲାଗି ଆସିଛି କରିବାକୁ ଆଳାପ ।

୧ ମାଆ ୨ ମୃତ ୩ ବଜ୍ର ୪ ପକ୍ଷୀ ୫ ଲୋମଯୁକ୍ତ
୬ ଖୁଣ୍ଟିବା ୭ ପକ୍ଷମୂଳ ୮ ଥଣ୍ଟ ୯ ଶରୀର ଝୁଣ୍ଡାଇ
ବ୍ୟାଚର ଦକ୍ଷ ୧୦ ମୃଗୟା ୧୧ ମାଛମାନେ ୧୨ ନିର୍ଦ୍ଦୋଷ
ସଂତ୍ରଜନକର— ପକ୍ଷୀ ସମୂହ ଏଣ—ମୃଗ

ଆନନ୍ଦବର୍ଦ୍ଧକ ମୋ ଉକ୍ତି ନୋହିବ ୧କୀରଗୀ ପରି,
କରିବ ଯତନ କାମନା ସିଦ୍ଧ ହେବ ଯେପରି ।
ପତଗ ନୋହିଲେହେଁ ଜାତିରେ କରି ପ୍ରତ୍ୟୁପକାର,
ଋଣ ବନ୍ଧନରୁ ମୁକୁଳି ଯିବି ବୋଲି ବିଚାର ।
ବିଦର୍ଭ ଦେଶର ନୃପତି ଭୀମଙ୍କର ତନୟା,
ଲୋକ ସମସ୍ତେ ଗୁଣ ପ୍ରକର୍ଷା ସଦା ହୃଦୟେ ଦୟା ।
ଦମୟନ୍ତୀ ନାମ ତାଙ୍କର ଜନମୁଖେ ବିଦିତା,
ତନୁର ସୌନ୍ଦର୍ଯ୍ୟ ଦର୍ଶନେ ସୁରାଙ୍ଗନା ଚକିତା ।

୨ପୃଷତୀ ନୟନୁଁ ଅଧିକ ରମ୍ୟ ନେତ୍ର ଯୁଗଳ,
ଚମରୀ ପୁଚ୍ଛକୁ ଜିଣିଛି ତାର ମୂର୍ଦ୍ଧା କୁନ୍ତଳ ।
୩ଅଞ୍ଜନ ଅଙ୍କିତ ହୁଅନ୍ତେ ନେତ୍ରେ ଦମୟନ୍ତୀର,
କରେ ସଙ୍କୁଚିତ ଗର୍ବକୁ ଖଞ୍ଜରୀଟ ପକ୍ଷୀର ।
ଦମୟନ୍ତୀ ଆସ୍ୟ ନିର୍ମାଣେ ଇନ୍ଦୁମଣ୍ଡଳକୁ ସେ
କଲେ ଅପହୃତ ଧାତାକ ତେଣୁ ଏଡ଼େ ସାହସ ।

ବହୁ ଜନପଦ ଭ୍ରମିଛି ରହି ୪ଭୂଚର ସଙ୍ଗେ,
ଏପରି ପ୍ରତିମା ସୁନ୍ଦରୀ ପଡ଼ିନାହିଁ ନେତ୍ରରେ ।
ବିଶଦ ବଚନ ଅମୃତ ପାନ କରି ନୃପତି
ଦମୟନ୍ତୀ ଲାଭ ଆଶାରେ ମତି ବଳାଇ ଅତି ।
୫ଦ୍ୱିଜାଧିପଠାରୁ ଶୁଣନ୍ତେ ନୃପ ଟିକି ଏମନ୍ତ,
ତାଙ୍କ ବଶ ହେବେ ପୁଚ୍ଛିଲେ ଦମୟନ୍ତୀ କେମନ୍ତ ।
ବଢ଼ାଇବା ପାଇଁ ଆଗ୍ରହ ମୃଦୁ ସୁଧା ବଚନ,
କହି ଆଉଁଶିଲେ ତା ପକ୍ଷ ଧୀରେ ଧୀରେ ରାଜନ ।
"ରେ ହଂସ ତୋହର ଆକୃତି ଅସଦୃଶୀ ଏ ଭବେ,
ହେଉ ନାହିଁ ଦୃଷ୍ଟିଗୋଚର ଦୋଷ ସ୍ୱଭାବେ ଲବେ ।
୬କନ୍ଦର୍ପ ଶରଧିଜଳଧି ନିମଜ୍ଜିତ ରାଜାକୁ
ପୋତତୁଲ୍ୟ ଅବଲମ୍ବନ ହୁଅ ଉଦ୍ଧାରିବାକୁ ।
ତୁମ୍ଭର ଗମନ ଏଥିଟି ହେଉ ଶୁଭଦାୟକ,
ଲେଉଟିବ ନୃପ ନିକଟ କରି କାର୍ଯ୍ୟସାର୍ଥକ ।
୭ସଲିଳସମ୍ଭୃତ କଳଶ ଆଗେ ଦେଖି ସେ ହଂସ,
ସିଦ୍ଧି ସୂଚକ ତା ବିଚାରି ଗଲା ନଭେ ୮ରଭସ ।

ପତଙ୍ଗ ପୁଙ୍ଗବ ଗମିଲା ଯେବେ ଅମ୍ବରତଳେ
ତରୁ ଉପାଶ୍ରିତ ନଗକୁ ହେଲା ପାରି ଅଗ୍ରରେ ।
କଲା ଅତିକ୍ରମ ବୃକ୍ଷପଥ ସେହୁ କ୍ଷଣ କାଳରେ,
ସଂଯୋଗବଶ ତବ ଏଡ଼ିଲା ପଥେ ଭୂପ କାର୍ଯ୍ୟରେ
ଭୀମଭୂପତିଙ୍କ ପାଳିତା ପୁର କଲା ଈକ୍ଷଣ
ହେମ ଶୈଳୋପମ ସଉଧମାନ ଯହିଁ ପୂରଣ ।

## କୁଣ୍ଡିନ ନଗର ଦର୍ଶନ

ପୁରି ଚଉପାଶେ   ପୂରି ରହିଥିଲା
ପଲ୍ୱଳ ଦୀର୍ଘିକାମାନ,
ଅଭ୍ରଭେଦୀ ଚୂଡ଼   ୯ଉକାର ମନ୍ଦିର
ଯାଉକୂଳ ବିଦ୍ୟମାନ ।
ଶୋଭେ ୧୦ପଣ୍ୟବୀଥୀ   ରାଜପଥ ପାର୍ଶ୍ୱେ
ଅସି ୧୧କ୍ରେତାମଣ୍ଡଳ,
୧୨ପିତୃପ୍ରସୂକାଳେ   ପଣ୍ୟଦ୍ରବ୍ୟ ସମସ୍ତେ
କରୁଥାନ୍ତି କୋଳାହଳ ।
୧୩ଇନ୍ଦୂପଳେ ଗଢ଼ା   ୧୪କ୍ଷିତିଭୃନ୍ମନ୍ଦିର
ସଗର ଉପାନ୍ତେ ରହି,
ପୂର୍ବପୁରୁଷଙ୍କ   ଯଶ ଗଉରବ
ଦେଉଥିଲା ଅବା କହି ।
ଚଟାଣ ବିଗ୍ରହ   ସ୍ଫଟିକ ପାଷାଣେ
ହୋଇଥିଲା ସମତଳ,
ମଣି,୧୫ରାକାତିଥି   ପରି ଦିଶୁଥିଲା
ଅବିକଳ ସମୁଜ୍ଜ୍ୱଳ ।
ରହିଥିଲା ଘେରି   ଅତ୍ୟୁଚ୍ଚ ୧୬ପ୍ରାକାର
ଉପକଣ୍ଠେ ପ୍ରାସାଦରି,
ଯହିଁରେ କୃତ୍ରିମ   ୧୭ପୁତ୍ରିକା ପ୍ରକର
ଆଙ୍କିଥିଲା ୧୮କାରିକର ।
ଶିଖର ଦେଶରେ   ହୋଇଥିଲା ଖଞ୍ଜା
୧୯ଅର୍କକାନ୍ତମଣି ରାଜି,

୧ ଶୁକ ବଚନ ୨ ମୃଗୀ ୩ କଜଳ ଲଗାଇଲେ ୪ ବନ୍ଧୁ ୫ ଶ୍ରେଷ୍ଠ ପକ୍ଷୀ ୬ କାମବାଣଜନ୍ୟ ପୀଡ଼ାରୂପୀ ସମୁଦ୍ରରେ ମଗ୍ନ ୭ ଜଳପୂର୍ଣ୍ଣ ୮ ଶୀଘ୍ର

୯ ଶିବ ମନ୍ଦିର ୧୦ ଦୋକାନଶ୍ରେଣୀ ୧୧ କିଣିବା ଲୋକସମୂହ ୧୨ ସଞ୍ଜବେଳେ ୧୩ଇନ୍ଦୁ+ଉପଳ ଚନ୍ଦ୍ରକାନ୍ତ ମଣି ୧୪କ୍ଷିତିଭୃତ୍+ମନ୍ଦିର—ଉଆସ ୧୫ ପୂର୍ଣ୍ଣିମୀ ୧୬ ପ୍ରାଚୀର ୧୭ କୁଣ୍ଢେଇ ସମୂହ ୧୮ ଶିଳ୍ପୀ ୧୯ ସୂର୍ଯ୍ୟକାନ୍ତମଣି ନଗ—ପର୍ବତ

ଝଲସି ଉଠଇ ଦର୍ଶକ ଲୋଚନେ
 ୧ସପ୍ତାଶ୍ୱମୟୂଖ ରାଜି ।
ସନ୍ନିଧିରେ ତାର ସୁରୁଚି ଉପବନେ
 ବିବିଧ ପାଦପଦଳ,
ସହଚରୀ ମେଳେ ହୋଇଥିଲା ଯାହା
 ଭ୍ରମଣ ବିହାରସ୍ଥଳ ।
କନକ ପତତ୍ର ହଂସ ଅନନ୍ତର
 ଦେଖି ଦୃଶ୍ୟ କଣ୍ଟକର,
ଉଦ୍ୟାନ ମଧ୍ୟକୁ ଗଲା ଉଡ଼ି ଉଡ଼ି
 ଦର୍ଶନେ ବୈଦର୍ଭୀଙ୍କର ।
ଫଳପୁଷ୍ପଭରା ସାନ୍ଦ୍ର ଉପବନେ
 ପଶି ଉତ୍ସୁକ ମନରେ,
ଦେଖିଲା ଭୈମୀକି କ୍ରୀଡ଼ୁଥିବା ତହିଁ
 ସହଚରୀଙ୍କ ସଙ୍ଗରେ ।
ନଭୋବିଭାଗରୁ ଓହ୍ଲାଇ ପଡ଼ନ୍ତେ
 ରାଜସୁତା ସମୀପରେ,
କ୍ଷିତିତଳୁ ଧ୍ୱନି ଉପୁଜିଲା ଖରେ
 ପକ୍ଷପୁଟ ଆଘାତରେ ।
୨ଜାମ୍ବୁନଦଛଦ କରି ଦରଶନ
 ୩ପୁରୋବର୍ତ୍ତୀ ମରାଳର,
ଧରିବାକୁ ଇଚ୍ଛା କଲାଇ ବୈଦର୍ଭୀ
 ବଢ଼ାଇଲେ କ୍ଷିପ୍ରେ କର ।
ବ୍ୟାକୁଳିତା ହେବା ଦର୍ଶନେ ସଖୀଏ
 ହସିଦ୍ୟନ୍ତେ ମାରି ତାଳି,
ମୋ ସହ ନ ଆସ କହି ଦମୟନ୍ତୀ
 ସେମାନଙ୍କୁ ଦେଲେ ଗାଳି ।
୪ପତସ୍ରଥ ଆଗଲୁ ଗଲା ଛଳରେ
ବୈଦର୍ଭୀ ଗୋଡାଇଲେ ତାର ପଛରେ ।
କରି କରି ପ୍ରେକ୍ଷଣ ୫ସୁଦତୀଗତ,
ଗଲା ସେ ଯହିଁ ରାଜେ ବ୍ରତତୀତତି ।
ନିଜକୁ ଛାୟା ପରି ଅନୁସରଣ,
କରିଥିବା ଭୈମୀକି ଭାଷେ ଏସନ,

୧ ସୂର୍ଯ୍ୟକିରଣ ୨ ସୁବର୍ଣ୍ଣପକ୍ଷ ୩ ସମ୍ମୁଖରେଥିବା ୪ ପକ୍ଷୀ ୫ ସୁନ୍ଦରୀ ସ୍ତ୍ରୀ

"ବସୁଧା ଗାମିନୀ ତୁ, କେଉଁ ସାହାସ,
ପତତ୍ରୀ ଧରିବାକୁ ବଳେ ମାନସ ।
ଅମାର୍ଗ ପ୍ରବୃତ୍ତିରୁ ଯାଅ ଓହରି,
ବୃଥା ଅପଥେ ପଦକ୍ଷେପ ନକରି ।
ସୁକୃତ କର୍ମଫଳ ଏ ଜୀବ ଲୋକେ,
ଅନବରତ ପିନା ଭୋଗନ୍ତି ଲୋକେ ।
୬ବନାଳିଅଳି ଦେଖି କରନ୍ତି ମନା,
ଫେରିଯାଅ ସଦନେ ଆହେ, ସୁମନା ।
ଅବ୍ଜାସନ ବାହନ ହଂସ ବଂଶରେ,
ନେମି ଅଛୁ ଆମ୍ଭେ ଏହି ମର୍ତ୍ତ୍ୟରେ ।
୭ମୃଣାଳାଗ୍ର ଗୁଡ଼ିକ ଖାଦ୍ୟ ଆମ୍ଭର,
ଶୋଭେ ରୂପ ୮ଋଦ୍ଧି ବ୍ରହ୍ମାଙ୍କ ବର ।
ବର୍ତ୍ମଗାମୀ ହେଲେହେଁ ଅନବରତ,
ପଥଶ୍ରାନ୍ତ ଖେଦରୁ ମୁଁ ତ ମୁକତ ।
କେ ନାହିଁ ଭବେ ମୋତେ ଧରିବା ପାଇଁ,
ବୃଥା ପ୍ରୟାସ କରି ମୋ ପଛେ ଧାଇଁ ।
କାଞ୍ଚନ ପକ୍ଷ ଦେଖି ପଡ଼ି ଲୋଭରେ,
ଛାଡ଼ି ଆସିଲ ଘର ବହୁ ଦୂରରେ ।
ବ୍ୟାଧାଦି ବନ୍ଧନରେ ନାହିଁ ମୋ ଭୟ,
ବିରିଞ୍ଚି ବରେ ମୋର ୯ବିରଳୋଦୟ ।
୧୦ସାଧୁ ବିଭକ୍ତି ଚିନ୍ତା ଜନ୍ମିଲା ମନେ,
ଏକାକିନୀ ହେଲ ତ ଏ ଘୋର ବନେ ।
ନିଷଧ ଦେଶ ନୃପ ନଳଙ୍କ ଗୁଣ,
ଚିତ୍ତ କରିଣ ଥିବୁ ମୋଠାରୁ ଶୁଣ ।
ତାଙ୍କ ସମାନ କେହି କ୍ଷମା ଗୁଣରେ,
ନାହାନ୍ତି ବୋଲି ହୁରି ପଡ଼େ ଭବରେ ।
ତାଙ୍କର ବାଣ ଧାର ରଣସ୍ଥଳରେ,
ରାଜବ୍ରଜଙ୍କ ଅସୁ ନିଅନ୍ତି ଖରେ ।
ପକ୍ଷୀହେବାରୁ ଲାଜ ନକରି ନାରୀ,
କାର୍ଯ୍ୟ କରନ୍ତି ସଦା ମୋତେ ପଚାରି ।
ତୁମରତ୍ନଙ୍କ ଛନ୍ଦେ ତାହାଙ୍କ ଶ୍ରାନ୍ତି,
ଦୂର ମୁଁ କଲେ ସେହୁ ଲଭନ୍ତି ଶାନ୍ତି ।

୬ ବନର ଭ୍ରମର ସମୂହ ୭ ବ୍ରହ୍ମାଙ୍କ ବାହନ ହଂସ ୮ ସମୃଦ୍ଧି ୯ ଦୁର୍ଲଭ ଜନ୍ମ ୧୦ ସାଧୁମାନଙ୍କଠାରେ ବିଶେଷ ଭକ୍ତି ଚିନ୍ତା ଅସୁ—ପ୍ରାଣ

ବହୁ ପରବସ୍ତ୍ୟଙ୍କୁ ଭୁଜ ବଳରେ
ମିଶାଇଛନ୍ତି ନିଜ ରାଜ୍ୟ ଭିତରେ ।
୧ଦାରିଦ୍ର୍ୟଦାଶ ସେହୁ ନଳ ରାଜନ
ଧନ୍ୟ ବଧାତା ସୃଜ ସୌମ୍ୟବଦନ ।
୨ପର୍ବରେ ପୂର୍ଣ୍ଣେନ୍ଦୁଙ୍କୁ ଜଣିଛୁପରା
ଯାକାନ୍ତି ଦର୍ଶନରେ ମୁଗ୍ଧ ଅପସ୍ବରା ।
ବକ୍ତାନ୍ତ ନବରର ଭଦ୍ର ରାଜନ
ନିଶା ଶଶାଙ୍କ ଯୋଗେ ଯଥା ଶୋଭନ ।
ଅଦ୍ୟାପି ରହିଛୁ ତୁ ଅବବାହିତା,
ଇଚ୍ଛାଥିଲେ ତାଙ୍କର ହୁଅ ବନିତା ।
କହଲି ବଚଣେ ନକେତର ପତିକ,
ହସିବେ ଲୋକେ ଦେଖି ତୋର ସାଂକ ।
ବଧିର ଇଚ୍ଛା କେ ଜାଣେ ଭବେ,
କରିପିବା କରମ ନ ଥକ ଲବେ ।
ଚିତ୍ତବୃତ୍ତି ଜାଣିବା ଲାଗି ଭୈମୀର,
ମାଦେ, ହଂସ ଭଣି ଏମନ୍ତ ଗିର ।

## ତୃତୀୟ ସର୍ଗ

## ହଂସ ଦମୟନ୍ତୀ କଥୋପକଥନ

୩ଦ୍ୱିଜରାଜପାଣିଗ୍ରହ ଅଭିଳାଷ,
ମୈବନ୍ଧନେକନ୍ୟା ବାଳକରେ କ ବକାସ ?
ବ୍ୟର୍ଥକ ଭାଷିତ ଶ୍ରବଣେ ଭୈମୀର,
ସନ୍ଧହାନ ହଂସ ଭାଷିଲି ଏ ଗିର ।
ଅସମ୍ଭବ ହୋଇବାର ନାହିଁ ଲବେ,
ଅସାଧସାଧନ ଦେଖୁ ସଦା ଭବେ ।
ଯତନ କଲେତ ମିଳଇ ରତନ,
ନିତ୍ୟ ନିରୁତ୍ସାହ ଅଳସୁଆ ମନ ।
ଜଗତରେ ଉର୍ଦ୍ଧ୍ୟକ ହେଲେହେଁ ଅନୃତ,
କହନାହିଁ କେବେ ଲଭିବା ଅମୃତ" ।

୧ ଦରିଦ୍ରତା ଦୂର କରିବା ବ୍ୟକ୍ତି ୨ ପୂର୍ଣ୍ଣମୀରେ ୩ ଚନ୍ଦ୍ରଙ୍କୁ ହାତରେ ଧରିବା ଅଭିପ୍ରାୟ ହେ ଦ୍ୱିଜ (ପକ୍ଷୀ) ରାଜପାଣିଗ୍ରହ (ନଳରାଜାଙ୍କୁ ବିବାହ କରିବା ଅଭିପ୍ରାୟ)

୪ଚକ୍ରାଙ୍ଗ ପତଙ୍ଗ କହନ୍ତେ ଏମନ୍ତ,
ଭାଷେ ଭୈମୀ ନକେ ଚିତ୍ତ ମୋ ସନ୍ତପ୍ତ ।
୫ଅନଳ ପୁରୁଷେ ପଶିଲେ ଶରଣ,
ଅନଳକୁ ଆଶ୍ରି ଲଭିବ ମରଣ ।
ନକର ଆଶଙ୍କା କହୁଛୁ ମୁଁ ଯାହା,
ବେଦବାଣୀ ବୋଲି ହୃଦେ ଦେନ ତାହା ।
ଅର୍କ ସମ୍ପର୍କଙ୍କୁ ଛାଡ଼େ କ ପଦ୍ମିନୀ
କୁମୁଦବାନ୍ଧବ ଅବା କୁମୁଦିନୀ ?
ମୋ ଶରୀର ପ୍ରଭୁ ଅଟନ୍ତି ମୋ ତାତ,
କିନ୍ତୁ ନଳ ମୋର ଗତି ପ୍ରାଣନାଥ ।
କିନ୍ତୁ ମୋର ସ୍ପୃହା ନାହିଁ ନଳଭିନ୍ନ,
ତାଙ୍କୁ କରିଚନ୍ତା ଏ ଶରୀର ଶୀର୍ଣ୍ଣ ।
ନାଚୁଛି ନିରତ ନଳାସ୍ୟ ହୃଦୟେ,
ନଳଭିଜଲି ତାଙ୍କୁ ମତ ୬ଅସୁବ୍ୟୟେ ।
କର ନାହିଁ ଡିକେ ହାଶଙ୍କା ସଞ୍ଚୟ,
ପ୍ରେମ୍ୟ କର୍ମ ଲାଗି କର ୭ତୂର୍ଣ୍ଣ ଲୟ ।
ତୁମ୍ଭେ ୮ଆର୍ତ୍ତିମୁଦ, ତୁମ୍ଭେ ମୋର ପ୍ରାଣ,
ସିଦ୍ଧି ନିମନ୍ତେ କର ତ୍ୱରିତେ ପ୍ରୟାଣ ।
୯ଅମୁଦ୍ର ଦାରିଦ୍ର୍ୟ ସମୁଦ୍ରରେ ମଗ୍ନ,
କରନାହିଁ ମୋର ମନୋରଥ ଭଗ୍ନ ।
ଛଣାଅ ଚଞ୍ଚଳ ଦମୟନ୍ତୀ ୧୦ଶୁଚ,
କରୁଥିବ ଗାନ ସଦା ତବ ଖ୍ୟାତ ।"
ଭୈମୀଙ୍କ ଭାଷିତ ହେଲାଉତ୍ତୁ ଶେଷ,
ହେଲି ପୁଲକିତ ମରାଳ ବିଶେଷ ।
ଆଳାପ ସମୟେ ହଂସ ଭୈମୀଙ୍କର,
ପ୍ରବେଶିଲେ ଆସି ସଖୀଏ ତାଙ୍କର ।
ସେମାନଙ୍କୁ ଦେଖି ହଂସ ଅନନ୍ତର,
ବିଦାମାଗି ତାଙ୍କୁ ଫେରିଲି ସତ୍ୱର ।

## ହଂସର ପ୍ରତ୍ୟାବର୍ତ୍ତନ

ଆକାଶପଥେ ଦେଖି ହଂସ ଗମନ,
ଲୋତକେ ପୂର୍ଣ୍ଣ ହେଲି ଭୈମୀନୟନ ।

୪ ହଂସ ୫ ନଳଭିନ୍ନ ୬ ପ୍ରାଣତ୍ୟାଗ, ୭ଶୀଘ୍ର ୮ ଆର୍ତ୍ତିପ୍ରିୟ ୯ ଅପରମିତ ୧୦ ଶୋଭ

ବୟସ୍ୟାଗଣ ତାକୁ ନେଲେ ଗୃହକୁ,
ଫେରିଲା ସେ ମରାଳ ସର ତଟକୁ ।
ନଳକୁ ଦେଖି କହେ ନରଗି ଛନ୍ଦ,
ଶ୍ରବଣେ ନରପତି ମହା ଆନନ୍ଦ ।
ବିରହିଣୀ ପୀଡ଼ିତ ପିତାଂଶୁ କରେ
ଦିଶିଲେ ମ୍ଳାନ ଏଣେ ଭୈମୀ ସୁନ୍ଦରୀ
୧ଶୂକଶିଖା ପାଦରେ କରି ପ୍ରବେଶ,
ଅନବରତ ତାକୁ ଦେଲା କି କ୍ଳେଶ ?
ସହଚରୀଏ ଜାଣି ଭୀମଜା ଦଶା
ଭୂପଙ୍କୁ ଜଣାଇଲେ ଯାଇ ତରସା ୨
ଏ ବିଷୟ ଶ୍ରବଣେ ଭୀମ ନୃପତି
ସ୍ୱୟମ୍ବର ଯୋଗାଡ଼ କଲେ ଝଟତି ।

## ଇନ୍ଦ୍ରଙ୍କୁ ନାରଦ ସ୍ୱୟମ୍ବର ବିଷୟରେ ଜଣାଇବା

ସୁତା ସ୍ୱୟମ୍ବର କରାଇବେ ଚିନ୍ତା ଭୀମ ରାଜନ,
ଆନନ୍ଦ ୩ମନ୍ଦାକ୍ଷ ଅବ୍ଧିରେ ଭୈମୀ ହେଲେ ମଗନ
ଏ ଉଦନ୍ତ ପାଇ ନାରଦ ଯାଇ ତ୍ରିଦିଶଧାମ,
ପ୍ରବେଶିଲେ ଶକ୍ର ୪ନିକଷା ନିଶି ପ୍ରଥମ ଯାମ ।
ଅତିଥି ମୁନିଙ୍କ ମଘବା ବହୁ ସତ୍କାର କରି,
ଆଗମନ ହେତୁ ପୁଚ୍ଛିଲେ ତାଙ୍କୁ ପାର୍ଥିବ ପରେ ।
"ପୁଣ୍ୟ ବିଭବର ବ୍ୟୟରେ ଲବ୍ଧ ହେବା ସମ୍ପଦ,
ବିଜ୍ଞର ଦୃଷ୍ଟିରେ ହେବକି ତହିଁ କେବେ ବିପଦ ?
ବିନୟାତିଶୟ ଦେଖାଇ ମୌନ ୫ପାକଶାସନ,
ପ୍ରମଦ ଗଦ୍ଗଦ ହର୍ଷିଲେ ତହୁଁ ମୁନିବଚନ
୬ଶତମଖ କରି ଅର୍ଜିଲ ତୁମ୍ଭେ ଯେଉଁ ସୁକୃତ,
ଅବଜ୍ଞାହେତୁରୁ ତହିଁରୁ ଜନ୍ମଇ ଦୁଷ୍କୃତ ।
ଆଣଇ ସମ୍ପଦ ହୃଦୟେ ଅଭିମାନ ନିରତ,
ତେଣୁ ସୁଧୀବୃନ୍ଦ ତହିଁରୁ ହୋଇଥାନ୍ତି ବିରତ ।
ଆମ୍ଭେମାନେ ବିଶ୍ୱ ବ୍ୟାପିତ ସଦା ଅହ୍ନତକରି,
ଜ୍ଞାନଚକ୍ଷୁ ବଳେ ବ୍ୟୟୁହୁଁ ଯଥାତଥ ଲୋକର ।
କମନୀୟ ତବ ୭ନିସର୍ଗ ପ୍ରୀତ ହେଲା ଦର୍ଶନେ,
ଦେଖାଅ ସତତ ସାଧୁତା ସୁରାଳୟ ଶାସନେ" ।

ଏମନ୍ତ ଭାଷିଣ ଶକ୍ରଙ୍କୁ ଦମୟନ୍ତୀ ବିଷୟ
କଲେ ଉତ୍ଥାପନ, ତଦନ୍ତେ ଖେଚର କୁଟିଳାଶୟ ।

## ନାରଦ ଉକ୍ତି

ଭୂପୃଷ୍ଠ ବିଦର୍ଭେ ଭୀମ ଭୂପଙ୍କର
ଦମୟନ୍ତୀ ନାମେ କନ୍ୟାରତନ,
୮ଅନୂଢ଼ା ଥିବାରୁ ସ୍ୱୟମ୍ବର ଲାଗି
ପ୍ରେରିଲେଣି ବାର୍ତ୍ତାମାନ ରାଜନ ।
ଯୌବନ ଉଦୟ ହେଲାପରି ଏବେ
ଦିଶୁଅଛି ଅବୟବ ପ୍ରାଞ୍ଜଳ,
ଆସକ୍ତ ଥିବାର ଜଣେ ଯୁବା ପ୍ରତି
ଦେଉଅଛି କହି ମୁଖମଣ୍ଡଳ ।
ଭୈମୀଅନୁରାଗ ନ ରହିବ କାଏ
ଦେଖି ତା ଲାବଣ୍ୟମୟ କାନ୍ତିକି,
ତବ ଅନୁମତି ଲଭିଲେ ଏଥିଶି
ସ୍ୱୟମ୍ବର ଦେଖିଯିବି ୯ଉର୍ବୀକି ।
୧୦କଶ୍ୟପନନ୍ଦନ ନାରଦ ବଚନ
ଶୁଣି କହିବାରୁ ତାଙ୍କ ଆଗ୍ରହ,
ଗଲେ ୧୧କାଶ୍ୟପୀକି ଦେବଧାମ ତେଜି
କୃତାନ୍ତ ହୁତାଶ ବରୁଣ ସହ ।
୧୨ସୁଭଗମାନିନୀ ୧୩ମଘୋନୀ ଆନନ
ଦିଶିଲା ୧୪ନିର୍ବାଣ ଅଲାତ ପରି,
ସୌନ୍ଦର୍ଯ୍ୟାଦି ଗୁଣେ ଗଞ୍ଜିତା ଉର୍ବଶୀ
ହେଲେ ୧୫ତୁଷ୍ଣୀଂଭୂତା ଗର୍ବ ସମ୍ବରି ।
ଅରଣ୍ୟ ଭିତରେ ଆସୁଥିବା ବେଳେ
ଇଥେ ନଳରୂପ କରି ଦର୍ଶନ,
ଭ୍ରମୀଭୂତ ହୋଇ ୧୬କୌଶିକ ନଳକୁ
୧୭କଉଶିକ ବୋଲି କଲେ ସ୍ତବନ ।
ପ୍ରବଞ୍ଚନା ଦେଖି ୧୮ଶକ୍ର ଏ ସମୟେ
ବନ୍ଦିତା ଆଦରେ ଭାଷିଲେ ନଳ
"ତବ ଆଗମନେ ଆମ୍ଭ ଅଭିଳାଷ
ଅବଶ୍ୟ ସଫଳ ହେବ ଚଞ୍ଚଳ ।

୧ କଣ୍ଟକାଗ୍ର ୨ ଶୀଘ୍ର ୩ ଲଜ୍ଜା ୪ ନିକଟ ୫ ଇନ୍ଦ୍ର
୬ ଶତଯଜ୍ଞ ୭ ପ୍ରକୃତି

୮ ଅବିବାହିତା ୯ ପୃଥିବୀ ୧୦ ଇନ୍ଦ୍ର ୧୧ ପୃଥିବୀ
୧୨ ସୁନ୍ଦରତା ଅଭିମାନବତୀ ୧୩ ଶଚୀ ୧୪ ଅଙ୍ଗାର
୧୫ ନୀରବ ୧୬ ଇନ୍ଦ୍ର ୧୭ ଉଲ୍ଲୁକ ୧୮ ଇନ୍ଦ୍ର

ଅଛଇ ମୁଁ ଇନ୍ଦ୍ର ସଙ୍ଗରେ ଅନ୍ତକ
୧ଯାଦଃପତି ୨ଜ୍ୱାଳାଜିହ୍ୱ ଜଟିଳ,
ଅବଲମ୍ବେ କାର୍ଯ୍ୟ କର ସମ୍ପାଦନ
୩ବନୀପକ ପ୍ରତି ନୋହି କୁଟିଳ ।"
୪ବଜ୍ରୌଜା କୌଶଳେ ବୁଝି ପାରି ନଳ
ପ୍ରୟୋଜନ ହେତୁ ବୁଝି ବାରୁ ସେ,
"ଦମୟନ୍ତୀ ପାଣି ପୀଡ଼ନ ନିମିତ୍ତ
କର ଦୂତକର୍ମ ଗମି ତହିଁ ସେ ।'
ଏବଂବିଧ ଉକ୍ତି ୫ମଘବାଙ୍କ ଶୁଣି
ଉତ୍ତରିଲେ ତାଙ୍କୁ ବୀରଶ୍ରେଷ୍ଠମାନେ ,
"ସର୍ବଜ୍ଞ କେବେ କି ଦିଅନ୍ତି ଏ ଆଜ୍ଞା
ଯେ ଯାଉଛୁ ଦମୟନ୍ତୀ ବରଣେ ।"
ମୁହୂର୍ତ୍ତିକେ ଭ୍ରମ ମୁହୂର୍ତ୍ତିକେ ମୁକ୍ତ
ହୁଅଇ ଯାହାଲାଗି ତାକୁ କହେ ?
କ୍ଷତ୍ରିୟ କୁଳରେ କଳଙ୍କ ଲଗାଇ
କହିବ ପରାର୍ଥେ ନିନ୍ଦା ଆଚରେ ।
ନୈଷଧ ବଚନେ କଶ୍ୟପ ନନ୍ଦନ
ଶ୍ରବଣେ ତାକତେ ସୁକ୍ରାନ୍ତ ନଳ,
ଅର୍ଥୀ ମନୋରଥ ନକର ପୂରଣେ
ସ୍ୱାର୍ଥସାଧନେ କି କର କୌଶଳ ?"
କ୍ଷଣସ୍ଥାୟୀ ପ୍ରାଣ ଯିବ କେତେବେଳେ
କହି ପାରିବ କେ ଏ ଭୂମଣ୍ଡଳେ,
୬ଅଭ୍ରସ୍ପୃଷ୍ଟ ଲାଗି ଯାଚନ୍ତି ତରେ ଘନ
୭ସ୍ତୋକକୁ ଦିଏ ତୋୟ ଟେଞ୍ଚେ ।
୮ସର୍ଗ ୯ନିସର୍ଗକୁ କେ ଲଙ୍ଘି ପାରିବ
ଦୈବାଧୀନ ଜିନା ସଦା ଜଗତ,
ଦୁଃଖମୟ ବୋଲି ଲୋକକୁ ନମସ୍ତି
ଦାନରୁ ମାନସ କର୍ପା ବରତ ।
ବନୀପକ ପ୍ରତି ଅଦ୍ୱୈଷ୍ଟି ରଖି
୧୦ମୁଖମୁଦ୍ରା ହେବା ଲଜ୍ଜା ଜନକ.
୧୧ଅବିତଥ ଧର୍ମ ଅଭଙ୍ଗୁର ଯଶ
ଚିରକାଳ ସଦା ଦୁଃଖ ଦାୟକ ।

୧ ବରୁଣ ୨ ଅଗ୍ନି ୩ ଯାଚକ ୪ ଇନ୍ଦ୍ର ୫ ଇନ୍ଦ୍ର
ଅନ୍ତକ—ଯମ ୬ ଜଳ ୭ ଚାତକ ୮ସୃଷ୍ଟି ୯ପ୍ରକୃତି
୧୦ ମୌନ ୧୧ ଯଥାର୍ଥ

ବରପ୍ରାପ୍ତି ଲାଗି ଏ ପ୍ରପଞ୍ଚେ ଲୋକେ
ଉପାସନା ମୋର କରନ୍ତି ନିତି,
ଇଷ୍ଟଲାଭ ଲାଗି ମହ୍ୟପ୍ର ପ୍ରାର୍ଥନା
ନକର ବିଫଳ ଅର୍ଜି ଅପ୍ରୀତି" ।

## ନଳଙ୍କୁ ଇନ୍ଦ୍ରଙ୍କର ବର ପ୍ରଦାନ

"ଗୌରବେ କର ନ୍ୟୂନ ୧ବାସବକୁ ୨ଅଭିଭବ
ଦେବାକୁ କପଟ ତବ ମାନସ ବଳେ
ଯୋହିଛୁ ମୋହ ବିକାର ତେଣୁ ଉପୁଜେ ବିକାର
ନକର ଲଭେ ବିଶ୍ୱର ମନ୍ଦିର ଛଳେ
ନ ତେଜ ଅଷ୍ଟୟୁ କାରତି,
ଶୁଦ୍ଧ ୩ସ୍ୱାନ୍ତେ ସିଦ୍ଧି କର ଗମି ଝଟିତି,
ଭାଷି ସୁରେନ୍ଦ୍ର ଏସନ "ଇଚ୍ଛାନୁସାରେ ଗମନ"
ବର ପ୍ରଦାନ ରାଜନ ଲିପ୍ସା ପୂରଣେ,
ପ୍ରବର୍ତ୍ତାଇ ବାରବାର କରାଇ ଦୂତ୍ୟାଙ୍ଗୀକାର
ଶିଖାଇ ଗୁପ୍ତ ସଞ୍ଚାର ସିଦ୍ଧି କରଣେ
ପଠାଇଲେ ସ୍ମିତାଧୀନଳ
ସ୍ୱପ୍ନମତେ ହେବା ଲାଗି କାର୍ଯ୍ୟ ସଫଳ ।

## ଚତୁର୍ଥ ସର୍ଗ

## ନଳଙ୍କ ବିଦର୍ଭ ଦେଶ ଗମନ

ଦୂତକର୍ମ ଲାଗି ନଳ ବାହାରିଲେ ରଥେ,
ଅନାଇଁ ରହିଲେ ତାଙ୍କୁ ଦେବତାଏ ପଥେ ।
କଲେ ଅତିକ୍ରମ ଅବଲମ୍ବେ ବହୁଦୂର,
୪ଅମରାବତୀ ସନ୍ନିଭ ଭୀମଭୂପ ପୁର ।
କୁଣ୍ଡିନ ନଗରେ ଶେଷେ କଲେ ସେ ପ୍ରବେଶ,
୫ଅଧ୍ୱକ୍ଲାନ୍ତ ଯାତ୍ରୀଙ୍କର କ୍ଲେଶନାହିଁ ଲେଶ ।
ଦକ୍ଷିଣନୟନ ତାଙ୍କ ହେବାରୁ ସ୍ପନ୍ଦନ,
ମଙ୍ଗଳ ୬ଶକୁନ ବୋଲି କଲେ ସେ ରାଜନ ।

୧ ଇନ୍ଦ୍ର ୨ ଅପମାନ ୩ ଚିତ୍ତ ୪ ସ୍ୱର୍ଗ ସଦୃଶ
୫ ପଥକ୍ଲାନ୍ତ ୬ ଚକ୍ଷୁ

ସାରଥି ସନାଥ ରଥୁଁ ଅବତରି ବ୍ୟଗ୍ରେ,
ରାଜଭବନରେ ଦୃଷ୍ଟି ନିକ୍ଷେପିଲେ ଅଗ୍ରେ ।
ବୈଦର୍ଭୀ ଦର୍ଶନ ଇଚ୍ଛା ରଖି ହୃଦପୁଟେ,
ଚତୁର୍ଦ୍ଦିଗ ଦୃଷ୍ଟି ଦେଇ ଶଙ୍କିତ ସ୍ୱଭାବେ
ଗୁପ୍ତେ ପ୍ରବେଶନ୍ତେ ଅନ୍ତଃପୁର ଅଭ୍ୟନ୍ତରେ,
୧ଅସଂବୃତା ବାଳା କେତେ ଅବଗାହନରେ,
ମଜ୍ଜିଥିବା ଦର୍ଶନରେ ଚମତ୍କୃତ ନଳ,
ଭାବିଲେ ତା ଅଙ୍ଗନାଙ୍କ ହୀଡ଼ାର ପଲ୍ଲବ ।
ଚୌଦିଗେ କରନ୍ତେ ନିର୍ନିମେଷ ଦୃଷ୍ଟିପାତ
ସୁରାଙ୍ଗନା ବୋଲି ତାଙ୍କ ହୃଦେ ହେଲା ଜ୍ଞାତ ।
ଶୃଙ୍ଗାଟକ ପାଶେ ରହି କରନ୍ତି ଲୋକନ,
ଦମୟନ୍ତୀ କୁଳ କାର ନବଦେଶେ ଆନନ ।
କକ୍ଷ୍ୟାମାନଙ୍କରେ ଧୀରେ କଲେ ସେ ପ୍ରବେଶ,
୨ବିହସ୍ତ ସେ ଦେବାଳଟି ବାଗୀଶ ସଂଦେଶ ।
ନ ଉପୁଜେ ଅନୁରାଗ ବାମାକ୍ଷୀ ଦର୍ଶନେ,
ଥିଲା ଲକ୍ଷ୍ୟ ଏକମାତ୍ର ଆଦେଶ ପାଳନେ ।
କେଶପାଶ ବାନ୍ଧୁଥିବା କୌଣସି ବାମାକ୍ଷୀ,
ନିଷଧ ପ୍ରଧାନଙ୍କର ପଡ଼ିଗଲା ଆକ୍ଷି ।
ନିମୀଳିତ ନୟନରେ କଟାକ୍ଷେ ରହି,
୩ବାସବ-ବାଚିକ ମୃଦୁସ୍ୱରେ ଦେଲେ କହି ।
ଅଦୃଶ୍ୟବାଣୀ ଶ୍ରବଣେ ଭୀଷିତା ଯୁବତୀ,
କଳ କଳ ନାଦେ ଉଠି ଚଳିଲେ ଝଟତି ।
୪ଉପକାରିକା ମଧ୍ୟରେ ବୃଦ୍ଧ ଦୃଢ଼ିନାସା,
ଗୁଡ଼ିଏ ଦେଖି ଭୈମୀକି ନ ପାରିଲେ ବାରି ।
ନଳମାଦଳରେ ଲେଖି ଭୈମୀର ରୂପକୁ,
ଏଥିପୂର୍ବେ ଦେଇଥିଲା ହଂସ ନୈଷଧକୁ ।
ଉପହାର ରୂପେ ତାହା ରଜ ଥିଲା ଗଳେ,
କାଢ଼ିଦେଲେ କଣ୍ଠଦେଶୁଁ ଦର୍ଶନ ଛଳେ ।
୫ତାରୁଣ୍ୟପୂର୍ଣ୍ଣା ବୈଦର୍ଭୀ ୬ଅଭିଖ୍ୟା ଦର୍ଶନେ,
ନହେବ ବିସ୍ମୟ ଜାତ କେଉଁ ଜନମନେ ?
୭ଅନାତପ ଲେଖା ଦେଖି ଏବେ ନଳଙ୍କର
ରାଜଦାରବୃନ୍ଦ ରୁଣ୍ଡ ଯେତେ ନବଉର ।

୮ପ୍ରସୂ ପ୍ରସାଦରୁ ଭୈମୀ ପ୍ରସୂନ ହସ୍ତରେ,
ଆସିଲାବେଳେ ଦେଖିଲେ ନଳଙ୍କୁ ପଥରେ ।
ସେଗୁଡ଼ିକ ନଳପରେ ନିକ୍ଷେପ କରନ୍ତେ,
ଭୈମୀ ବୋଲି ଜାଣିଲେ ସେ ତାହାଙ୍କୁ ଏ ଅନ୍ତେ ।
ପରସ୍ପର ଆଲିଙ୍ଗନେ ହେଲେ ପୁଲକିତ,
ତଦନ୍ତେ ଗମିଲେ ଦୁହେଁ ଆବାସେ ତ୍ୱରିତ ।
୯ଅଭ୍ରଂକଷ ପ୍ରାସାଦର ୧୦ପ୍ରତୋଳୀ ମଧ୍ୟରେ,
କତିକ୍ଷଣ କଟାଇଲେ ମଧୁ ଆଳାପରେ ।
ଆଳିକୁଳ ଦେଖି ଏହା ଭାଷିଲେ ଭୈମୀକି,
ପରିହାର କର ବୋଲି ସର୍ବେ ଆର୍ତ୍ତିକି ।
ବର୍ଷ୍ଣ ସ୍ୱଭ୍ରୂ ହୃଦୟୁଁ ଛୁଟିଲା ବିଷାଦ,
ଲଭନ୍ତି ନୈଷଧଙ୍କର ଅତୁଟ ପ୍ରସାଦ ।
ଦେବରାଜ ଦୂତକର୍ମ କରିବା ନିମିତ୍ତ,
ଆସିଅଛି ବୋଲି ନଳ ଭାଷିଲେ ତ୍ୱରିତ ।
"ତବ ଆଲିଙ୍ଗନ ଲାଗି କରନ୍ତି ଅପେକ୍ଷା
ସମୀଚୀନ ନୁହେ ଦେବ କାର୍ଯ୍ୟରେ ଉପେକ୍ଷା ।
ଇନ୍ଦ୍ରକଣ୍ଠେ ମାଳଦେଲେ ସ୍ୱୟମ୍ବର ସ୍ଥାନେ,
ହୃଷ୍ଟ ହେବେ ତବପ୍ରତି ଆଦିତେୟମାନେ"
ଦୁଃଶ୍ରବ ବଚନ ଶୁଣି ବୈଦର୍ଭୀ ନଳଙ୍କ,
ଧୈର୍ଯ୍ୟହୀନା ହୋଇ ମନେ ମଣିଲେ ଆତଙ୍କ ।
ପାତିବ୍ରତ୍ୟ ଲୋପ ହେବେ ଅତୀବ ଦୁଷ୍କୃତ,
ବୋଲି ଉତ୍ତରିଲେ ଭୈମୀ "ନହେବ ପ୍ରବୃତ୍ତ"
ନଳଙ୍କ ଠାରେ କରିଛି ଅର୍ପଣ ଶରୀର,
ଅନ୍ୟଥା ନୋହିବ କେବେ ଦମୟନ୍ତୀ ଗିର,
ଯେଉଁ ପନ୍ଥା ଦେଇଛନ୍ତି ମୋତେ ପରମାତ୍ମା,
ସେ ପଥ ଅନୁଗାମିନୀ ହେବ ଅନ୍ତରାତ୍ମା ।
୧୧ତ୍ରିବର୍ଗର ପରିହାରେ କେ ସରାଗୀ ହେବ,
ମୋକ୍ଷପ୍ରତି ଅନୁରାଗ ନାହିଁ ମୋର ଲଭେ ।
ପତିବ୍ରତା ନିୟମକୁ କରିବି ମାର୍ଜିତ,
ଅବଶ୍ୟ ଜୀବନେ ହେବ ଦୂର୍ଗତି ଖଣ୍ଡିତ ।"
ନଳାନୁରାଗ ବଚନ ଶ୍ରବଣେ ଭୈମୀର,
ପ୍ରେମେ ରୋମାଞ୍ଚିତ ହେଲା ନୈଷଧ ୧୨ଅଙ୍ଗର ।

୧ଆବୃତ ହୋଇନଥିବା ୨ନିଷ୍ଫଳ ୩ ଇନ୍ଦ୍ରସଂଦେଶ
ବାକ୍ୟ ୪ ରଜବାଟୀ ୫ ଯୌବନ ମତ୍ତନାଙ୍କ ୬,ଶୋଭା
୭ ଛାୟା ଭୀଷିତା—ଭୀତ

୮ ମାତା ୯ ଅତ୍ୟୁଚ୍ଚ ୧୦ ଅଭ୍ୟନ୍ତର ପଥ ୧୧ ଧର୍ମ
ଅର୍ଥ କାମ ୧୨ ଶରୀର

## ନଳଙ୍କ ଗୋପନ ପ୍ରକାଶ ପାଇବା

ଦୌତ୍ୟକର୍ମେ ଯୁକ୍ତ     ନୈଷଧ ନୃପତି
ନ ପାରିଲେ ରଖି ତତ୍ତ୍ୱ ଗୁପ୍ତରେ,
୧ପଲ୍ଲବ ପ୍ରକର     ଛନ୍ନ ୨ପ୍ରସୂନକୁ
ପାରଇ କି ରଖି ଆଚ୍ଛାଦନରେ ।
ବର୍ଷାକାଳେ ଯଥା     ଶିଖୀ ପୁଚ୍ଛ ଟେକି
ମହାମୋଦଭରେ ବୁଲଇ ବନେ,
ଦମପୁତ୍ରୀ ତଥା     ହସିଲେ ଚହଲାଲେ
ପ୍ରମଦ ଜଳରେ ନଳ ଦର୍ଶନେ ।
ଲଜ୍ଜାନମ୍ରମୁଖୀ     ହୋଇ ସେ ପୁଛିଲେ
"ଦୂତ ବେଶ ଅନ୍ତଃପୁର ଭିତରେ,
ପଶିଲ କପରେ     କହ ନରଶ୍ରେଷ୍ଠ
ଥାଉ ଥାଉ ରକ୍ଷୀ ପ୍ରତି ଦ୍ୱାରରେ ।
କନକ କାନ୍ତିକ     କଷିଥିବା ପରି
ଦିଶୁଅଛି କଳେବର ତୁମ୍ଭର,
କନ୍ଦର୍ପ ଦର୍ପକୁ     ଖର୍ବ ଅଭିଳାଷେ
ଗଢ଼ିଲେକି ଧାତା କରି ସୁନ୍ଦର ।
୩ସିତାସିତ ରୂପ     ବିବିଧ ଚହଟେ
ଗଢ଼ା ହୋଇଥିବା ତବ ନୟନ,
ଜୀବ ଜଗତରେ     ଅନୁପମ ଯୋଗୁଁ
ପାଉଅଛି ପରାଜୟ ଖଞ୍ଜନ ।
ଲାବଣ୍ୟାତିଶୟ     ରୂପ ଦେଖି ତବ
ନଳ ବୋଲି ମନେ ହୁଏ ପ୍ରତୀତ,
ଅନୁକମ୍ପା ବହି     ତବ ପରିଚୟ
ପ୍ରଦାନେ ହେଉ ମୋ ଚିତ୍ତ ପ୍ରଶୀତ (ପ୍ରୀତ)
ପ୍ରିୟା ବଦନରୁ     ପ୍ରିୟ ବାକ୍ୟ ଶୁଣି
କହନ୍ତି ନୈଷଧ ହରଷଭରେ,
୪ଆଗାମିନୀ ଦିନ     ମଘବାଦି ଦେବେ
ଦେଉଛନ୍ତି ଯୋଗ ସ୍ୱୟମ୍ବରରେ ।
ସେମାନଙ୍କ ମଧ୍ୟୁ     ଜଣକୁ ବରଣ
କଲେ ମୋ ଦୂତତ୍ୱ ହେବ ସଫଳ,

୧ତୃଣ ସମୂହ ୨ ଗଜା ୩ ଶୁକ୍ଳ କୃଷ୍ଣ
୪ ଆସନ୍ତା କାଲି

ମର୍ତ୍ତ୍ୟଧାମ ଛାଡ଼ି     ସ୍ୱର୍ଗେ କଲେ ବାସ
ଭବିତବ୍ୟ ତବ ହେବ ମଙ୍ଗଳ ।

## ପଞ୍ଚମ ସର୍ଗ

## ହୃଦ ଚଉତିଶା ବାଣୀ

ଅନନ୍ତର ଭୈମୀ     ନଳ କଥା ଶୁଣି
ପଚାରନ୍ତି ତାଙ୍କୁ ଦୁଃଖେ,
"ସାର୍ଥକ ଉତ୍ତର     ନ ଦେଇ କପଟେ
ଏକଥା ଧରିଲ ମୁଖେ ହେ ସୁଧୀ ?
ଆଗୁଁ ଜାଣି ଜାଣି ମୋର ଶୁଦ୍ଧି (ନିର୍ମଳତା)
ନେଉ ନାହିଁ ଏ ଅବଳା ଋଦ୍ଧି । (ସମୃଦ୍ଧି)
ବାରିପାନେ ଯିନା     ଯିବ ପିପାସୁତା
ନୁହଇ ଦୁଗ୍ଧ ପାନରେ
କୁଳ ନାମ ଛାଡ଼ି     ଯା ଦେଲ ଉତ୍ତର
ବିଷ ହେଲା ମୋ ପକ୍ଷରେ ସେ ଉକ୍ତି
ବେଳନାହିଁ ବାଢ଼ିବାକୁ ଯୁକ୍ତି
ଅମୃତରେ କେ ପାଉଛି ମୁକ୍ତି ।
ଶ୍ରବ ସୁଧା ତୁଲ୍ୟ     ତବ କଥା ଶୁଣି
ନାମ ଶ୍ରବଣେଚ୍ଛୁ ମୁହିଁ
ହୋଇ ଶ୍ରୁତିସ୍ପୃହ     ପଚାରିଥିଲା ଯା
ବିଲୋମ ହେଲ ଉତ୍ତର ସେ ଛଳେ
ବଜ୍ର ପଡ଼ିଲା କି ବକ୍ଷସ୍ଥଳେ !
ପତିବ୍ରତା କି ସନ୍ମାର୍ଗୁ ଟଳେ !
ତୂଷ୍ଣୀମ୍ଭୂତା ହୋଇ     ରହନ୍ତେ ବୈଦର୍ଭୀ
କହନ୍ତି ନଳ ନୃପତି,
"ପ୍ରେଷ୍ୟ ହୋଇ ଆସି     ନାମ ପ୍ରକାଶିବା
ଆଣିବ ଶେଷେ ଦୁର୍ଗତି ସେ କର୍ମ
କେବେ ନୁହଇ ସଂସାର ଧର୍ମ
ଗୁଣୀ ଯିନା ଜାଣିବ ଯା ମର୍ମ ।
ପ୍ରୟୋଜନ ସିଦ୍ଧ     ହେବ ନାହିଁ ତବ
ନାମ ଦେଲେ ପ୍ରକଟାଇ

ଅନିଚ୍ଛା କି ହେତୁ    ନ ଲେଉଟେ ଜିଭ
ନକହ ଆଉ ବଳାଇ ସେ କଥା
ବିଚାରିଲେ ଘୂରୁଅଛି ମଥା
ରଖିବାକୁ ହେବ ପୂର୍ବ ପ୍ରଥା (ପ୍ରସିଦ୍ଧି)
ତଥାପି ତୁମ୍ଭର    ସ୍ପୃହା ଦୂର ପାଇଁ
କହିବି ସ୍ୱଳ୍ପ ବଚନ
ହିମାଂଶୁ ବଂଶର    କିଶୋର ଜାଣିଲେ
ସନ୍ତୁଷ୍ଟ ହେବ ତୋ ମନ ରେ ସହି ?
ନିଜ ନାମ ଧରେ ଯିନା ଅହି (ନଳ)
ଭଲ ଫଳିବ କି ନାମ କହି" ।
ନ କହିବା ନାମ    ପରଂପରା ଆମ
ସାଧ୍ୱୀଏ ଚଳନ୍ତି ମାନି,
ଆତୁର ସ୍ପୃନତା    ପ୍ରକଟେ ସର୍ବସ
ସ୍ୱନାମ ଧଇଲେ ଜ୍ଞାନୀ ରେ ବାଳା ?
୧ଯାମନେମିକି ଦେବୁ ତୁ ମାଳା,
ହେଲେ ଅନ୍ୟଥା ଭୋଗିବୁ ଜ୍ୱାଳା" ।
ଶ୍ରବଣେଚ୍ଛା ହେତୁ    ଅନୁରାଗ ଯୁକ୍ତା
ବୈଦର୍ଭୀ କହେ ଏସନ
"ବଞ୍ଚନା ଚତୁରା    ଶୁଣି ମୋର ମନେ
ଉପୁଜେ ନାନା ଭାବନ ହେ ଧୀର ?
ଆଗୁଁ ଅର୍ପିଛି ଏ ଶରୀର,
ଭାଙ୍ଗି ପାରିବ କି ଏବେ ଗିର ।
ନଜାଣିଲେ ନାମ    ମୋର ପରିଚୟ
ଦେବ କି ତୁମ୍ଭଙ୍କୁ ଏବେ,
କୁଳ ଅବଳାକି    କହୁଛି ସ୍ୱନାମ
ପରପୁରୁଷକୁ କେବେ ହେ ଜ୍ଞାନୀ
କର୍ପା । ହୁଅ ଏତେ ଅଭିମାନୀ
ନାମ କହିବ ମୋ କଥା ମାନି" ।
ମାଣିକ ସଦୃଶ    ପ୍ରିୟା ଭାରତୀକି
ନକର ଗ୍ରହଣ ନଳ,
"କହିଲେ ପୁନଶ୍ଚ    ଦେବ ଆଲିଙ୍ଗନେ
ହୋଇବ କାର୍ଯ୍ୟ ମଙ୍ଗଳ ରେ ବାଳି ?

କର ଜୀବନର ଗଳାମାଳ.
କ୍ଷୀଣ ହେବ ଯିନା ଅଙ୍ଗ ଭଳ ।
ମୋର ଅଦକ୍ଷତା    ପାଇବ ପ୍ରକାଶ
ମନ୍ତ୍ରର ଘଟିଲେ କର୍ମ,
ପରପ୍ରେଷ୍ୟ ହୋଇ    ସ୍ୱକାର୍ଯ୍ୟ ସାଧିଲେ
ଅବଶ୍ୟ ହେବ ଅଧର୍ମ ରେ ସଖି ?
କାର୍ଯ୍ୟ କର କପଟ ନରଖି,
ପଥେ ଯିବ ବଳମ୍ବେ ଅଟକି ।
ମତିବନ୍ତ ହୋଇ    ଅମାତ୍ୟ ଆଶ୍ରେୟ
କି ବୋଲିବେ ମୋତେ ଜନେ,
ଦିବୌକସ ପ୍ରତି    କଲେ ଅନୁଗ୍ରହ
ଐଶ୍ୱର୍ଯ୍ୟ ଭୋଗ ଜୀବନେ ରେ ଚଣ୍ଡି ?
କାଳନି ପାପ ବୃଥାରେ ଭଣ୍ଡି,
ସୁଖ ପାଅ ସେମାନଙ୍କୁ ମଣ୍ଡି ।
ଉତ୍ତର ଦେବାକୁ    ଯାଇ ଦମୟନ୍ତୀ
କହିଲେ ତାଙ୍କୁ ଏପରି,
"ସୁରାଙ୍ଗନା ଆଗେ    ମାନବୀକି କେବେ
ହେବ କେତେବେଳେ ସରି ଏ ଭବେ
କର୍ପାଁ । ଧାଇଁଛି ମନ ଲଘବେ
ଆଞ୍ଚ ଆଣଇ ଦେବ ଗୌରବେ ।
ଚିତ୍ତବୃତ୍ତି ମୋର    ନଳନୃପ ଭିନ୍ନ
ଇତର ପୁରୁଷ ଠାରେ
ରହିଛି କି କେବେ    ସର୍ବ ଅନ୍ତର୍ଯ୍ୟାମୀ
ଶକ୍ର ବରୁଣନ୍ତୁ ବାରେ ସେ ମନ
କର୍ପାଁ । କରୁଛି ଅବଗମନ
ଦେବ ପକ୍ଷେ କି ଏହା ଶୋଭନ ।
ମଣିଷକୁ କୃପା    କରିବା ସୁପର୍ବା
ଦେଇ ବାଞ୍ଛା ଅନୁଚିତ
ଆପଣା ଠେକକୁ    ଗୋଡ଼ରେ ଆଡେଇ
ହେଲେ ଭୂରଶ ନିଧଳ ହେ ବୀର !
ଏତ ନୁହଇ ସାଧୁ ଆଚାର
ଲୋକ ସଢ଼ୁଛି ଅବିଚାର ।
ପରପତ୍ନୀ ବୋଲି    ଜାଣି ଜାଣି ମୋତେ
ନ ଦେଖାଇ ଅନୁଗ୍ରହ

୧ ଇନ୍ଦ୍ର

କଣ୍ଟକ ବାଟରେ ପ୍ରବେଶିଲେ ହେବ
ପରିଣାମ ଦୁଃଖାବହ ହେ ଗୁରୁ
ସାହା ସତତ ମୋର ୧ଉକାର,
ପଣ ଜାଣନ୍ତୁ ଦେବେ ବାଳାର ।
୨ଆହବଚେଷ୍ଟାବଳୀ କାହିଁକି ଆସକ୍ତ
ପ୍ରତିକୂଳ ବ୍ୟବହାରେ
୩ଜାତରୂପ ଗୃଢ଼ ୪ଆରକୂଟେ ସ୍ପୃହା
କରୁଛୁ କିଏ ସଂସାରେ ହେ ଗୁଣି ?
ଲାଗେ ଆଶ୍ଚର୍ଯ୍ୟ ଏକଥା ଶୁଣି
କିଏ ରହିବ ତୁମ୍ଭ ନ ଖୁଣି ।
୫ଦ୍ୱିଗୀଶମାନଙ୍କ ୬ଚଟୁବାଚକ ସୂଚୀ
ପଡ଼ିଲା ଯାହା ଶ୍ରୁତିରେ
ମରଣ ବାଧାରୁ ବଳି ଏ ଯାତନା
ସହିବ କିଏ ମହିରେ ହେ ଦୂତ ?
କରିଥିଲା ବା କେବେ ଦୁଷ୍କୃତ
ପୋଡ଼ା କପାଳେ ସିନା ଯା ଶ୍ରୁତ ।
କୀଟ ଦଂଶନର ଉତ୍କଟ ପୀଡ଼ାକୁ
ଦେଉଛୁ ତୁମ୍ଭ ବଚନ
ଯାହା ମୁଁ ସହିଲି ନକର ପ୍ରଶଂସା
ଅବାଚ୍ୟରେ ଦେଲି ମନ ହେ ୮ପ୍ରେଷ୍ୟ
କିଏ ଶୁଣିବ ତୁମ୍ଭ ଉଦ୍ଦେଶ୍ୟ
ଆଉ ନଦିଅ ହୃଦୟେ ପ୍ରେଷ (କ୍ଲେଶ)
ପ୍ରାଣ ବାୟୁ ମୋର ଯାଉଅଛି ଉଡ଼ି
ହେବାରୁ କୃତାନ୍ତ ଗୃହ
ମନ୍ତ୍ରକୁ ନଜାଣି ସାପ ଗାତେ ହାତ
ଦେଉଅଛ ବାର ବାର ହେ ଗୃହ
ଆଉ ନକର ଅନ୍ୟ ବିଗ୍ରହ
ଶୁଣ ଭଣିତ ଏବେ ୮ପ୍ରେଷ୍ୟ ।
ଯାହା ଇଚ୍ଛା ତାହା କହନ୍ତୁ ଗୀର୍ବାଣେ
ବୋଲି ଭଣିଣ ଶେଷରେ,
"ମୋ ପାଣି ଗ୍ରହଣ ନକଲେ ନୈଷଧ
ତେଜିବ ପରାଣ ଘରେ ସେ ଯାଇ

ଉଦବନ୍ଧନେ ଗଳା ଲଗାଇ,
ହୁତାଶନରେ ଦେହ ମିଶାଇ,
ଅବା ସଲିଳ ନେବ ଭସାଇ ।
ଆତ୍ମହତ୍ୟା ଦୋଷ ମହା ପାପ ବୋଲି
କହନ୍ତି ସିନା ଲୋକରେ,
ତେବେ ସାଧୁ କଥା ଯାଉଛି ଅବାଟେ
୯ଜମ୍ବାଳ ଦେଖି ବାଟରେ ହେ ଦୂତ !
କହ ପଢ଼ିଥିବ ଯଦି ଶ୍ରୁତ
ଶୁଣି ଶ୍ରବ ହେବ ମୋର ପୂତ ।"
"ଆହେ ଚନ୍ଦ୍ରମୁଖି ? ବାସବାନୁରାଗେ
ପରାଙ୍ମୁଖୀ ହେଲ ସିନା,
ମାନୁଷୀ ହୋଇ ବା କି ସୁଖ ପାଇବ
ଦେବ ଅନୁଗ୍ରହ ବିନା ଏ ଭବେ
ମୋର ମନ ପାଉନାହିଁ ଲବେ
ତୁମ ପିତାଙ୍କୁ ପଚାରି ଜବେ ।
କ୍ଷତ୍ରିୟ କୁଳରେ ଜନ୍ମଲଭ କରି
ଜୀମୂତ ବାହନ ଗୃଢ଼,
ଅନ୍ୟ କାହାଠାରେ ନ ବଳାଇ ଇଚ୍ଛା
ଶତଯୂ ଦିଅ ଉପାଡ ସେ ମନୁ
ବନ୍ତ କମନୀୟ ତାଙ୍କ ଧନୁ
ପୁଣି ଅନୁପମ ବଜ୍ରହନୁ୧୦ ।
ନଳ ବିନା ଯଦି ଅନ୍ୟକୁ ପ୍ରବେଶ
କରିବ ନିଜ ଇଚ୍ଛାରେ
ତେବେ ଆଗ୍ରହରେ ତୁମକୁ ଗ୍ରହଣ
କରିବେ ବିନା ବିଚାରେ ସେ ଜଣେ
କଥା ନସରୁ ହୁଅ ଗୁଣୀଆଁ
ନିନ୍ଦା କରିବ ତୋତେ ଦୁନିଆଁ ।
ଚତୁର ଅଟ ଯଦି କରିଥିବ ଯେବେ
ପରେତରାଟଙ୍କୁ ବର,
ମରଣ ଆଶଙ୍କା ନ ରହିବ ହୃଦେ
ଦିଶିବ ତ ମନୋହର ସେ ନିତ
ତୋର ବଢ଼ିବ ଅବଶ୍ୟ ୧୧ସ୍ଥିତି
ପୂଜା କରିବ ସତତ କ୍ଷିତି ।

୧ଶିବ ୨ଦେବତା ସମୂହ ୩ସୁନା ୪ପିତଳ ୫ଦ୍ୱିକ୍ପାଳମାନଙ୍କର ୬ମନ୍ଦ ବଚନ ୭ଗୃହ ୮ଦାସୀ

୯ କାଦୁଅ ୧୦ ଅସ୍ତ୍ର ୧୧ ମର୍ଯ୍ୟାଦା

ପ୍ରାପ୍ତ ନିଧିକି କେ    ନିଷେଧ କରନ୍ତି
ଦେଖିଛ କି କେଉଁଠାରେ
ନିଶ୍ୱାସ ଧାରାକୁ    ନାସା ରନ୍ଧ୍ରେ ପୁରି
ନିଗୁରି ଆନନ ଦ୍ୱାରେ ରେ ସଖି !
ଅବିଗୁଣିତ ବଦନେ କହି,
କର ସ୍ୱୀକାର ସନ୍ତୋଷ ବହି ।
ଜାମ୍ବୁରସ ପୁଡ଼ି    ୧ସୁଖଦାସିତାଗ୍ର
୨କଟଭ ଖାଏ ଯେସନ,
ପରିତେଜି ମଣି    କାଚରେ ଆଗ୍ରହ
କରୁଛ ତୁମ୍ଭେ ତେସନ ରେ ମୂଢ଼ା !
କେତେ କାଳ ରହିବୁ ୩ଅନୂଢ଼ା ?
ମ୍ଳାନ ହୋଇବ କ୍ରମଶଃ ୪ଚୂଡ଼ା ।
ବହୋକ୍ତି ବୃନ୍ଦଶ    ଶୁଣି ମୋର ମନେ
ବିସ୍ମୟ ହେଉଛି ଜାତ,
୫ମଘବାଙ୍କ ପ୍ରତି    ଆଗ୍ରହ ଜନ୍ମିଲେ
ଅବଶ୍ୟ ମଙ୍ଗିବେ ତାତ ରେ ସତି,
ହେବ ଖଣ୍ଡନ ସବୁ ବିପତ୍ତି,
ପରେ ଲଭିବୁ ପରମ ଗତି ।
ସରସ୍ୱତୀ ରସ    ପ୍ରବାହ ଚହରେ
ପଡ଼ି ମୁଁ ହୁଏ ବୁଲ୍ଲ,
କାହାକୁ ବରିବ    ଲାଜ ଛାଡ଼ି କହ
କାହିଁ ଏବେ ନ ଲୁଚାଇ ସେ ଖତିର
ଲାଜ ନକର ବ୍ୟବହାରେ
ସୁଖ ଯେପରି ଅନ୍ୟ ଜନ୍ମରେ ।
ମାନବତା ଛାଡ଼ି    ଦେବତ୍ୱ ପାଇଲେ
ନୋହିବ କିଏ ଆନନ୍ଦ ?
ପୀୟୂଷରସରି    ମାଧୁର୍ଯ୍ୟ ନଜାଣି
କହୁଛ ବଚନ ଛନ୍ଦ ହେ ସଖି
ମଣି ଅସାର ୬ସସାର ମଣି
ଥକି ଗଲିଣି ତୁମକୁ କହି ।
ଦୈବୀଲିପି କିଣା    ପଢ଼ିବା ସହଜ
ନୁହଇ ପ୍ରପଞ୍ଚେ କେବେ

ତେଣୁ ମୋତେ ଗୁରୁ    କରି ପଠାଇଲେ
ମହେନ୍ଦ୍ରାଦି ଦେବେ ଏତେ ଏବାଣୀ
କରି ଗ୍ରହଣ ଅମର୍ତ୍ତ୍ୟ ପାଣି
କାର୍ଯ୍ୟ ନକର କିଛି ନଜାଣି ।
ନୈଷଧ ବଚନେ    ସରନ୍ତେ ଶ୍ରୀମତୀ
ତୁନି ହୋଇ କିଛିକ୍ଷଣ,
ହଂସ ଦେଇଥିବା    ରୂପ ଧରି ତାଙ୍କୁ
ତକ୍ଷଣେ କଲେ ଅର୍ପଣ ସେ ସତୀ
"ଭକ୍ଷେ ଆଗୁଁ ମୁଁ ବରିଛି ପତି,
ଅନ୍ୟଠାରେ ନାହିଁ ମୋର ମତି ।
୭ଅସମ୍ଭ୍ରମ କଥା    କହି ମୋ ହୃଦୟେ
ଦିଅ ନାହିଁ ଆଉ ପୀଡ଼ା
ଏଣୁ ତେଣୁ ଶୁଣି    ବିତୁଛି ସମୟ
ଲାଗୁଅଛି ସିନା କ୍ରୀଡ଼ା ସେ ହଂସ
ଆଗେ ଜଣାଇଛି ମୋ ମାନସ,
ଯୁଗେ ଯୁଗେ ରହିଥାଉ ପଣ ।
ପରି ଇଚ୍ଛା ରୂପ    ଫଳ ଭକ୍ଷଣ କି
କେତେବେଳେ ଶୋଭନୀୟ,
ବିବେଚନା କରି    ଯାହାକୁ ବରିଛି
ପୂର୍ବୁଁ ସେ ହୋଇଛି ପ୍ରିୟ ସେ ମନ
ଯେତେ ଥୋଇଲେ ତା ଆଗେ ଧନ
କିଏ କରିବ ପରିବର୍ତ୍ତନ ।
ଈପ୍‌ସିତ ପ୍ରିୟକୁ    ନ ପାଇଲେ ମୁହିଁ
ଶ୍ରେୟତ ହେବ ମରଣ
ଅନ୍ତରାତ୍ମା ମୋର    ନୈଷଧଙ୍କ ଠାରେ
ପଶିଛି ପୂର୍ବୁଁ ଶରଣ ହେ ବିଧି ?
କରି ଦୁଃଖିନୀ କାମନା ସିଦ୍ଧି
ଯେତେ ଲୋଡ଼ୁ ନାହିଁ କେବେ ନିଧି ।
ବଢ଼ିବାକୁ ମନ    ତୁହାଇ ତୁହାଇ
କହନ୍ତେ ନଳ ଛଳରେ,
ଉତ୍ତରିଲେ ଭୈମୀ    ପାଳିବ ଯା ସତ୍ୟ
କରିଛି ହଂସ ଆଗରେ ହେ ବୀର,

୧ଶମୀଗଛର କଣ୍ଟା (ସୁଖଦା-ଶମୀଗଛ) ସତାଗ୍ର କଣ୍ଟା
୨ଓଟ ୩ଅବିବାହିତା ୪କେଶ ୫ଇନ୍ଦ୍ର ୬ସାରବନ୍ତ

୭ ମାନଦାନ

ମନ୍ଦ ମନ୍ଥର ଛନ୍ଦ ବେଶ୍ୱର,
କପାଁ ପତ୍ରର ବାଉକୁ ବାଉ ।
ପତିବ୍ରତା ରୂପ ସକାଳେ ଜୀବନ
ହୋଇଛି ଯାଉ ମର୍ଦ୍ଦିତ,
ଦିକ୍‌ପାଳମାନଙ୍କୁ ବରଣ କରିବା
ତା ପକ୍ଷେ ଅସମ୍ଭବତ ହେ ଶୁଭ ?
ଶୁଣି ପାରିଲ କି କଥା କା'ନ୍ତ,
ଆଉ ନ ଟେକ ବିଷପ୍ୟାସାର ।
ଗୋଟିଏ କ୍ଷଣ ମୋ ଯୁଗ ତୁଲ୍ୟ ବୋଲି
ପ୍ରତୀତ ହୁଏ ମନରେ
ମୋ ତାପ ନାଶନେ ନଳ ବିନା ଆନ
ସମର୍ଥ କିଏ ଭବରେ ରେ ବୀର
ପୂର୍ବରୁ ବୁଝାଇଛି ବାର ବାର
ଜାଣୁନାହିଁ ତୋ ଦୟା ଥିବାର ।
ଦୂତଧର୍ମ ନଳ ନହୋଇ ବିରତ
ପଚାରିଲେ ଆଉ ଥରେ
କାର୍ଯ୍ୟ ବିଘାତକ ହେଲେ ଦେବତାଏ
କି କରିବୁ ସ୍ୱୟମ୍ବରେ ରେ ବାଳ ?
ପଛେ ଶୁଣିବୁ କେବଳ ଗାଳି
ନିନ୍ଦା କରିବେ ତୋ ଆଳ ଆଳି" ।
"ତବ ତୁଣ୍ଡୁ ଯାହା ଅପ୍ରିୟ ବଚନ
ଶୁଣିଲି ଏବେ ମୋ ଶ୍ରବ
କେଉଁ ବାଳା ଭବେ ସହିବ ଏକଥା
ଲାଘବ କର ଗୌରବ ହେ ଧୀର
ନଳ ଅଟନ୍ତି ମୋ ଗଳାହାର,
ଆଉ ନକହ ଅନ୍ୟ ବେଭାର" ।
୧ଭଗ୍ନମର୍ମା ଭୈମୀ ଶୁଣି ଏ ବଚନେ
ନଳମୁଖୁଁ ବାର ବାର
ସମ୍ଭାଳି ନପାରି ନୟନ ହ୍ରଦରୁ
ଗଡ଼ାଇଲେ ଅଶ୍ରୁଧାର ସେ କାଳେ
ବୁଡ଼ିଗଲା କି ଦୁକୂଳ ଝାଳେ
ଧାତା ଲେଖିଛି ଯାହା କପାଳେ ।

୧ ବିଦୀର୍ଣ୍ଣ ହୃଦୟା

କାହିଁକିରେ ପ୍ରାଣ ନ ଯାଇ ରହିଛୁ
ବୃଥା ସୁଖାଶାକୁ ଲୋଡ଼ି
ଯେତେବେଳେ ତୋର ଆବାସ ସଦୃଶ୍ୟ
ହୃଦୟ ଯାଉଛି ପୋଡ଼ି ସେ ମାୟା
ବିକା ହୋଇଛି ଆଗୁଁ ଏ କାୟା
ଶାନ୍ତି କରିବେ ଏଥିରୁ ଛାୟା( ଦୁର୍ଗା ) ।
'ଯେଉଁ ହଂସ ମୋତେ କଲା ନିବେଦନ
ସେ ନାହିଁ ଦୈବ ବଶରେ
ନ ହୋଇ ନିର୍ଦ୍ଦୟ ମୋ ପରେ ଅବଶ୍ୟ
ଦେଖାଦେବ ସ୍ୱୟମ୍ବରେ ହେ ବୀର !
ତବ ଚରଣେ ମାରୁଛି ଶିର,
ହେବ ଦର୍ଶନେ ମୋ ମନ ସ୍ଥିର ।
ଆହେ, ଦେବଗଣ ହେଲେ କି ନିଷ୍ପ୍ରାଣ
ନ ଶୁଭଇ ମୋ ବେଦନ
କୃପା ଅକୂପାର କରିଦେଇ ପାନ
ନିଶ୍ଚିନ୍ତ ହେଲା କି ମନ ହାମରେ(ହା+ଅମରେ)
ଡାକ ନଶୁଣ ଆର୍ତ୍ତ କାଳରେ
ଭାସି ଯାଉଛି ଦୁଃଖ ସାଗରେ ।
୨ଛେଦଂଘ୍ରି ଶରଣ ମୋର ମନ ବୋଲି
ଜାଣ ଆହେ କୃପାନିଧି,
ନ କରିବା ଦୟା ଘୋର ଅବଳାକୁ
ଅଟଇ ସିନା ଅବିଧି ତୋ କର୍ମ
ସଦା ଶିଖାଏ ଲୋକକୁ ଧର୍ମ
ବୁଝିପାରେ କି ନାସ୍ତିକ ମର୍ମ ।
ତବ ଶ୍ରୋତ୍ର ପଥେ ପଶିଲେ ମୋ ବାଣୀ
ଅବଶ୍ୟ ହେବ ମଙ୍ଗଳ,
ଅଜ୍ଞାନେ ବା ଜ୍ଞାନେ କରିଥିଲେ ଦୋଷ .
ମାର୍ଜ୍ଜନ କର ଚଞ୍ଚଳ ହେ ହରି ?
ଦୟା ନକଲେ ଯିବଟି ସରି,
ତୁମ୍ଭେ ଦୁସ୍ତର ସିନ୍ଧୁର ତରି ।

୨ ଛିନ୍ନପାଦ

## ଷଷ୍ଠ ସର୍ଗ

### ନଳଙ୍କ ଆତ୍ମଗୋପନ ପ୍ରକାଶ

ନୈଷଧ ଆତ୍ମ ଗୋପନେ ଜବେ କରି ବିସର୍ଜନ
ଆଖିରୁ ଅଶ୍ରୁ ମାର୍ଜନ କଲେ ଭୈମୀର
ପ୍ରସନ୍ନ କରି ବଦନ କହି କୋମଳ ବଚନେ
ପ୍ରବୋଧନ୍ତେ ବନଜନ ମାନସ ସ୍ଥିର
ହେଲା କ୍ରମେ ଖ୍ରୀମତୀଙ୍କର
ଆଶୁ ମୁଦାଜାତ କଲେ ଚୁମ୍ବି ଅଧର ।

### ହରି ଚଉତିଶା ବାଣୀ

ସ୍ୱରୂପ ପ୍ରକାଶ କରି ଏତେବେଳେ
ବ୍ୟଥିତ ହୁଅନ୍ତେ ନଳ
ଦ୍ୱୈମରେ ହଂସ ପୁନରପି ନଭୁଁ
ଆଗତ ହୋଇ ଚଞ୍ଚଳ ସେ ଭଷେ
ହେଲା କି ଦୋଷ ଆତ୍ମ ପ୍ରକାଶେ
ଏବେ କାନନେ ଫେରି ଉଲ୍ଲାସେ ।
ନକର ନବଣ ବଦନ୍ତି ଜନ୍ମାକୁ
ସୁର କାର୍ଯ୍ୟ ସିଦ୍ଧି ଲଗି,
ଉଡ଼ିଯିବ ପ୍ରାଣ ବାଯୁ ଏହିକ୍ଷଣି
ନହେଲେ ତା ଅନୁରାଗୀ ହେ ନଳ
ହେଉ ତବ କାମନା ସଫଳ
ବଡ଼ ବିଷମ ଦେବତା ଛଳ ।
ଦେବ ଅନୁରକ୍ତା ହେବା ଲଗି ତୋତେ
କହୁଛୁ କଥା ଗର୍ବିତ,
ବୋଲି ଖ୍ରୀମତୀକୁ କହି ନଳ ନୃପ
ମଣିଲେ ସେ କଥା ସ୍ୱତ ସେ ପରେ
ବନେ ଅଛନ୍ତି ଏବେ ଅମରେ,
ସମଦୁଃଖୀ ତୋ ମନସ୍ତାପରେ ।
ଦୂତକାର୍ଯ୍ୟ ସାରି ନୈଷଧ ରାଜନ
ଅନ୍ତର୍ଦ୍ଧାନ ହୋଇ ତ୍ୱରେ,
ଦେବତାଙ୍କୁ ଯାଇ ସକଳ ବୃତ୍ତାନ୍ତ
କହିଲେ ପ୍ରଷ୍ଟ ଭାବରେ ସେ ବନେ
ଶୁଣି କ୍ଷୁବ୍ଧ ହେଲେ ମନେ ମନେ
ଦେବ ମାୟା କି ବୁଝିବେ ଜନେ ?

ନଳଙ୍କ ପ୍ରସ୍ଥାନ ପରେ ଜମିଲେ ସେ ସ୍ୱୟମ୍ବରେ
ଦମୟନ୍ତୀ ଉଦ୍ଦେଶ୍ୟରେ ରାଜନ୍ୟାବଳୀ
୧ଦଣ୍ଡଧର ୨ଆଖଣ୍ଡଳ ୩କୃଶାନୁ ବରୁଣ ନଳ
ଧରି ସଙ୍ଗେ ୪ନାଗବଳ ଭଳକ ଭଳ
ବାଜୁଅଛି ବାଜା ସତତ,
୫ବିଶ୍ୱାବସୁ ବଶୁଅଛି ବିବସବତ ।
ନପାଇ ଉପାୟାନ୍ତର ଇନ୍ଦ୍ରାଦି ସୁର ଅମର
ପ୍ରତାରଣେ ଧ ଛନ୍ଦରି ନଳ ରୂପରେ,
ମୁଖ ଦେଖି ଦର୍ପଣରେ ଅତି ଉତ୍ସୁକ ମନରେ
ବସିଲେ ସଭାସ୍ଥଳରେ ଶୋହେ କଣ୍ଠରେ
ଇନ୍ଦ୍ରମାଳ ମଣିଜାଳକ୬
କୃତିମତା କରିବ କି କେବେ ସାର୍ଥକ ।
ଦୋଖନ୍ତନ ନଳଠାରେ ଦୋଷାରୋପ କରିବାରେ
ହେଲା ତତ୍ପରି ସଭାରେ କେହି ମତ୍ସର,
ଅସତ୍ୟ ରୂପ ଧାରଣେ କରିଥିବା ଦେବଗଣ
ଦମୟନ୍ତୀକି ବରଣ କରିବା ପରି
ଜଣା ପଡ଼ୁଥିଲେ ଏକାଳେ
ଅତିଥି ସତ୍କାରେ ବ୍ୟସ୍ତ କେହି ଭୂପାଳେ ।
ନିକୃଷ୍ଟ ବ୍ୟକ୍ତି ଉଦରେ ଉତ୍କୃଷ୍ଟଙ୍କ ସହିତରେ
ଅନାଦୃତ ସଂଘର୍ଷରେ ପ୍ରତିଷ୍ଠା ଲଗି
ଲଗିଥାଏ ନିରନ୍ତର ହୀନତା ଦେଖି ଅନ୍ୟର
ନଭାବି ଆପଣା ପର ଶେଷେ ବୈରାଗୀ
ଆପଣା ମହତ୍ତ୍ୱ ପଦାରେ
ପଡ଼ି ହୁଏ କଲବଲ ସଦା ଧରାରେ ।

### ହରି ଚଉତିଶା ବାଣୀ

ସ୍ୱୟମ୍ବରାଗତ ରାଜନ୍ୟ ମଣ୍ଡଳୀ
୭ଗୀର୍ବାଣବର୍ଗ ସଙ୍ଗରେ,
ମେ ଯାହା ଆସନେ ବସିଛନ୍ତି ସୁଖି
ଦମୟନ୍ତୀ ଉଦ୍ଦେଶ୍ୟରେ ସେ କାଳେ
କେତେ ନଳରୂପ ଦେଖି ଭାଳେ,
ଲେଖା ଅଛି ଯା ଯାହା କପାଳେ ।

---

୧ ଯମ ୨ ଇନ୍ଦ୍ର ୩ ଅଗ୍ନି ୪ ହସ୍ତୀ ୫ ଗନ୍ଧର୍ବ
୬ ସମୁଦ୍ର ୭ ଦେବତାମାନେ

ଲୁକ ଗୋପ ଶ୍ରମ ଜାଣିବା ନିମିତ୍ତ
ରଥାଙ୍ଗ ପାଣି ସ୍ମରନ୍ତେ,
ଦସ୍ତାପର ହୋଇ ଡାକ ସରସ୍ୱତୀ
ପଠାଇ ଥିଲେ ଏ ଅନ୍ତେ ସେ ହର
ଜନେ ଜନେ ଯା ନାମ ଧର
ଭବ ସାଗରୁ ଯାଆନ୍ତି ତର ।
ଉପସ୍ଥିତ ହୋଇ ସ୍ୱଭାବେ ତକ୍ଷଣେ
ଭେଟିଣ ଭୀମ ରାଜାକୁ
"ବିଷ୍ଣୁଙ୍କ ଆଦେଶେ ଆସିଅଛୁ ମୁହିଁ
ଲୁକ ଗୋପ କହିବାକୁ ସେ ବାଣୀ
ଶୁଣି ଶ୍ରୀମନ୍ତ ରାଜନ୍ୟ ଠାଣି
ମୁହଁକୁ ଚାହିଁ ସକଳ ଜାଣି ।
ଯଦିଓ ଲକ୍ଷ୍ମୀଙ୍କ ମଧ୍ୟରେ ଆସିଲେ
ଛବି ଦିଶେ ସଭା ସ୍ଥଳକୁ
ନାନା ବର୍ଣ୍ଣ ମଣି ଖଚିତ ଭୂଷଣେ
ଲଜ୍ଜି ଆଚ୍ଛନ୍ନା କଣ୍ଠକୁ ସେ ଜବେ
ଯାର ଗୁଣରେ ମୁଗ୍ଧ ମାନବେ
ଯାର ମାତ୍ର ସ୍ପର୍ଶ ଅନୁଭବେ ।
ନମ୍ରାନନା ହୋଇ କୁମାର ମାନଙ୍କୁ
କରନ୍ତେ କଟାକ୍ଷ ପାତ,
ଦେଖି ତା [1]ଅଜିର ହେଲେ ପୁଲକିତ
[2]ଅଜିରସ୍ଥ ନୃପତ୍ରାତା ସେ ବେଳେ
ଦେଖି ନଥିଲେ ଏ ରୂପ କେବେ
ଏବା ଚିନ୍ତିଲେ [3]ଅନୁଭବେ କେବେ ?
ନଟସ୍ୟା ଭଳିଏ ଦମୟନ୍ତୀଙ୍କର
ଦକ୍ଷିଣ ପାର୍ଶ୍ୱେ ରହି ଉଭା ହୋଇ
ରାଜନ୍ୟମାନଙ୍କ କୁଳ ଗୋତ୍ର ନାମ
ଯାଉଥିଲେ କହି କହି ସେ ଧୀରେ,
ନଙ୍ଗ ନଥିଲେ ବାଳା ସେଥିରେ
ମନ ଥିଲା ଭବ ଅଚଳେ ।
ଦମୟନ୍ତୀଙ୍କର ଦେବତାଙ୍କଠାରେ
ସେ ଭାବ ନ ଥିବାର,

ଜାଣିପାର ସ୍ୱୟଂ ଯାଆନ୍ତି ଆଗକୁ
ଲଜ୍ଜା କରି ନମସ୍କାର ସେ ରାଣୀ,
କହି ଦେଲକ ବର ଗୃହିଣୀ,
ନଳ ପାଖକୁ ନେଲା କ ଠାଣି ।
ରାଜପୁତ୍ରଙ୍କର ହେଲେ ପରିଚୟ
ଗୋଟିକ ପରେ ଗୋଟିଏ
ମୁହଁ ମୋଡ଼ିଦେଇ ଭୈମୀ ଅଗ୍ରସର
ପଛରେ ତାଙ୍କ ସଖୀଏ ସେ ଯାଇ,
ଇଚ୍ଛାମତରେ ବର ସେ ପାଇ
ଲୋକେ ଦିଅନ୍ତି ମୁହଁ ଶୁଖାଇ ।
କଠୋର ପ୍ରୟାସେ ହୁଅଇ ନିଷ୍ଫଳ
ଭାଗ୍ୟ ହେଲେ ପ୍ରତିକୂଳ,
ଜାଣି ଜାଣି କହି ଭୃତ୍ୟାକୁ ମନୀଷ
ସାଧୁଚ ଅର୍ଥ ବିପୁଳ ଏ ଭବେ
ହୋଇ ପ୍ରବୃତ୍ତ ବୃଥା ଉତ୍ସବେ
ଯହିଁ ଉପକାର ନାହିଁ ଲଭେ ।
ସର୍ବଜନ ପୂଜ୍ୟ ଶବ୍ଦ ସନ୍ତାପକ
ଅନ୍ୟ ଜଣଙ୍କୁ ଦେଖାଇ,
ଦିଅନ୍ତେ ବାଗ୍‌ଦେବୀ ନତାନନା କର
ହେଲେ ସେ ମୁଣ୍ଡ ବୁଲାଇ ସେ ଖରେ
ମନ ଲଗିଛି ନଳ ପାଶରେ
ଭ୍ରମୁଅଛନ୍ତି ସିନା ବ୍ୟାଜରେ ।
ଦେଖି ଓଜଶାଳୀ ନେପାଳ ଭୂପାଳ
ଠାରିଦେଇ ତୂର୍ଣ୍ଣେ ବାଣୀ
କହିଲେ ଆଦରେ ଏ ଗୁଣବନ୍ତଙ୍କ
ଗ୍ରହଣ କରିଲେ ପାଣି ସେ ଏବେ
ଯାହା ଲୋଡ଼ିବୁ ମିଳିବ ସେବେ
ଦୁଃଖ ନଥିବ ଜୀବନେ କେବେ ।
ଏପରି ସମୟେ ପାଶେ ପାଶେ ଥିବା
ହାସ୍ୟ ରସିକା ସଖୀଟେ,
ବହୁ ମୂଲ୍ୟ ରତ୍ନ ହୋଇଚି ଖଚିତ
ଦେଖ ଏହାଙ୍କ କଣ୍ଠେ ସେ ବ୍ୟଙ୍ଗ
କଲା ରୂପକୁ ନୁହେ ଅମଙ୍ଗ
ଥିଲେ ଭାଗ୍ୟରେ ଲୋଡ଼ିବ ସଙ୍ଗ ।

---

[1] ଶରୀର [2] ପ୍ରାଙ୍ଗଣ [3] ଅଳଙ୍କାର

ବଦନ ବକ୍ରିମା କରି ଦମୟନ୍ତୀ
ସେଠାରୁ ଗମନ୍ତେ ଭୟେ,
୧ବେଦାଗ୍ରଣୀ ତାହା ଜାଣିପାରି ଗଲେ
ଆଗକୁ ଧୀରେ ଲାଜରେ ସେ ଜାଣିଲେ
ଦେଖି ବିଷଣ୍ଣ ହେଲେ ଭୂପାଳେ
ପିକ ସାକ୍ଷୀକ ଭାଷାଳ ଡାକେ ।
ଏ ଅନ୍ତେ ଜନୈକ ବୟସ୍ୟା କହିଲା
ଏହାର ନୟନ ଭଙ୍ଗି,
ଦେଉଛି ଜଣାଇ ଅନ୍ୟ ଯୁବା ଠାରେ
ପୂର୍ବରୁ ଯାଇଛି ମଙ୍ଗି ଏ ନାରୀ
ତୁମେ ହେଉଛ ତୁଚ୍ଛାକୁ ଭାରି
ବୁଝ ଏହାକୁ ଏବେ ପରିହରି ।
ନଳାକୃତି ପରି ବସିଥିଲେ ଛଳେ
ଇନ୍ଦ୍ରାଗ୍ନି ଯମ ବରୁଣ,
ଚତୁର ବୈଦର୍ଭୀ ବୁଝିଁ ଦେଇ ଗାକ୍ଷେ
ହେଖାଏ ହୋଇ କରୁଣ ହେ ରୂପ
ମୁଁ ତ ବରିଛି ନୈଷଧ ନୃପ
ଦେବ ସେବୁଛି ପ୍ରଦାନ ଧୂପ ।

## ସପ୍ତମ ସର୍ଗ

ଦେବାଧୀଶ ପାଶେ ଯାଇ କହିଲେ ବରଦା,
ଅରୁନ୍ଧତୀକ ଜନ୍ମର ଅଟନ୍ତି ଏ ସଦା ।
୨ଇଭାନନ ୩ଦାନବାରି ଯାହାର ସହାୟ,
୪ଗଣେଶନେ ଜିଣିବାକୁ ନାହିଁ କା ଉପାୟ ।
ସହସ୍ରନେତ୍ର ଲୁଚାଇ ଗୋପନେ ଆଦରେ,
ବସିଛନ୍ତି ସଭା ମଧ୍ୟେ ନିଜ ରୂପ ଧରି ।
ଅନୁରାଗେ ୪ଲେଖ ତାଙ୍କ ପାଶ୍ୱ ବା ଚରଣ,
ନିରନ୍ତରେ ନେତ୍ର୍ୱପାଣେ କରନ୍ତି ଧାରଣ ।
ଉଦୟନ୍ତେ ପବନ ସଖା ବହ୍ନିକୁ ହସ୍ତରେ
ନିର୍ଦ୍ଦେଶ କଲେ ଭାରତୀ ଅଭିନବ ସ୍ୱରରେ ।
ଜଗତରେ ଦୀପ୍ତିମାନ ଅଟନ୍ତି ପାବକ,
ନୁହନ୍ତି ଏହା ସରି କେବେ କୌଣସି ଯୁବକ ।

୫ଜ୍ୟୋତିଷ୍କବୃନ୍ଦ ନୈଷଧ ମଧ୍ୟରେ ଏକାକୀ,
ତାରତମ୍ୟ ନ ଥିବାରୁ ଦମୟନ୍ତୀ ଭାଳେ ।
ଘଟିବ ଅବଶ୍ୟ ଯାହା ବିଧାତା ଲିଖନ,
କି ହେବ କଲେ ମଣିଷ ତୁଚ୍ଛାକୁ ଭାବନ ।
ସନ୍ଦେହାଚଳା ଭୀମଜା ନଳ ବା ଅନଳ,
ବାହ୍ନି ନ ପାରି ଆଗକୁ ଗମିଲେ ନିଶ୍ଚଳ ।
ସକଳ ଜବର ହନ୍ତା ଅନ୍ତକ ଦୂରରେ,
ବସିଥିବାରୁ ଦେଖିଲେ କୁଳଙ୍କ କୁହରେ ।
ଛଦ୍ମବେଶୀ ବୋଲି ଭାବି ଦମୟନ୍ତୀ ଖରେ,
ନ ହୋଇ ରାଜି ତେଜିଲେ ତାଙ୍କୁ ଅନାଦରେ ।
ଏ ଅନ୍ତେ ଯାଦଃପତିଙ୍କ ଲକ୍ଷ କରି ବାଣୀ,
କହିଥିଲେ ଧୀରେ ଧୀରେ ଯେତେ ଥିଲେ ଜାଣି ।
ସତୀ ସାଧ୍ୱୀ ବରିଅଛି ଆଗରୁ ଯାହାକୁ,
ସେ କି କେବେ ଶୁଣିଥାଏ ଅନ୍ୟର କଥାକୁ ।
ମହିମହେନ୍ଦ୍ରେ ନଳକୁ ଦେଖି ସରସ୍ୱତୀ,
ଭାବି ଭାବି ଭୈମୀ ଆଶା ହେବ ଫଳବତୀ ।
"କଲ୍ୟାଣି ଦର୍ଶନ କରି ଦେଖ ଦେଖ ବୋଲି,
ହର୍ଷ ମନ ପାଉଛି କି କହ ହୃଦ ଖୋଲି ।
ବଦାନ୍ୟ ନୈଷଧ ନୃପ ବସିଛନ୍ତି ଦେଖ,
ଯାହାଙ୍କର ଚଉଦିଗେ ବଢ଼ିଅଛି ଟେକ ।
ସତତ ପ୍ରଜାବତ୍ସଳ ପୁଣି ସେ ଉଦାର,
ରଖିଛନ୍ତି ତାଙ୍କଠାରେ ନକରି ବିଗ୍ଭର ।
ପ୍ରସରିଛି ଯା କୀର୍ତ୍ତି ଦିଗ ଦିଗନ୍ତରେ,
ନିରଖ ଅନ୍ୟ ଭାବନା କରୁନାହିଁ ଅନ୍ତରେ ।
ନୈଷଧ ପ୍ରାର୍ଥିମା ବୋଲି ଶୁଣିଅଛୁ ଆଗେ,
ପିନ୍ଧାଅ ଗଳେ ତାଙ୍କର ମାଳା ଅନୁରାଗେ ।
ପ୍ରଥମୁ ଚତୁର୍ଥସ୍ଥାନେ ଆସିତ ପ୍ରତ୍ୟକ୍ଷେ,
ତୁମ୍ଭ ଅଭିମତ ନଳ ନୁହନ୍ତି ପୌରୁଷେ ।
ବୈଷମ୍ୟ ନଜାଣି ପାରସାଧ୍ୱୀ ଦମୟନ୍ତୀ,
ସଙ୍କୁଚିତ ହୋଇ ଏଣେ ବିଷଣ୍ଣେ ଚିନ୍ତନ୍ତି ।
ଦିବୌକସ କୁଟ ଭାବ, କେ ବୁଝିବ ଲବେ,
ତୁଚ୍ଛାକୁ ମଣିଷ ସିନା ମାତୁଛି ଗରବେ ।

୧ ସରସ୍ୱତୀ ୨ ଗଣେଶ ୩ ବିଷ୍ଣୁ ୪ ଦେବତା

୫ ଅଗ୍ନି ଜନ୍ମ—କଳ୍ପି

ଯାହା ଲେଖିଅଛୁ ଧାତା ଲଲାଟ ପଟରେ,
ଅନ୍ୟଥା କରିବ କିଏ ଧରଣୀ ମଧ୍ୟରେ ।
ଦେଖ ହିମ ନଳନକୁ ଅଟଇ ତାପକ,
ରବିତାପ ତା' ପକ୍ଷରେ ଆନନ୍ଦଦାୟକ ।
ଅସମ୍ମତ ପତି ଏବେ କଲେ ମୁଁ ବରଣ,
ସାରା ଜୀବନଟା ମୋର ହେବ ଅକାରଣ ।

## ଦମୟନ୍ତୀଙ୍କ ନଳ ଚିହ୍ନଟ

ନଳଙ୍କୁ ନିର୍ଣ୍ଣୟ କରିବା ଲାଗି ଭୀମଜା ସତୀ,
ଦେବ ଆରାଧନା ନିମିତ୍ତ ଯୋଗାଡ଼ିଲେ ଝଟତି ।
ଜଳପୁଷ୍ପ ଧୂପ ଗନ୍ଧରେ ନିର୍ଜରଙ୍କ ଅର୍ଚ୍ଚନା,
କଲେ ବହୁକ୍ଷଣ ବିଶ୍ୱାସେ ଅନନ୍ୟ ଦୃଢ଼ ସାଧନା ।
ସଭାସଦବର୍ଗ ଅନାଇଁ ରହିଥାନ୍ତି ବସି ତେ,
ଇନ୍ଦ୍ରାଦି ଦେବତା ପ୍ରସନ୍ନ ହେଲେ ସନ୍ତୁଷ୍ଟ ଚିତ୍ତେ
ନଳରୂପଧାରୀ ଅମରେ ସେଥୁ ରୂପ ଧଇଲେ,
ପଞ୍ଚମ ସ୍ଥାନରେ ନୈଷଧ ଉପବିଷ୍ଟ ଦେଖିଲେ ।
ନୟନ ନିମେଷ ପାତକୁ ଘର୍ମୋଦକ ଶରୀର,
ଦେଖି ନଳ ବୋଲି ଏମାନେ କଲେ ତକ୍ଷଣେ ସ୍ଥିର ।
ସତ୍ୟ ନଳ ବୋଲି ନିଶ୍ଚୟ କରି ବୈଦର୍ଭୀ ସତୀ
ବରଣ ମାଳକୁ ଗଳାରେ ଦେବାଲାଗି ଝଟତି,
ଗଲାବେଳେ ଲଜ୍ଜା ପଛରୁ କଲା ତାଙ୍କୁ ବାରଣେ,
ଥକିଗଲା ବାଳା ଇଚ୍ଛାରେ ନ କରିଣ ଅର୍ପଣ ।
ହିପାବଶ ଭୈମୀ କଷ୍ଟରେ ଦୃଷ୍ଟି ନଳ ବଦନ,
ମାଳା ଅର୍ପିବାକୁ ବାଣୀକ ଅନୁରୋଧ ବଚନ ।
କହନ୍ତେ କୌତୁକେ ବାଗ୍‌ଦେବୀ ନେଲେ ଶିହସମୀପ
ତା ଦର୍ଶନେ ଲଜ୍ଜା ଛାଡ଼ିଲା ଏବେ ନିଷଧାଧିପ ।
ନିବାଧରେ ଗତ କରିଛୁ ଆଗୁଁ ମାନସ ଯାର,
ଶୁଣିବ କପର ସମ୍ପ୍ରତି ସେହୁ କଥା କାହାର ।
ସହସା ବୈଦର୍ଭୀ ଲେଉଟି ଆସି ନଳଙ୍କ ପାଶେ,
ଲମ୍ବାଇ ଦେଲେସେ ମାଳକୁ ତାଙ୍କ କଣ୍ଠେ ଉଲ୍ଲାସେ
ଦେବଙ୍କ ଅନୁଜ୍ଞା ନପାଇ ମାଳ ନଳଙ୍କୁ ଦେଇ,
କଲ ଦୋଷବୋଲି ଭଷିଣ ବାଣୀ ଭୈମୀକନେଇ
ଅମରମାନଙ୍କ ପାଶକୁ ଗୋଟି ଗୋଟିକ ପରେ,
ପ୍ରଣାମ କରାଇ ଆଣିଲେ ତାଙ୍କୁ ଅତି ଆଦରେ ।

ମନ୍ଦାକ୍ଷ ନିଷ୍ପନ୍ଦା ଭୀମଜା ଅନ୍ୟ ମାଳ ଅଣାଇ,
ବସୁଧା ସୁଧାଂଶୁ ନୈଷଧ ଗଳେ ଦେଲେ ଗଳାଇ
ଉଲ୍ଲୁ ଧ୍ୱନିରେ ସଖୀଏ ଦେଲେ କମ୍ପାଇଧରା,
ପ୍ରସୂନ ବର୍ଷଣ କରିଲେ ସ୍ୱର୍ଗୁ ମୁଦେ ଅପ୍‌ସରା ।
ରୋମାଞ୍ଚିତ ହେଲା ଶରୀର ଏବେ ବୈଦର୍ଭୀଙ୍କର,
ଲେଉଟି ଯିବାକୁ ତତ୍ପର ଏଣେ ଦେବନିକର ।
ଛଳହୀନ ଦୂତ କରମ କରିଥିବାରୁ ନଳ,
ଶୁଭାଶିଷ ଦେଲେ ବାସବ ମୁଦେ ହୋଇ ବହ୍ୱଳ ।
ଅମୃତ ସଦୃଶ ସୁସ୍ୱାଦୁ ହେବ ତବ ରନ୍ଧନ,
ବୋଲି ବର ଦେଲେ ହରଷେ ଆସି ହବ୍ୟବାହନ
"ଦଶାବିପାକରେ ତୁମ୍ଭର ଚିତ୍ତ ଧର୍ମରୁ ଲବେ,
ଭ୍ରଷ୍ଟନୋହୁ ବୋଲି ପରେତଶ୍ରେଷ୍ଠ ଭଷିଲେ ଜବେ"
"ଏଅନ୍ତେ ୧ପ୍ରେତରାଜ କହିଲେ ତୁମ୍ଭ ହାତ ବାଜିଲେ
କୁସୁମ ଅମ୍ଳାନ ରହିବ ଯେତେବେଳେ ଦେଖିଲେ"
ପୁଣ୍ୟଶ୍ଳୋକ ବୋଲି ସରବେ ଘୋଷୁଥିବେପ୍ରାତଃରେ
ବୋଲି ସରସ୍ୱତୀ ଭଷିଲେ ଶେଷେ ଯିବା କାଳରେ
ଇନ୍ଦ୍ରାଦି ଦେବତା ସକଳ ସରସ୍ୱତୀ ସଙ୍ଗରେ,
ଡାକି ବୈଦର୍ଭୀକ କହିଲେ ପାତିବ୍ରତ୍ୟ ବଳରେ ।
ଯେତେବେଳେ ଯେଉଁ ଆକୃତି ତୁମ୍ଭେ ମନାସୁ ଥିବ,
ସେତେବେଳେ ସେହି ରୂପକୁ ଅକ୍ଳେଶରେ ପାଇବ ।
ଅନନ୍ତର ଦେବ ଇନ୍ଦ୍ରାଦି ଫେରିଗଲେ ସ୍ୱର୍ଗକୁ,
ଲେଉଟିଲେ ପଛେ ତାଙ୍କର ବାଣୀ ନିଜ ଧାମକୁ ।
ନିର୍ନିମେଷ ନେତ୍ରା ନାରୀଏ କରି ଦର୍ଶନ ନଳ,
ହେଲେ କୁହାକୋହି ଭୈମୀର ପୂର୍ବ ତପସ୍ୟା ଫଳ ।
ବରିବାରୁ ଭୈମୀ ନଳଙ୍କୁ ଦେଖିକେ ଦୈବତ,
ସ୍ୱୟମ୍ବରଗତ ରଜାଏ ଖୁସି ହେଲେ ତାବତ ।

## ପାଣିଗ୍ରହଣ

କନ୍ୟା ଅନୁରୂପ ବର ବରଣରେ
ଆନନ୍ଦେ ଭୀମ ରାଜନ,
ପାଣିଗ୍ରହଣର ସକଳ ସାମଗ୍ରୀ
ତତ୍‌କ୍ଷଣ କଲେ ଆୟୋଜନ ।

୧ ଯମ

ବୈଦର୍ଭୀ ପ୍ରଦତ୍ତ ବରଣ ୧ସ୍ରଜକୁ
ଲମ୍ବାଇ ନଳ କଣ୍ଠରେ,
ବନ୍ଧୁ ବାନ୍ଧବ ୨ବ୍ରଜେ ଅତ୍ୟଧିକ ବସୁ
ଶିବିରକୁ ଗଲେ ତ୍ୱରେ।
ଜ୍ୟୋତିର୍ବିଦମାନେ ଅନନ୍ତର ଆସି
ଶୁଭ ଲଗ୍ନ କଲେ ସ୍ଥିର,
ନୈଷଧାଗମନ ପ୍ରତୀକ୍ଷାରେ ସର୍ବେ
ହେଉଥିଲେ ବା ଅସ୍ଥିର।
ଯାଚକମାନଙ୍କ ମନୋରଥ ସିଦ୍ଧି
କରିବା ନିମିତ୍ତ ନଳ,
ବହୁ ଧନ ରତ୍ନ ଆଣିଥିଲେ ସଙ୍ଗେ
ନ ଥିବାର ମନେ ଛଳ।
ଗୁରୁପୁରୋହିତ ବ୍ରାହ୍ମଣମାନଙ୍କୁ
ନମସ୍କାର କଲେ କରି,
ମହା ସମାରୋହେ ଆସୁଥାନ୍ତି ଧୀରେ
ସଙ୍ଗେ ଗଜବାଜୀ ଧରି।
ଜନମୁଖରିତ ନାନାବିଧ ବାଦ୍ୟ
ନାଦେ କୁଣ୍ଡିନ ନଗର,
କମ୍ପ ଦେଉଥିଲା ପ୍ରତିଧ୍ୱନି ଛଳେ
ଦମୟନ୍ତୀ ସ୍ୱୟମ୍ବର।
ଆସିବାରୁ ବର ବରଯାତ୍ରୀ ବର୍ଗ
ପାଛୋଟି ଆଣି ରାଜନ,
ସତ୍କାର କରିଣ ବସାଇଲେ ନେଇ
ପ୍ରଦାନ ଦିବ୍ୟ ଆସନ।
ସ୍ନେହପ୍ରୀତି ଜାତ କରୁଥିଲେ ମଧ୍ୟ
ଆଗତ ଅତିଥିଙ୍କର,
ମନେ ଲଜ୍ଜାରୋଷ ପ୍ରବେଶିଲା ଦେଖି
ସ୍ୱୟମ୍ବର ଆଡ଼ମ୍ବର।

## ବିବାହ

ବରକନ୍ୟା ନେଇ ପ୍ରବେଶ କରି ଭୀମ ହର୍ମ୍ୟରେ,
ପରିଣୟ ଲାଗି ବିତର୍ଦ୍ଧୀ ପରେ ବସିଲେ ଖରେ।
ଡକାଇ ଆଣିଲେ ଆଗତ ନୃପଗଣଙ୍କୁ ତଦା,
ବୀକ୍ଷଣ ଆଶାରେ ଜମିଲେ ଆସି ବହୁ ପ୍ରମଦା।
ଉଲୁଳୁ ନିକ୍ୱଣେ କମ୍ପୁଛି ଏବେ ବିଦର୍ଭ ୩ଅଭ୍ର,
ନୃପତିଏ ଦେଉଅଛନ୍ତି ଆଶୀର୍ବାଦ ୪ଅଦଭ୍ର।
ବେଦସୂକ୍ତମାନ ବୋଲନ୍ତି ସମବେତ ପଣ୍ଡିତେ,
ପ୍ରବେଶିବା ଭଳି ସେତିକ ବରକନ୍ୟାଙ୍କ ଚିତ୍ତେ।
ବରବଧୂ କର ବନ୍ଧନ କଲେ କର୍କଶ ଦର୍ଭେ,
ହୁଳହୁଳି ଦେଲେ ତାରତେ ଜମି ବନିତା ସର୍ବେ।
ବାହକୁମ୍ଭୀସହ ଯୌତୁକ ଶାତକୁମ୍ଭ ବିପୁଳ,
ଦିଅନ୍ତେ ଆଶ୍ଚର୍ଯ୍ୟ ମଣିଲେ ଦେଖି ରାଜନକୁଳ।
"ପାଷାଣ ସଦୃଶ ସୁଦୃଢ଼ା' ହୁଅ ବୋଲି ଭୈମୀକି,
କହନ୍ତେ ନୈଷଧ ଗଲେ ସେ ସ୍ମୃତି ଜବେ ବେଦୀକ।
କରିବାରୁ ତାଙ୍କୁ ତୁଳନା ଶିଳ ଅଶ୍ମ ସଙ୍ଗରେ,
ନୈଷଧ ପାଶରୁ କି ଅବା ପଳାଇଲେ ଲଜ୍ଜରେ।
ପୁରୋହିତ ଯାଇ ନିଶିତେ ଟାଣି ଆଣନ୍ତେ ତାଙ୍କୁ,
ଦେଖାଇଲେ ନଳ ଗଗନେ ଅରୁନ୍ଧତୀ ତାରାକୁ।
ଯେହେତୁ ବିବାହ ଶେଷରେ ଅରୁନ୍ଧତୀ ଦର୍ଶନ,
ବରବଧୂଙ୍କର ମଙ୍ଗଳ ବୋଲି ବେଦ ବଚନ।
କର୍ମ ଅନୁଷ୍ଠାନ ଶେଷରେ ପୁରନ୍ଧ୍ରୀଏ ଖୁସିରେ,
ପରିହାସ ଛଳେ ଭାଷିଲେ ୧ସୁଭଗା ଏ ମଧ୍ୟରେ।
ଭୀମଙ୍କ ଗୃହେ ନଳ ଆନନ୍ଦେ ପାଞ୍ଚଦିନ କଟାଇ,
ଗଲେ ଭୈମୀସହ ସ୍ୱଦେଶେ ସମସ୍ତଙ୍କୁ କହାଇ।
ଗଲାବେଳେ ଭୀମ ପୁତ୍ରୀକି କହିଥିଲେ ଏମନ୍ତ,
"ପତିଠାରେ ମତି ରଖିବୁ ତୁଷ୍ଟ ହେବେ ସେମନ୍ତ।
ହେଉଛନ୍ତି ପତି ତୋହର ସର୍ବଧର୍ମ ଜୀବନେ,
ନ କରିବୁ ହେଳା କଦାପି ତାଙ୍କ ପଦ ସେବନେ।
କେବେ ହେଲେ ତାଙ୍କ ମନରେ ଦେବୁନାହିଁ ବେଦନା
ସନ୍ତୁଷ୍ଟ ଭାବକୁ ନଷ୍ଟ ବୃଥା ହୋଇ କୋଇନା।
ହେଉଛନ୍ତି ପତି ସତତ ୨ଅନାପଦ ତୀର,
ବିବାହାନନ୍ତର ଜନକ କଚ୍ଛ ନୁହେ ପୁତ୍ରୀର।
ସର୍ବସ୍ୱ ଅଟନ୍ତି ବଲ୍ଲଭ ତୋର ଜୀବନେ ଭବେ,
ଅର୍ଜିବୁ ଦୂଷଣ ତାଙ୍କର କଥା ଲଙ୍ଘିଲେ ଲବେ।

ବାହ-ଅଶ୍ୱ, କୁମ୍ଭୀ-ହସ୍ତୀ, ଶାତକୁମ୍ଭ-ସୁନା, ପୁରନ୍ଧ୍ରୀ-ସଖୀ, ୧ ମାଳ ୨ ଯୂଥ ୩ଆକାଶ ୪ ଅଧିକ

୧ ସୁନ୍ଦରୀ ୨ ସର୍ବ ସମ୍ପଦ

ଗୋସ ମବୃତ୍ତିରୁ ସକଳ ଘଟେ ମବୃତ୍ତି ସିନା,
ଗତ ନାହିଁ କେବେ ଚହ୍ନିର ଭବେ ଭରତା ବନା" ।
୧ଉତ୍କଳକାକୁଳ ଅମାଙ୍କୋ ଗୃହିଁଥିଲେ ପଥକୁ,
ପୁର ଜପକଣ୍ଠେ ପାଗ୍ଚେଷ୍ଟି ନେଲେ ଭୈମୀନଳଙ୍କୁ ।
ଅନନ୍ତର ପୁରବାସିମା କୁମାରୀଏ ମାର୍ଗରେ,
ଲାଜାମକ୍ଷେପିଲେ କୌତୁକେ ମାତ ପ୍ରମୋଦଭରେ ।
ସୌଧ ବାତାପ୍ୟନ ବବର ମାର୍ଗେ ପୁରନ୍ଧ୍ରୀଗଣ,
ମଷେଧ ନୃପଙ୍କ ମୁଖେନ୍ଦୁ କରିଥିଲେ ଈକ୍ଷଣ ।

## ସପ୍ତମ ସର୍ଗ
## ଦେବତାମାନଙ୍କ ପ୍ରତ୍ୟାବର୍ତ୍ତନ

ସ୍ୱୟମ୍ବର ଶେଷେ ଶକ୍ରାଦ ଦୈବତ
ଲେଉଟିବା ବେଳେ ରଥେ,
କଲେ ଦରଶନ ବ୍ୟଗ୍ରେ ଆସୁଥିବା
ଲୋଭ କ୍ରୋଧ ମୋହ ପଥେ ।
ଇନ୍ଦ୍ରିୟବର୍ଗର ସଦ୍‌ବୃତ୍ତି ମରୋଧେ
ପାରଙ୍ଗମ ଯେଉଁମାନେ,
ଅଜ୍ଞତା ଦୋଷରୁ ପଥ୍ୟ ତଥ୍ୟ ଅବା
ନପଡେ ଯାହାଙ୍କ କାନେ ।
ଶାସ୍ତ୍ରଜ୍ଞମାନଙ୍କୁ ମୂର୍ଖ କରବାଏ
ସଦା ଯାହାଙ୍କର ଯୁକ୍ତି,
ଶୁଣିଲେ ଦୈବତ ସେମାନଙ୍କ ଠାରୁ
ବେଦରୁ ବରୁଦ୍ଧ ଉକ୍ତି ।
ସତ ବୋଲି ଯାହା ମଣଇ ମଣିଷ
ଇହଲୋକେ ତା କ୍ଷଣିକ,
ସ୍ୱେଚ୍ଛାବୃତ୍ତତାକୁ ଆଚରିବ ଯେଣୁ
ଅନ୍ୟାନ୍ୟ ସବୁ ଅଳୀକ ।
ତୀର୍ଥସ୍ନାନାଦରେ ଅଭରୁଚ ତଜି
କର ବ୍ରତ ଉପବାସ,
ପ୍ରୟାସ କଲେହେଁ ନହେବ କଦାପି
ବ୍ୟଭଚ୍ଚର ଦୋଷନାଶ ।

ପରଲୋକେ ଲୋକ ପାଉଅଛୁ ଦୁଃଖ
କଲେ ପାପ ଆଚରଣ,
ପ୍ରତ୍ୟକ୍ଷ କ ଏହା ? ବେଦବାକ୍ୟ ତେଣୁ
କରିବ କଏ ଗ୍ରହଣ ?
ପାପପୁଣ୍ୟ କର୍ମେ ସୁଖ ଦୁଃଖ ଭୋଗ
ବୋଲାବାଟା ଅନୁଚତ,
ଯେଣୁ ଏ ପ୍ରତ୍ୟକ୍ଷ ନୁହଇ ଜୀବନେ
କର୍ତ୍ତବ୍ୟ ସିନା ୧ଈଳତ ।
ଯୁକ୍ତାଯୁକ୍ତ ଅବା ଯୁକ୍ତ ହୀନ ହେଉ
ସ୍ୱମତ ସ୍ଥାନେ ଲାଗି,
ନକର ବଗ୍ଗୃହ ଆନକଥା ହୃଦେ
ସକଳ ସଦା ସରାଗୀ ।
ମଜ ଆତ୍ମାସାକ୍ଷୀ ନଜର କାର୍ଯ୍ୟରେ
ନଭାବେ ଏହା ଯେ ମନେ,
ସେକ କେତେବେଳେ ହୋଇବ ସମର୍ଥ
ଅନ୍ୟର ଶୁଭ ସାଧନେ ।
ଫୁଲଟି ବୃନ୍ତକୁ ଧରିଥିଲେ ସିନା
ହୋଇଥାଏ ଫଳପ୍ରଦ,
ତାକୁ ତୋଳ ଅଣ ଶାଳଗ୍ରାମେ ଦେଲେ
ହୁଏ କ କେବେ ଶୁଭଦ ।
ଆଦର୍ଶ ରୂପରେ ମଜକୁ ନରଖି
ଦଅ ବୃଥା ଉପଦେଶ,
ନାରୀର ରୂପକୁ ତୁଚ୍ଛ ବୋଲି ଦେଇ
କରୁଛ ଦ୍ୱନ୍ଦ୍ୱେ ପ୍ରବେଶ ।
ଶମଗୁଣ ଶିକ୍ଷା ଦେଲେହେଁ ଦୁର୍ବାସା
ଅଟନ୍ତି ମହାକ୍ରୋଧନ,
ଧନାଗମୋପାୟ ଶିଖାଏ ଯେ ପୁଣି
ଅଟଇ ସ୍ୱୟଂ ନର୍ଦ୍ଧନ ।
ଦାତା ବୋଲି ମଣି ମଜକୁ ସର୍ବଦା
କ ସୁଖ ମିଳେ ଜୀବନେ,
ଲକ୍ଷ୍ମୀ ଅନୁଗ୍ରହୁଁ ନଦେବା ଲୋକର
ଭଣ୍ଡାର ଭରନ୍ତ ଧନେ ।

ପଥ୍ୟ-ହିତ, ତଥ୍ୟ-ସତ୍ୟ, ଦୈବତ-ଦେବତାସମୂହ
ଅଳୀକ-ମିଥ୍ୟା

୧ ପ୍ରଶଂସିତ

ସକଳ ପଦାର୍ଥ    ନଦେଇ କୁକ୍ଷୀକୁ (ପେଟକୁ)
ଠକିବ କାହିଁକି ତାକୁ,
ନ ଶୋଭଇ କଏ    କେତେବେଳେ ଭବେ
ତଡ଼ିତ ଦରିଦ୍ରତାକୁ ।
ଏବଂବିଧ ବାଣୀ    ଶୁଣି ଶତକ୍ରତୁ
ଉତ୍ତରିଲେ ତତକ୍ଷଣେ,
ବେଦ ପୁରାଣର    ପ୍ରାମାଣିକ କଥା
କରି ନିନ୍ଦା ଅକାରଣେ ।
ପୂର୍ବ ଆଚରିତ    ସୁକୃତ ଦୁଷ୍କୃତ
ନକରି ନିତ ସ୍ମରଣ,
ଧୂର୍ତ୍ତବାର୍ତ୍ତା ଦେଇ    ଯାପିଲେ ସମସ୍ତ
ଜୀବନଟା ଅକାରଣ ।
ନାସ୍ତିଦୋଷୁଁ ସିନା    ସ୍ୱବଂଶରେ ଦୋଷ
ସଞ୍ଚରି ହୁଅଇ ଭବେ,
ତେଣୁ କେତେବେଳେ    ସ୍ତ୍ରୀ ସ୍ୱେଚ୍ଛାଚାରିତା
ନୁହଇ ଶୋଭନ ଲବେ ।
ଧର୍ମ ପ୍ରତିକୂଳ    ବାକ୍ୟ ଉଚ୍ଚାରଣ
ନୁହଇ କେବେ ଶୋଭନ,
ସନ୍ଦେହରେ ପଡ଼ି    ଘୂରୁଥିବା ବୁଦ୍ଧି
ହେବ କି ପରିବର୍ତ୍ତନ ।
ରେ ପ୍ରଚ୍ଛନ୍ନ ପାପି !    କ୍ଷୁଦ୍ର ବୁଦ୍ଧିରେ କି
କରିବୁ ଧର୍ମ ଖଣ୍ଡନ,
ବୃଥାରେ ଗର୍ଜିଲେ    କଣ୍ଠ ଓଷ୍ଠ ହସ୍ତ
କରିବି ଏବେ ଛେଦନ ।
କହୁ କହୁ ଏହା    କଳି ଓ ଦ୍ୱାପର
ଠିଆ ହୋଇ ସମ୍ମୁଖରେ,
"କୁଶଳ ପଚାରି    ଭାଷିଲେ ଯାଉଛୁ
ଦମୟନ୍ତୀ ସ୍ୱୟମ୍ବରେ ।
ଦେବତାଏ ତହୁଁ    ଶ୍ରବଣେ ଦସ୍ୟୁର
ଅହେତୁକ ଅହଂକାର,
"କହିଲେ ଖେଳୁଛ    ବିବାହ ବିଷୟ
କରି ଅଯଥା ବିଚାର ।
ଯୁବ ଜନଙ୍କର    ସୌନ୍ଦର୍ଯ୍ୟ ଗର୍ବକୁ
ଖର୍ବ କରୁଥିବା ନଳ,
ଦମୟନ୍ତୀ ପାଣି    ଗ୍ରହଣ କଲେଣି
ଗମନ ହେବ ନିଷ୍ଫଳ" ।
ଶୁଣିବାରୁ କଳି    ଏକଥା ସହସା
କହିଲେ ଭୈମୀକି ବଳେ,
"ଆଣିବି ଓଟାରି    ନଳ କବଳରୁ
ଯାଇ ନିଷଧ ଟେଞ୍ଚେଲେ ।
ଅନାଦର କରି    ଦେବତାଙ୍କୁ ଭୈମୀ
ବରିଲା ଯେବେ ନୈଷଧ,
ଉଦାସୀନ ହୋଇ    ରହିଲି କପରି
ନକରି ଦୁହିଁଙ୍କୁ ବଧ ।
ଅବଜ୍ଞାତ ହୋଇ    ଗୃହକୁ ଫେରିବା
ହେବ କି କେବେ ଉଚିତ ?
ଆନ୍ତରିକ ଖେଦ    ଗୋପନ କରିବା
ଅବଶ୍ୟ ସଦା ଗର୍ହିତ ।
ଦେବତା ସକଳ    ବାରଣ କଲେ ହେଁ
ନଶୁଣି କାହା ବଚନ,
ନିଷଧାଭିମୁଖେ    ଗଲେ ଛଦ୍ମବେଶେ
ଦ୍ୱାପର କଳି ବହନ ।
ଇନ୍ଦ୍ରାଦି ଦୈବତ    ଛଦନ୍ତେ ସ୍ୱପୁରେ
ଗଲେ ଆନନ୍ଦ ମନରେ,
ଏଣୁହେଁ ନିଷଧ    ଦେଶରେ ପ୍ରବେଶି
ବୁଲିଲେ ଶୂନ୍ୟ ମାର୍ଗରେ ।
ନିବର୍ତ୍ତିବା ଲାଗି    ପାପରୁ ମଣିଷ
ଠାବେ ଠାବେ ଯତିଗଣ,
ବେଦ ପଢ଼ୁଥିବା    ଦରଶନ କରି
ନ ଦେଲେ ତଳେ ଚରଣ ।
ନଳଭୀମଜାଙ୍କ    ହାନି କରିବାକୁ
ଖୋଜିଲେ ହେଁ ଛିଦ୍ରମାନ,
ଭ୍ରମି ଭ୍ରମି ପୁରେ    ହେଲେ ବିଚଳିତ
ନପାଇ କାହିଁ ସନ୍ଧାନ ।
ଏ ଅନ୍ତେ ପ୍ରବେଶି    ନଳଗୃହାରାମେ
ଦେଖି ତରୁ ବିଭୀତକ (ବାହାଡ଼ା)
ଆରୋହି ସେଥିରେ    ନେଲେ ଆଲମ୍ବନ (ଆଶ୍ରୟ)
ଜାଣିବାକୁ ଇପ୍ସିତକ ।

ସେତେକ ସଦୃଶ ବସା ବାନ୍ଧି କଳି
ରହିଣ କଳି ଦ୍ରୁମରେ (ବାହାଡାଗଛ)
ନଳ ଦମୟନ୍ତୀ ଛିଦ୍ର ଖୋଜଇ ଗୃହେଁ
ସୌଧ ଗବାକ୍ଷ ପଥରେ ।
ରହିଥାଏ ବ୍ୟସ୍ତ ଦ୍ୱାପର ଭୂତଳେ
ଦୋଷଚଇ ଅନ୍ୱେଷଣେ,
ଜାଣିବାକୁ ଏବା କଳି ହିତ ଲାଗି
ନଳ ଅନଷ୍ଟ କରଣେ ।
କେତେ ପ୍ରଶଂସିତ ହେଲେହେଁ ମଣିଷ
ରହିଛି ଦୋଷ ତାଠାରେ,
ପର ଦୋଷ ବାଛି ପରାଭବ ସିନା
ଅନବରତ ସଂସାରେ ।

## ନବମ ସର୍ଗ

ଛିଦ୍ରାନ୍ୱେଷୀ କଳି ନିଷଧ ଦେଶରେ
ଦ୍ୱାଦଶ ବରଷେ ରହି ଗୁପ୍ତରେ,
ଦେଖିଲା ନଳକୁ ନ ଧୋଇ ଚରଣ
ବସିବାର ପୂଜା ଲାଗି ସଞ୍ଜରେ ।
କରି ତା ଦର୍ଶନ ନୈଷଧ ଶରୀରେ
ଗୋଟିଏ ରୂପରେ ପଶି ତରସା,
ଅପର ରୂପରେ ପୁଷ୍କରକୁ କହେ
ଯାଇ ସଙ୍ଗେ ଯାଇ ଖେଳିଲେ ପଶା,
ଅନୁକୂଳ ଦାନ ପଡ଼ିବ ତୁମର
ସର୍ବସ୍ୱ ହରାଇ ନଳ ରାଜନ,
ଯିବେ ରାଜ୍ୟ ଛାଡ଼ି ରାଜା ହୋଇ ତୁମ୍ଭେ
କରିବ ସୁଖରେ ପ୍ରଜା ପାଳନ" ।
ଏ ବଚନ ଶୁଣି ଲୋଭେ ପଡ଼ି ଛଦା
ନୈଷଧ ସମୀପେ ଯାଇ ପୁଷ୍କର,
ଭୀମଜା ସମକ୍ଷେ ଡାକେ ଘନ ଘନ
"ଅକ୍ଷକ୍ରୀଡ଼ା ଲାଗି ଆସ ସତ୍ୱର" ।
ପୁଷ୍କର ଆହ୍ୱାନ ସମ୍ଭାଳି ନପାରି
ବାଜି ରଖି ପଶା କଲେ ଆରମ୍ଭ,
ଦୈବବାଣୀ ବୋଲି ବିଜୁର ଦିଜୁର
ପୁଷ୍କର ହୃଦୟେ ଧଇଲା ଦମ୍ଭ ।

ନଳ ଦେହେ କଳି ଥିବାରୁ ଦୁଷ୍କର୍ମେ
ପ୍ରବେଶ କରନ୍ତେ ଏବେ ରାଜନ,
ମନ୍ତ୍ରୀ ପୁରବାସୀ କରିଲେହେଁ ମନା
ନ ପଶିଲା କାନେ କାହା ବଚନ ।
ଅନନ୍ତର ୧ସୂତ ଅନ୍ତଃପୁରେ ଯାଇ
ଦିଅନ୍ତେ ଏ ବାର୍ତ୍ତା ଦମୟନ୍ତୀକି,
ଅବିଳମ୍ବେ ଆସି କହିଲେ ନଳକୁ
"ନହୁଅଁ ୨ଅଶିବ ପଶା ପାଳିକି" ।
ଜୁଆ ଖେଳିକି ମାତ୍ର କେ ପାଏ ଗୌରବ
ଧରଣୀ ମଧ୍ୟରେ କେଉଁ ଯୁଗରେ ?
ବିଧି ହେଲେ ବାମ ଏ ଭଳି କରମ
କରୁଅଛି ଲୋକ ଅସମ୍ଭବରେ ।
ଦମୟନ୍ତୀ ବାଣୀ ନୈଷଧ ନଶୁଣି
ମାସ ମାସ ଧରି ଖେଳନ୍ତେ ପଶା,
ସନ୍ତାନ ମାନଙ୍କୁ ମାତୁଳାଳୟକୁ
ପଠାଇ ଦେଲେ ସେ ଦୁଃଖେ ତରସା ।
ବିପୁଳ ସମ୍ପତ୍ତି ରାଜ୍ୟ ସହ ନଳ
ହରାଇ ଶେଷରେ ପତ୍ନୀ ସହିତ,
ଏକ ବସ୍ତ୍ର ପିନ୍ଧି ଗଲେ ବନ ଦେଶ
ମୁଣ୍ଡ ପୋତି ପୋତି ହୋଇ ଲଜ୍ଜିତ ।
କିଛିଦିନ ପରେ ସ୍ୱର୍ଣ୍ଣପକ୍ଷଧାରୀ
କେତେକ ପକ୍ଷୀଙ୍କୁ କରି ବୀକ୍ଷଣ,
ଧରିବାକୁ ନଳ ପିନ୍ଧିଥିବା ବାସ
ଅଙ୍ଗାରୁ ଫିଟାଇ କଲେ କ୍ଷେପଣ ।
ମହା ମୋଦଭରେ ବିହଙ୍ଗମମାନେ
ସେ ଖଣ୍ଡିକ ଧରି ଯାନ୍ତେ ପଳାଇ,
ହୋଇ ବିବସନ ଦିଶନ୍ତେ ବିଷଣ୍ଣ
ଭୀମଜା କାନିରୁ ଖଣ୍ଡେ ଛିଣ୍ଡାଇ,
ଦେବାରୁ ତକ୍ଷଣେ ଅଙ୍ଗରେ ଗୁଡ଼ାଇ
କାନ୍ଦି ପକାଇଲେ କି ହେଲା ବୋଲି,
ଆଶ୍ୱାସିତ କରି ବିଦର୍ଭ ଯିବାକୁ
କହିଲେ ଭୀମଜା ହୃଦୟୁ ଖୋଲି ।

୧ ସାରଥି ୨ ଅଶୁଭ

ନ ମିଳି ସେଥିରେ ବସି ପଡ଼ନ୍ତେ ସେ
ପୂର୍ବ କଥାମାନ ଭାବ ମନରେ,
ବସିରୋହା ଭୈମୀ ତାଙ୍କ ସନ୍ନିଧାନେ
ବିଳପିଲେ ଉଚ୍ଚ କରୁଣ ସ୍ୱରେ ।
ବିଭାବରୀ କ୍ରମେ କରନ୍ତେ ପ୍ରବେଶ
ଦଶଦିଶ ହେଲା ଅନ୍ଧାରମୟ,
ଦିନଯାକ ବୁଲି ଶ୍ରାନ୍ତା ଭୀମଜାକୁ
ନିଦ୍ରାଦେବୀ ଆସି କଲା ଅଥୟ ।
ଭର୍ତ୍ତା ସମୀପରେ କଲେ ସେ ଶୟନ
ସଚେତନ ରହି ନିଷଧପତି,
ଭାବିକଲେ ସ୍ଥିର ପଳାଇବା ପାଇଁ
କରି ବିସର୍ଜନ ବୈଦର୍ଭୀ ସଙ୍ଗ ।
ନଳ ଆକର୍ଷଣ କଲେ ଏକ ଦିଗେ
ସ୍ନେହ ଆକର୍ଷଣ ଅନ୍ୟ ଦିଗରେ,
ଏପଟ ସେପଟ ହୋଇ ପରିଶେଷେ
ପଳାଇଲେ ଛାଡ଼ି ଜାୟା ବନରେ ।
ହେବାରୁ ଜାଗ୍ରତ ଦେଖିଲେ ଭୀମଜା
ନଥିବାରୁ ନଳ ପାଶେ ତାହାର,
ଅତିବ୍ୟସ୍ତା ହୋଇ କାନ୍ଦିଲେ ବିକଳେ
ବିଧାତାକୁ ନିନ୍ଦା କରି ବାରମ୍ବାର ।
ବେଳେ ବେଳେ ପୁଣ୍ଣ ଅନ୍ୱେଷିଲେ ରହି
କାହିଁ ଗଲ ପ୍ରାଣେଶ ବୋଲି ବିକଳେ,
କରନ୍ତି ରୋଦନ ଦୀର୍ଘଶ୍ୱାସ ଛାଡ଼ି
ଧୂସରିତା ହୋଇ ଲୋଟି ଭୂତଳେ ।
ଏଣେ ତେଣେ ବୁଲି ଦୁର୍ଗମ ବନରେ
ଅବସନ୍ନା ହୋଇ ଶିଳା ଉପରେ,
ବସି ବିଳପିଲେ ପତି ଗୁଣ ଗୁଣି
ଭର୍ତ୍ତୃମୂର୍ତ୍ତି ନାଶ ପରି କାତରେ ।
କମ୍ପିତ ସମସ୍ତ ବିଳପି ଏପରି
ପତି ବିଚ୍ଛେଦରେ ହୋଇ ଦୁଃଖିତା,
ଅରଣ୍ୟ ଭିତରେ ଚଉଦିଗେ ଖୋଜି
ଯାଉଥାନ୍ତି ବୁଲି ରାଜ ବନିତା ।
ସୁଖର ସମୟ ଯାଇଥିବା ଯାଏ
ନ ଘଟଇ କେବେ କାହା ଜୀବନେ ।
ଉତ୍ଥାନ ପତନ ଲାଗିଛି ସତତ
ଭାଗ୍ୟ ଅନୁଗତ ସର୍ବେ ଭୁବନେ ।
ନିର୍ଜନ କାନନେ ତିନ ଦିନ ବୁଲି
ଦେଖିଲେ ଗୋଟିଏ ତାପସାଶ୍ରମ,
ନିସ୍ପୃମୀ ଋଷୀଏ ରହୁଥିଲେ ଯହିଁ
ଜଳ ପତ୍ର ଖାଇ ଆଚରି ଦମ ।
ଆଶ୍ୱସ୍ତ ହୋଇ ସେ ପ୍ରବେଶି ତହିଁରେ
ନଳ ସମାଚାର ଆଗ ପୁଚ୍ଛନ୍ତେ,
ଭବିଷ୍ୟ ମଙ୍ଗଳ ହେବ ବୋଲି କହି
ଅନ୍ତର୍ହିତ ଋଷିଗଣ ଏ ଅନ୍ତେ ।
ଶୋକାକୁଳା ଭୈମୀ ଦର୍ଶନ କରି ତା
ବିସ୍ମିତ ଚିତ୍ତରେ ଛାଡ଼ି ସେ ସ୍ଥାନ,
ଗଲେ ଖୋଜି ଖୋଜି ବହୁଦୂରି ଶେଷେ
ପଡ଼ିଲା ଲୋଚନେ କେତନମାନ ।
ସେ ପୁର ମଧ୍ୟରେ ପ୍ରବେଶ କରନ୍ତେ
ଉହ୍ନିଲେ ଆଗରେ ରାଜପ୍ରାସାଦ,
ଗଲେ ଭିତରକୁ ସେ ଭୀମ ନନ୍ଦିନୀ
ଲଭି ଅବଳମ୍ବେ ରାଜପ୍ରସାଦ ।
ସମାଦର ପାଇ ସମସ୍ତଙ୍କଠାରୁ
ରହିଲେ ସେଠାରେ ନିରୁଦ୍‌ବେଗରେ,
ନିଷଧପତିଙ୍କ ଦୁର୍ଦ୍ଦଶା ଭାଷନ୍ତେ
ଗଲେ ଅନ୍ୱେଷଣେ ରାଜକଙ୍କରେ ।
ଏଣେ ବୈଦର୍ଭୀକ କରି ପରିତ୍ୟାଗ
ପ୍ରବେଶି ନୈଷଧ ଗହନ ବନେ,
କଲେ ସନ୍ଦର୍ଶନ ଯାଉ ଯାଉ ବ୍ୟଗ୍ରେ
ଶୋଇଥିବା ନାଗରାଜ ୧ଅୟନେ ।
ନାରଦାଭିଶାପେ ପଡ଼ିଥିବା କଥା
କହି ସ୍ଥାନାନ୍ତର କରିବା ପାଇଁ,
ଅନୁରୋଧ କରି କହନ୍ତେ ନଳକୁ
ଅନ୍ୟନ ନେଲେ ସେ ବିଶ୍ୱାସେ ଧାଇଁ ।
ଅନ୍ୟନ କେଉଣୁ ଦଂଶନ କରି ସେ
ନଳ ରୂପ କରି ଅପହରଣ,

୧ ପଥ

"କହିଲ, ଯା ହେତୁ ପାଉଛ କଷଣ
ଏ ବିଷଜ୍ୱାଳାରେ ତାର ମରଣ,
ଅକ୍ଷବିଦ୍ୟା ଦକ୍ଷ ଅଯୋଧ୍ୟା ଭୂପତି
ଋତୁପର୍ଣ୍ଣଙ୍କର ହୋଇ ସାରଥି,
ଅଶ୍ୱ ବିଦ୍ୟା ଦେଇ ଅକ୍ଷବିଦ୍ୟା ଶିକ୍ଷି
ବୋଲାଇବା ପରେ ପାଶକରଥି" ।
ଦୁଇ ଦିବ୍ୟବସ୍ତ୍ର ପ୍ରଦାନି ନଳକୁ
ଭଣିଲେ ପୁନଶ୍ଚ "ପିନ୍ଧ ଏ ବାସ,
ସ୍ମରଣେ ମୋ ନାମ ପାଇବ ସ୍ୱରୂପ
ଏକଥା ନକର କାହିଁ ପ୍ରକାଶ" ।
ଏମନ୍ତ ବଚନେ କହି ନାଗରାଜ
ହେଲେ ଅନ୍ତର୍ହିତ ସେସ୍ଥାନୁ ତ୍ୱରେ,
ନିଷଧାଧିପତି ଅଯୋଧ୍ୟାଭିମୁଖେ
ଗମିଲେ ନିର୍ଜ୍ଜନ ବନ ପଥରେ ।
ନଗରେ ପ୍ରବେଶି ଦଶମ ଦିନରେ
ହୋଇ ଉପସ୍ଥିତ ନୃପନିକଷା,
ଅଶ୍ୱ ଚାଳନାରେ ଧୁରୀଣ କହନ୍ତେ
ସେ କର୍ମେ ନିଯୁକ୍ତ ହେଲେ ଭରସା ।
ନଳଦମୟନ୍ତୀ ଦୁର୍ଦ୍ଦଶାରେ ଭୀମ
ବିଚଳିତ ହୋଇ ଡାକି ବିପ୍ରଙ୍କୁ,
ଅନ୍ୱେଷଣ ଲାଗି ପଠାଇଲେ ଖରେ
ପାଥେୟ ପ୍ରଦାନି ଚଉଦିଗକୁ ।
ସୁଦେବ ନାମକ ଜଣେକ ବ୍ରାହ୍ମଣ
ଚେଦି ରାଜ୍ୟେ ଗଲା ସନ୍ଧାନ ପାଇ,
ପତି ବିଚ୍ଛେଦରେ ମ୍ଲାନା ଭୀମଜାକୁ
ରାଜପ୍ରାସାଦରେ ଭେଟିଲା ଯାଇ ।
ରାଜାରାଣୀ ଦ୍ୱୟ ଆଶ୍ୱାସିତ କରି
ନରଯାନେ ତାଙ୍କୁ ଦେଲେ ପଠାଇ,
ପିତାଳୟେ ଆସି ବଦଳିଲା ମନ
ଜନକଜନନୀ ଦର୍ଶନ ପାଇ ।
ପ୍ରୀତ ଭୀମ ସିନା ତନୟାକୁ ଦେଖି
ନଳ ବିନା ଭୈମୀ ହୋଇ କାତର,
କହିଲେ ତାହାଙ୍କୁ ନ ଆଣିଲେ ଖୋଜ
ଅବଶ୍ୟ ଅଚିରେ ତେଜିବ ଧର ।

ଏ ଧମକ ତାଙ୍କ ଅଶନି ସଦୃଶ
ତକ୍ଷଣେ ଭେଦିଲା ହୃଦ ମଧ୍ୟରେ,
ଡକାଇ ବ୍ରାହ୍ମଣ ପ୍ରେରିଲେ ଚୌଦିଗେ
ନଳ ଅନ୍ୱେଷଣେ ଜନକ ଖରେ ।
ଶିଖାଇଲେ ଯା ଭୈମୀ ସେମାନଙ୍କୁ
ଗଲାବେଳେ ଖୋଜ ନିଷଧେଶ୍ୱର,
ସେତକ ସେମାନେ ସଦା ଉଚ୍ଚସ୍ୱରେ
ଗାଉଥାନ୍ତି ବୁଲି ଗ୍ରାମନଗର ।
ଅଯୋଧ୍ୟା ନରେଶ ସ୍ମୃତ କାନେ ଦିନେ
ପଡ଼ନ୍ତେ ବିପ୍ରଙ୍କ ସବୁ ବଚନ,
ଭଣିଲେ, "କୁଳସ୍ତ୍ରୀ ଦୁଃଖ ପାଇଲେ ହେଁ
ରଖନ୍ତି ହୃଦୟେ କରି ଗୋପନ ।
ନ ବହନ୍ତି କୋପ ସ୍ୱାମୀ ବିଚ୍ଛେଦରେ
କବଚ ସଦୃଶ ତାଙ୍କ ଚରିତ୍ର,
କରେ ପ୍ରାଣ ରକ୍ଷା ଆପଦ କାଳରେ
ଥାଉ ବା ନଥାଉ ସମୀପେ ମିତ୍ର ।
କରୁ ବା ନକରୁ ସତ୍କାର ପତ୍ନୀକି
ପତି ପ୍ରତି କୋପ ସଦା ଅବିଧି,
ପତିହିଁ ଦେବତା ପତ୍ନୀର ଏ ଭାବେ
ଥାଉ ବା ନଥାଉ ପାଖରେ ନିଧି ।
ସାରଥିଠାରୁ ଏ କଥାମାନ ଶୁଣି
ବ୍ରାହ୍ମଣ ଲେଉଟି ଭୈମୀ ସମ୍ମୁଖେ,
ଗୋଟି ଗୋଟି କରି ବଖାଣିବାରୁ ତା
ଲୋତକ ଲୋଚନେ ମଜ୍ଜିଲେ ଦୁଃଖେ ।
ଏ ଅନ୍ତେ ଭୀମଜା ସୁଦେବକୁ କହେ
ସେ ନୃପ ନିକଷା ଯାଇ ସତ୍ୱର,
ପୁଣି ସ୍ୱୟମ୍ବର ଭୀମ ଦୁହିତାର
ହେବ କାଲି ବୋଲି ଦିଅ ଖବର ।
ଏ ଆଦେଶ ପାଇ ଅଯୋଧ୍ୟାକୁ ଯାଇ
ଦିଅନ୍ତେ ବାରତା ମୋଦେ ଭୂପତି,
ସାରଥି ନଳକୁ ଡାକି ଆଦେଶିଲେ
"ଅଶ୍ୱ ଯୋଚି ରଥ ଆଣ ଝଟତି" ।
ଏ ଆଦେଶ ମାନି ଅଶ୍ୱଶାଳାରୁ ସେ
ଚଞ୍ଚଳ ଘୋଟକ ଆଣି ରଥରେ,

ଯୋଚି ନଳପତି    ପାଶେ ରଖିବାରୁ
ଆରୋହି ବିଦର୍ଭ ଗଲେ ବ୍ୟଗ୍ରରେ ।
ଯାଉଁ ଯାଉଁ ପଥେ    କହନ୍ତେ ନୃପତି
ତନ୍ତ୍ରଜ୍ଞ ସେ ଅତି ଦ୍ୟୁତ କ୍ରୀଡାରେ,
ଉତ୍ତରିଲେ ତାଙ୍କୁ    ନଳ ସଙ୍ଗେ ସଙ୍ଗେ
ଧୁରନ୍ଧର ସେହି ଅଶ୍ୱ ବିଦ୍ୟାରେ ।
ଆଗ୍ରହେ ନୃପତି    ଅଶ୍ୱବିଦ୍ୟା ଶିଖି
ଶିଖାଇଲେ ତାଙ୍କୁ ପାଶକ କ୍ରୀଡ଼ା,
ଦୁହିଁଙ୍କ ମଧ୍ୟେ    ଆଦାନେ ପ୍ରଦାନେ
ନରହିଲା କା'ର ମାନସେ ପୀଡ଼ା ।
ଶିଖିବାମାତ୍ରକେ    ଅକ୍ଷବିଦ୍ୟା ନଳ
କଳି ନିବମୁର୍ଖ ହୋଇ ନିର୍ଗତ
ଅଭିଶାପ ଭୟେ    କୃତାଞ୍ଜଳିପୁଟେ
ନଳଙ୍କର ହେଲା ଶରଣାଗତ ।
ନିଜ ରୂପ ନଳ    କରିଲେ ଧାରଣ
ବିଦାୟ ମାଗି ଗଲା ତଦନ୍ତେ କଳି
ନେଲେ ନୃପତିଙ୍କ    ସ୍ୟନ୍ଦନ ଚଳାଇ
ନୈଷଧ ଚଞ୍ଚଳେ ଚଞ୍ଚଳା ଭଳି ।
କୁଣ୍ଡିନ ନଗରେ    ପ୍ରବେଶିଲା ବେଳେ
ଘୋର ଘୋଷଜାତ ହେଲା ରଥର,
ନଳ ରଥ ବୋଲି    ଦମୟନ୍ତୀ ମନେ
ଉପୁଜେ ସନ୍ଦେହ ଥରକୁ ଥର ।
ଭୀମ ସମୀପକୁ    ନୃପ ଋତୁପର୍ଣ୍ଣ
ଗଲେ ଅନନ୍ତର ରଥୁଁ ଓହ୍ଲାଇ,
ବସିଲେ ନୈଷଧ    ସ୍ୟନ୍ଦନ କ୍ରୋଡରେ
ତତ୍ପର ହୋଇ ଅଶ୍ୱ ଫିଟାଇ ।
ଦୁଇଦେଶ ପତି    ମିଶାମିଶି ହୋଇ
କଲେ ସମ୍ଭାଷଣ କିଛି ସମୟ,
ବିବାହର ଚିହ୍ନ    ନ ଦେଖନ୍ତେ ନୃପ
ମିଥ୍ୟା ବୋଲି ତାଙ୍କୁ ହେଲା ପ୍ରତ୍ୟୟ ।
ଏକାଳେ ଭୀମଜା    କେଶିନୀକି ଠାରି
ରଥହାଙ୍କେ କିଏ ବୋଲି ପୁଚ୍ଛନ୍ତେ,
ବୁଝାବୁଝି କରି    କହିବ ବୋଲି ସେ
ଗଲା ରଥପାଶେ ତୂର୍ଣ୍ଣେ ତଦନ୍ତେ ।

ପୁଚ୍ଛନ୍ତେ କେଶିନୀ    ଯାଇ ନଳପାଶେ
ଜାତି କୁଳ ନାମ ଭୈମୀ ଆଜ୍ଞାରେ,
ଉତ୍ତରରେ ନଳ    ବିଷମାବସ୍ଥାରେ
କୋପ ଅଶୋଭନ ସଦା ସଂସାରେ ।
ଆହୁରି ଆଶ୍ଚର୍ଯ୍ୟ    କରମ ଦର୍ଶନେ
ସେ ସବୁ ଲେଉଟି ଭୈମୀ ଆଗରେ,
କହନ୍ତେ ସେ ମନେ    ନଳ ବୋଲି ଭାବି
କହିଲେ ମାତାକୁ ଦ୍ରୁତ ସ୍ୱରରେ ।
"ଆସିଛନ୍ତି ନଳ    ଡକାଇ ଆଣନ୍ତୁ
ବୋଲି ଭାଷିବାରୁ ଅନୁଜ୍ଞା ପାଇ,
ଆଣିଲା ସଙ୍ଗରେ    କରି ନିବେଦନ
କେଶିନୀ ଚତୁରା ସେଠାକୁ ଯାଇ ।
କର୍କୋଟକ ନାଗ    ସ୍ମରଣ କରନ୍ତେ
ନିଜରୂପ ପାଇ ସେଠାକୁ ନଳ,
ଯାଇ ମିଶାମିଶି    ହେଲେ ପତିପତ୍ନୀ
ନଗର ଭିତରେ ପଡ଼େ ଚହଳ ।
ଶୀତାଂଶୁ ଉଦୟେ    ବିଭାବରୀ ଦେବୀ
ପ୍ରସନ୍ନତା ଲଭ କରେ ଯେମନ୍ତ,
ପତିଙ୍କ ମିଳନେ    ସେ ଭୀମନନ୍ଦିନୀ
ପ୍ରମୁଦିତ ଚିତ୍ତ ହେଲେ ତେମନ୍ତ ।
ମିଳିତ ହୁଅନ୍ତେ    ନଳ ଦମୟନ୍ତୀ
ଋତୁପର୍ଣ୍ଣ ନୃପ ଆଶିଷ ଦେଇ,
ନିଜ ରାଜଧାନୀ    ଅଯୋଧ୍ୟାକୁ ଗଲେ
ଅନ୍ୟ ସାରଥିକ ସଙ୍ଗରେ ନେଇ ।
ଶ୍ୱଶୁରାଳୟରେ    ରହି କତିଦିନ
ଅଶ୍ୱ ହସ୍ତୀ ସୈନ୍ୟ ଘେନି ସଙ୍ଗରେ,
ନିଜ ରାଜଧାନୀ    ନିଷଧକୁ ଯାଇ
ପୁଷ୍କରକୁ ନଳ ଡାକିଲେ ଖରେ ।
"ପୂର୍ବବତ୍ ପଣ    ରଖି ଆଉ ଥରେ
ପଶା ଖେଳିବାକୁ ଆସ ସତ୍ୱର,
ଜିତିଲେ ମୋ ରାଜ୍ୟ    ଦେବ ବାହୁଡ଼ାଇ
ହାରିଲେ ଗଜାଦି ହେବ ତୁମ୍ଭର" ।
ମଣିଷଶୋଣିତ    ବାଜିଥିଲେ ମୁଖେ
ମଣିଷ ଦର୍ଶନେ ବ୍ୟାଘ୍ର ଯେସନ,

ପାଶକ କ୍ରୀଡାରେ   ଲଗିଥିବା ମନ
  ନଳ ବଚନରେ ହେଲା ତେସନ ।
କ୍ରୀଡନେ ପୁଷ୍କର   ପାଟଛେମ ଗ୍ରବ
  ବସିଲା ପୁନଶ୍ଚ ଖେଳବା ପାଇଁ,
ହାରିଲା ଏଥର   ଫେରାଇଲା ରାଜ୍ୟ
  ପ୍ରତିକୂଳ ଚାରି ଏଥର ଧାଇଁ ।

ରାଜ୍ୟ ପାଇ ନଳ   ମହାମୋଦଭରେ
  ପୁଷ୍କରଙ୍କୁ ଗୃହେ କଲେ ପ୍ରେରଣ,
ଅମାତ୍ୟାଦ ସବେ   ହେଲେ ହୃଷ୍ଟ ଅତ
  ଅଣାଇଲେ ପତ୍ନୀ ସନ୍ତାନଗଣ ।

—★—



ଉଦ୍ଧବୋକ୍ତି ଶୁଣି ଦେବକୀନନ୍ଦନ,
ଯାଗକୁ ଯିବାକୁ ବଳାଇଲେ ମନ ।
୧ବସତନ୍ତୁ ପରି ବିଶଦ ଚାମର,
ମଧ୍ୟେ କୃଷ୍ଣ ରହି ଦିଶନ୍ତି ସୁନ୍ଦର ।
ମଣ୍ଡଳ ମୁକୁଟ ରତନେ ଖଚିତ,
କଣ୍ଠେ ୨କାର୍ତ୍ତସ୍ୱର କୁଣ୍ଡଳ ଶୋଭିତ ।
ନଖାଗ୍ର ଅରୁଣବର୍ଣ୍ଣ ଅଛି ଧରି,
୩ହିରଣ୍ୟାସ୍ତ୍ର ଦିଶେ ନ ଲିଭିଲା ପରି ।
ଅମ୍ବୁଜ ପରାଗ ସମୀରଣ ଆଣି,
ବୋଲଦେଇ ମୁଖେ ବଢ଼ାଏ କି ଠାଣି ?
ବିଭୂଷଣ ବିଭୂଷିତ କାନ୍ତତନୁ,
ଦେଖିଲେ ନଯାଏ ପାସୋରି କା ମନୁଁ ।
ହିରଣ୍ୟକଶିପୁ ବକ୍ଷବିଦାରକ,
ହରିଙ୍କ ଗମନେ ବାହାରି ବାହକ ।
ଘେରିଗଲେ ଆସି ହେବାରୁ ଖବର,
ଘନ ଘନ ଏଣେ ବାଜିଲା ୪ମୁଖର ।
ଯୁବକଏ ଆସି ଗୃହପଟେ ରୁଣ୍ଡ,
ସଙ୍ଗେ ଯିବାଲାଗି କରୁଛନ୍ତି ତୁଣ୍ଡ ।
ସୁଦର୍ଶନ ଚକ୍ର ରହିଛି ସ୍କନ୍ଧରେ,
ଧରିଲେ ୫ନନ୍ଦକ ଦକ୍ଷିଣ ହସ୍ତରେ ।
ପାଞ୍ଚଜନ୍ୟ ଶଙ୍ଖ ହେଲା ସନ୍ନିହିତ,
ସୁଦୃଢ଼ ନିର୍ମିତ ଧନୁକ ସହିତ ।
୬ପୁଷ୍ୟରଥେ ଶୌରି ଆରୋହଣ କଲେ,
ହେଲେ ଉପସ୍ଥିତ ଗରୁଡ଼ ସଙ୍ଗରେ ।
ପଟହ ପ୍ରଣାଦ (ଆନନ୍ଦଧ୍ୱନି )ଉପୁଜନ୍ତେ କ୍ରମେ
ଗରଜି ବାରିଧି ଅସିଲା କି ଭ୍ରମେ ।
ଦରଶନ କରି ହରିଙ୍କ ଗମନ
ଚଳିଲେ ସେ ଲାଜେ ନୁଆଁଇଁ କେତନ ।
୭ଶିଖିକଣ୍ଠ ପିଚ୍ଛ ଖଚିତ ସ୍ୟନ୍ଦନ,
ପୁରପ୍ରାନ୍ତ କ୍ରମେ କଲା ଉଲ୍ଲଙ୍ଘନ ।

୮ଅଷ୍ଟାପଦ ହାର ମାଧବ ବେକର,
କରେ ଆଲୋକିତ ଭୂଧରକନ୍ଦର ।
ଅଶ୍ୱମାନଙ୍କର ଅବାରିତ ଗତି,
କରନ୍ତି ଆବୃତ ଧୂଷଣ ସାରଥି ।
ଧୂଳି କ୍ରୀଡ଼ାରତ ୯ପୃଥୁକମାନଙ୍କୁ,
ଜନନୀଏ ଆସି ନିଅନ୍ତି କୋଡ଼କୁ ।

## ଦ୍ୱାରକା ବର୍ଣ୍ଣନା

୧୦ରୂପୀକର ଗଢ଼ା ୧୧ବପ୍ର ଦ୍ୱାରକାର
କରେ ଉଦ୍ଭାସିତ ସଦା ଆଶାକୁ (ଦିଗ)
ହିଲୁ ବଙ୍କନର ଶେଷ ସମ୍ପତ୍ତିକୁ
ଥୋଇଲେକି ଆଣି ୧୨ ଜନ୍ମୁ ଏଠାକୁ ।
୧୩ଉଡୁବୃନ୍ଦ ତୁଲ୍ୟ ଦିଶେ ଝଲମଲ
ଖଞ୍ଜା ଯାଇଥିବା ମଣି ନିକର,
ସମୀପସ୍ଥ ସିନ୍ଧୁ ଉତ୍ତାଳ ତରଙ୍ଗ
ଧୁଏ କି ଚରଣ ଠରକୁ ଥର ।
୧୪ଜାତବେଦ ପରି ଦିଶେ ଦାଉ ଦାଉ
ଛଣା କାଞ୍ଚନରେ ଗଢ଼ା ଅଟ୍ଟାଳି,
୧୫ଚନ୍ଦ୍ରକ ୧୬ଆଲେଖ୍ୟ ଆଙ୍କି କାରିକର
ଦେଇଥିଲା କରେ ମାଧୁରୀ ଢାଳି ।
୧୭ଭୂମିଭୃତଙ୍କର ନିବାସ ମନ୍ଦର
ଧରିଥିଲା କୋଳେ ମହା ନଗରୀ,
ପୁଣି ରହିଥିଲେ ଭୂମିଭୃତମାନ (ପର୍ବତ)
ସର୍ବେ ବିହରନ୍ତି ମୁଦେ ଶ୍ରୀହରି ।
ଶୁକାଙ୍ଗ ସଦୃଶ ମରକତ ନିର୍ମିତ
ରାଜପଥ କଡ଼ ସୌଧ ଅଳିନ୍ଦ (ବାରଣ୍ଡା)
ପାଶେ ପୁରନ୍ଧ୍ରୀଏ ଗଲାବେଳେ ଆସି
ଦେଖିଲେ ମୁରାରି ମୁଖାରବିନ୍ଦ ।
ଲବଙ୍ଗ କୁସୁମ ମାଳ୍ୟ ଶିରେ ଧରି,
ଶ୍ରୀଫଳାଭ୍ୟନ୍ତର ଜଳପାନ କରି ।

୧ ମୃଣାଳର ସୂତା ୨ ସ୍ୱର୍ଣ୍ଣ ୩ ହିରଣ୍ୟର ଅସ୍ତ୍ର (ଚକ୍ର) କାନ୍ତ-କୃଷ୍ଣ ୪ ଶଙ୍ଖ ୫ ଖଡ୍ଗ ୬ ହୀରରଥ ୭ ମୟୂରପୁଚ୍ଛ

୮ ସୁବର୍ଣ୍ଣ ୯ ଶିଶୁ ୧୦ ସୁନା ୧୧ ପାଚେରି ୧୨ବ୍ରହ୍ମା ୧୩ ତାରାସମୂହ ୧୪ ସୁନା ୧୫ ମୟୂର ୧୬ଚିତ୍ରପଟ ୧୭ ରାଜା

ଆର୍ଦ୍ରପୂଗ (ଗୁଆ) ଫଳ କରି ଆସ୍ୱାଦନ,
ଚମୂଚରମାନେ କରନ୍ତି ଗମନ ।
ପ୍ରବେଶନ୍ତେ କ୍ରମେ ପୟୋଧି ତଟରେ
ସରବେ ବିଶ୍ରାମ ନେଲେ ମୋଦଭରେ
୧ଅମ୍ଭୋଧି ତଟାଧିବାସୀଏ ଭରେ
ମୁରାରି ଦର୍ଶନ ଲଗି ମୁଦରେ
୨ଲତାନ୍ତସ୍ରକକୁ ଧରି ହସ୍ତରେ
ଗଳାଇଲେ ତାଙ୍କ କଣ୍ଠ ଦେଶରେ
ପଦରଜ ଶ୍ରୀପଦର
ନେଇ ଲଗାଇଲେ ଯେ ଯାହା କପାଳେ
କରି ସ୍ତବ ଥରଥର ।
ଉର୍ମି ରୂପ ବାହୁ ପ୍ରସାରି କରି
ଯାଚ୍ଛେଛି ନେଲା କି ସିନ୍ଧୁ ଶ୍ରୀହରି
୩ଅବ୍ଦ ଶବ୍ଦ ତୁଲ୍ୟ ଯାଇ କର୍ଣ୍ଣ
ଶୁଣି ଚମକନ୍ତେ ୪ଧ୍ୱଜୀ ବାରଣ (ହାତୀ)
ତକ୍ଷଣେ ବାହକଗଣ
ଆସି ସମ୍ଭାଳିଲେ ୫ତୂର୍ଣ୍ଣ ସେମାନଙ୍କ
କ୍ଷୁଧା କରି ନିବାରଣ ।
ରୈବତକ ଗିରି ପଡ଼ନ୍ତେ ନେତ୍ରରେ
ବାହାରିଲେ ସର୍ବେ ଆନନ୍ଦ ମନରେ ।
ଆକ୍ଷି ବୁଜି ବୁଜି ମନ୍ଦ ମନ୍ଦରେ
ଚଳିଛନ୍ତି ୬ଇଭେ ପ୍ରମୋଦଭରେ
ତା ପଛରେ ଥିଲେ ୭ଭୂତେଶଖର
ହାସ୍ୟପ୍ରଦଭଙ୍ଗେ ଚଳନ୍ତି ଖର
ପଶିଲେ ଗିରିଦେଶରେ
୮ହରିହରଙ୍କର ଖୁରାଘାତରେ
ଭୂରେଣୁ ନଭେ ପ୍ରସରେ ।
ନାନାବିଧ ୯ନଗେ ୧୦ନଗ ପୂରିତ
ଫଳପୁଷ୍ପଭରେ ସଦାନମିତ
ତରୁମାନଙ୍କର ମଡ଼ାଗ୍ରରୁଇ
ଦେଖି ଅଧ୍ୱଗାମୀ ଯାନ୍ତୁ ଓହ୍ଲାଇ

୧ ସମୁଦ୍ର ୨ ପୁଷ୍ପମାଳ ୩ ମେଘ ୪ ଅଶ୍ୱ ୫ ଶୀଘ୍ର
୬ ହାତୀମାନେ ୭ ଗଧ. ୮ ଘୋଡ଼ା ଗଧ ହରି-ଗଧ
୯ ବୃକ୍ଷ ୧୦. ପର୍ବତ

ନିର୍ମାଣି ତହିଁ ଶିବିର
ଆଶ୍ରୟ ନେବାକୁ କେଶବ ସହିତ
ସରବେ ହେଲେ ଅସ୍ଥିର
୧ପିଚୁମର୍ଦ୍ଦ ପଲ୍ଲବ ଖାଇବା ଲାଗି
ଶିରୋଧି ଟେକି ଉଷ୍ଟ୍ର ହେଲା ସରାଗୀ
ବଂଶାଂକୁର ଶ୍ୟାମ ମରକତ ମଣି
ଖଣିମାନ କିଏ ପାରିବ ଗଣି ।
ଧରିଅଛି ଗିରି ଚତୁର୍ଦ୍ଦିଗରେ
ଆସି ସ୍ଫଟିକରେ ଅର୍କ କରରେ
ହଏ ଆଖି ଝଲସାଇ
ଦୁର୍ବାଦଳ ଯୁକ୍ତ ହୋଇ କୁକ୍ଷି ଦେଶ
ଦେଉଅଛି ପ୍ରଭା ବଢ଼ାଇ ।
୨ବିଟପ ବିସ୍ତାରି ୩ବନସ୍ପୀଦଳ
୪ପର୍ଣ୍ଣ ପରିପୂର୍ଣ୍ଣ ହରଷେ ଶ୍ୟାମଳ
ନବ ମାପବନ ପୁଷ୍ପ ୫ଭୂଷିତ
୬ଚଞ୍ଚରୀକାବଳୀ ଦେଖି ମୋହିତ
ଗଲେ ସମୀପକୁ ଚିପି
ମଧୁ ପିଇ ପିଇ ପେଟ ପୂର୍ଣ୍ଣ କରି
ଗୁହାଇଲେ ରାଗି ହସି ।
ନବନିମ୍ନଗା ଯାଇ ବାହକ ଗଣ
ପଶୁ ସଙ୍ଗରେ କଲେ ତୃଷା ହରଣ ।
ଇଭକୁଳ ଆନୋଳି ହସ୍ତ ଅଗ୍ରରେ
ନୀର ଆଣି ଇଞ୍ଚିଲେ ଯେଝା ଅଙ୍ଗରେ
୭ଗମ୍ଭୀରବେଧୀ ନିଦେଶ ଅଙ୍କୁଶାଘାତ
ପାଇଲେହେଁ ନମାନି ହୁଏ ଉତ୍ପାତ ।
୮ଶୁକ୍ଳାଂଶୁକପଟ ହାବ ନିର୍ମିତ
୯ଚନ୍ଦ୍ରାକାର ନଭ ଅତି ଶୋଭିତ
ନରାଧିପ ତମ୍ବୁ ଗୃହପଟରେ
ଘେରିଛନ୍ତି ଗଜ ଅତି ମୋଦରେ
ବେଳେ ବେଳେ ଧ୍ୱନି ଶୁଣ୍ଡ

୧ ନିମ୍ବପତ୍ର ୨ ଶାଖା ୩ ବୃକ୍ଷ ୪ ପତ୍ର ୫ ଶୋଭିତ
୬ ଭ୍ରମର ଶ୍ରେଣୀ ୭ ମଉଆଳ ହାତୀ ୮ ଶୁଭ୍ରବସ୍ତ୍ର
୯ ଚନ୍ଦ୍ରଙ୍କ ଆକାର ସଦୃଶ୍ୟ

ଥୋଇଲେ ଆଗରେ    ଇକ୍ଷୁ କାଣ୍ଡ ଖଣ୍ଡ
ଦଅନ୍ତ ସେଗ ଫେପାଡ଼
ଅବଗାହନାନ୍ତେ ତୁରଗଗଣ
୧ଦନ୍ତଚର୍ବିତ ଚଣକ ଧାରଣ
କରି ଲେଉଟିଲେ ବିଶ୍ରାମ ସ୍ଥାନେ
ଅଶ୍ୱପାଳ ସଙ୍ଗେ ଦିନାବସାନେ
ହରିତ ତୃଣକୁ ଚରି
ଗ୍ରୀବାରେ ଲୋଳ    ୨କିଙ୍କିଣୀ ସହ
୩ଦନ୍ତୁଲିକା ମୁଖେ ଧରି ।
ଶଇଳ ମାଧୁସ୍ୱରେ ଦେଖି ଘନ ଘନ
କୃଷ୍ଣ ମନେ ହେଲ ବିସ୍ମୟ ଉତ୍ପନ୍ନ
ହସ୍ତିନାକୁ କାଲି ଯିବା ବାଟ ଜାଣି
ସୁମେରୁ ଶୃଙ୍ଗକ ରାଜବଜ ଆଣି
ଦେଇଛନ୍ତି ତୋଳି ବାସଗୃହକୁଳ
ହୋଇଛନ୍ତି ଯହିଁ ସବୁ ଏକଠୁଳ ।

## ସନ୍ଧ୍ୟା

୪ଅଂଶୁଧାରକର ଅସ୍ତାଚଳରେ
ଲୁଚି ଯିବାକ୍ଷଣି ମେଘ ମାଳରେ
୫ଶକୁନ୍ତ ବିତତି ପଶି ୬ଉଲ୍ଲାସେ
ଶାବଙ୍କୁ ଖୁଆଇ ଦେଲେ ୭ଉଲ୍ଲସେ
ଆଣିଥିବା ଖାଦ୍ୟତକ
୮ଚକ୍ରଦମ୍ପତିଙ୍କ    ଏ ପ୍ରଦୋଷକାଳ
ହେଲଣି ଦୁଃଖ ଦାୟକ ।
ଗୁହାଭ୍ୟନ୍ତରୁ ତମଃ ପଟଳ
ଆସି ଘୋଡ଼ାଇଲା ଏ ଭୂମଣ୍ଡଳ
ପଦ୍ମିନୀ ବଦନ ଦିଶେ ମଳିନ
ତେଜୋନିଧି ରବି ହୁଅନ୍ତେ ଲୀନ
ଦୈବ ହେଲେ ପ୍ରତିକୂଳ

ପାରିବ କେ ଏଡ଼େ    ତା ଦାଉ ଜଗତେ
ସରେଇଲେ ଅର୍ଥ ସମ୍ପୁନ ।
ତମୋବ୍ୟାପ୍ତି ୧ତମୀ ନକ୍ଷତ୍ରେ ପାଇ
ଫୁଟିକଲେ ନଭେ ଜ୍ୟୋତି ଦେଖାଇ
୨ଶୀତରଶ୍ମି ପ୍ରାଚୀ ଦିଶେ ଉଦିତ
ହୁଅନ୍ତେ ଧରଣୀ ଶୁଭ୍ରେ ପ୍ଲାବିତ
ତମଗଲା ଅପସରି
ବୀଚି ଜାଲ ପରି    ତଳ ଉପରକୁ
ନର୍ତ୍ତୁନ୍ତି ଲୋକଙ୍କୁ ହରି ।
୩ପ୍ରାଚୀ ଲଲାଟରେ ଚନ୍ଦନ ବିନ୍ଦୁ
ପରି ଦିଶୁଥିଲା ଏକାଳେ ଇନ୍ଦୁ
କୁମୁଦିନୀ ବାଳା ସର ଭିତରେ
ଅନାଇଁ ହେଲେକ ପ୍ରେମାଦଭରେ
୪ତୁହିନଦୀଧିତିଭ୍ରାନ୍ତ
ସୌଦାମିନୀ ବେଗେ    ତା ଅଙ୍ଗ ପ୍ରବେଶେ
୫କୁଣ୍ଡେ ମୋଟ କଲା ସ୍ଥିତ ।
୬ଉଷ୍ଣାଂଶୁ ପୀଡ଼ିତ ୭ଓଷଧିପତି
କରନ୍ତେ କ୍ଷୋଭିତ ୮ବାହିନୀପତି
ଊର୍ମିଭୁଜ ଟେକି ବାରିକୁ ବାର
ପ୍ରଳୟ ଗର୍ଜ୍ଜନ କରୁଥିବାର
ଶୁଭିଲା ରାତି ଭିତରେ
ଇନ୍ଦୁମଣ୍ଡଳକୁ    ଗ୍ରାସ କରିବାକୁ
ପାଞ୍ଚିଲା କି ରୋଷଭରେ ?
ନିଶା ଅବସାନେ    ଉଠି ବୈଷ୍ଣବକେ
ନିଦ୍ରାଭଙ୍ଗ ଲାଗି ମାଧବଙ୍କର
ମୃଦଙ୍ଗ ବଜାଇ    ହରିନାମ ଗାଇ
କଲେ ଶିବଧ୍ୱନି ଥରକୁଥର
ସେହି ମଞ୍ଜୁଘୋଷ    ପଡ଼ନ୍ତେ କାନରେ
ତତ୍ପର ହୋଇ ୯ନୃପପ୍ରବର
୧୦ଶୟନୀୟୁ ଉଠି    ପ୍ରାତଃକୃତ୍ୟ ସାରି
ଦେବା ଅର୍ଚ୍ଚନ ଲାଗି ହେଲେ ତତ୍ପର

୧ ହ୍ରେଷାଧ୍ୱନି ୨ କ୍ଷୁଦ୍ରଘଣ୍ଟି ବେକରେ ଝୁଲୁଛି
୩ ମୁଖରେ ଲଗାମ ୪ ସୂର୍ଯ୍ୟ ୫ ପକ୍ଷୀମାନେ
୬ ଆନନ୍ଦରେ ୭ ଚଞ୍ଚଳ ୮ ଚକ୍ରବାକ ପକ୍ଷୀ

୧ ରାତ୍ରି-ନକ୍ଷତ୍ରମାନେ ଅନ୍ଧକାରବ୍ୟାପ୍ତ ରାତ୍ରି ପାଇ
୨ ଚନ୍ଦ୍ର ୩ ପୂର୍ବଦିଗ ୪ ଚନ୍ଦ୍ର ୫ ଫୁଟିଲା ୬ ସୂର୍ଯ୍ୟ
୭ ଚନ୍ଦ୍ର ୮ ସମୁଦ୍ର ୯ ନୃପଶ୍ରେଷ୍ଠ ୧୦ ଶଯ୍ୟାରୁ

## ୩ୟ ସର୍ଗ

### ପ୍ରଭାତ

ପ୍ରସବିଲା କରେ ୧ବାରିଧିପତି,
ଧ୍ୱାନ୍ତଧ୍ୱଂସକାରୀ ୨ସପ୍ତସପ୍ତି ।
ଦିଶଇ ଅରୁଣ ଶୁଭ୍ର ଶରୀର,
ହୋଇଅଛି ବୋଳା ଅବା ରୁଧିର
ତମ ସଙ୍ଗେ କଳି କରି
ସର୍ବାଙ୍ଗେ ୩ଅଙ୍ଗଜ ଝରୁଅଛି ପରି
କ୍ଷତ ବିକ୍ଷତରୁ ଝରି ।
ପ୍ରାଭାତିକ ବାୟୁ ବହିଲାଣି ଧୀରେ,
ଭଙ୍ଗି ନାହିଁ ନିଦ ଯେ ଥିଲେ ଶିବିରେ ।
କମଳ ବିକଚ ପଡ଼ି ରବିକର,
୪ରଥାଙ୍ଗଦମ୍ପତି ଭେଟି ପରସ୍ପର ।
୫କ୍ଷପାକ୍ଷୟ ପ୍ରାପ୍ତ ତାରକା ବିଲୟ,
ଶୋକାକୁଳ ଇନ୍ଦୁ ହେଲାଣି ଅଥୟ ।
୬ଅବଲକ୍ଷ ବପୁ ଦିଶିଲାଣି ମ୍ଳାନ,
ଓଲୋମ ବିଲୋମ ବିଧିର ବିଧାନ ।
ହୁଅନ୍ତେ ଅସହ୍ୟ ଭାସ୍କର ମୟୂଖ,
ଶଶିଲ ବିବର୍ଣ୍ଣ କୁମୁଦଙ୍କ ମୁଖ ।
୭ଅନବସ୍ଥବାୟୁ ବହି ନିରନ୍ତର,
ଦିଏ ଦୋହଲାଇ ପ୍ରସୂନ ପ୍ରକର ।
ଉପହସିତ କି ଭ୍ରଷ୍ଟଶ୍ରୀ ହିମାଂଶୁ,
ପ୍ରାଚୀ ଲଲାଟରେ ଦର୍ଶନେ ଉଷ୍ଣାଂଶୁ ।
ଉଦୟାଦ୍ରି ଶିରେ ତରୁଣ ତପନ,
ଦର୍ଶନେ ଉତ୍କଣ୍ଠ ନହେବ କା ମନ ।
ସୁଧାଂଶୁ କରେ ଯା ଥିଲା ଧବଳିତ,
୮ଭାନୁ ୯ଭାନୁ ବାଜି ହେଲା ଅରୁଣିତ ।
୧୦ହରିଦଶ୍ୱ ତେଜିଁ ଉଦୟ ପର୍ବତ,
ନିଜ ବୃଦ୍ଧି ଲାଗି ହେଲେଣି ଉଦ୍ୟତ ।

୧ ସାଗର ୨ ସୂର୍ଯ୍ୟ ୩ ରକ୍ତ ୪ ଚକ୍ରବାକ ଚକ୍ରବାକୀ
୫ ରାତ୍ରି ୬ ଶୁଭ୍ର ୭ ଅସ୍ଥିର ୮ ସୂର୍ଯ୍ୟ ୯ କିରଣ

ସରୋଜ ଆବଦ୍ଧ ଷଟ୍‌ପଦ ପ୍ରକର,
ବନ୍ଧନରୁ ମୋକ୍ଷ ବାଞ୍ଛା ଭାନୁକର ।
୧ଦିବସନାୟକ ବୀକ୍ଷଣେ ଉଲୂକ,
ଚରିହରି ମୂଢ଼ ପାଲଟିଲା ମୂକ ।
ବିହଙ୍ଗ ରାବ ଶୁଭେ ଘନ ଘନ,
ଭାଙ୍ଗିଗଲା ନିଦ କୃଷ୍ଣଙ୍କ ବଦନ ।

### ବସନ୍ତ

ପ୍ରବେଶ ଧରାରେ ମଧୁ ସମୟ,
ନାନାଜାତି ଫଳ ପୁଷ୍ପନିଚୟ ।
ଧରି ଉପଗତ ପ୍ରକୃତି ତ୍ୱରେ,
ଭେଟି ଦେବା ଲାଗି କଂସାରି କରେ ।
୨ନବ ପଲ୍ଲବ ପଲାଶ
ଦେଖାଏକି ଛଟା ଆବୋରି ଅଜରେ୩
ଲୋହିତ ୪ଲତାନ୍ତ ବାସ ?
ଆଣି ସମୀରଣ ସରୋଜ ରଜ
ବୋଳି ଦେଲାକିରେ ଶ୍ରୀଅଙ୍ଗ ବ୍ରଜ (ସମୂହ)
କୁରୁବକ ଫୁଟିଲ ମଧୁପଗଣ
ଧବଳରେ ନୀଳବର୍ଣ୍ଣ ସ୍ଫୁରଣ
କାଞ୍ଚନ କାନ୍ତି ଚମ୍ପକ
ଫୁଟି ସଉରଭ କଲାରୁ ବିସ୍ତାର
ସରବେ ତାରି ସ୍ତାବକ ।
ମଧୁ ସ୍ୱଞ୍ଚା ପ୍ରିୟ ୫ସରଘାପନ୍ତି,
୬ଯାର ସହକାର ଖୋଜି ବୁଲନ୍ତି
କୁହୂକଣ୍ଠ ଆମ୍ରି ଆଗୁଁ ସେ ଡାଳେ
ଲୁଚି କୁହୁରିବେ ତା ବାର୍ତ୍ତା ଡାଳେ
ଶୁଣି ତା ମଧୁର ସ୍ୱନ
ଜୀବ ଜଗତରେ ତା ପାଶେ ଯିବାକୁ
ନହେବ କାହାର ମନ ?
ମାଧବୀ ଲତାକୁ କରି ଆଦର
ଉଡ଼ି ଯାଉଛନ୍ତି ଥରକୁ ଥର

୧ ସୂର୍ଯ୍ୟ ୨ ନୂତନ ପତ୍ରଯୁକ୍ତ ପଲାଶ ୩ ସୂର୍ଯ୍ୟ
୪ ଶରୀରରେ ୫ ମହୁମାଛି ୬ ବଉଳ

ଭୃଙ୍ଗାବଳୀ ମୋଦେ କରି ଗୁଞ୍ଜନ
ମକରନ୍ଦ ଶୋଷି ଦେଇ ଚୁମ୍ବନ
ବାହୁଡ଼ନ୍ତି କ ବେଗରେ
ଛଡ଼ିଲ ଗତିକ    ଯୋଡ଼ି ଦେଲା ପର
ପ୍ରଣତ ହୁଏ ମନରେ

## କୃଷ୍ଣଙ୍କ ପ୍ରସ୍ଥାନ

ପ୍ରସ୍ଥାନ ସମୟୁ ଦେବାରଜନୀ
ଶୟନରୁ ଉଠି ଶାର୍ଙ୍ଗପାଣି ।
୧ତାର୍କ୍ଷ୍ୟ ୨ତାର୍କ୍ଷ୍ୟ ୩ନାଗ ୪କ୍ରମେଳକତତି,
ଆଣିବାକୁ ଆଦେଶିଲେ ଝଟତି
ନରାୟତେ ଆସିଖରେ
ଶ୍ରୀଚରଣରେଣୁ    ଲଗାଇ ମସ୍ତକେ
ବନ୍ଦିଲେ ଭକତିଭାରେ ।
ଶୁଭ ଅନର୍ଗଳ ଶଙ୍ଖ ନିସ୍ୱନ
୫ପଟହନାଦରେ କମ୍ପିତ ବନ
କରେଣୁତୁରଗ ବୃଂହିସ୍ୱର
କଟନ୍ତେ ଭେଦିଲା ଗିରିକନ୍ଦର
ସବୁ ହୁଣ୍ଡି ଏକଠାରେ,
୬ଶୃଙ୍ଗକଳକ ୭ଖର    ସ୍ୱର ବୋଝି ବୋଝି
ଗଲା ସମ୍ଭବ୍ୟାହାରେ ।
ବୃହତ ୮ବିଷାଣଦ୍ୱୟ ହଲାଇ
ଯାଉଛନ୍ତି ପଛରେ ବୃଷ ଫୁଲାଇ
କରି ଚିତ୍କାର ଗଜବୃଂହିତ
୯ଶିବର ବାହନ ହେତୁଁ ଗର୍ବିତ
ଶ୍ରେଷ୍ଠ ଲୋକ ସିନା ଭିତର
ବଡ଼ଲୋକ ପାଶେ    ଅରଜିଜାବଳୀ
କହନ୍ତି କଥା ଗରବେ ।
ଦେବକୀନନ୍ଦନ ଆରୋହି ରଥେ
ଗଲେ ବହୁଦୂର ଅରଣ୍ୟ ପଥେ
୧୦ମହାମାତ୍ରେ ବସି ଗଜ ପୃଷ୍ଠରେ
୧୧ସ୍ୟନ୍ଦନ ପଛରେ ଗୋଡ଼ାନ୍ତି ଖରେ
ଉଡ଼େ ଧ୍ୱଜା ଫରଫର

୧ ରଥ ୨ ଅଶ୍ୱ ୩ ହସ୍ତୀ ୪ଓଟ ୫ ଢୋଲ ୬ ଓଟ
୭ଗଧ ୮ଶିଙ୍ଗ ୯ଶିବ କରେଣୁ ହାତୀ, ତୁରଗ-ଘୋଡ଼ା
୧୦ ମାହୁନ୍ତମାନେ ୧୧ ରଥ

ତା ଶୋଭା ଦର୍ଶନ    କରିବାକୁ ଅବା
ହୁଂକାରି ଉଠେ ବାନର ।
୧ସୈନିକମାନଙ୍କର ଦେଖି ପ୍ରତାପ
ଦୂରକୁ ପଳାନ୍ତି ୨ଶ୍ୱାପଦ କଳାପ
ଜନ୍ତୁ ବୃନ୍ଦ ଛାଡ଼ି କାନ୍ତାର
ଶୁଣୁଥିଲେ ହରି ସାରୀ ମଞ୍ଜରି
କ୍ରମେ କ୍ରମେ ଗିରି ପଥ ।
ଅତିକ୍ରମ କରି    ପ୍ରବେଶିଲେ ଯାଇ
କନଜନପଦେ ତାଙ୍କ ରଥ ।
୩ଗ୍ରାମ୍ୟଘୋଷଜନ ଗ୍ରଜ ୪ବ୍ରଜରେ
ଦୁହୁଁଥିଲେ ଗାଈ କ ଚଉବରେ
ଆସୁଥିବା ଦେଖି ଜଗନ୍ନାଥ
ଗୋପାଙ୍ଗନା ସହ ୫ଗୋପାଳବ୍ରାତ
ଶ୍ରୀପଦେ ନୁଆଁଇଲେ ଶିର
ବନ୍ଦି ବ୍ରଜେନ୍ଦ୍ରଙ୍କୁ    ଦେଇଥିଲେ ପାନେ
ଦୁହିଁଥିବା ସବୁ କ୍ଷୀର ।
୬ହୁନନ୍ଦିନୀମାନେ ୭ରୋହିଣୀ ସହ
ବତ୍ସାନ୍ତେ ନେଇ ଦେଖି ୮ପଟହ
ଅନେ ଜଳଲିହ ଡାକ ଛିଣ୍ଡାଇ
ଲଞ୍ଜ ଟେକି ଟେକି ଗଲେ ପଳାଇ
ଘୋଟେ କଲେ ରହ ରହ
ନଗ୍ନିକରେ    ଯାଉଥିଲେ ଧାଇଁ
ଅତିବ୍ୟଗ୍ରେ ଗୋପବଧୂ ।
ବ୍ରୀହି କେଦାରରୁ ଅପସାରଣେ
କଲମବନେ କାଳ ଗୋପିକାଗଣ
ଗାଉଥିଲେ ଗୀତ ମଧୁର ସ୍ୱରେ
ପଡ଼ନ୍ତେ ତା ଯାଇ କୃଷ୍ଣ କର୍ଣ୍ଣରେ
ରଖିଦେଲେ ରଥ ଦଣ୍ଡେ
ଦର୍ଶନକୁ ଆସି    ଦେଲେ ଗୋପାଙ୍ଗନା
ଇକ୍ଷୁଦଣ୍ଡ ଖଣ୍ଡେ ଖଣ୍ଡେ ।
ପୁଣ ଦନ୍ତଯୁକ୍ତ ଏକବାରଣ
ଜନମାର୍ଗ କଲା ୯ଚତୁର୍ଦ୍ଦିଶି ବାରଣ

୧ସୈନ୍ୟମାନଙ୍କର ୨ହିଂସ୍ର ଜନ୍ତୁ ସମୂହ ୩ଗାଆଁର
ଗଉଡ଼ ସମୂହ ୪ ଗୋଷ୍ଠରେ ୫ ଗଉଡ଼ ସମୂହ
୬ ବାଛୁରି ୭ ଗାଈ ୮ ଆଡମ୍ବର ୯ ଶୀଘ୍ର

ଭଙ୍ଗି ଦ୍ରୁମମାନ ମାର୍ଗ ପାର୍ଶ୍ୱର
ସାଙ୍ଗେ ସାଙ୍ଗେ ଆସି [୧]କଳପବର
ଦେଖି ତାହାର ଉତ୍ପାତ
କରିବାକୁ ତାକୁ   ଅନୁଗତ ତାର
କଲା ଅଙ୍କୁଶେ ଆଘାତ ।
ମହୀଧରାଶ୍ରିତ ଅସଂଖ୍ୟ ଗଜ
କଲେ ଭଙ୍ଗାଭଙ୍ଗ ପାଷାଣ [୨]ବ୍ରଜ
[୩]ଅଧ୍ୱଗାମୀମାନଙ୍କର ଗମନେ
ଅଟକ ନଗଲ ଭଲ [୪]ସ୍ୟନ୍ଦନେ
ହରି ଆସୁଥିବା ଜାଣି
ପଥ ପାରୁଶରେ   ହୋଇଛନ୍ତି ଠିଆ
ନେବାକୁ ବା ରଥ ଟାଣି ।
ହରିବଳ, ମାର୍ଗସ୍ଥିତ ଭୂଧର
କଲେ ଅତିକ୍ରମ ଅତିକୁଥର
ଦୁର୍ଦ୍ଦାନ୍ତ ବାରଣ ଧରି ସଙ୍ଗରେ
ପ୍ଲବଙ୍ଗମ ଦଳ ଦେଖି ପଥରେ
କ୍ଷମାରୁହ ପରେ ବସି
ଏ ଡାଳୁଁ ସେଡାଳ   ପଡ଼ୁଛନ୍ତି ଡେଇଁ
ତଳକୁ କେବେ ନ ଖସି ।
[୫]ଭାସ୍କରତନୟା [୬]ଅନ୍ତକସ୍ୱସା
ଯମୁନା ଦର୍ଶନେ କୃଷ୍ଣ [୭]ତରସା
ପାରି ହେବାପାଇଁ ସେନାସମ୍ବହ
[୮]ହେମେଳ [୯]ବାରଣ [୧୦]ଖରାଶ୍ୱ ସହ
ଆସନ୍ତେ ତଟକୁ ତାର
ଊର୍ଦ୍ଧ୍ୱ ପ୍ରସାରିତ   କରି ଗ୍ରୀବାମାନ
ପାଣୁ ଆଣୁ ହେଲେ ପାର ।
ଜନାଧିପନାଥ ଦର୍ଶନେ ଦାସେ (କେଉଟ)
ଛାଇଦେଶେ ତରି ଥୋଇ ଉଲ୍ଲାସେ
ବସାଇଲେ ନେଇ ବାହ୍ମଣବର୍ଗ
[୧୧]କୈଟଭଜିତଙ୍କୁ କରି ବସର୍ଗ
ଅନ୍ୟ ନାବଟିଏ ଆଣି

୧ ମାତଙ୍ଗଶ୍ରେଷ୍ଠ ୨ ସମୂହ ୩ ବାଟୋଇ ୪ ରଥ
୫ ସୂର୍ଯ୍ୟଙ୍କ ଝିଅ ୬ ଯମଙ୍କ ଭଉଣୀ ୭ ଶୀଘ୍ର ୮ ଓଟ
୯ ହାତୀ ଅଶ୍ୱ, ଘୋଡା ୧୦ ଖର-ଗଧ ୧୧ କୃଷ୍ଣ

କଲେ ପାରି ତାଙ୍କୁ   ବସାଇ ତହିଁରେ
ନ ନେଇ କଟ୍ଟ ମେଲଣି ।

## ୪ଥ ସର୍ଗ

ଯମୁନାତରଣ   କୃଷ୍ଣଙ୍କର ଶୁଣି
[୧]ଅନୁଜନ୍ମ ସହ ଧର୍ମନନ୍ଦନ
ପାଛୋଟି ନେବାକୁ   ଭେଟସ ବାଟକୁ
ପଟୁଆରି ସହ କଲେ ଗମନ ।
ମାରୁତ କମ୍ପିତ   ଧ୍ୱଜ ଆରୋପିତ
ଧ୍ୱଜାଗ୍ରରେ ବସି ବହୁ ନୃପତି
କୃଷ୍ଣ ଆଗମନ   ବାରତା ଶ୍ରବଣ
କରି ମୋଦଭରେ ଗଲେ ତଡ଼ିତ ।
ବାରିଧର ଶବ୍ଦ   ପରିମାନାବଧି
ବାଇଦ ବାଜୁଛି ରାଜ ଦାଣ୍ଡରେ
ଅସୁରାରି ହରି   ଦର୍ଶନେ ଚଢ଼ିଲେ
ବହୁ ନରନାରୀ ସୌଧଶିଖରେ ।
ଓହ୍ଲାଇବା ବେଳେ   ପାଣ୍ଡୁସୁତେ ରଥୁଁ
ଦୂରରୁ ମୁରାରି ଦର୍ଶନ ପାଇ
ସେମାନଙ୍କୁ ଜବେ   ଭୁଜ ପଞ୍ଜରରେ
କଲେ ଆଲିଙ୍ଗନ ପୂର୍ବରୁ ଓହ୍ଲାଇ ।
ହର୍ଷୋତ୍ଫୁଲ୍ଲ ନେତ୍ରେ   ଯାଦବ କୌରବ
କଲେ ଆଲିଙ୍ଗନ ପରସ୍ପରକୁ
କ୍ଷିତିପତିତତି   ହେଲେ ଆନନ୍ଦିତ
ଦରଶନ କରି ସମାରୋହକୁ ।
[୨]ଫେନକୂଟ ତୁଲ୍ୟ   ଚାମରକୁ ଶ୍ୟାମ
ଉନ୍ମତ୍ତବାରଣକୁ ବାସବ ଧରି (ଅର୍ଜୁନ ଛତ୍ରଧରି)
ଆରୋହନ୍ତେ ରଥେ   ପୁରି ଅଭିମୁଖ
ଧର୍ମରାଜ ସଙ୍ଗେ ଗଲେ ଶ୍ରୀହରି ।
ଏ ଅନ୍ତେ ନକୁଳ   ସହଦେବ ସହ
[୩]ଅନ୍ତେବାସୀ ଧରି ଗଲେ ପଛରେ
ଉଭୟ ପକ୍ଷର   ବାହ୍ମଣଏ ମିଶି
ପ୍ରବେଶିଲେ ପୁରେ ସମାରୋହରେ ।

୧ ସାନଭାଇମାନଙ୍କ ସହ ୨ ଫେଣ ସମୂହ ୩ ଶିଷ୍ୟ

ମାୟାସୁର କୃତ ୧ଏ ମଖଶାଳାକୁ
ଦେଖି ଦାନବାରି ହରି ଚକିତ
ବାସବ ଭୁବନ ଆଣି ଥୋଇଲେକି
ବୋଲି ତାଙ୍କ ଚିତ୍ତେ ହେଲା ପ୍ରତୀତ ।
ତେଜପୁଞ୍ଜ ଦ୍ୱାରା ହୋଇ ବିରାଜିତ
ନେତ୍ରାନନ୍ଦକର ହରି ପାଣ୍ଡବ
ସଭାଗୃହ ପାଶେ ଓହ୍ଲାଇଲେ ଯଥା
ନଭେ ଅବତୀର୍ଣ୍ଣ ଶଶୀ ହରିଗର୍ବ ।
୩ହାଟକ ଇଷ୍ଟକା ନିର୍ମିତ ସଦନ
କରେ ଉପହାସ ଦେବ ନିକେତନ
ଧର୍ଣନାନନ୍ତର ହେଲେ ଉପବିଷ୍ଟ
ଧର୍ମରାଜ ସହ ମଧୁସୂଦନ ।
ଧର୍ମାକ୍ତ ଶରୀର ଅନୁଭବେ ସୁଖ
ମୃଦୁ ପ୍ରଭଞ୍ଜନ ସ୍ପର୍ଶେ ଯେସନ
ଦେବକୀନନ୍ଦନ ଆଗମନ ଯୋଗୁଁ
ପୁଲକିତ ରାଜକୁଳ ତେସନ ।
୪ବିଳାସିନୀଙ୍କର ନୃତ୍ୟ ପ୍ରଦର୍ଶନେ
କଲା ମୁଗ୍‌ଧ ମନ ମାଧବଙ୍କର
ମଧୁର ଆଳାପେ ପାଇଗଲେ କ୍ଷପା (ରାତ୍ର)
ମଖସ୍ଥାନେ ଧର୍ମନନ୍ଦନଙ୍କର ।

## ଯଜ୍ଞ ଆଲୋଚନା

"କହୁଛନ୍ତି ଯୁଧିଷ୍ଠିର ଶୁଣହେ ମାଧବ,
ଗୁଣାକର ଯୋଗୁଁ ତୁମେ ପର ମିଥ୍ୟାସ୍ତବ ।
ଶୁଣିବାକୁ କେତେବେଳେ ନ ବଳଇ ମନ,
ତୋଷୁଛ ସନ୍ତତ କହି କୋମଳ ବଚନ ।
ଭୂୟସୀ ମହିମା ତବ କେ ଜାଣି ନପାରେ,
ମୋହଗ୍ରସ୍ତ ହୋଇ ଲୋକେ ଚଳନ୍ତି ସଂସାରେ ।
୫ସପ୍ତତନ୍ତୁ କରିବାକୁ ମାନସ ବଳାଇ,
ତବ ଆଜ୍ଞା ପାଇବାକୁ ଆଣିଛୁ ଡକାଇ ।

ତୁମ ଅନୁଗ୍ରହେ ଧର୍ମ କରିଛୁ ଅର୍ଜନ
ନଦେଲେ ଆଦେଶ କିଛୁ କରିବ ବର୍ଜନ ।
ଦେଲନାହିଁ ଅଦୋଷୀକି କେତେବେଳେ ଦଣ୍ଡ
ନକର ପସନ୍ଦ ଯାର କର୍ମ ଲଣ୍ଡଭଣ୍ଡ ।
ଧାନ୍ୟାଦି ଶୋଧନେ ୬ଶୂର୍ପ ଆବଶ୍ୟକ ଯଥା
ନିର୍ଦ୍ଦୋଷ ଇଷ୍ଟି ସାଧନେ ତୁମେ ଲୋଡ଼ା ତଥା ।
ବାସର ଶ୍ରୀ କିଏ କେବେ କରିଛି ବିନାଶ
୭ସପ୍ତସପ୍ତିର ନଭେ ଘଟିଲେ ବିକାଶ ।
କ୍ଷତ୍ରଧର୍ମ ଅନୁଯାୟୀ ବଢ଼ିଥିବା ବିତ୍ତ
ଧର୍ମକାର୍ଯ୍ୟେ ନିଯୋଗ ତା କରିବା ଉଚିତ ।
ଭରୁଅଛୁ ବର୍ତ୍ତମାନ ମୋର ଏହି ଯାଗ
ନିର୍ଦ୍ଦୋଷେ ତୁଟିବ ଥିଲେ ତବ ଅନୁରାଗ ।
ଅନଳରେ ଯାହା ଲୋକେ କରନ୍ତି କ୍ଷେପଣ
ଅନଳ ମୁଖରେ ତୁମ୍ଭେ କର ତା ଭକ୍ଷଣ" ।
ଏହାଦନ୍ତେ ୮ବିଷ୍ଟରଶ୍ରବା କହିଲେ ସେପରି
ନିର୍ବିଘ୍ନରେ ମଖ ହେବ ସମାପ୍ତ ଯେପରି ।
"୯ନୟ ମହିମାରୁ ହୋଇଅଛି ତେଜ ତବ
ସ୍ୱୟଂ ତୁମ୍ଭେ ବଢ଼ାଇଛ ଅତୁଳ ଗୌରବ ।
ଶୁଦ୍ଧ କ୍ଷତ୍ରିୟ ଭାବରେ ଆଗରେ ବିଜୟ (ଅର୍ଜୁନ)
ସେଥିରେ ସମୀପେ ତବ ସର୍ବକାର୍ଯ୍ୟ ଜୟ
କରିବ ନିଯୁକ୍ତ ତୁମ୍ଭେ ଇଚ୍ଛା ଅନୁସାରେ
ଭିନ୍ନଭାବ କେତେବେଳେ ନରଖି ମୋଠାରେ ।
ଲୁଣ୍ଠନରେ ନ କରିବ ଯେହୁ ଏ ଯାଗରେ
ସୁଦର୍ଶନ ଚକ୍ର ଲଦା ହେବ ତା ଶିରରେ ।
ଏ ସକଳ ଶୁଣି ଯୁଧିଷ୍ଠିର ମୋଦଭରେ
ଆରମ୍ଭିଲେ ୧୦ସପ୍ତତନ୍ତୁ କୃଷ୍ଣ ସାହାଯ୍ୟରେ ।
ଅନନ୍ତର ଋକ ଯଜୁ କଲେ କ୍ରମେ ଗାନ
ନିୟମରେ ଯୋଗାଡ଼ିଲେ ୧୧ଶ୍ରୁବଇ ବିଧାନ ।
ଉପାସନା ବାକ୍ୟ ହେଉଥିଲା ଉଚ୍ଚାରଣ
୧୨ପ୍ରଜାଜ୍ୟ ୧୩ଆଜ୍ୟ ହେଉଥାଏ ନିୟମେ କ୍ଷେପଣ
ବିକସିତ ରୂପ ଧରି ହବିର୍ଭୁକ ତୁଷ୍ଟ
ଧୀରେ ଧୀରେ ବଢ଼ିଲେ ଯେ ଅତିଶୟ ପୁଷ୍ଟ ।

---

୧ ଯଜ୍ଞଶାଳା ୨ ଶୁକ୍ର ୩ ସୁନା ୪ ବେଶ୍ୟା ୫ ଯଜ୍ଞ

୬ କୁଲା ୭ ସୂର୍ଯ୍ୟ ୮ କୃଷ୍ଣ ୯ ମାଉ ୧୦ ଯଜ୍ଞ
୧୧ ଯଜ୍ଞ ୧୨ ପ୍ରଚୁର ୧୩ ଘିଅ

ଦହନ କେତନ ରୂପେ ଉଠି ବ୍ୟୋମପ୍ରଦେଶ,
ବ୍ୟାପିଯାଇ ସମ୍ବାଦ କି ଦେଲେ ଦିବୌକସେ ।
ଅମୃତଠାରୁ ସୁସ୍ୱାଦୁ ଏ ହବି ଭକ୍ଷଣ,
କଲେ ମହା ଆନନ୍ଦରେ [୧]ବିବୁଧଗଣ ।
ଏ [୨]ମଖର [୩]ହବି ପିଇ ଦେବତା ସରବେ,
ଦାନବଙ୍କୁ ପରାଜିତ କରନ୍ତି [୪]ଆହବେ ।
ହିଂସା ବର୍ଜ୍ୟ ଦଶି କଥାଲ୍ଲ ଯାଗରେ,
ଉତ୍କର୍ଷତର ଉନ୍ନତି ହେଲା ପଦାର୍ଥରେ ।
ଦ୍ୱିଜଙ୍କୁ ଦକ୍ଷିଣା ଦେଇ ରାଜନ ଯଥାରେ,
ସନ୍ତୁଷ୍ଟ କରନ୍ତି ନବେ ସେ ମଖ ବିଧାନେ ।
ଯାଗ ଦେଖି ଆସିଥିବା ସକଳ ରାଜନ,
ହେଲେ ଅତି ହୃଷ୍ଟ କରି [୫]ଦ୍ୱିଜନ୍ମା ଦର୍ଶନ ।
[୬]ସବ ଦ୍ରବ୍ୟ ଯେତେ ଥିଲା ଉପହାର ପାଇଁ,
ଅଧିକରୁ ହେଲେ କଏ ନଅନ୍ତି ଫେରାଇ ।
ଯାଗୀ ରାଜା ଯୁଧିଷ୍ଠିର ଆପଣା ଇଚ୍ଛାରେ,
ଯାଚକମାନଙ୍କୁ ଧନ ଲାଗିଲେ ଦେବାରେ ।
ସତ୍ତ୍ୱଗୁଣାଧିକ୍ୟ ହେତୁ ନୋହି ବିଚଳିତ,
ଯାଚକର ମନୋରଥ କରନ୍ତି ପୂରିତ ।
ପ୍ରିୟବସ୍ତୁ ହେଲେ ମଧ୍ୟ କରନ୍ତି ବଣ୍ଟନ,
ଯେଣୁ ଜାଣି ପାରୁଥିଲେ ଯାଚକର ମନ ।
ମେଘ ଦେଲାପରେ ଜଳ ଉଷର ଭୂମିକି,
ଦେଉଥିଲେ ଅତରେ ସେ ନିର୍ଗୁଣ ବ୍ୟକ୍ତିକି ।
ପରମ ଆନନ୍ଦ ଲଭୁଥିଲେ ଭକ୍ତଜନେ,
ସୁରଭି ସୁସ୍ୱାଦୁ ଚୂତ ଫଳାଦି ଭୋଜନେ ।
ରାଜସୂୟ [୭]ଅଧ୍ୱରରେ ଦୁଷ୍ଟମାନଙ୍କର,
ମର୍ଦ୍ଦନ ବିଷୟେ ହରି ଥାଆନ୍ତି ତତ୍ପର ।
ଅକ୍ଷତ ଭାବରେ ଦାନ ହୋମ ଯଜନାଦି,
କାର୍ଯ୍ୟ ଦେଖିବାକୁ ସଦା ରହନ୍ତି ଅନାଦି ।
ଅନନ୍ତର ଧର୍ମରାଜ ଧର୍ମକୁ ବିଚାର,
ଅର୍ଘ ଦାନ ବିଷୟରେ ବୁଝିଲେ ପଚାରି,
ଶାନ୍ତନୁ ସୁତ ଭୀଷ୍ମଙ୍କୁ ସଭା ମଣ୍ଡପରେ ।
ଜାଣିବାକୁ ତାଙ୍କଠାରୁ ସଠିକ ଭାବରେ ।

ଯୁଧିଷ୍ଠିର ସମ୍ମାନିତ ଭୀଷ୍ମ ହୋଇ ପ୍ରୀତ,
ଉତ୍ତରିଲେ କରିବାକୁ ତାଙ୍କୁ ଉତ୍ସାହିତ ।
ସକଳ କାର୍ଯ୍ୟରେ ଯେହୁ ସନ୍ତତ ସମର୍ଥ,
ଉପଦେଶ ଦେବା ତାଙ୍କୁ ନୁହଇ କି ବ୍ୟର୍ଥ !
ବସିଛନ୍ତି ଇଷ୍ଟବନ୍ଧୁ ଚୌଦିଗେ ଯାଗର,
[୧]ଭୂବ [୨]ମୁଖଭୂବ ଗୁରୁ [୩]ଭୂଭୁଜନିକର ।
[୪]ପୂର୍ବଦେବବଧ୍ୟ ହରି ପରମାତ୍ମା ଅଂଶ,
ରହିଛନ୍ତି ସଭାମଧ୍ୟେ ଯାଦବାବତଂସ ।
ମାନୁଷ ବିଗ୍ରହ ରୂପେ ଭୂଭାଗେ ଜନମ,
ଲଭି କରନ୍ତି ସନ୍ତତ ଦୁଷ୍କର କରମ ।
ସତ୍ତ୍ୱଗୁଣ ଆଶ୍ରୟରେ ଜଗତ ପାଳନ,
କରନ୍ତି ସେ ବାସୁଦେବ ପୂର୍ଣ୍ଣ ସନାତନ ।
ତମୋଗୁଣ ଆଶ୍ରି ହର ଧରା ସଂହାରକ,
ରଜୋଗୁଣେ ବ୍ରହ୍ମା ବୋଲି ସୃଷ୍ଟି ଉତ୍ପାଦକ ।
ଏଣୁ କୃଷ୍ଣ ସର୍ବୋପାସ୍ୟ ପରମ ପୁରୁଷ,
ଯା ଯୋଗୁଁ ଲଭନ୍ତି ଲୋକେ ସର୍ବଦା ପୌରୁଷ ।
ନିବିଷ୍ଟ ଚିତ୍ତରେ ତାଙ୍କୁ ସେବନ୍ତି ଯେ ଭବେ,
ତାଠାରେ କଲ୍ମଷ ବୋଲି ନରହଇ ଲବେ ।
ଉତ୍ପତ୍ତି ନାଶର ହେତୁ ସର୍ବ ବ୍ୟାପୀ ହରି,
ଜନ୍ମିଛନ୍ତି ଭୂଭାଗରେ କୃଷ୍ଣନାମ ଧରି ।
ମଧୁ କଇଟଭ ନାମେ ଦୁଇଟି ଅସୁର,
ସଂହାରି ତ୍ରିଭୁବନରୁ ଭୟ କଲେ ଦୂର ।
ଅଭିନବ ହୋଇ ସୁଧୀ ଅଟନ୍ତି ସ୍ଥବିର,
ଅର୍ଘ୍ୟ ଦେଇ ଧୋଇ ଦିଅ ପଦୁରେ ନୀର ।
ସ୍ୱର୍ଗାପଗାସୁତଙ୍କର ଶୁଣି ଉପଦେଶ,
କେଶବଙ୍କୁ ଦେଲେ ଅର୍ଘ ଭାରତେ ଭୂପେଶ ।

## କୃଷ୍ଣ ଅର୍ଘ୍ୟ ପାଇବାରେ ଶିଶୁପାଳର କ୍ରୋଧ

ଚେଦିପତି ଶିଶୁପାଳ    ହେଲା ଅତି ଅସମ୍ଭାଳ
ପୂରିଲାକି ତାର କାଳ କୃଷ୍ଣ ଅର୍ଘ୍ୟରେ
ପୂର୍ବ ବୈର ପ୍ରତିଶୋଧ    ନେବା ଲାଗି ବଢ଼ି କ୍ରୋଧ
[୫]ଅର୍ଭକ ତୁଲ୍ୟ ଅବୋଧ ହେଲା ସେ ଖରେ,

୧ ଦେବତା ସମୂହ ୨ ଯଜ୍ଞ ୩ ଘୃତ ୪ ଯୁଦ୍ଧରେ
୫ ବ୍ରାହ୍ମଣ ୬ ଯଜ୍ଞ ୭ ଯଜ୍ଞ

୧ ବ୍ରହ୍ମା ୨ ମୁଖଜ ତ ବ୍ରହ୍ମାଙ୍କ ମୁଖରୁ ଜାତ ବ୍ରାହ୍ମଣ
୩ ରାଜା ସମୂହ ୪ ଅସୁର ୫ ବାଳକ

ବଦନ ବର୍ଣ୍ଣିଲ୍ କସନ,
ମୁକୁଟ କର୍ମି ନଗିଲେ ଅଙ୍ଗରୁ ଖାନ ।
ବାତାହତ ତରୁପରେ ଶରୀର ମାଡୁଛି ଥର
ଭୂପଙ୍କୁ ଭର୍ତ୍ସନା କରି ହେଲ୍ ଅସ୍ଥିର
ନୟନମାନ ତପ୍ତି ବାରବାର ଗୋଡ଼ ଘୁଟି
କଲ୍ ସେ ଘର୍ଷଣ ପାଟି [୧]ଷ୍ଫୁରିତ ଶିର
ଘର୍ଷିଲ ପରୁଷ ବଚନ,
ପିଙ୍ଗଳ ସଟାପଟଳ ପରି ନୟନ ।
ନକର ଆଗୁଁ ବଢ଼ିର ଆଧିକ୍ୟ ଦେଖି ଶ୍ରଦ୍ଧାର
ନ ବାଛିଲ ଗୁଣ କା'ର ହେ ପୃଥାସୁତ ?
ଅପୂଜ୍ୟଙ୍କୁ ପୂଜା କରି ମହତ୍ତ୍ୱ ପାଇଛି ସରି
[୨]ଗ୍ରାମ୍ୟମୃଗ ସଙ୍ଗେ ଧରି ହେଲ [୩]ଅପୂତ
ସତ୍ୟହାନି ହେଲ୍ ଏଥିରେ,
ଏ ବନ୍ଦନ କରମ କ ସମ୍ଭବେ ବୀରେ ।
ଧର୍ମରାଜ ବୋଲି ନାମ ଆଜଠାରୁ ହେଲ୍ [୪]କ୍ଷମ
ବୃଥା ତାକ ହେଲ ବାମ ଫଳ [୫]କାମ
ଅପ୍ରଶସ୍ତ [୬]ଭୌମବାର [୭]ଶିବ ବୋଲି ବୋଲିବାର
ଚମେଳି ମତ୍ତ ଯାହାର ତା ନିଷ୍ଠା [୮]ରାମ
[୯]ପଳିତ ଏ ସରିତସୁତ
ବାଳପରି ଆଚରଣେ ହେଲେ [୧୦]ଅଭୃତ ।
ହେବାରୁ କୃଷ୍ଣ ପୂଜିତ ଯେତେ ବ୍ୟକ୍ତି ଆମନ୍ତ୍ରିତ
ଭବୃଶ ଅପମାନିତ [୧୧]ବାଳିଶ ପରି
ଅବଲମ୍ବି ମିଚ କର୍ମ ଛାଡ଼ିଲ ପ୍ରାଚୀନଧର୍ମ
ନ ବାଧିବ କାହା ମର୍ମ କରିଲ ଏପରି,
ବକ୍ଷୋଭେଦ ଅବମାପତ
ଇଚ୍ଛାକଲେ ଘଟାଇବେ ଘୋର ବିପତ୍ତି ।
ଅନନ୍ତର ଚେଦିପତି ଘୋଷିଲ ମାଧବ ପ୍ରତି
ନୃପଯୋଗ୍ୟ ପୂଜାଚଡ଼ କଲୁ ଗ୍ରହଣ,
"କାଏ ମୁଁ ସ୍ଥିର ନକରି ତକ୍ଷଣେ ଲଜ ସମ୍ବରି
ବୋଲି ବୋଲି ହରି ହରି ଯୁଦ୍ଧ ବରଣ

କଲୁ ଆଗେ ମେଞ୍ଚଡ଼ ଠୋକା
ଛଡ଼ାଇ ଗଢ଼ିବ ତୋର କରିବ ବୋକା ।
କରି [୧]ସରଘାନାଶନ ବୋଲାଉ ମଧୁସୂଦନ
ମଧୁଦାନବ ଦଳନ ନୁହଇ ସତ
[୨]ରୋହିଣୀତନୟ ବଳେ ବଳୀ ବୋଲି ଭୂମଣ୍ଡଳେ
ବୋଲାଉଛୁ ଯିନା ଛଳେ ଅନବରତ
ପ୍ରବଞ୍ଚନା ନଗଲ୍ ତୋର
ଡାକଲେଣି ଲୋକେ ଏବେ ରୁକ୍ମଣୀ ଚୋର ।
ଯୁଦ୍ଧେ ଅରି [୩]ଚକ୍ର [୪]ଚକ୍ର ସଙ୍ଗେ ଧରି [୫]ଚକ୍ର [୬]ଚକ୍ର
ଛଡ଼ାଇବେ ତୋର [୭]ଚକ୍ର ଉଡ଼ିବ ମୁଣ୍ଡ
ପରାକ୍ରମ ନ ଦେଖାଇ ଲୁଚ୍ଛା ବିକ୍ରମୀ ବୋଲାଇ
କୌଶଳ ସଦା ଭିଆଇ କରିଲେ ଭୁଣ୍ଡ
କି ବୋଲିବେ ଲୋକେ ରସାରେ,
ନ ଭାବିଲୁ ଦିନେ ହେବେ ଜଡ଼ ମାଧ୍ୱୀରେ ।
ଅକୁଶଳ ମତି ତୁତ ସର୍ବଦା
ବୁଲୁ ବ୍ରଜଆରେ ଧରି ପ୍ରମଦା
ଯେତେକ ଅପଗୁଣ ଅଛି ତୋଠାରେ
ବ ଜଣୁଛି ଉଣ୍ଡି ମ ସାର ସଂସାରେ
[୮]କୁନ୍ତଳ ଲୁଞ୍ଚିତ ଶିରେ
କୁଣ୍ଡାଇଲେ ତାକୁ [୯]କେକେଇକା ଧରି
ହସିବେ ସିନା ମଞ୍ଚରେ ।
ନୃପ କେଶଖିଏ ବସି ସଭାରେ
ଫିଟାଉ ନାହାନ୍ତ ପାଟି ଲଜ୍ଜାରେ
ପୂଜାଯୋଗ୍ୟ [୧୦]ପ୍ରତିମାନନା ପାଇ
ଆସୀନ ପାରୁଣେ ବୁକୁ ଫୁଲାଇ
ବୃଷରୂପୀ ଦୈତ୍ୟନାଶୀ
ବଡ଼ ବଡ଼ କଥା କହେ ଅହରହ,
ଭଲ ମନ୍ଦ ନ ବୁଝର ।
ଅଚ୍ୟୁତ ଚୈଦ୍ୟର କଟୁ ବଚନ
ଶ୍ରବଣେ ନକଲେ ମନେ ଗଣନ,

୧ କର୍ମିତ ୨ କୁକ୍କୁର ୩ ଅପବିତ୍ର ସ୍ୱର୍ଗାପଗାସ୍ନାନ-ଖଣ୍ଡ
୪ କ୍ଷୀଣ ୫ ଅଭିଳାଷ ୬ ମଙ୍ଗଳବାର ୭ ମଙ୍ଗଳ
୮ ସୁନ୍ଦର ୯ ବୃଦ୍ଧ ୧୦ ଅପୂଜିତ ୧୧ ମୂର୍ଖ

୧ ମହୁମାଛି ୨ ବଳରାମ ୩ ରାଜା ୪ ସମୁଦ୍ର ୫ ସୈନ୍ୟ
୬ ସମୁଦ୍ର ୭ କୂଟବୁଦ୍ଧି ଛଳ ୮ ମୁଣ୍ଡରବାଳନାହିଁ
୯ ପାନିଆ ୧୦ ପୂଜା, ସମ୍ମାନ

[୧]ଜାହ୍ନବୀ ନନ୍ଦନ ଉଠି ବକ୍ଷାଦେ
ଅମ୍ବୁଧିର ପରି ଗମ୍ଭୀର ନାଦେ
ଭାଷିଲେ ଏମନ୍ତ ଗିର
"ଅଚ୍ୟୁତ ଅର୍ଚ୍ଚନେ ଯେହ୍ନୁ ଅସହିଷ୍ଣୁ
ଛେଦିବା ତାହାର ଶିର

ଅବଗତ ହୋଇ ଭୀଷ୍ମ ଭାଷିତ
ଚୈଦ୍ୟପକ୍ଷ ଭୂପେ କ୍ରୋଧେ ଜ୍ୱଳିତ
ଅରୁଣିତ ନେତ୍ର କରି ଘୂର୍ଣ୍ଣନ
କରିବାକୁ ବ୍ୟଗ୍ରେ ବୈରି ଦହନ
ଉଠିଲେ ରୋଷବଶରେ
ଉଲ୍ଲସିତ [୨]ସିତ ଦଶନେ ପ୍ରକଟ
ବିକୃତ କି କ୍ଷଣକରେ ।
ଅଶନି ସଦୃଶ ଉଚ୍ଚନାଦରେ
ଚେଦିରାଜ ଅତି ଅଟ୍ଟହାସରେ
କଲ ଅଗ୍ନିସଂପାତ ଆସି ଭୂତଳେ
[୩]ବ୍ୟାଘ୍ରଭ୍ରୂଜ କରି ପିଟିବା ଛଳେ
କିଏ ବା ବସ୍ତ୍ର ଫିଟାଇ
ବାନ୍ଧିବା ଛଳରେ ଆସନ୍ତେ ଭୀଷ୍ମଙ୍କୁ
ଧଇଲେ କୃଷ୍ଣ କୁଣ୍ଢାଇ ।
ଅସହିଷ୍ଣୁ ଚୈଦ୍ୟ ହୋଇ ଉଦ୍ଧତ
ଲଢ଼ାଇକି ବାରବାର ଉଦ୍ୟତ
ବିଷବଚନକୁ ଉଦ୍‌ଗାର କରି
ହେଉଥିଲା ମତ୍ତ [୪]ବିଷାଣୀ ପରି
ସମସ୍ତ ଯୁଦ୍ଧାର୍ଥୀଚିତ୍ତ
ତୃଣତୁଲ୍ୟ ମନେ କରି ମାଧବକୁ
[୫]ନକାରିଲେ କୁରୁପତି ।
ଚେଦିପ ଶତ୍ରୁରେ ପ୍ରଚଣ୍ଡ ରାଗ
"ମାର, ମାର" ବୋଲି [୬]ବୃଷ୍ଣିକୁ ଆଗ
ଦେଉଅଛି ଡାକ ବାରକୁ ବାର
ସ୍ଫୁରିତ ଅଧରେ କରି ଧିକ୍‌କାର
ତୁଚ୍ଛା ଏତେ ଠଣାଠଣି

୧ ଭୀଷ୍ମ ୨ ଧଳା ୩ ପ୍ରସାରିତ ୪ ହାତୀ
୫ ଗାଳିଦେଲେ ୬ କୃଷ୍ଣ

ଅନୁତ୍ତମୋତ୍ତମ ଜଣାଯିବ ସିନା
ପଶିଲେ ଯୁଦ୍ଧେ ଏକ୍ଷଣି ।
ସଦ୍ୟ ବଧ ଚୈଦ୍ୟ ନାଟ ଲଗାଇ
ସହସା ସଭାରୁ ଗଲା ପଳାଇ
[୧]ଅନୀକମାନ ନିଃଶଙ୍କ ଚରତ
ଏକାଠି କଲାଣି ଅତି ତ୍ୱରିତ
ବାଇଦ ଦେଲା ବଜାଇ
ସେ ରଣଦୁନ୍ଦୁଭି ପ୍ରତିଧ୍ୱନି ଛଳେ
ଚୌଦିଗ ଦେଲା କମ୍ପାଇ ।
ଯେତେ ଯିଏ ଥିଲେ ମିତ୍ର ମଣ୍ଡଳ
ଆସି ଠୁଳ ହେଲେ ଅତି [୨]ପ୍ରଚଳ
ଭୂଧର ସଦୃଶ ବର୍ମ ଧରି
ବାରିବାହ ତୁଲ୍ୟ ନିଧ୍ୱାନ କରି
ଚଢ଼ି [୩]ଦ୍ୱିରଦ ଉପରେ
'ମାର, ମାର' ବୋଲି କରୁଛନ୍ତି ରଡ଼
ଗୁରୁ ଗମ୍ଭୀର ଘୋଷରେ ।

## ୫ମ ସର୍ଗ

## ଶିଶୁପାଳ ଦୂତ ପଠାଇବା

ପରୀକ୍ଷିବା ନିମିତ୍ତ ପର ହୃଦୟ
କହନ୍ତି ଦୂତଦଳ ବଚନ ଦ୍ୱୟ ।
ଧୁରୀଣ ଦୂତଟିଏ ଚୈଦ୍ୟ ପ୍ରେରିତ,
ଆସି କୃଷ୍ଣ ସମ୍ମୁଖେ ହୋଇ ମାନତ,
ଆଗେ କୋମଳ ପରେ ପରୁଷ କଥା,
ଭାଷିଲା ତାଙ୍କ ମନେ ଜନ୍ମାଇ ବ୍ୟଥା ।
"ଚେଦିପ ଆପଣଙ୍କୁ ଅପ୍ରିୟ କହି
କରୁଛି ଅନୁତାପ ସନ୍ତାପେ ରହି
ନିଶ୍ଚୟ ଆଲିଙ୍ଗନ କରି ପ୍ରଶାନ୍ତ
[୪]ସ୍ୱାନ୍ତେ ହୁଅଇ ପୁଲକିତ ନିତାନ୍ତ
ତବ [୫]ମାନନା ହୃଦେ ରଖିଛି ଧରି
ପାଶୋରି ଦିଅ ଦୋଷ କୋପ ନକରି
– କହିଚି ଯାହା ତାହା ହୋଇ ଉନ୍ମନା
କରିଛି ପରିହାର ଅବମାନନା ।

୧ସୈନ୍ୟମାନ ୨ଶୀଘ୍ର ୩ହାତୀ
୪ଚିତ୍ତେ ୫ପୂଜା କରଣ

ନକଲେ ଜାତ ହୋଇ ଶୂନ୍ୟ ବିଗ୍ରହ
ପରିଣାମେ ଖ୍ୟାପଣ ତାର ନିଗ୍ରହ ।
ଆଗତ ଅନାଗତ ଶବ୍ଦ ନୃପତି
ତବଲକ୍ଷଣାଶ୍ରିତ ହେବେ ଝଟନ୍ତି ।
୧ଭସ୍ମଶୂନ୍ୟାଧୀ ଦେଖି ଫଙ୍ଗାଙ୍ଗଣେ
ଡରଇ ରମୁ ସବା ଅସ୍ୱଧାରଣେ ।
ବୋଲାଉଛ ଗୋପାଳ ପଶୁ ପାଳନେ
କରନ୍ତି ଉପହାସ ଜନେ ଦର୍ଶନେ ।
ନାସ୍ତିକ ବୋଲାବାଠା ଅତି ସଙ୍ଗତ
ଯେଣୁ ମାତୁଳ ମାର ହେଲ ଉଦ୍ଧତ ।
ମାରଛ ପୂତନାକୁ ପିଇ ତା କ୍ଷୀର,
ତେଣୁ ଜନମାହନ୍ତ୍ୟା କହନ୍ତି ଧୀର ।
୨ଘନ ଜାଲ ସଦୃଶ ନଗର ବାନ୍ଧି
ମାସ ନପାଇ କଷ୍ଟୁ ଫେଟର ଅନ୍ତଥି ।
ଲୁଚିଲ ୩ବୃଷ୍ଣ ପର ୪କ୍ଷମାଭ୍ୟନ୍ତରେ
ବନମଣାଳୀ ୫କ୍ଷମାଭୃତ ଉଦରେ ।
ନତକପାଣ୍ଡି ବୋଲି ବୋଲନ୍ତି ଜନେ
ଯେଣୁ ନକଲ ଭସ୍ମ ୬ବୃଷ ନାଶନେ
ଶମ୍ଭୁ ବେନାଶକାଶ ବେଦପସନ
ଆପମାନେ ଆଙ୍ଗବନ ନର୍ଭୟେ ରହ ।
୭ନରସ୍ତ ବୋଧ ହେତୁ ରାଜା ପ୍ରକାଶ
ତବ ଦର୍ଶନେ ହୁଏ ସଦା ମୁଦିତ ।"
ଏତଠାରୁ ସକଳ ଶ୍ରବଣ ପରେ
ରଘୁନାଥ ପ୍ରେରିତ ସାତ୍ତ୍ୱିକ ଦୂତେ
ଉତ୍ତରିଲେ ତାହାଙ୍କୁ ନଗର ପରେ
ନରଖି ଅଣରଧା ଅନ୍ତଃ କରଣେ ।
"ମହାକାଳ ସଦୃଶ ତବ ସମ୍ଭାଷ,
ଲୋଡୁଛ୍ତି ଶିଶୁପାଳ ୮ବୃଷ ବିନାଶ ।
ପୂଜିଲେ ସୁଧିଷ୍ଠିର ହରିକ ଯଦା
ଚେଦିପ ବିଗ ହେବା ନଥିଲ ତଦା ।
ସୁଚିଭ ପୁଷ୍ପମାଳା କଲେ ଧାରଣ,
ଅସ୍ପୃଶ୍ୟା ପ୍ରକାଶିବା ଭୃଙ୍ଗାଚରଣ ।
ପର ମଙ୍ଗଳେ ତୁଷ୍ଟ ସଦା ଉତ୍ତମ,
ହୁଅଇ ସନ୍ତାପିତ ସିନା ଅଧମ ।
ଅସାଧୁ ମଣିଷର କର୍କଶ କଥା
ସଜ୍ଜନ ହୃଦୟରେ ନଦିଏ ବ୍ୟଥା ।
ମଣିର ମୂଲ୍ୟ ଊଣା ହୁଏ କି କେବେ
ଭୂମି ରଜ ଆଚ୍ଛନ୍ନ ହୁଅଇ ଯେବେ ।
୧ଲଘୀପ୍ସାନ କେବଳ ନିଜ ଗୁଣକୁ,
ହୁଅଇ ଆମୋଦିତ କହି ପରଙ୍କୁ,
ବଡ ପାରଗ ଆତ୍ମଗୁଣ ଗାନରେ,
ସାଧୁ ପ୍ରଶଂସା ନ ଧରଣ ଭୃଣ୍ଡରେ ।
ଅସାଧୁ, ଅନ୍ଧ ସ୍ୱୀୟ ଦୋଷ ଦର୍ଶନେ
ଦିଅନ୍ତି ଦିବ୍ୟ ଦୃଷ୍ଟି ପର ନିନ୍ଦନେ ।
ଏତେ ବିରୋଧ କରଥିବା ନୃପତି
ମିତ୍ରତା ବୃଷସହ ଅଦ୍ଭୁତ ଅତି ।
୨ପତଙ୍ଗେ ପଡ଼େ ପୋଡେ ଦେଖି ପତଙ୍ଗ
ନିଜ ଔଦ୍ଧତ୍ୟ ହେତୁ ଲୋଡେ ତା ସଙ୍ଗ ।
ବାଚ୍ୟ ଅବାଚ୍ୟ କହି ବକ୍ତୃତାନେ
କରଅଛ ସାହାଯ୍ୟ ବୋଧୋଦ୍ଦୀପନେ ।
୩ସାତ୍ତ୍ୱିକ ଠାରୁ ଶୁଣି ଏମନ୍ତ ଗିର
ପୁଣି ଭାଷଇ ୪ପ୍ରେଷ୍ୟ ନୁଆଁଇ ଶିର ।
୫ଦୁର୍ବିଧି ଲୋଡେ ଅହରହ ଅନର୍ଥ
୬ଆପ୍ତଜନର ଉକ୍ତି କରଇ ବ୍ୟର୍ଥ ।
ହେଉଛି ଗ୍ରାହ୍ୟ ଯେବେ ମୋର ବଚନ
କୃପାଳୁ ହୋଇ କାର୍ଯ୍ୟକର ସାଧନ ।
ତପନ ଅନୁରକ୍ତା ସରୋଜମାର
ନୁହଇ ଗ୍ରାହ୍ୟ ୭କର ଶୀତଗୋଚର(ଚନ୍ଦ୍ର)
ଗୁଣାଗୁଣ ବିଚାର ନାହିଁ ଯାହାର,
ସେ କି ଶୁଣିବ କେବେ କଥା କାହାର ।
ନପାଇ ଅର୍ଘ୍ୟ ଚୈଦ୍ୟ ୮ସହସ ନରେ,
ଉପୁଜିଲ କନ୍ଦଳ ଅନାଦରରେ ।
ହୁଏ ନାହିଁ ଲାଘବ କାହା ସମ୍ମାନ
କଲେ ବା ଅନାଦର ୯ମୂର୍ଖ ବିତାନ

୧ ଭସ୍ମଶୂନ୍ୟମତି ୨ ମେଘସମୂହ ୩ ମୂଷିକ ୪ପର୍ବତ ୫ରାଜା ୬ଷଣ୍ଢ ୭ପରିତ୍ୟକ୍ତ ୮କୃଷ୍ଣ

୧ଅତିକ୍ଷୁଦ୍ର ୨ଅଗ୍ନିରେ ୩ଦୂତ ୪ମୂର୍ଖ ଦୁଷ୍ଟ, ୫ଯଜ୍ଞରେ ୬ମୂର୍ଖସମୂହ ୭ପୂଜିତ ୮ସୁଦ୍ଧ ୯ରଶ୍ମିର

ମାଂସଲୁବ୍ଧ କେଶରୀ କଣ୍ଠମଣିକ
ଗ୍ରହିଲେ ତାର ନିନ୍ଦା ହେବ କାହିଁକି ?
ଯୋଗ୍ୟତା ଥିଲା ବୋଲି ହେଲ ଗର୍ବିତ
ଅବୁଧ ପାର୍ଥିବାଗ୍ର ହୋଇ ଅଛିତ ।
୧ପ୍ରଧନ ପାଇଁ ଡାକ ଦେବା ନିମିତ୍ତ
ହୋଇଅଛୁ ଏଠାକୁ ରାଜ ପ୍ରେରିତ ।
୨ମଳିମ୍ଳୁଚ ସଦୃଶ ନମାର ଅରି
ବୀରତ୍ୱ ଦେଖାଇବ ସାଧୁରୀତିରେ ।
ବେତସ ବୃତ୍ତି ନତ ଏବେ ଦେଖାଇ
ଚୈଦ୍ୟ ୩ନିକଷା କର ପ୍ରଣତି ଯାଇ ।
ନୁହଇ ଶିଶୁପାଳ ଶିଶୁ ପାଳକ
ତରୁଣ ତରୁଣୀଙ୍କ ସଦା ରକ୍ଷକ ।
ଦେଖାଏ ଅନୁଗ୍ରହ କଲେ ପ୍ରଣତି
ପ୍ରିୟାଳାପରେ ହୁଏ ସନ୍ତୁଷ୍ଟ ଅତି ।
ଅବନମ୍ରେ ଚୈଦ୍ୟକୁ ହୁଅ ପ୍ରଣତ
ଯୁଦ୍ଧ କରିବା ଲାଗି ନଥିଲେ ମତ ।
୪ଋଦ୍ଧିମନ୍ତ ବେଦପ ହେଲେ ଉଦ୍ଧତ
ଶକ୍ତିଶାଳୀ ଭୂପକୁ କରେ ଆପୂତ ।
ସବଂଶ ଅଖଣ୍ଡିତ ପବନମରେ
କରଇ କ୍ରୀଡ଼ା ସେହି ଶଙ୍କାଶୂନ୍ୟରେ ।
୫ଅବନୀଧ୍ର ମୂର୍ଦ୍ଧାରେ ନେଇ ଆଶ୍ରୟ
ଅଯଥା କରୁଅଛ ଆୟୁଷ କ୍ଷୟ ।

## ସୈନ୍ୟଯୁଦ୍ଧ ଆରମ୍ଭ

ଚରଙ୍କ ବଚନ ଶ୍ରବଣ କରି
ସମୀରଜୁଭିତ ଅର୍ଣ୍ଣବ ପରି ।
ଉଠିଲେ ୬ଧ୍ୱଜାଏ ୭ଧ୍ୱଜାଏ ଖର
ପାଟିତୁଣ୍ଡ କରି କୃଷ୍ଣ ପକ୍ଷର ।
୮ଧ୍ୱଜୀ ୯ଧ୍ୱଜୀ ୧୦ଧ୍ୱଜିନୀଏ
ମୁହାଁମୁହିଁ ହେବା ପାଇଁ ଚଣ୍ଡଡାକ
ଏକାଠି ହେଲେ ସଭିଏଁ ।

୧ କରଣ ୨ଯଜ୍ଞରେ ୩ ନିକଟ ୪ ବଳଶାଳୀ
୫ ପର୍ବତଶୃଙ୍ଗରେ ୬ ରାଜାମାନେ ୭ ବୀରମାନେ
୮ ରଥ ୯ ଅଶ୍ୱ ୧୦ ସେନାମାନେ

ଯାଦବ ନରେନ୍ଦ୍ର ବଜ୍ର ସମାନ
ଅନ୍ତଃସାର ଯୁକ୍ତ ଆୟୁଧମାନ
ଧରି ଆରୋହିଲେ ଗଜ ପୃଷ୍ଠରେ
ଆଉ କେତେ ୧ହଂସ ୨ହଂସ ଉପରେ
ଝୁଲାଇ ୩ଆସ ୪ଅଂସରେ
ପଟହ ଧ୍ୱନିରେ କମ୍ପାଇ ଅବନୀ
ବାହାରିଲେ ପଟହରେ ।
୫ଅନୀକଜିଷ୍ଣୁଙ୍କ ୬କାନ୍ତ ବର୍ଷ୍ମରେ
ଲମ୍ବାଇଲେ ଆସି ମାଳ କଣ୍ଠରେ
୭ଅନୀକ ୮ଅନୀକ ସହ ସ୍ୟନ୍ଦନେ
ନବାମ୍ବୁଦ ପରି ଗମ୍ଭୀର ଧ୍ୱନେ
ଚଢ଼ିଲେ ପ୍ରମୋଦଭରେ ।
ଏ ଅନ୍ତେ କାଶ୍ୟପି ଉଡୁଥିଁ ଖସି
ବସିଲେ ଧ୍ୱଜ ରୂପରେ ।
୯ଆନକ ୧୦ଆନକ ବଜାଇ ଅଗ୍ରେ
ଯାଉଥିଲେ ବୀରେ ଆହବେ ବ୍ୟଗ୍ର
୧୧ସ୍ୱାରଙ୍ଗ ୧୨ସାରଙ୍ଗ ଘୋଷ ଶ୍ରବଣେ
ପ୍ରତିଧ୍ୱନି କଲା ୧୩ସାରଙ୍ଗ ବନେ
୧୪ଉଗ୍ରାଂଶୁ ପ୍ରଦୀପ୍ତ ଅସି
୧୫ଦୁର୍ଦ୍ଧର୍ଷ ହେବାରୁ ଚୈଦ୍ୟ ସେନା ନେଇ
ଗଲାଣି ଭଣ୍ଡରେ ପଶି ।
୧୬ଘଟା ୧୭ଘଟା ୧୮ଘଟା ଦେଖି ବିପକ୍ଷ
ହେଲା ଧୁଡୁ ଧୁଡୁ ତତକ୍ଷଣେ ବକ୍ଷ
କମ୍ପୁଥିଲା ଚୈଦ୍ୟ କଥା ଗର୍ବେ
କେଶବ ମହିମା ନଜାଣି ଲବେ
କାଳ ପୂରିଗଲା ପର !
ନ ଦିଶଇ ଭଲମନ୍ଦ ସେତେବେଳେ
ତୃଷ୍ଣାକୁ ହେଲେ ତତ୍ପର ।

୧ ରାଜା ୨ ଅଶ୍ୱ ୩ଧନୁ ୪କାନ୍ଧରେ ୫ ଯୁଦ୍ଧ ୬କୃଷ୍ଣ
୭ ସୈନ୍ୟ ୮ ସମୂହ ୯ ଭେରୀ ୧୦ ମୃଦଙ୍ଗଢୋଲ
୧୧ କୋକିଳ ୧୨ ମୟୂର ୧୩ ସିଂହ ୧୪ ସୂର୍ଯ୍ୟ
୧୫ ଦେଖି ନପାରିବାରୁ, ପଟହ-ଭଣ୍ଡାକ, ଆଡମ୍ବର
ଉଡୁ-ଆକାଶ ୧୬ ଗଜସୈନ୍ୟ ୧୭ ସମୂହ
୧୮ ଆଡମ୍ବର

ତେବେପ ପ୍ରତାପ ସହ୍ୟ ନପାରି
୧ହରି ୨ହରି ଅବା ଆସିଲେ ଘରି
ରଚିବାକୁ ବୃଷ ବ୍ୟୂହ କୌଶଳେ
ମରିବେ ଯେପରି ସମରେ ଖଳେ
ଉଲୂକ ବସିଲେ ମୃତଣ୍ଡେ
ମନା କରୁ କରୁ କହୁଥାନ୍ତି ଲୋକେ
ନ ଧରିବା କଥା ଭୂଣ୍ଡେ
୩ଶତାଙ୍ଗ ଉପରେ ଶାରଙ୍ଗଧର
୪ସାରଙ୍ଗ ବଜାଇ ଦେଲେ ସତ୍ୱର
ତା ନାଦ ଶ୍ରବଣେ ହୋଇ ଆକୁଳ
୫ସାରଙ୍ଗ ୬ସାରଙ୍ଗ ୭ସାରଙ୍ଗ ଠୂଳ
ବ୍ରଜନାଥ ଦରଶନେ
ଭବ ସିନ୍ଧୁରୁ ପାରି ହେବାଲାଗି
ଚାହିଁଲେ କି ମନେ ମନେ ?
ତେବେପ ପକ୍ଷୀୟ ୮ବାହିନୀପତି
ବାହିନୀ ସଙ୍ଗରେ ଆସି ୯ଝଟତି
ପ୍ରତିଯୋଧ ଧରି ଆମୂଳତତ
ଦେଖାଇ ହେବାକୁ ସ୍ୱୀୟ ଶକତି
ସମରେ ସବେ ମିଳତ
ଉଭୟ ପକ୍ଷରୁ ବାଣ ବର୍ଷଣ ହେଲା
ବ୍ୟୋମ ଦେଶ ୧୦ବଧୂନତ ।
ରୋଷାବଶ୍ଚ ଶତ୍ରୁ ସଇନେ ଆସି
ବିନ୍ୟାସ କରନ୍ତେ ସାୟକ ରାଶି
ନିଖିଳ ଦୁର୍ବାର ଚମୂ ୧୧କାନ୍ତାର
ଅନୁରୂପ କାର୍ଯ୍ୟ କଲେ ସତ୍ୱର
କେଶବ ଦେଖି ହରଷିତ
ଅୟୋମୟ ବାଣ ବାଜିବାରୁ କେତେ
୧୨ଦନ୍ତୀ ଦନ୍ତ ବିଖଣ୍ଡିତ ।
କେହିବା ୧୩ପୁଷ୍କରୁ କୃପାଣ କାଢ଼ି
ବିପକ୍ଷ ମୁଣ୍ଡରେ ଦେଲା କଚାଡ଼ି
କେହି ନିକ୍ଷେପିଲା ୧୪ପୁଷ୍କର ଖରେ

ଦେଖନ୍ତି ୧ପୁଷ୍କର ସୂତେ ୨ପୁଷ୍କର
ହଗ କିଣା ଏ ମଧ୍ୟରେ
ଝଟ ଅଛି ସିନା ନିୟତି ଇଚ୍ଛାରେ
ପଡ଼ୁଛି ନତ ଦୃଷ୍ଟିରେ ।
କେହି ୩ବ୍ୟାଳ ଆସି ୪ବ୍ୟାଳ ଉପରେ
ଯୁଦ୍ଧାବସ୍ଥା ବୁଲି ଦେଖିଲେ ଖରେ
ପଡ଼ିଛନ୍ତି ଗଡ଼ି ବହୁ ବାହିନୀ
ରୁଧିରପ୍ଲାବିତ ସାରା ମେଦିନୀ
କେଶର କି ପରିଣତି ?
ଅଗଣିତ ବିପକ୍ଷ ଦଅନ୍ତି ପାସୋରି
ଅବମୃଷ୍ୟ ଜନପତି ।
ଭଗ୍ନଭୂଜ ହୋଇ ଭୂପତି ବୀର
୫କାଣ୍ଡ ୬କାଣ୍ଡ ୭କାଣ୍ଡ ଗୁଡ଼ ଅସ୍ଥିର
ଅର୍ପି ଦେଲେ ବ୍ରଜ ଦଣ୍ଡ ଭିତରେ
ନଥିବାରୁ ଅବା ୮କାଣ୍ଡ ୯ଖଣ୍ଡରେ
ପ୍ରେତରାଜ ବଡ଼ ଖଣ୍ଡ
କୋଟି କୋଟି ପ୍ରାଣୀ ଭୁଞ୍ଜିଲେହେଁ ନିତି
ପେଟକୁ ଅବା ନିଅଣ୍ଟ ।
୧୦ପିଶିତାଶୀ ୧୧ପତ୍ରୀ ୧୨ପତ୍ରୀ ଉପରୁ
ମୃତପ୍ରାଣୀ ୧୩ପତ୍ରୀ ଦେଖି ଦୂରରୁ
ଉଡ଼ି ଆସି ଅଗ୍ରେ ୧୪ପତ୍ରୀ ଉପରେ
୧୫ପିଣ୍ଡ ଲୋଭବଶେ ବସିଲେ ଖରେ
ଏ ଅନ୍ତେ ତଳକୁ ଖସି,
୧୬ଶାକ୍ଷଣ ମୁଖାଗ୍ରରେ ନିସ୍ତ୍ରାଣ ପ୍ରାଣୀଙ୍କ
୧୭ପିଶିତ ଭକ୍ଷିଲେ ବସି ।
୧୮ହୋଷ୍ଟ୍ର ୧୯ପୂତ ଗନ୍ଧ ବ୍ରାଣ ଦୂରରୁ
୨୦ହସ୍ତି କରି କରି ପର୍ବତ ଭିତରୁ
ଅନତିବିଳମ୍ବେ ୨୧ଆଜି ଭୂମିକି
ଦନ୍ତେ ଚେକେଟିଲେ ଆସି ଅଧିକି
ହେଲା ପରି ବଡ଼ ଭୋଜି,
ଶବବାଦ୍ୟ ଆସି ଆସ୍ୟ ବଢ଼ାଇଲା

୧ ଇନ୍ଦ୍ର ୨ ବ୍ରହ୍ମା ୩ ରଥ ୪ ଶଙ୍ଖ ୫ ହାଣ୍ଡି ୬ ହରିଣ ୭ ସିଂହ ୮ ସେନାଧ୍ୟକ୍ଷ ୯ ଶବ୍ଦରେ ୧୦ ପ୍ରକମ୍ପିତ ୧୧ କୃଷ୍ଣର ୧୨ ହସ୍ତୀ ୧୩କୋଷରୁ ୧୪ ଶର

୧ଯୁଦ୍ଧ ୨ ଆକାଶରେ ୩ରାଜା ୪ ଦୁଷ୍ଟହସ୍ତୀ ୫ଅଶ୍ୱ ୬ବାଣ ୭ ସମୂହ ୮ ଜଳ ୯ ଗାତ ୧୦ ମାଂସଭୋଜୀ ୧୧ ପକ୍ଷୀ ୧୨ ପର୍ବତ ୧୩ ରଥ ୧୪ବୃକ୍ଷ ୧୫ମାଂସ ୧୬ମୂନିଆଁ ଥଣ୍ଟରେ ୧୭ମାଂସ ୧୮ବିଲୁଆ ୧୯ସମୂହ ୨୦ ନାଦ କରିବା ୨୧ ଯୁଦ୍ଧ

ଖାଇବାକୁ ମେଦ ଖୋଜ ।
୧ହର ହସ୍ତ ଦେଖି ହସଇ ଯଥା
୨ହଳୀ ୩ବେଣୁଦାସ ବଲେକ ତଥା
୪ରୌରବ ରବରେ କମ୍ପାଇ ଧରା
ଗୋଡ଼ାଇ ତାହାକୁ ନଦେଇ ଧରା
ନ୍ୟାସନ୍ତେ ସେ ୫ଇଷ୍ଟୁ ଚୟ
ଶାଣିତ ୬ସାୟେ ସେ ଦେଲେ ପ୍ରତ୍ୟୁତ୍ତର
ପରନ୍ତୁ ହୋଇ ନିର୍ଭୟ ।
୭କାର୍ଷ୍ଣିକ କେତେକ ବରୋଧ କରି
ତେହନ ପକ୍ଷୀପ୍ସ ବାହନ ଧରି
ଆସିଲେ ଉତ୍ସୁକେ ଭେରୀ ବଜାଇ
ଧାପ୍ୟମାନ ବର୍ମ ଅଙ୍ଗେ ଲଗାଇ
ରଣଭୂମି ହୁଲୁସ୍ଥୁଲୁ
ପ୍ରଦୁ ମ୍ନ ମାଡ଼ରେ ବାହୁଡ଼ିଲେ ସବେ
ଦୃଦେ ଧୈର୍ଯ୍ୟ ବୁଲୁବୁଲୁ
୮ବଭବା ୯ବଭବା ୧୦ଭାଭ କେଶବ
ଅବଢ ଫହାରେ ଅତ୍ତ ରୌରବ (ଖୁଷଣ)
ମୁମୁକ୍ଷୁମାନଙ୍କ ସଦା ଶରଣ
ସଂସାର ସାଗରେ ଯେହୁ ତାରଣ
୧୧ବାଜ ୧୨ବାଜ ୧୩ବାଜ ଖାଇ
୧୪ଆଜବଜସ୍ଥାଁକି ନେଇ ଅଗ୍ରେସର
ଅବ୍‌ଜ ବଜାଇ ବଜାଇ ।
୧୫କାନ୍ତପକ୍ଷୀପିଚ୍ଛ ଶିରଭୂଷିତ
କୌସ୍ତୁଭ ମଣିରେ ବକ୍ଷ ଛୁରିତ (ଶୋଭିତ)
ଶାରଙ୍ଗ ସାୟକ ଶୋହେ ଅଂସରେ
ସୁଦର୍ଶନ ଚକ୍ର ବନ୍ଧ ହସ୍ତରେ
୧୬ତେରଚ ଜସ୍ଥାନନ୍ତର
ପରମ ପୁରୁଷ ୧୭ବୃଷ ହେଲେ ଦୃଶ୍ୟ

ସୁଦ୍ଧ ଭୂଇଁରେ ସଞ୍ଚର
୧ପୁର୍ବ ୨ରୂପୀ ୩ପର ୪ଖେପ ୫ପରର
୬ଯୁଗ ରହିଥିବା ଦେଖି ତପୃର
ଦିଗନ୍ତ ବ୍ୟାପକ ନାରାଚଚୟ
କ୍ଷଣକେ କ୍ଷେପଣ କରନ୍ତେ କ୍ଷୟ
ଇତସ୍ତତ ଖରେ ପର
ଜଣିବାର ଆଶା କ୍ଷୀଣ ବୋଲି ଜାଣି
ତେହପ ହେଲେ କାତର ।
୭ଅଳକୁଳ କାଳ ୮କଳ ୯ଅକଳ
କାନ୍ତ ଦେବାପାଇଁ କୃତାନ୍ତ ବଳ
ବର୍ମଧାରୀ ବୈରୀ ଅକ୍ଷିତାରାକୁ
ବନ୍ଧନ୍ତେ ସାୟକ ଫୁଟାଇବାକୁ
ଭେଦିଲା ଲକ୍ଷ୍ୟ ଅକ୍ଷିରେ
ବାରିଦ ଆରବେ ପରି ଘୋରନାଦ
କରି ପଡ଼ିଲେ ଭୂଇଁରେ ।
୧୦ଶରରୁ ସୈନ୍ୟଙ୍କୁ ୧୧ଶ୍ରୀଶସ୍ୱରଣ
କ୍ଷେପି ୧୨ଅଶିଶିର ଶର ବଶେଷ
ବକ୍ଷେମାନଙ୍କୁ କରି ବାରଣ
ଅତୁଳ ବଗ୍ରହ କଲେ ଧାରଣ
୧୩ରଗ୍ରାଣ ହୋଇ ବନ୍ଧୁ ବୀର
ମଲୁ ମଲୁ ବୋଲି କରୁଛନ୍ତି ରଡ଼ି
ହୋଇଣ ଅତ ଅସ୍ଥିର ।
୧୪ଦ୍ଧ ୁରାର ନାଶନେ ସଦା କର୍କଶ (କର୍କ
୧୫କୁଧାର ଲଦବେ ଶାରଙ୍ଗଧର
ଅମ୍ବର ଘୋଡାଇ ଦିଅନ୍ତେ ଶରେ
ତାଦେଖି ଶତ୍ରୁ ଏ ଫେରି ଭୟରେ
ଜଣାଇଲେ ଶିଶୁପାଳ
୧୬ଭୂପ୍ରମୁଖ ସେହ୍ନ ଭେଟିଲ ୧୭ଭୂପ୍ରକୁ
ନବେଶନ୍ତେ ମୃତ୍ୟୁକାଳ

୧ ସିଂହ ୨ବଳରାମ ୩ ବାଣାସୁର ଖୁବ ୪ଭୟଙ୍କର
୫ ଶର ୬ ଶର ୭ କୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ
୮ପ୍ରଭାସଚନ୍ଦ୍ର ୯ଐଶ୍ୱର୍ଯ୍ୟ ସଚନ୍ଦ୍ର ୧୦ ନକ୍ଷତ୍ରପରେ-
ପ୍ରଭା ଯାହାର ସେ ଭାଭ (ଭ (ନକ୍ଷତ୍ର)+ଆଭା
୧୧ପଦ୍ମ ୧୨ଘୃତ ୧୩ଅନ୍ନ ୧୪ଯୁଦ୍ଧ ୧୫ମୟୂରପିଚ୍ଛ
୧୬ ଶିଶୁପାଳ ୧୭ କୃଷ୍ଣ

୧ ପୁର୍ବେ ୨ ମତ୍ସ୍ୟକୂର୍ମାଦ ରୂପଧାରୀ ୩ ପରମାତ୍ମା
କୃଷ୍ଣ ୪ ଶର ୫ ଶତ୍ରୁ ୬ ନିକଟରେ ୭ ଭ୍ରମର
ସମୂହ ପରି କୃଷ୍ଣବର୍ଣ୍ଣ ୮ ମଧୁରଭାଷୀ ୯କଳହଭଞ୍ଜ
୧୦ ହଂସ ଷତକାରକ ୧୧ ଶ୍ରୀ (ଲକ୍ଷ୍ମୀ) ପ୍ରାଣନାଥ
ଲକ୍ଷ୍ମୀଙ୍କର ପ୍ରାଣନାଥ କୃଷ୍ଣ ୧୨ ଛକ୍ଷଣ ୧୩ ପଙ୍କ
୧୪ ଦୁଷ୍ଟ ନିଷ୍ଠୁର ଶତ୍ରୁ ୧୫ କୁ-ପୃଥିବୀ ୧୬ଗର୍ବିତ
୧୭ ବଷ୍ଣୁ (କୃଷ୍ଣ)

୧ ଅଭିମୁଖାନ୍ତକ ୨ କାର୍ଷ୍ଣି ସମରେ
ମାରି ଅରାତିଙ୍କି ଅନାୟାସରେ
ପ୍ରଦ୍ୟୁମ୍ନ ନାମକୁ କଲା ସାର୍ଥକ
ଏଡ଼େ ବଡ଼ ଜଣେ ହୋଇ ୩ ଅର୍ଭକ
ସମସ୍ତ ଗୁଣରେ ତାର
ଉଠିବା ପଢ଼ିବା ଏବଂ ଧମାଳ
ନଦେଖେ କେ ବାର ବାର ?
କାର୍ଷ୍ଣି ଅବଦାନ (ଜାତକର୍ମ) ସବୁ ନସାରି
ଭୟେ ଯୁଦ୍ଧ ଛାଡ଼ି ଗଲେ ବାହାରି
ଅଗ୍ରଣୀ ବୋଲାଉଥିବା ରାଜନେ
ମୁଣ୍ଡ ପୋତି ପୋତି ଲଜ୍ଜିତମନେ
ଲଉଧ୍ ଗୃସି ପକାଇ
କାହାବଳ କେତେ ଆଗରୁ ନଜାଣି
କରିବ କଂପା ବଢ଼ାଇ
ଯେହେତୁ ଜୟଶ୍ରୀ କଲା ଆଦର
ଚୈଦ୍ୟ କ୍ରୋଧ ତେଣୁ ବଢ଼ିଲା ଖର
ଆରମ୍ଭିଲା ଅଭିଯାନ ତକ୍ଷଣେ
ବାହିନୀ ସଙ୍ଗରେ ୪ ସଙ୍ଗରାଙ୍ଗଣେ
ଗଜ ୫ ବାଜୀ ଧାଡ଼ି ଧାଡ଼ି
ଭେରୀର ସବେଗେ ଡେଇଁଲେ ସଇନେ
ମରଣ ଭୟକୁ ଛାଡ଼ି ।

୧ ଶତ୍ରୁ ସମ୍ମୁଖରେ ଯମ, ୨ ପ୍ରଦ୍ୟୁମ୍ନ, ୩ ବାଳକ
୪ ସମରଭୂମି, ୫ ଅଶ୍ୱ
ପ୍ରଦ୍ୟୁମ୍ନ – ପ୍ର-ପ୍ରକୃଷ୍ଟ; ଦ୍ୟୁମ୍ନ-ବଳଯାହାର ସେ ପ୍ରଦ୍ୟୁମ୍ନ

ବେଳୁଁ ବେଳ ଠାଣ ହେଲା ୧ ପ୍ରଧନ
କରୁଥିଲେ ସୈନ୍ୟ ଘୋଷେ ଗର୍ଜନ
ସପକ୍ଷ ବିପକ୍ଷ ଚିହ୍ନି ନପାରି
କିଏସେ କାହାକୁ ହେଲାଣି ମାରି
କରି କେତେ ଅଭିନୟ
କ୍ରୋଧାଗ୍ନି ଜଳିଲେ ଲିଭାଇବା ପାଇଁ
ସକଳେ କରନ୍ତି ଭୟ ।
୨ ଲେଲେ ଅସିମାନ କାଳୀୟ ସର୍ପ
ପରି କୋପେ ଧରି ଦେଖାଇ ଦର୍ପ
୩ ଶିଳୀମୁଖେ ୪ ଶିଳୀମୁଖ ଅଜାଡ଼ି
ଦେଲେ ପ୍ରତିପକ୍ଷ ତୂଣୀରୁ କାଢ଼ି
ଖଣ୍ଡନେ ତା ଯଦୁବଳ,
ଅଭିମାନୀ ଚୈଦ୍ୟ କଲା ଅସ୍ତ୍ରବ୍ୟସ୍ତ
ପ୍ରୟୋଗ କରି କୌଶଳ
୫ ଅନ୍ତକର ତନୁ ତୁଲ୍ୟ ବିଶାଳ
ନିଷ୍ପ୍ରାଣ ପ୍ରାଣୀଙ୍କ ଶରୀର ମାନ
ଉଡ଼ନ୍ତି ବାୟସେ ହୋଇ ମୁଦିତ
ଝାମ୍ପି ନେବାପାଇଁ ପୁନେ ୬ ପିଶିତ
୭ ପାବନ ୮ ପ୍ରଧନ ଭୂଇଁ
ମାଷ ହେବ ବୋଲି ଶୁଭେ ଡାକ ଏଣେ
୯ ଗତପ୍ରାଣ ହେଲେ ଛୁଇଁ ।

୧ ଯୁଦ୍ଧ, ୨ ଚଞ୍ଚଳ, ୩ ଯୁଦ୍ଧରେ, ୪ ଶର
୫ ଯମର ଦେହ, ୬ ମାଂସ, ୭ ପବନ, ୮ ଯୁଦ୍ଧ,
୯ ମୃତପ୍ରାଣୀ ।

୧ବିଗ ୨ବିଖ୍ୟ ୩ବୃନ୍ତ ୪ଚୈଦ୍ୟ ସ୍ୟନ୍ଦନ
ଦେଖି ତା ଆଗକୁ କଲେ ଗମନ
ଶିଶୁପାଳ ବଧେ ହୋଇ ବାତୁଳ
ବେଳକୁଁ ବେଳ ଦେଖାଗଲେ କରାଳ
ଫିଟାଇ ଶିଖା ବନ୍ଧନ
ଟେମା ମହୀପତି କରି ତା ଦର୍ଶନ
କଲା ଅଘୋର ଗର୍ଜନ ।
ରୁକ୍ମଣୀ ହରାଇ ନେବା ଦିନରୁ
କାଉନାହିଁ ରାଗ ଚୈଦ୍ୟ ମନରୁ
କଟୁ ବଚନରେ କେତେ ଧିକ୍‌କାର
ସଞ୍ଚିତ କୋଧକୁ ଦେଲା ଉଦ୍‌ଗାର
ଭ୍ରୂଯୁଗ ଉନ୍ନତ କରି
ଉଠିଲା ୫ଶତାଙ୍ଗରୁ ବିସ୍ମୟ ଜନ୍ମାଇ
ବିଶାଳ କାର୍ମୁକ ଧରି ।
ବହ୍ନି ଶିଖାସମ ଦେଦୀପ୍ୟମାନ
ଦିଶୁଅଛି ତାର ନୟନ ମାନ
ବାଣ ୬ବ୍ରଜ ପାତ କରି ନଭକୁ
ନିକ୍ଷେପିଲା ତହୁଁ କୃଷ୍ଣ ବଳକୁ
କେଶବ ୭ବିଶିଖ ଯାଇ
ଅନନ୍ତ ବଳମଧ୍ୟେ ଖଣ୍ଡ ଖଣ୍ଡ କରି
ଭୂପୃଷ୍ଠେ ଦେଲା ପକାଇ ।
ଅର୍କ ମଣ୍ଡଳକୁ ଆଚ୍ଛାଦି ୮ବିଶିଖେ
କଲେ ବିଚକ୍ଷଣ ମାଧବ କୋପେ
ଆଗତ ସୈନ୍ୟଙ୍କୁ ରଘୁକୁଳର
ମାରିଲେ ନିକ୍ଷେପି ସୁତୀକ୍ଷ୍ଣ ଶର
ଏହାଦେଖି ଚେଦିରାଜ
ଚକ୍ରୁଷୋଲ୍କ କରି ଯାଦବମାନଙ୍କୁ
କ୍ଷେପିଲା ବାଣ ୯ଖଗରାଜ ।

୧ବି-ପକ୍ଷୀ ଗ-ଗତି କରୁଥିବାରୁ ପକ୍ଷୀ(ଗରୁଡ଼) ଉପରେ ଗମନ କରୁଥିବାରୁ-କୃଷ୍ଣ, ୨ବିଗତ ହୋଇଛି ଖ୍ୟା ବା ଉପ୍ସ ଯାହାର ନିର୍ଦ୍ଧକ ୩କୃଷ୍ଣ ୪ଶିଶୁପାଳ ୫ରଥ ୬ସମୂହ ୭ଶର ୮ଶର ୯ସାପ୍ରଶୀଳ

ସଦା ଜାଗରୂକ ମଧୁସୂଦନ
ନିକ୍ଷେପନ୍ତେ ପ୍ରତିବାଣ ଗର୍ଜନ
କରି ରଘୁ ସୈନ୍ୟ କଲା ନିଧନ
ତା ଦେଖି ତକ୍ଷଣେ ଚେଦି ରାଜନ
ବସିଲା ଯାଇ ଉପରେ
ଶ୍ୟାମ ଫଣଯୁକ୍ତ ଭୁଜଗାସ୍ତ୍ରମାନ
ଆବିର୍ଭୂତ ହେଲେ ଭୂତଳେ ।
୧ପନ୍ନଗମାନଙ୍କ ବିଷ ଫୁତ୍‌କାର
ଚଉଦିଗ କରିଦେଲା ଅନ୍ଧାର
ଚୈଦ୍ୟ ଛଳ ଜାଣି ଗରୁଡ଼ଧ୍ୱଜ
ଆଦେଶିଲେ ତବେ ୨ବିନତାତ୍ମଜ
ପ୍ରଜ୍ୱଳିତ ଶିଖୀ ପରି
ଗରୁଡ଼ ଉଦ୍‌ଭଇ ବିହଙ୍ଗମ ଦେଖି
ପଳାଇଲା ତମ ଉରି ।
ଉଦ୍‌ବେଳିତ ସିନ୍ଧୁସମ ଗର୍ଜନ
ଶୁଣି ସେମାନଙ୍କ, ଗରୁଡ଼୩ପ୍ରଧାନ
୪ଦନ୍ଦଶୂକ ଭୟେ ଗଲେ ପଳାଇ
ଶିଶୁପାଳ ଖେଦେ ମୁହଁ ଶୁଖାଇ
ଜପିଲା ଆଗ୍ନେୟ ମନ୍ତ୍ର
ଏଣେ ଛତ୍ରଭଙ୍ଗ ଦେଲେ କ୍ରମେ କ୍ରମେ
ଚେଦିରେ ୫ଚମୂ ୬ତନ୍ତ୍ର ।
ଅନନ୍ତରେ ୭ଜାତବେଦ ଜଗତ
ପୋଡ଼ି ଦେବାଲାଗି ହେଲା ଉଦ୍ୟତ
ଜାଣି ବ୍ରଜନାଥ କାଢ଼ି ୮କରୁ ୯କ
ଅଜାଡ଼ି ଦେଲେ ସେ ତାକ ଦାରୁକ୧୦
ଆସିଲା ଘୋର ବରଷା
ବୃଷ୍ଟି ବୃଷ୍ଟି ବହ୍ନି ହେଲା ଅନ୍ତର୍ଦ୍ଧାନ
ତୁଟିଲା ଚେଦ୍ୟ ଭରସା ।
ଏହିପ୍ରକାରେ ଚୈଦ୍ୟ ହୋଇ କୁପିତ
ସାୟୁକେ ହରକ କଲା ଅଦ୍ଭୁତ

୧ସାପ ୨ଗରୁଡ଼ ୩ଯୁଦ୍ଧ ୪ସାପମାନେ ୫ସୈନ୍ୟ ୬ସମୂହ ୭ଅଗ୍ନି ୮କ-ମସ୍ତକ ୯କ-ଜଳ ୧୦ସାରଥି(କୃଷ୍ଣଙ୍କ)

ସମ୍ଭାଳ ନପାରି ଚଢେ ତା ମୁଣ୍ଡ
ଠାଣି କଲେ କୃଷ୍ଣ ତତ୍ଷଣେ ଗୁଣ୍ଡ
ଚୂର ଡାଳ ଗଲା ପଡ଼
ଆନନ୍ଦେ ଗଡ଼ ଗଲେ କ ସରବେ
ଶୁଣି ମଲା, ମଲା ରଡ଼ !
ଗ୍ରୀଟିପିଟି ହୋଇ ଅଦ୍ଭୁତ ଭୂପ
୧ଦାଦଦ ୨ଦାଦାଦ କେଶବ ରୂପ
ଦର୍ଶନେ ପଙ୍କଜ ଗଲେ ଚରଣରୁ
ଖସିଲେ ଶକୁନ ନରେନ୍ଦ୍ରଶରୁ
ଘେରି ଶର୍ବ ବୃଷପଟେ
ପୂଜା ପୂଜା କରି ଭଣିଲେ ପିଣାକୀ
ଅସମ୍ଭବ୍ୟ କେ ନକଟେ ?
ତେଦତ ମଣେ ୩ଗୀର୍ବାଣଗଣ
ମହାନନ୍ଦେ କଲେ ପୁଷ୍ପ ବର୍ଷଣ
କମ୍ପେ ବସୁମତି ଜୟ ନାଦରେ
୪ଲୋକାଲୋକ କୃଷ୍ଣ ପ୍ରମୋଦଭରେ
ଶର୍ବଙ୍କୁ ଦହନ କରି,
ଲେଉଟିଲେ ରଣ ଭୂମିରୁ ଏ ଅନ୍ତେ
୫ଅନୀକମା ସଙ୍ଗେ ଧରି ।

## ସଂସାର ଚଳଣି

ଯାହାତାହା କରି ଦେଉଛୁ ଲେଖି
ଲାଜ ଉପେକ୍ଷି (ଘୋଷା)
ସଂସାର ଚଳଣି ପ୍ରତ୍ୟହ ଦେଖି ।
ମନ ପାଉ ନାହିଁ ଯାହା ମୋହର
ଲାଖନେ ଉର
ଜଣକ କଥାକୁ କା'ର ଆଦର ।
ଶୁଣୁଅଛୁ ଯେତେ ଏବର ଗୀତ
ଅଛୁକ ପ୍ରୀତ
କଏ ଅବା ଦେବ କାନ କେମିତ ।
ଭଷାକୁ ନଜାଣି ଲେଖନ୍ତି ବସି
ସାହିତ୍ୟେ ଋଷି

ପଗୃରିଲେ ତାଙ୍କୁ ଦଅନ୍ତ ହସି ।
ଦେଖ ହସ କାନ୍ଦ ଲଗିଛି ନିତି
ପ୍ରକୃତି ମାତ
କରିବୁ ବିଚାର ଦେଖି ଏ ସ୍ଥିତି ।
ମଦିରା ପାନରେ ବଳାଇ ମନ
ସରିଲା ଧନ
ପେଟକୁ ମୁଠାଏ ନମିଳେ ଅନ୍ନ ।
ସାଙ୍ଗ ସାଥୀ ହୋଇ ଥିଲେ ଯେତକ
ଗଲେ କେତକ
ଘଣିଲୁ କି ମନେ ଏବେ ଏତକ ?
ଆତ୍ମର ଭେଦରେ ସୁର ଅସୁର
ତୁଚ୍ଛା ଆତୁର
ନାହିଁ କେଉଁଠାରେ ସରଗପୁର ।
ପର ଉପକାରେ ମହତ ଜନ
ସ୍ୱାର୍ଥରେ ମନ
ନତଶି ଖଟଇ ସାରା ଜୀବନ ।
ଦୁର୍ବଳକୁ ମାରି ନିତ ରାକ୍ଷସ
ମାଡ଼ି ବିଧ୍ୱଂସେ
ରକ୍ତ ମାଂସ ମେଦ ଖାଇ ରଭସେ(ହର୍ଷେ) ।
ପରି ମିଥ୍ୟାସ୍ତବ ସନ୍ତତ କରି
ପାପ ଆଚରି
ବୋଲାଉଛୁ ସାଧୁ ଭବେ କପରି ?
ଅସଲଟେ ଫିଟିଗଲା ଜୀବନ
ଲୋଭରେ ଧନ
ନକରି ଖାତିର ନିନ୍ଦା ବଚନ ।
ପାତର ଅନ୍ତର କରି ବେଭାରେ
ମନ ଇଚ୍ଛାରେ
ଭୋଗିବୁ ତାଫଳ ଏବେ ସଂସାରେ ।
ହେଲୁ ହଟହଟା ପଣି ଅକର୍ମେ
ବାନ୍ଧିଲୁ ମର୍ମେ
କଏ ସୁଖୀ ଭବେ ଯାଇ ଅଧର୍ମେ ?
କରିବୁ ବିଚାର ପାପ ପୁଣ୍ୟକୁ
ଛାଡ଼ି ଲୋଭକୁ
ବାର ବାର ପଚାରିବୁ ମନକୁ ।

୧ ଦାମ ୨ ଶୁଦ୍ଧି ଦାତା ୩ ଦେବତା ସମୂହ
୪ ତ୍ରୈଲୋକ୍ୟଦର୍ଶୀ ୫ ବାହକ

କଏ ଦଏ କାନ କହିଲେ ଡ଼ମ
ଝୁଛାକୁ ଡମ (ଗର୍ବ)
ଶିଖ ପାଞ୍ଚକଥା ପଢ଼ ଆଗମ (ବେଦାଦି ଶାସ୍ତ୍ର)
ଦଦରା ନାବରେ ବୁଡ଼ାନାଉର
ପଡ଼ୁଛି ଦୁର
ଗୁରୁଙ୍କୁ ଅଧୀରା ଭୂଷିଲ ଛୁର ।
ଝୁଣ୍ଟୁଛି ଜୀବନେ ଅନେକ ଥର,
କ ହରବର
ତଥାପି ନ ଶିଖେ ଫଦେ ଅନ୍ତର ।
ଝକମକ ଦେଖି ହୋଇଣ ଛନ୍ନ
ଲାଖିଲା ମନ
ଗୃହୁଁ ଗୃହୁଁ ଦେଖ ଯାଏ ଜୀବନ ।
ଲଗିଛି ଝଗଡ଼ା ଭାଇ ଭାଇରେ
ପେଟ ପାଇଁରେ
ରାଜ ଟାଇଯାଏ ଭୁଛା କଳରେ ।
ନାନାରଙ୍ଗେ କେତେ ଗୃଳାଚ ଖେଳ
ନାହିଁଟି ବେଳ
କାହା ମନେ କା'ର ନଥାଏ ମେଳ ।
କଳମ ଗୃଷଲୁ ଗଲାଣି ଡର
ଚିନ୍ତା ନ କର
ବାହାନ୍ତ ବୋଇଚ ମନକୁ ଧର ।
ନବ୍ୟ ସମାଜର ନୂଆ ଫେସନ
କର ଦର୍ଶନ
ପଳାଉଚ ବୁଡ଼ା ବୁଜ ନୟନ ।
ଦାଣ୍ଡକୁ ସୁନ୍ଦର ନଦିଶେ ଯାହା
ଫୁଲଚ ବାହା
ହୋଇ ଅମାନିଆ କରୁଛ ତାହା।
ଦେଖିଲୁ ଜୀବନେ ସଂସାର ହାଟ
ଲୁଟିଛୁ ନାଟ
ଜାଳଲେ ଆଲୁଅ ଗୃଳବୁ ବାଟ ।
ନ ପଶେ ଜୁହ୍ନଆଁ କାହା ଘୃତରେ
ମୃତ୍ୟୁ ଘାତରେ
ଚୋର ଅସମୟେ କଏ ସାଥିରେ ।
ଅଡୁଆ ଭିତରେ କେବେ ନପଶି
କହିବୁ ହସି
କର୍ତ୍ତବ୍ୟରେ ଅନବରତ ରସି ।
ଧର୍ମ ବୋଲି ପିନା ଅକ୍ଷି ଉପରେ
କାହା ପଟରେ
ନଦେଇ ମୁଠାଏ କହୁ ଗୃତରେ ।
ବେଳ ଥାଉଁ ଥାଉଁ ଖୋଜିବୁ ଯାହା
ଦେଖାଇ ବାହା
ନ ଥାଇ କାତକ ଗୃଳବୁ ନାହା ?
ଜୀବକାରେ ସଦା ଶୁଦ୍ଧ ଆଚର
ତାପସ ପର
ପାପିବୁ ଜୀବନ ଲୋଭ ସମ୍ବର ।
ଗୁଣୀଗୁଣ କଏ ଚିହ୍ନୁଚ ଏବେ
ପାରବ ଯେବେ
ଧରାଧର କଲେ ମିଳବ ତେବେ ।
ନକରେ ବିଶ୍ୱାସ କଏ କାହାକୁ
ପାଟି ଝୁଛାକୁ
ସବେ ହୁସିଆର ନିଜ ଧନ୍ଦାକୁ ।
କେବା ଝାଡ ହୁଏ ଖାଲି କଥାରେ
ଫୁଲଣିଆରେ
ବାହାଦୁର ନେବା ପାଇଁ ବାହାରେ ।
ହସ ଗମତରେ ଯାଉଚ ଦନ
ଜ୍ଞାନରେ ସାନ
ପୂ ରୁଚ ଶତ୍ରୁଙ୍କ ନମଣ ସ୍ଥାନ ।
ପହିଲା ଆଷାଢ଼େ ଆସେ ବରଷା
ଆନନ୍ଦ ଚଷା
କୁକର୍ମେ ହେଉଚ ଉଗାର ହସା ।
ବାଟରେ ଘାଟରେ ସଭା ସମିତି
ଲାଗିଚ ନିତି
କଏ କାହୁଁ ଆସି ବୁଝାଏ ମତି ।
ଦୁନିଆଁ ବେପାର ହଟଚମଟ
ଖେଳେ କପଟ
କଏ କେତେ ଦନ ଉହ୍ନ ଚମଟ ।
ମିଛ ଗାଇ ଗାଇ ପାଅକ ଲାଭ
ଗୁପ୍ତ ସ୍ୱଭାବ
ସନ୍ତୋଷରେ ପିନା ତୁଟେ ଅଭାବ ।

ବରଷ ବରଷେ ଯାଇଚି ବିତି
ଦୁନିଆଁ ରୀତି
ଦେଖି ଚଳୁଥିଲେ ମିଳଇ ପ୍ରୀତି ।
କାହାପାଇଁ କେବେ ଚଢ଼ୁଚି ଭବେ
ଗର୍ବ ଗୌରବେ
କଲେ ତ କରିବେ ନିନ୍ଦା ସରବେ ।
ତତ୍ତ୍ୱଜ୍ଞାନ ଲଭି ହୁଅ ଆନନ୍ଦ
ନରଖି ଦ୍ୱନ୍ଦ
ନିଜ ନିଜ ମଧ୍ୟେ ତୁଟାଅ ଦ୍ୱନ୍ଦ୍ୱ ।
କାଉଁରିଆ କାଠି ଲଭିଚି କାହିଁ
ତାହାକୁ ବୁଝି
କରିଯାଅ କର୍ମ ମୁଣ୍ଡ ନୁଆଇଁ ।
ସୁଖୀ ନୁହେ କେଏ ସଦା ଏ ଭବେ
ମାତି ଗରବେ
କେନାହିଁ ହାନି କାହାର ଲଭେ ।
ସଜ୍ଜନର ସିନା ସଳଖ ମୁଣ୍ଡ
ଫିଟାଏ ତୁଣ୍ଡ
ଯେତେ ଲୋକ ଆସି ହୁଅନ୍ତୁ ରୁଣ୍ଡ ।
ବାହାଦୁର ଲାଗି ସକଳେ ବାଇ
କଚଡ଼ା ଖାଇ
ଖାଲ ବା ଢ଼ିପରେ ପାଦ ପକାଇ ।
ସିଗାର ଟାଣନ୍ତି ବୃଷଭ ପିଲେ
ଗହିର ବିଲେ
ଦେଖି ହସୁଚନ୍ତି ଆକାଶ ଚିଲେ ।
ମୋ ଦେଶର କଥା ଯାଉଚି ଭୁଲି
ବିଦେଶ ବୁଲି
ହେତୁ କଲେ ଛାତି ଯାଉଚି ଫୁଲି ।
ସିଆଁଣିଆ ଲୋକ ଡରେ ନ ଡ଼ରି
ମିଥ୍ୟାକୁ ବରି
କରୁଛନ୍ତି ଦେଖ ଖମାରି ଭରି ।
ନ ବୁଝି ଆଗରୁ ଆପଣା ଫାଟ
ତୁଛାକୁ ହାଟ
ଶୁଣିବ କିଏ ତୋ ଧରମ ବାଟ ।
ମୃତ୍ୟୁଚିନ୍ତା କିଏ କରେ କି ଲଭେ
କେବେ ଏ ଭବେ
ଧନ ସରେ ସିନା ମାତି ଉତ୍ସବେ ।
ଜାତି ଜାତି ବୋଲି ଧରିଥା ବସି
ପାଠରେ ରସି
କେତେ ତୋ କୂଳରୁ ଗଲେଣି ଖସି ।
କଅଁର ଭିତରେ ବାଜୁଛି ଘଣ୍ଟା
ବୁଲଚ ବଣ୍ଟା
ନ ଛାଡ଼ିଲ କିଏ ଗେଞ୍ଜୁଛି କଣ୍ଟା ।
ମୋର ମୋର ବୋଲି ବୋଲୁଚୁ କିଆଁ
ଦେଖ ଦୁନିଆଁ
ଟିକକ କଥାରେ କାହିଁକି ନିଆଁ ।
ପର ଉପକାରେ ନ ଯା ଓହରି
ସର୍ବସ୍ୱ ସରି
ଯାଉ ପଛେ ତଳେ ଚିନ୍ତା ନକରି ।
ଶୁଖିଲା ପତର ପଡ଼ୁଚି ଝଡ଼ି
ଘଡ଼ିକି ଘଡ଼ି
ତଥା କାଳମୁଖେ ଟିବୁରି ପଡ଼ି ।
ନପଡ଼ କଥାରେ ବାହାପିଆର
ସାର ଅସାର
ବାଛିବୁ ଜୀବନେ କରି ବିଚାର ।
ଜପାମାଳ ଧରି ମୋହ ତୁଟାଇ
ଦେଉଳେ ଯାଇ
କିଫଳ ପାଇବୁ ପରି କନ୍ଦାଇ ।
କାହାବଳ କେତେ ଆଗୁଁ ନଜାଣି
ଅବଶ୍ୟ ପାଣି
ପିଇବୁ କଳହ ଆଣିଲେ ଟାଣି ।
କରି ଯାଅ କର୍ମ କରି ବିଚାର
ମନୁଁ ବିକାର
ଛାଡ଼ିଲେ ମିଳିବ ସୁଖ ଅପାର ।
କାହା ପାଇଁ ଲୋଭ କରୁଛୁ ଏତେ
ବଢ଼ିବ ସେତେ
ତା ପଛେ ଆଶାରେ ଧାଇଁବୁ ଯେତେ ।
ତୋର ବୋଲି କିଛି ନାହିଁ ଏ ଭବେ
ଚିନ୍ତିଲେ ଲଭେ
ଜାଣିବୁ ସମ୍ପଦେ ସଖା ସଭିବେ ।

କେତେଦିନ ପାଇଁ କିଏ କାହାର
ମାୟା ଫସାଇ
କରୁଥିବୁ ସଦା ନ୍ୟାୟ ବିଚାର ।
ମୁକୁଳି ନିବୁକି ଅନ୍ୟାୟାଚାର
ଛଳେ ନ ଡର
ଟିପ୍ପୁଣି ତା ଜଣେ କରୁ କପର ।
ଏତରେ ମଥା ସଦା ଆନତ
ଦେଖୁଁ ସତତ
କି ଫଳ ପାଉଚୁ ହୋଇ ଉଦ୍ଧତ ।
ମଧୁର ସମୟ ଯାଉଚି ଚୂଳି
ନବସ ଖାଲି
ଅଳସୁଆ ହେଲେ ସରବ ବାଲି ।
କେବେ ଲଗ୍ନ କେବେ ଆବୃତ ବନ
କରି ଦର୍ଶନ
ଭାବଲେ ଗ୍ରୁନିଆଁ ସବୁରି ମନ ।
ସକାଳ ସଞ୍ଜକୁ କରି ତୁଳନା
ଏଛକୁ ଅନା
ନଦିଏ ଆନନ୍ଦ ବୃଥା ଭାବନା ।
ଚଳିବୁ ଜୀବନେ ନକୁଦ କଣ୍ଟା
ବାଜିଲେ ଘଣ୍ଟା
ରଖିବ କେ ଦଣ୍ଡେ ଉଡ଼ିଲେ ଅଣ୍ଟା ?

## ପ୍ରଭେଦ

ଦେଖିଥିଲି ପିଲାଦିନେ କେତେ ବର୍ଷୀୟାନ
ବିଚାରେ ଯାହାର ଥିଲା ସଦା ନ୍ୟାୟଧ୍ୟାନ ।
ଦେଉଥିଲେ ଜଳାଞ୍ଜଳି ନିଜସ୍ୱାର୍ଥପ୍ରତି
କରୁଥିଲେ କାର୍ଯ୍ୟମାନ ଧର୍ମେ ରଖି ମତି ।
କଠୋର ପରିଶ୍ରମରେ ଯାପୁଥିଲେ କାଳ
ଘନ ପ୍ରତି ଥିଲା ତାଙ୍କ ହୃଦୟ ବିଶାଳ ।
ତୁଟୁଥିଲା ଗ୍ରାମ୍ୟକଳି ଗାଆଁ ମଣ୍ଡପରେ
ମାନି ଚଳୁଥିଲା ଦୋଷୀ ମହା ଆନନ୍ଦରେ ।
ଚଳୁଥିଲା ଦରବାର ଓକିଲ ନଥାଇ
ଫେରୁଥିଲେ ଅଦାଲତୁଁ ଲୋକେ ନ୍ୟାୟ ପାଇ ।

ଜନତା ବଢ଼ିଲା ଯେତେ ବଢିଲା ଫିସାଦ
ପରମୁଣ୍ଡେ ଲଦା ସିନା ଛୁଞ୍ଚା ଅପବାଦ ।
ବଢ଼ିଲା ଓକିଲ ଭାଉ ବଢ଼ିଲେ ମାମଲା
ଧାଇଁ ଧାଇଁ ଅଦାଲତେ ଦାବାଦାର ମଲା ।
ବରଷ ବରଷ ଧରି ପଢ଼ିଚି କାଗଜ
ଫିଟାଉ କାହାନ୍ତି ପାଟି ଅମ ଜନବ୍ରଜ ।
କା ଆଗେ କହିବା ଦୁଃଖ ଲୋଡୁଛୁ ତ ଆପେ
ବିଷଣ୍ଣ ବଦନେ ଘରେ କାଳ ଏବେ ଯାପେ ।
ସରିଲା ପଇସାତକ ସଞ୍ଚିଥିଲା ଯାହା
ଟଙ୍କ ସଙ୍ଗେ ସାର ଖାଏ କଥା ହେଲା ତାହା ।

## ବୋଧୋଦୟ

ରହିବାକୁ ବନ୍ଧନରେ କେତେ ଦିନ ବାକି
କଲୁକି ହିସାବ ଦିନେ ଶୂନ୍ୟେ ଏକାକୀ ?
ଖୋଜିବାକୁ ପରଖିଅ କେତେ ତରବର
ଶତ ଶତ ରନ୍ଧ୍ର ଗୁଡ଼ି ନିଜ ଜୀବନର ।
ଆତ୍ମସୁଖ ଭୋଗ ଲାଗି ଅନାରତ ବ୍ୟସ୍ତ
କେତେ ଦିନ ପାଇଁ ଏତେ ହେଲୁ ମୋହଗ୍ରସ୍ତ ।
ଭଲମନ୍ଦ ନ ବିଚାରୁ କେବେ ତ ଟିକିଏ
ଜାଣିଲେହେଁ ଜୀବନଟା ମାପିକି ଘଡ଼ିଏ ।
ପର ଉପକାରେ ସିନା ଦିନକର ଭୋର
ପର ଉପକାରେ ଅର୍ଜୁ ସଦା ପାପ ଘୋର ।
ହିଂସା ଦ୍ୱେଷ ଅବିରତ କଲୁତ ଭୂଷଣ
ମଣିଲୁ ସହସ୍ତୁ ତାକୁ ପରମ ଦୂଷଣ ।
ବୁଲୁଥିବା ଅନ୍ଧ ଲୋଟା ପଡ଼ୁଚି ନୟନେ
କାହିଁକି ଏ ଦଶା ଭୋଗ ନଭାବିଲୁ ମନେ ।
ଶତ ଶତ ଚଙ୍ଗୁ ବୁଲି ଭୋଗନ୍ତି ଯେ ଦଶା
ପାଉନ୍ତି କି କରି ସୁଖେ କେବେ ଉପାବସା ।
ତୋର ପୂର୍ବ ପୁରୁଷଙ୍କ କଥା ହେତୁ କରି
ଚଳିଲେ ସକଳ ଦୁଃଖ ଯିବ ଅପସରି ।
ନିଜ ଦେହ ଜାତ ଶତ୍ରୁ ନ କଲେ ତାଡନ
ବଢିଯିବ ବାହ୍ୟ ଶତ୍ରୁ ଦେବାକୁ ପୀଡ଼ନ ।
ଆହା ! କେତେ ତର୍ଣ୍ଣି ଭର୍ଣ୍ଣି ସାଇତିଲୁ ଧନ
ତଥାପି ତୋହର କେବେ ନ ପୁରିଲା ମନ ।

ଆସିମିବ ଯେତେବେଳେ ମରଣ ଡାକରା,
ଭାବିଛୁ କି ସେତେବେଳେ ଦେବ କିଏ ଧରା ।
ବିଷୟାନନ୍ଦରେ ମଗ୍ନ ହୋଇ ଏ ଜୀବନ,
ନଯାଉ ବୋଲି ଅନିଶ କରୁ ଚଣ ମନ ।
ଜନ୍ମଶୀଳ, ମୃତ୍ୟୁଶୀଳ ସଦା ଏ ସଂସାର,
ବେଳ ଥାଉଁ ଥାଉଁ ବାଛିନିଅ ସାରାସାର ।
ସନ୍ତୋଷରେ ଅହରହ ବଢେ ମନୋବଳ,
ସ୍ୱାର୍ଥକଲେ ପରିହାର ହୃଦୟ ନିର୍ମଳ ।
ହିଂସିଠକେ ଖୋଲମରା ହୋଇଯାଏ ପ୍ରାଣ,
ତେବେ ତୁଚ୍ଛାଠାରେ କିପାଁ ଦେଖାଉଛ ଟାଣ ।
ମହାମୋହ ଅଗ୍ରଜକ ବିବେକ ନୃପତି,
ପରାଜୟ କରି ଭବେ ଲଭିଲା କୀର୍ତ୍ତି ।
ପ୍ରବୃତ୍ତି ନିବୃତ୍ତି ଦୁହେଁ ଲଗିଛନ୍ତି କଳି,
କିଏ ବଡ କିଏ ସାନ ହେଉ ନାହିଁ କଳ ।

ମନକୁ ବିକୃତ କରୁଚ ଯିଏରେ
ଦୂରରେ ରହିବ ତାର,
୧ଯମନିୟମକୁ ପାଳିବେ ତ ହେବ
ପାର ଭବ-ଅକୂପାର ।
ଉତ୍ପଥଗାମୀ ବା ହେଲେ କେତେବେଳେ
କର ପ୍ରାୟଶ୍ଚିତ ତାର
ନୁହ ବିମୋହିତ ସୁଗନ୍ଧିତ ବାୟୁ
ପାଇ ନବ ମଲ୍ଲିକାର,
ନବ ଯଉବନା କାମିନୀମାନଙ୍କୁଁ
ଦେଖି ହୁଅ ନିର୍ବିକାର ।
ବିବେକ ଲଗାମ ଦୃଢମନେ ଧରି
ରହ ସଦା ହୁସିଆର ।
ଚନ୍ଦ୍ରମା କିରଣ ଉଦ୍‌ଭାସିତ ରାତ୍ରି
ଅଟଇ ସଦା କ୍ଷଣିକ
ଅତି ଯତନରେ ରଖିଲେ ସାଇତି
ଯିବ କି ସଙ୍ଗେ ୨ମାଣିକ ।
ବେଳ ଥାଉଁ ଥାଉଁ ମୋହକୁ ମନ୍ଥନ
କଲେ ବା ପାଇବ ଫଳ
ବିଷୟରେ କିପାଁ ପେଷି ହୋଇ ସଦା
ପିଉଛ ଆଣି ଗରଳ ।
ସହାୟ ସମ୍ପନ୍ନ ନୁହେ ଯା ଜୀବନ
କରୁଥିବ ତାକୁ ଭୟ,
ବିବେକର ବୋଲ କରୁଥିଲେ ସିନା
ହେବ ପ୍ରବୋଧ ଉଦୟ ।
କରି ପରିହାର ଆଳାପ ବିଳାସ
ହାସକ୍ରୀଡ଼ା ଆଲିଙ୍ଗନ,
ପରମ ଚଣ୍ଡାଳ କ୍ରୋଧକୁ ହୃଦରୁ
କର ଜବେ ଉନ୍ମୂଳନ ।
ବ୍ରହ୍ମ ସଂସର୍ଗରେ ଅବିଦ୍ୟାଙ୍କ ଠାରୁ
'ମନ' ନାମେ ପୁତ୍ରଜାତ,
ପ୍ରବୃତ୍ତି ନିବୃତ୍ତି ତାଙ୍କ ବେନି ପତ୍ନୀ
ହୋଇଚ ସଂସାରେ ଖ୍ୟାତ ।
ମହା ମୋହକୁଳ ପ୍ରବୃତ୍ତିରୁ କ୍ରୋଧ
ନିବୃତ୍ତିଠାରୁ ବିବେକ
ଜନମିଲେ ପରି ମଣିଷ ଶରୀରେ
ଦେଖାନ୍ତି ଯେ ଯାହା ଟେକ ।
ବୈରିତା ବଢଇ ଦୁଇ ଭାଇଙ୍କର
ସଦାଭୋଗ୍ୟ ପଦାର୍ଥରେ
ନୁହଇ କୁଣ୍ଠିତ କରିବାକୁ ପାପ
କ୍ରୋଧ ଉଠିବା କାଳରେ ।
ତରଳାକ୍ଷୀଙ୍କର ସାଧ୍ୱସ କମ୍ପିତ
ସ୍ତନହୃଦୟ ଆଲିଙ୍ଗନ
ପ୍ରବୃତ୍ତି ଇଙ୍ଗିତରେ କରିଥାଏ ସିନା
ଅନବରତ ଦୁର୍ଜନ ।
ବିବେକ ସମ୍ପର୍କେ ହୋଇଛନ୍ତି ଜାତ
ଯମ ଶମ ଆଦି ଭାଇ
କ୍ରୋଧ ସମ୍ପର୍କରେ ଲୋଭ ଅହଂକାର
ଦିଅନ୍ତି ଗୋଳ ଲଗାଇ ।
ଅଭାଗାମାନଙ୍କ ମନୋରଥ ପୂର୍ଣ୍ଣ
ହୁଏ କି କେବେ ଜୀବନେ
ପୂର୍ବାର୍ଜିତ ପାପ ଘାଣ୍ଟୁଅଛି ବୋଲି
କେ ଚିନ୍ତଇ ଦିନେ ମନେ ।

୧ ଜୀବନରେ ନିୟୋଗ, ସଂଯତ ୨ ସୁନାରୂପା

କୁଳ ଷଡ଼୍‌ରିପୁ କାଶ ପ୍ରବୃତ୍ତିର କେବେ
ନଥାଏ ସ୍ୱପ୍ନର ଜ୍ଞାନ
ଟିକକ କଥାରେ ଉଦ୍‌ଭ୍ରାନ୍ତ, ତତକ୍ଷଣେ
ଉଖୁରେଇବା ତା ଧାନ ।
ପୌରାଣିକ ଗାଥା ଶୁଣାଇଲେ ତାଙ୍କୁ
ନ ପଡ଼େ ତାହାର ଶ୍ରବେ
ଉଜଟ ହୋଇ ସେ ଉଝାଉଡ଼ି ଲାଗି
ଶରବେ ଉଠଇ ଜବେ ।
ଆପଣା ଦୋଷକୁ ମଣିଷ କଦାପି
ନପାରଇ ଦେଖି କେବେ
ଗର୍ବ୍ବସ୍ଫୀତ ହୋଇ ହୀନ ପ୍ରବୃତ୍ତିର
ବଶବର୍ତ୍ତୀ ହୁଏ ଯେବେ ।
ଗର୍ବ୍ବାନ୍ଧତ ଯୋଗୁଁ କାର୍ଯ୍ୟାକାର୍ଯ୍ୟ ଜ୍ଞାନ
ରହିତ ହୋଇ ମଣିଷ,
ଯଥେଚ୍ଛାଚାରିତା ହେତୁରୁ ଉତ୍ପଥେ(କୁପଥେ)
ପ୍ରବୃତ୍ତ ସିନା ଅନେଶ ।
ଜଗତ ବ୍ୟାପକ ଅବ୍ୟାହତ ଜ୍ଞାନ
ଅଟନ୍ତି ପରମେଶ୍ୱର,
ମୋହ ସାଗରରେ ମଜ୍ଜିମୂଢ଼ ସଦା
ନିନ୍ଦେ ତାଙ୍କୁ ନିରନ୍ତର ।
ଅସତ ଭବକୁ କରେ ପ୍ରଦର୍ଶନ
ବାରବନିତା ଯେସନ,
ଅବିଗ୍ରହ ସିଦ୍ଧା [1]ଅବିଦ୍ୟା ସଂସାରେ
ଠକୁଛି ସିନା ତେସନ ।
ଗୋଟିଏ ଭାସ୍କର ଶତ ଜଳ ପାତ୍ରେ
ପ୍ରକାଶଇ ରୂପ ଯଥା,
ଏକ ହେଲେ ମଧ୍ୟ ଦେଖାଏ ମନ ତା
ଭିନ୍ନ ଭିନ୍ନ ଛଟା ତଥା ।
ସଦା ଧୈର୍ଯ୍ୟଧାରୀ ଶାନ୍ତ ମହୋଦୟ
ସ୍ୱଚ୍ଛାନ୍ତଃକରଣେ ବସି,

୧ ମାୟା

ମୋହ ପ୍ରତାରିତ ମାୟା ଦ୍ୱାରା କେବେ
କହେ କଥା ହସି ହସି ।
ପ୍ରବୃତ୍ତିର ବଡ଼ ପୁତ୍ର କ୍ରୋଧ ମାନ
ହିଂସା ଦମ୍ଭ ଅହଂକାର,
ନିବୃତ୍ତିର ପୁତ୍ର ଶମ ଦମ ଜନ୍ମି
ଶିଖିଲେ ଅସାର ସାର ।
ସର୍ବ୍ବ ଶକ୍ତିମାନ ଅବିନାଶୀ ଆତ୍ମା
ଅହଂକାର ବନ୍ଧନରେ
ପଡ଼ି ଶରୀରରେ ଭୋଗଇ ଯାତନା
ଶମ ଦମ ଅଭାବରେ ।
ମୁଣ୍ଡିତ ମୁଣ୍ଡକୁ ମଣ୍ଡିତ କରାଇ
ପଣ୍ଡିତ ବୋଲାଇ ଲୋକେ
ପ୍ରମାଣ ସିଦ୍ଧର ବିରୁଦ୍ଧାଚରଣ
କରି ଠକୁଛନ୍ତି [1]ଲୋକେ ।
ବିବେକ ବିନୟ ପ୍ରଜ୍ଞାଶୀଳ ଆଦି
ଏକ କୁଟୁମ୍ବରେ ଛନ୍ତି
ପ୍ରବୃତ୍ତି ଅଂଶରୁ ଜନ୍ମ ଲଭିଥିବା
କ୍ରୋଧ ଦାଉ ଯାନ୍ତି ସହି ।
କଲେ ଉପଦ୍ରବ ଅହଂକାର ଦମ୍ଭ
ପ୍ରକମ୍ପିତ ବସୁନ୍ଧରା,
ଲୁଚିଯାଏ ସେବେ ବିବେକ ଭିତରେ
ନଦେଇ କାହାକୁ ଧରା ।
ମାୟିକ ବଂଶର ବିନାଶ ସାଧନେ
ବିବେକ ହେଉ ତତ୍ପର,
ତୁଟିବ ଅଶାନ୍ତି ଆନନ୍ଦ ସୁଖରେ
ଚଳିବ ଶରୀର ଘର ।
କଳ୍ପନା ଗଠିତ ପଦାର୍ଥରେ କେବେ
ହୁଅ ନାହିଁ ବିଡ଼ମ୍ବିତ,
ଆକାଶ ବୃକ୍ଷରୁ ଫଳ ଆଶା କରି
ନହୁଏ କିଏ ଲଜ୍ଜିତ ।

୧ ଜଗତରେ

କ୍ରୋଧ ଜଗତକୁ କରିଦିଏ ଅନ୍ଧ
ପୁଣି ସ୍ମୃତି ଶକ୍ତି ହୀନ
କ୍ଷଣକ ମଧ୍ୟରେ ହୋଇଯାଏ ତାର
ହିତାହିତ ଜ୍ଞାନ ଲୀନ ।
ମିଥ୍ୟାପ୍ରତି ନିତି ଥିବ ଜାଗରୁକ
ତା ପୂଜା ରାଜ ଦୁଆରେ
ବାଟରେ ଘାଟରେ ଯେ ପାଉଛି ନିନ୍ଦା
ତା ପ୍ରୀତି ପୁଣି ବେଶ୍ୟାରେ ।
ମାନୋପୂଜା ସମ ଆକର୍ଷ ବସ୍ତୁ ତ
ନପୂନ ହୁଏ ମାହାର
ସେହି ମହାମୋହ ଭବ ରଙ୍ଗ ମଞ୍ଚେ
ହୋଇଅଛି ନାଟ୍ୟକାର ।
ଲୋଭ କ୍ରୋଧ ହିଂସା ନଟ ସାଜି ତହିଁ
କରୁଛନ୍ତି ଅଭିନୟ
ତହିଁର ଦର୍ଶକ ଶାନ୍ତି ପୁଣି ଶ୍ରଦ୍ଧା
ମନରେ ଉପୁଜେ ଭୟ ।
ସୁଖୀଠାରେ ମୈତ୍ରୀ ଦୁଃଖୀଠାରେ ଦୟା
ଧର୍ମାତ୍ମାଠାରେ ସନ୍ତୋଷ
ବହି ଉନ୍ମୂଳନେ ମାତ ପ୍ରବୃତ୍ତିର
ସମ୍ଭବ ଜୀବନେ ପ୍ରୋଷ(କ୍ଲେଶ)
ଅନ୍ତରାତ୍ମା କା'ର ନହେଉ ଦୂଷିତ
ରୋଷ ଦ୍ୱେଷ ଅହଂକାରେ,
ଶାନ୍ତି ଶ୍ରଦ୍ଧା ମୈତ୍ରୀ ଖେଳିଲେ ହୃଦୟେ
ମିଳିବ ଯଶ ସଂସାରେ ।
ମୃଗ ମରୀଚିକା ତୁଲ୍ୟ ସାର ଶୂନ୍ୟ
ସଦା ସାଂସାରିକ ସୁଖ
ଆତ୍ମଜ୍ଞାନ ଲଭି ମହା ଆନନ୍ଦରେ
ହୁଅ ତହିଁରୁ ବିମୁଖ ।
ଅକ୍ରୋଧ କ୍ରୋଧକୁ ଜୟ କରିବାରେ
କ୍ଷମାକୁ କର ଆଶ୍ରୟ,
ସହାସ ବଦନେ କୁଶଳ ପ୍ରଶ୍ନରେ
ହେବ କୋପର ବିଲୟ ।

ମେଣ୍ଟିବିବ କି ଆଶା କାର କେତେବେଳେ
ଜନମି ବସୁନ୍ଧରାରେ
ଲୋଭାଦି ଚେଷ୍ଟାରୁ ଅପସରି ଯାଇ
ଚଳ ସଦା ଅହିଂସାରେ ।
ଦେଖୁଛ ତ ମୃତ୍ୟୁ ମସ୍ତକେ ସବୁରି
କରେ ନୃତ୍ୟ ଅବିରଳ
ଜ୍ଞାନ ଜଳେ ତେଣୁ ଅଜ୍ଞାନ ଧୂଳିକୁ
ଧୋଇ କରିବ ନିର୍ମଳ ।
ଗୃଧ୍ରରୂପୀ କ୍ରୋଧ ଲୋଭ ମାତ୍ସର୍ଯ୍ୟର
ତତ୍ପର ହୁଅ ବିନାଶେ
ଭୀଷଣ ସର୍ପିଣୀ ଜରା କଲେ ଗ୍ରାସ
ପଶୁଛି କିଏ ତା ପାଶେ ।
ସଂସାର ବାସନା ବିଘଟନ ପାଇଁ
କରିଯାଅ ଯାହା ଭଲ,
ମରଣ ଜନିତ ଶୋକାଗ୍ନିରେ ପଡ଼ି
ହୁଅ ନାହିଁ କଲବଲ ।
ରଖିଲେତ ଚିହ୍ନି ହିତୈଷୀ ମାନଙ୍କୁ
ଚଳିବ ସୁଖେ ସଂସାରେ,
ଦେଖିଲେ ଶତ୍ରୁକୁ ନହୋଇ ବିବ୍ରତ
କହିବ କଥା ଶ୍ରଦ୍ଧାରେ ।
ସହସ୍ର ଶିଖାରେ ସ୍ନେହାଙ୍କୁର ଉଠି
ଶୋକବୃକ୍ଷ ହୁଏ ଜାତ
ତା ତଳୁ ବିଗ୍ରହ କରି ଅହରହ
ଲଭିବ କର ଉତ୍ପାତ ।
ନାନାବିଧ କୀଟ ହେଉଅଛି ଜାତ
ଏ ଶରୀରେ ପ୍ରତିଦିନ
ବିନାଶେ ତାଙ୍କର ପ୍ରୟାସୀ ନହେଲେ
ଅବଶ୍ୟ ମରିବ କ୍ଷିପ୍ର ।
ପ୍ରବୃତ୍ତିରୁ ଜାତ ମାତ୍ସର୍ଯ୍ୟ ବିଦ୍ୱେଷ
କ୍ରୋଧ ଅହଂକାର ଆଦି
ବିବେକ ୧ଖାରକେ ନକଲେ ଉଚ୍ଛେଦ
ଆଣିଥାନ୍ତି ନାନା ବ୍ୟାଧି ।

ଚିତ୍ତ ବୃତ୍ତିକାର ନୋହୁ କଳୁଷିତ
ଇନ୍ଦ୍ରିୟ କର ଦମନ
ଶାଶ୍ୱତ ଶକ୍ତିକି ଜାଣିବା ନିମିତ୍ତ
ମଣିଷ କରୁ ଯତନ ।
ଅଭାଗ୍ୟ ସମସ୍ତ ହେଲେ ଉପସ୍ଥିତ
ହୁଅଇ କ୍ଷୁଣ ଶରୀର

ମର୍ମଭେଦୀ କ୍ଲେଶ ଜାତ ହୋଇ ତହୁଁ
ଲୋକଙ୍କୁ କରେ ଅସ୍ଥିର ।
ଅନର୍ଥ ସାଧିକା ଅଟଇ ପ୍ରବୃତ୍ତି
ସମ୍ପତ୍ତି ମୃତ୍ୟୁ କାରକ,
ବୈଷୟିକ ମାର୍ଗ କରେ ତ୍ୟାଗ ତେଣୁ
ପରଂବ୍ରହ୍ମ ଉପାସକ ।



# ନିରାଟ ସତ

ବଶୃଭକ ଯଦି କରିବ ଅନ୍ୟାୟ
କାହାକୁ କହିବା ଦୁଃଖ
ଆଳସ୍ୟରେ ନିତି ଯାପିଲେ ସମୟ
ମିଳିବ କି କେବେ ସୁଖ ।
ବୃଷଭ ରାସଭ୧ ଦଣ୍ଡରେ ବାରଣ
କରିହେବ ଅନାୟାସେ
ମୂର୍ଖତା ଦୋଷରୁ ଦୁର୍ଜନ ଆୟତ୍ତ
ହେବନି ଶତ ପ୍ରୟାସେ ।
ବାସ୍ତବିକ ଜ୍ଞାନ ନ କରି ଅର୍ଜନ
ପଣ୍ଡିତ ବୋଲାଇ ଥୋକେ
ହଦ ଲେହନର ଆଶ୍ରୟରେ ଆଜି
ପାଉଛନ୍ତି ପୂଜା ଲୋକେ୨
ଅତି କ୍ଷୁଦ୍ର ପ୍ରାଣୀ ହେଲେହେଁ ପିମ୍ପୁଡ଼ି
ଖଟିଖିଆ ସଦା ଭବେ
କୁଟୁମ୍ବ ଭିତରେ ଥିବାରୁ ଏକତା
ଊଣାନାହିଁ ତାର ଲଭେ ।
ଅଧିକାର ଲାଗି ନୋହିବ ବ୍ୟସ୍ତ କେବେ
ସେବାରେ ଲଗାଅ ମନ

୧ ଗଧ   ୨ ଜଗତରେ

ଅସହାୟ ପ୍ରତି ଦୟା ବହି ଚିତ୍ତେ
ସାର୍ଥକ କର ଜୀବନ ।
ଭୋଗ ପାଇଁ କେବେ ନହେଉ ବ୍ୟୟିତ
ନିଜ ଉପାର୍ଜିତ ଧନ
ନକର ଅଗ୍ରତେ ଦଇନ ପ୍ରକାଶ
ଧର୍ମ ଆଗେ କଦାଚନ ।
ଜାତିର ଟେକକୁ ରଖିବାକୁ ସଦା
କରିବ ଜୀବନେ ପଣ
ସତ୍ୟନ୍ୟାୟ ଲାଗି ସକଳ ବଇଜ
ସତତ କରିବ ରଣ ।
ତୀର୍ଥ ଯାତ୍ରା କରି କି ଫଳ ପାଇବ
ନଥିଲେ ଶୁଦ୍ଧ ହୃଦୟ
ଲୋଭ ବନ୍ଧନରେ ନ ପଡ଼ନ୍ତି ଯେହୁ
କାହାକୁ ତାହାର ଭୟ ।
ମଣିଷକୁ ସ୍ୱାର୍ଥ କଢ଼ାଇଲେ ବାଟ
ପରଦ୍ରବ୍ୟେ ଆଶା ବଳେ
ଅସାଧୁ ଉପାୟ ମାନ ଦେନ ଯାଇ
ଭିଆନ୍ତି ତୁଚ୍ଛାକୁ କଳ ।
କୁଳଶୀଳ ବାରି ନଜାଣି ସହସା
ନକରି ତାକୁ ବିଶ୍ୱାସ

ସଂସାର ସଂଗ୍ରାମେ ରଖିବାକୁ ଟେକ
ବରଜ ଭୋଗ ବିଳାସ
ଜଗତର ଗତି ଦେଖି ନଦେଖି ନିତି
ମନକୁ କରିବ ଅସ୍ଥ,
ମାତୃଭୂମି ଋଣ ଶୁଝିବା ନିମିତ୍ତ
କରୁଥିବ ସଦାଲସ୍ୟ ।
କୋଟି କୋଟି ପ୍ରାଣୀ ବସୁନ୍ଧରା ମଧ୍ୟେ
ସରଜେ ଯେ ଦଣ୍ଡକରେ,
ତାଗୁଣ କୀର୍ତ୍ତନ ମନ ଦିଅ ତାଳି
ଶୟନେ ବା ଜାଗ୍ରତରେ ।
ତୁଣ୍ଡେ ହରିନାମ ଭିତରେ ଶଠତା
ଅବଲମ୍ବି କେତେ ଜନେ,
ପାପର ଅଞ୍ଚଳ ତୋଳୁଛନ୍ତି ବସି
ନିଜ ଜୀବିକା ଅର୍ଜ୍ଜନେ ।
ନସହେ ଦଇବ କାହାର ଅନ୍ୟାୟ
ଯେତେବେଳେ ଯାଏ ବଢ଼ି,
ଦେଖ ପ୍ରତିଦିନ ରସାତଳଗାମୀ
ହୋଇ ଲୋକ ଯାଏ ସଡ଼ି ।
ମିଛ ପ୍ରତି ଘୃଣା କରି ଅହରହ
ବଞ୍ଚିଥିବା ଯାଏ ଭବେ,
ସତ୍ୟକୁ ସଙ୍ଗାଳି କରୁଥିଲେ ସିନା
ପୂଜନ୍ତି ତାକୁ ସରବେ ।
ପରରୁଚି ପ୍ରତି ହେଉ ଅନୁକୂଳ
ସଦା ତୁମ ବ୍ୟବହାର,
ଅପମାନ ମାନ ବଢ଼ାଇ ଛୁଡ଼ାଇ
ଆଗୁର ଭେଦରେ କାଇ ।
ମିଛ ଗାଇ ଗାଇ ଅନ୍ୟକୁ ଠକିବା
ବୃତ୍ତି କରିଥିବ ଯେବେ
ଭାଗବତଗୀତା ଶୁଣୁଥିଲେ ବସି
ଖଣ୍ଡିବ କି ପାପ କେବେ ?
ନାଶରୀ ଭବେ କେତେଦିନ ତୁମ
କରି ଚିନ୍ତା ବାର ବାର
କର୍କଶ ବଚନ କହି କେତେ ବ୍ୟଥା
ଦିଅନାହିଁ ମନେ କାଇ ।

ନାନା କଥା ଲୋକେ କହନ୍ତି ପଛରେ
ହୁଡ଼ିଲେ ବଚନ ଥରେ,
ତେଣୁ ପଛଘୁଞ୍ଚା ଦିଅ ନାହିଁ କେବେ
ଅଙ୍ଗୀକାର ପାଳନରେ ।
କ୍ରୀଡ଼ା ପ୍ରମୋଦରେ ଯାଉଛି ସମସ୍ତ
ଶିଖିବାକୁ ନାହିଁ ବେଳ କାହାର,
ବେଦ ବେଦାନ୍ତକୁ ଗୋଡ଼ରେ ଆଡ଼େଇ
ସ୍ୱାର୍ଥଚିନ୍ତା କଲି କେବଳ ସାର ।
କ୍ରୀଡ଼ାରତ କେହି ନଥାଇ ପୁରବେ
ଥିଲେ ତ ଶାଣୁଆ ଅତି
ସ୍ୱାସ୍ଥ୍ୟ ଅବନତି ନଥିଲା କାହାର
ସଂଯମ ଥିବାରୁ ମତି ।
ଋଷ୍ୟମୂଙ୍କ ଦ୍ୱାରା ପ୍ରଚାରିତ ହୋଇ
ଧନ ସଞ୍ଚିଅଛୁ ଯାର,
ବେଦୋକ୍ତ ବଚନ ବୁଝାଇଲେ ତାକୁ
ପଡ଼ିବକି କାନେ ତାର ?
ଅନୁରାଗ ଯୁକ୍ତ ହେଲେହେଁ ମିଳନ
ସହାୟକ ଅନ୍ତରର,
ବୁହଇ କେ ବୋଝ ନଥିବ ଜୀବନେ
ମଣିଷ କି ହରିବର ?
କର୍ମ କୃତ ଫଳ ନ ଭୋଗୁଛି କିଏ
ଜନମି ବସୁନ୍ଧରାରେ,
ନହୋଇ ଥିଲେ ତା ଫଳିତ ଦଳିତ
ବୁଲନ୍ତେ କି ଦ୍ୱାରେ ଦ୍ୱାରେ ?
ବଞ୍ଚିଥିବା ଯାଏଁ କଞ୍ଚି ପକାଇ
ସଞ୍ଚିଥିବୁ ଯେତେ ଧନ,
ଲାଗିବ ତହିଁରେ ପଞ୍ଚମାନ ଆସି
ବୁଜିବା କ୍ଷଣି ନୟନ ।
ବିବେକ ରୂପକ ଅଞ୍ଜନ ଲଗାଇ
ଦେଖିବୁ ଜଗତ ଯେବେ,
ପାର୍ଥିବ ପଦାର୍ଥେ କାର ଅଧିକାର
ନଥିବା ଜାଣିବୁ ତେବେ,
ତୋ ଔରସୁ ଜାତ ସନ୍ତାନ ସନ୍ତତି
ତୋ ଲାଗି ନୋହିବ କାତର,

ଆପଣା ସୁଖକୁ ଲୋଡ଼ି ନିରନ୍ତର
ହୁଅନ୍ତି ପର ବାଉଳ ।
ପର ପଣ୍ଡିଙ୍କର କୁଟୁମ୍ବ ଭିତରେ
ଅନୁକୂଳ ଆଚରଣ,
ପରସ୍ପର ପ୍ରତି ନଥିଲେ ଅବଶ୍ୟ
ହେବ ଦୁଃଖର କାରଣ ।
ହାତ ଯାଉନାହିଁ ଦେବାକୁ ମୁଠାଏ
ଭିକାରିକି ଦେଖି ଯାର,
ଅଣ୍ଡା ଭିଡ଼ି କିଏ ଠିଆ ହେବ ଆସି
ବିପଦ ସମୟେ ତାର ?
ଜ୍ଞାନୀ ଧନେ କବି ସର୍ବତ୍ର ପୂଜିତ
ହୋଇଥାଏ ସଦାଭବେ,
ଦାରିଦ୍ର୍ୟ ଦୁଃଖରେ ପ୍ରପୀଡ଼ିତ ହୋଇ
ନିଜରେ ସେ ଚିନ୍ତା ଲଭେ ।
ଆସୁଛି ଯାଉଛି ବସନ୍ତ ଯେପରି
ଜୀବନ ସେପରି ଭବେ,
ଏଣୁ ବା କାହିଁକି କରିବ ଭାବନା
ପ୍ରାଣ ପାଇଁ କେବେ ଲଭେ ।
ମାନ ଅଭିମାନ ପୋଛିଦେଇ ହୃଦୁଁ
ତୋଳିବ ଶାନ୍ତିର ଘର,
ଜୀବନ ପଥରେ ଭୁଲି ନ ଜାଣିଲେ
ଝୁଣ୍ଟିବ ଥରକୁ ଥର ।
ସକଳ କର୍ମରେ ଈଶ୍ୱର କରୁଣା
କଲେ ସଦା ଅନୁଭବ,
ଦୁଃଖ ବୋଲି କେବେ ଜାଣି ନ ପାରିବ
ଜୀବନ ଯାହାରେ ଲଭ ।
ବଚନେ ଆଦର ସଚ୍ଚୋଟତା ନଥିଲେ
କରିବ କିଏ ଗ୍ରହଣ,
ଜନ ହିତ ଲାଗି ମନ ଦେଇ ସଦା
କର ଶାନ୍ତି ଉଚାରଣ ।
ଉତ୍ତାଳ ତରଙ୍ଗ ଯାନାମ ଭକ୍ତିରେ
ହୋଇଯାଉଛି ନିରନ୍ତର,
ତା ନାମ ହୃଦୟେ ଜପମାଳ କରି
ତରିବ ଭବ ସାଗର ।

ଜୀବନେ କା ପ୍ରତି ଶତ୍ରୁତା ନରଖି
ଆନନ୍ଦେ ଯାଉ ସମସ୍ତ,
କଳହରୁ ଯିବା କ୍ଷାନ୍ତ ହେଲେ କାର
ହୃଦୟେ ନଥିବ ଭୟ ।
ଈଶ୍ୱରଙ୍କ ଜ୍ୟୋତି ପାଇବା ନିମିତ୍ତ
ସନ୍ତତ କଲେ ଯତନ,
ଦୁର୍ବଳତା କ୍ଲାନ୍ତି ନପଶି ଶରୀରେ
ପ୍ରଫୁଲ୍ଲ ରହିବ ମନ ।
ଖୋଜୁଛି ପବନ ଯାହାକୁ ସନ୍ତତ
ନକରି ବିଶ୍ରାମ ଲଭେ,
ଭୃତ ମନେ ତାକୁ ଧ୍ୟାୟି ଦିନ ରାତି
ମରଣ ଜିଣିବ ଭବେ ।
ବନ୍ଧୁ ବନ୍ଧୁ ମଧ୍ୟେ ଗାଢ ଅନୁରାଗ
ରହିଥାଉ ନିରନ୍ତର,
କୁଳର ମର୍ଯ୍ୟାଦା ରହିଥାଏ ଯିବା
ଥିଲେ ସ୍ନେହ ପରସ୍ପର ।
ସଂସାରିକ ବସ୍ତୁ ପାଇବା ନିମିତ୍ତ
ସ୍ୱଧର୍ମକୁ ଦେଲ ଛାଡ଼ି,
ନକର ଉପେକ୍ଷା ନିନ୍ଦା ଅପମାନ
ହେଉଛି ତୁଚ୍ଛାକୁ ଝାଡ଼ି ।
ମନିଷର ଗର୍ବ ଦମ୍ଭ କେତେ ଦିନ ଭବେ
କେହିହେଲେ କେତେବେଳେ ନ ବଞ୍ଚିଛନ୍ତି ଲଭେ
ନକର ନିନ୍ଦିତ କର୍ମ ପ୍ରାଣାନ୍ତ କାଳରେ
କି ବୋଲିବେ ପଛେ ଲୋକେ ବିଚାର ତ ଥରେ
ଆପଣା ଆମୋଦ ଲାଗି ପରଧନ ହରି
କେ ପାଇଛି ସୁଖ ଭବେ କହ ଚିନ୍ତା କରି ।
ପରକ୍ଷୁଧା ନିବାରଣେ ଯେ ସଦା ତତ୍ପର
ଧରଣୀ ମଧ୍ୟେ ସେ ଯିବା ହୁଅଇ ଅମର ।
କ୍ଷମତାର ବ୍ୟବହାର ଅନ୍ୟାୟ ପନ୍ଥାରେ
କଲେ ତାର ପରିଣାମ ଭୋଗିବ ସଂସାରେ ।
ବେଶ୍ୟା ପରି ବହୁରୂପୀ ଭବେ ରାଜନୀତି
କ୍ଷମତା ଲୋଭରେ ପର ଏପରି ଅମାତି ।
ମୁହୂର୍ତ୍ତେ କା ସଙ୍ଗେ ବୁଲିଲେ ଦୁନିଆଁ
ନୂଆ କଥା ଦେଖି ହେବୁରେ ଗୁନିଆଁ ।

ଗୁଞ୍ଜିବାକୁ ମୁଣ୍ଡ ନଥିଲା ଯାହାର
ସେ କରି ବସିଛି କୋଠା ମାଳ ମାଳ ।
ଶଠତାର ଏତ ଜ୍ୱଳନ୍ତ ପ୍ରମାଣ
କହିଲେ ଏକଥା ଉଠୁଛି କୃପାଣ ।
କଫନ ମିଳିବ କଲେ ବା ଗୁହାରି
କଳାଧଳା କଲେ ଓକିଲ ବାହାରି ।
ପାଣି ମନ୍ଦେ ପାଇଁ ଲୋକ ଛଟାପଟା
ହେଉଛି ଯା କାମ ସବୁ ହଟହଟା ।
ସାରା ଦୁନିଆଁକୁ ଯେ ଯୋଗାଏ ଦାନା
ତା କଟିରେ କଆଁ ନାହିଁ ଖଣ୍ଡେ କନା ।

୨

ବେଦ ବେଦାନ୍ତକୁ ଗଲେ ଭୁଲି ସର୍ବେ
ପାହୁଣ୍ଡ ପଢ଼ୁଛୁ ଆହା ! କେଡ଼େ ଗର୍ବେ
ଆଇନ ଯେତେକ ହେବାରୁ ଗୋଳିଆ
ହେଲେ ହଟହଟା ଗରିବ ମୂଲିଆ ।
ଗାଁ ଗହଳିରେ ପଶ ଯାଇ ଥୋକେ
ଦେଖିବ କି ଭଳି ରହିଛନ୍ତି ଲୋକେ ।
ତେଲିଆ ମୁଣ୍ଡରେ ହେଲା ତେଲ ଘସା
କଣ୍ଟ୍ରୋଲରେ ସଢ଼ି ଗଲାଣି ତ ଚଷା ।
କରିବ ପବିତ୍ର ନିରତ ହୃଦୟ
ଜୀବନ କ୍ଲେଶକୁ ନ କରିବ ଭୟ ।
ଏ ଜୀବନ ଭବେ ମୁହୂର୍ତ୍ତେ ମାତର
ବୁଝୁଥିଲେ ଏହା ମନୀଷ ଅନ୍ତର ।
ମିଛ କହିବାକୁ ବଳନ୍ତା କି ମତି
ଅବା କରିବାକୁ ଅପକର୍ମେ ରତି ।
ଜଗତ ଆଲୋକ କରୁଅଛି ଯିଏ
ତା ମହିମା ଗାନ କରୁଅଛି କିଏ ?
ଅନୁରାଗ ହୀନ କର୍ମମାନ କରି
ସଂସାର ସାଗର ଯାଅ ଜଠେ ତରି ।
ସାହସ ଦମ୍ଭରେ କଲେ କର୍ମମାନ
କରନ୍ତି ସାହାଯ୍ୟ ପ୍ରଭୁ ଭଗବାନ ।
ପଥର ଭିତରେ ଭେଦିବ କି ଜଳ
ବୁଡ଼ାଇ ରଖିଲେ ତାକୁ କେତେ କାଳ ।

ଆଧ୍ୟାତ୍ମିକ ବୋଧ ପଶେ କି ତା ମନେ
ରହିଛି ବୁଡ଼ି ଯେ ସଂସାର ବନ୍ଧନେ ।
ଆଖି ଥାଉ ଥାଉ ନ ଦେଖିଲା ପରି
ହେଉଛି ମନୀଷ ସ୍ୱାର୍ଥକୁ ଆବୋରି ।
ନାହିଁ ପଠାନ୍ତର ମହିମା ଯାହାର
ପଡ଼ୁ ନାହିଁ ଦୃଷ୍ଟି ତା ଉପରେ କାର ।

୩

ବିଶ୍ୱକର୍ତ୍ତାଙ୍କର ନିୟମ ଯାହା
କେବେସେ ଜଗତେ ଖଣ୍ଡିବ ତାହା ।
ସେ ନିୟମ ଦେଖି ସତତ ଚଳ
ଜୀବନେ ତୁମର ହେବ ମଙ୍ଗଳ ।
ଦୋଷଦିଅ ନାହିଁ କେବେ କାହାକୁ
ରଖିବ ସଂଯତ ସଦା ଭାଷାକୁ ।
ବିବାଦ ବହ୍ନିକି ଝିଙ୍କିବ ଯେବେ
ଜଳି ପୋଡ଼ି ଦେବ ସର୍ବସ୍ୱ ତେବେ
ହେ ମନୀଷ, ରହ ସଜାଗ ଭବେ ।
ଧୂର୍ତ୍ତର କବଳେ ନ ପଡ଼ ଲବେ
ନାସ୍ତିକ କଥାରେ ନ ଦେବୁ କାନ
ଯେତେହେଉ ଲଘବ ହେବ ସମ୍ମାନ ।
ସତ୍ୟର ସନ୍ଧାନେ ଯାଉ ଜୀବନ
ପରମାତ୍ମା ସଙ୍ଗେ ହେବ ମିଳନ ।
ଯାଅ ଅପସରି ତୃଷ୍ଣା କଳରୁ
ପାଉଅଛ କ୍ଲେଶ ସିନା ତହିଁରୁ ।
ହେଉଛ ମନୀଷ କି ହରିବର
ପ୍ରତିଶୋଧ ଲାଗି ହୋଇ ତତ୍ପର ।
କା ସଙ୍ଗେ ଶତ୍ରୁତା ନରଖ ଭବେ
ଯହିଁରୁ ମିଳଇ ଅଶାନ୍ତି ଲବେ ।
ଦେଖୁଛୁ ଚୌଦିଗ ଯେ ନିରନ୍ତର
ନାହିଁ କିଛି ଭବେ ତା ଅଗୋଚର ।
ଉତ୍ତାଳ ତରଙ୍ଗ ସିନ୍ଧୁ ମଧ୍ୟରେ
ଗାଉଛି ତା ଗୀତ କେଡ଼େ ସ୍ୱରରେ ।
ହିମାଳୟ ଶୃଙ୍ଗ ବସିଛି ରହି
ତାର ଦରଶନ ପାଇବା ପାଇଁ ।

ଗ୍ରହ ଉପଗ୍ରହ ତାର ଆଦେଶ
ପାଳୁଛନ୍ତି ନିତ ନ ବହି କ୍ଲେଶ ।
ଉଠରେ ମଣିଷ ପାହିଲା ରାତି
କରିଯାଅ କର୍ମ ତଡ଼ାଇ ଭ୍ରାନ୍ତି ।
ଜୀବନ ଯାବାରେ ହେଲେ ନିଷ୍କ୍ରିୟ
ବିଶ୍ୱକର୍ତ୍ତାଙ୍କର ହେବ ଅପ୍ରିୟ ।
କରିଲୁ ଜଣାଣ ତାର ପୟରେ
ମନ୍ଦ ବୁଦ୍ଧି ତେଜ ଅଧମ ନରେ ।
ଜଗତର ଲୀଳା କରି ଦର୍ଶନ
ପରଦ୍ରବ୍ୟେ କେବେ ନ ବଳୁ ମନ ।
ସହଯୋଗ ବିନା ଚେଷ୍ଟା ସକଳ
ନହେବ ଜୀବନେ କାଇ ସଫଳ ।
ସୁଖର କାରଣ ନୁହେ ସମ୍ପତ୍ତି
ଦେହର ଖଣ୍ଡ ଲାଗି ବଡ଼ ବିପତ୍ତି ।
ବଦାନ୍ୟ ବ୍ୟକ୍ତିର ସମ୍ପତ୍ତି ଶୂନ୍ୟ
ହୁଏ ନାହିଁ ଦାନେ ବଢ଼ଇ ପୁଣ୍ୟ ।
ମନ ଅନିର୍ମଳ ଥିବ ଯାହାର
ଜୀବନେ ଆନନ୍ଦ ନାହିଁ ତାହାର ।
ପ୍ରବୃତ୍ତିକି ଜିଣି ରହିବ ଭବେ
ଅସମ୍ମାନ ଲୋକ ଯା ଉପଦ୍ରବେ ।
ଏକୁଟିଆ ବସି କର ବିଚାର
ସ୍ୱାର୍ଥ ଅଭିଳାଷେ କି ନାଚିଝାର ।
ଯେତେ ଦିନ ଭବେ ଅନ୍ଧାରେ ଥିବ
ଦଉଡ଼ି ଦଉଡ଼ି ଜୀବନ ଯିବ ।
ନଥିବ ଅଭାବ ନଥିବ ଭୟ
ଈଶ୍ୱର ଚିନ୍ତାରେ ଥିଲେ ହୃଦୟ ।
ହସୁଛି ଆଜି ଯେ କାନ୍ଦୁଛି କାଲି
ସମ୍ପଦ ଭଣ୍ଡାର ପଡ଼ୁଛି ଖାଲି ।
ନରହୁ ଗରବ ମର ଶରୀରେ
ମିଶିବ କାଲି ଯା ଧୂଳି ମାଟିରେ ।
ଅମରତ୍ୱ ଲାଗି ବଢ଼ୁ ଲାଳସା
ନହେଉ ଜୀବନ ଉପହସା ।
ମାୟା ଦୁନିଆଁରେ କି ଛଟପଟ
ହେଉଛି ମଣିଷ ବହି କପଟ ।
କିଏ ସେ ଆତ୍ମୀୟ କିଏ ବା ପର
ଧନ ସରିଗଲେ ସର୍ବେ ଅନ୍ତର ।
ନ ପାଏ ଗରିବ ମୁଠାଏ ଅନ୍ନ
ଅପଥାରେ କେତେ ସରୁଛି ଧନ ।
ଅନ୍ୟାୟ ପନ୍ଥାରେ ଅର୍ଜି ଧନ
କର ନାହିଁ ଧର୍ମକାର୍ଯ୍ୟେ ବଣ୍ଟନ ।
ଚପଳ ମନକୁ କରି ସଂଯତ
ଚାଲୁଥିବ ବାଟ ହୋଇ ଜାଗ୍ରତ ।

## ଦୁନିଆଁ ରୀତି

ସୁଖଦୁଃଖ ଭାବ, ମନ ବିକାର
ନୁହଇ ଏ ଭବେ କିଏ କାହାର
ଆସିଅଛୁ ଏକା, ଯିବୁ ତୁ ଏକା
ତୃଷ୍ଣାକୁ ଭିଡ଼ୁଛୁ ମୁଣ୍ଡରେ ଠେକା
ଶୂନ୍ୟ ହାତେ ଆସି ଭବେ
ଅର୍ଜିଲୁ ଯାହା ରଖିଲୁ ସାଇତି
ନେବୁ କି ତହିଁରୁ ଲବେ (୧)
ପଡ଼ିଗଲେ ଥରେ ରୋଗ ଶଯ୍ୟାରେ
ତୋ କ୍ଲେଶ ବୁଝୁଛି କିଏ ସଂସାରେ
ମାଡ଼ୁଛି କି ପାଖ ପଡ଼ିଶା ଘର
ମାହାକୁ କରୁଛୁ ବଡ଼ ଆଦର
ଦୁନିଆଁ ରୀତି ଏପରି
ଅସମୟ ବେଳେ କିଏ ତୋ ପାଖରେ
ଜାଣିଲୁ କି ଚିନ୍ତା କରି (୨)
ତୃଷ୍ଣାନାଶ କରି ବିଷମ ଫଳ
ପାଇ, ଝରୁଅଛି ଲୋତକ ଜଳ
ଆଗରେ ପଛରେ ନଥାଇ କିଏ
ନପାଇ କାହାର ସାହା ଟିକିଏ
ହେଉଅଛୁ ହଟହଟା
ପଡ଼ୁଛି କି କାନେ କେବେ ହେଲେ ଦିନେ
କରନ୍ତି ଲୋକେ ଯା ଥଟ୍ଟା (୩)
ଯାଉନାହିଁ ଦିନ ସମାନ କା'ର
କରନାହିଁ ତେବେ ତୃଷ୍ଣା ବିସ୍ତର

ଯେତେବେଳେ ପଡ଼ିଅଛୁ ଖାଲରେ
ବସୁଚ ବୃଥୁଡ଼ା ନିଜ ଗାଲରେ
ଦୁନିଆଁ ଖେଳକୁ ଦେଖି
କେବେ ହେଲେ କିଏ ଅସତ କରମ
ନକରୁ ଲାଜ ଉପେକ୍ଷି (୪)
ସମ୍ପଦେ ବିପଦେ ସାହା ଶ୍ରୀପତି
ତାଙ୍କ ପଦ ତଳେ ରହୁ ସୁମତି
ଜୀବନର ସଖା ସେହି କେବଳ
ନାହିଁ ମଣିଷର ଅନ୍ୟ ସମ୍ବଳ
ତେଜି ମନୁ ଅହଙ୍କାର
ମଧୁର ବଚନେ ତୋଷି ପରଚିତ୍ତ
କରିନେବୁ ଆପଣାର (୫)
ଶୁଦ୍ଧ ଚରିତ୍ର କରୁଥିବୁ ବିଚାର
ସ୍ୱାର୍ଥକୁ କରିବୁ ସଦା ଧିକ୍କାର
ତେବେ ଦୁନିଆଁରେ ଗୌରବ ପାଇ
ଗଲାବେଳେ ଯିବୁ ମନ ଫୁଲାଇ
ନଥିବ ସୋରିଷେ କ୍ଷୋଭ
ଆଖି ଆଗେ ଦେଖି ମରଣ କଷଣ
କାହାପାଇଁ ଏତେ ଲୋଭ (୬)
ବଳବାୟୁ ଗଲେ ମଣିଷ ମ୍ଳାନ
ଭାଳି ଭାଳି ଏବେ ନିଅରେ ଧନ
ଗଡ଼େଇ ଲୁହଧାର ଆପେ ନେଇଛୁ
ଆପଣା କୁଟୁମ୍ବ ହତାଦରରୁ
ରଖିଥିବ ମାୟା ସଞ୍ଚି
ପାଇବା ଆଶାରେ ପରିବାର ବର୍ଗ
ମୁହଁ ଅନ୍ନ ଛଡ଼ାଇ କଞ୍ଚି
ଜୀବନ ମୋହର ସଦା ଅସ୍ଥିର
ଜାଣି ଜାଣି କିଆଁ 'ମୁକାର' ଗିର
ଉତ୍ଥାନପତନ ଭାଗ୍ୟ ଚକ୍ରରେ
ଘୂରୁଚ ସନ୍ତତ ଭବ ଭିତରେ
ଖଟିମାଟି ସଂସାରର
ନ ବୁଝିଲେ ହୃଦେ ଆପଣା ଲାଭରେ
ଅନ୍ୟ ବ୍ୟସ୍ତ ହେଉ ନିରନ୍ତର (୭)
ନିଜ ସ୍ୱାର୍ଥକୁ ମଣନ୍ତି ନ୍ୟାଯ୍ୟ ବିଚାର

ବଶବର୍ତ୍ତୀ ହୋଇ ସଦା ଆଶାର
ହେଳୁ କରୁଥିଲେ ଇହପରକୁ
ଆସିବୁ ଫେରି ବା ନ୍ୟାଯ୍ୟ ବାଟକୁ
ଆଜି ଯେ ପଡ଼ିଚ ତଳେ
କାଲି ଉଠିଲଣି ଉପରକୁ ସେହି
ଈଶ୍ୱର ଅନୁଗ୍ରହ ବଳେ (୮)
ନିଜ ଜୀବନରୁ ଶିକ୍ଷା ନ ପାଇ
ଅସାର କଥାରେ ମଣିଷ ବାଇ
ନିଯୁକ୍ତ ବିଧାନ କେ ପାରେ ଖଣ୍ଡି
କି ଯଶ ମିଳୁଚି ପରକୁ ଦଣ୍ଡି
ବିଚିତ୍ର ଦୁନିଆଁ ରୀତି
କିଏ ଜାଣିବ କି କେତେ ଯେ ଅକାଳେ
ଲଭନ୍ତି ମରଣ ନିତି (୯)
ନିନ୍ଦା ପ୍ରଶଂସାକୁ ଦେଲ ନଜର
ବୁଝି ଦେବୁ ହୃଦୁ ସ୍ୱାର୍ଥ ଅନ୍ତର (ଛିଦ୍ର)
ଅଭିନୟ ସାରି ଭବ ମଞ୍ଚରେ
ପଶିଥିବୁ ଯେବେ ଅଜଣା ଘରେ
ଘଟିବ ତାହାଙ୍କ ଦଶା
ଧନେ ହେଲେ କେବେ ନଥିବ ମନରେ
ହେଉ ସିନା ଲୋକହସା (୧୦)
ଅଧା ବୟସରୁ ସ୍ୱର ପଠାଇ
ସତର୍କ ଘଣ୍ଟି କେ ଦିଏ ବଜାଇ
ମୂଢ ମଣିଷ ତା ଜାଣି ନପାରି
ବିଷୟ ଜଞ୍ଜାଳେ ହେଉଚି ଘାରି
ବନ୍ଧୁ, ଛବି କାରବାର
ବୁଝିବାକୁ ଲେବେ ଏମନ୍ତ ସଂସାରେ
କରେ କି କିଏ ବିଚାର (୧୧)
ବଳ ସିନା ନାହିଁ ହାତ ଗୋଡ଼ରେ
କଥା ବାହାରୁଚି ବଜ୍ର ସ୍ୱନରେ
ଲଇଁଲଣି ଅଣ୍ଟା ହାତରେ ବାଡ଼ି
ସାମାନ୍ୟ କଥାରେ ହେଉଛି ଝାଡ଼
ନ ବୁଝିଣ ଭଲମନ୍ଦ
ପାଚିଲଣି ବାଳ ପଡ଼ିଲଣି ଦାନ୍ତ
ତଥାପି ହୃଦୟେ ଛନ୍ଦ (୧୨)

ଆଖିରେ ପରଳ ଗଲାଣି ମାଡ଼
ଜୀବନ ମରଣ ଲଗିଛି ଧାଡ଼,
ଆଗ ଭାର ପାଳ ପଛରେ କାର
ଲବେ ନଜାଣେ କେ କଲେ ବଗୁର
ମଣିଷ ଜୀବନ ଦଣ୍ଡେ
ନିତ ଦେଖି ଦେଖି ନକର ଉପେକ୍ଷା
ପଣି ନାନା ଲଣ୍ଡଭଣ୍ଡେ (୧୩)
କରିଥିଲେ ଯିନା ସେବା କାହାର
ତୋ ସେବା ନିମିତ୍ତ ହେବେ କାହାର
ଦୁନିଆଁର ରୀତି ନଭାବ ମନେ
ବଳାଇଛୁ ପ୍ରୀତି କେବଳ ଧନେ
ସେ କି ହେବ ତୋର ସାହା
ବେଳ ଥାଉ ଥାଉ ଭୁଲାଇଲେ ମୋହ
ଉଦ୍ଧରିବେ ଚଉବାହା (୧୪)
ଫିଟାଇ ଅନ୍ତିକ ଦିବ୍ୟ ଚିତ୍ତରେ
ବୁଝିଁଲେ ଜାଣିବୁ ସବେ ମୋହରେ
ପାଣ୍ଡି ହେଉଚନ୍ତି ସାରା ଜୀବନ
ବଳିଦେଇ ନିଜ ମାନ ସମ୍ମାନ
ଅଟେଇ ଧନକୁ ଭବେ
କୁକ୍ରିୟାରେ ରତ ହେଉଚ ନିରତ
ନଭାବ ମାନସେ ଲବେ (୧୫)
ଧିକ ଧିକ, ମନ ଜଞ୍ଜାଳେ ପଡ଼
କେତେ ଦୁଃଖ ସହ ଗଲୁଣି ସଢ଼
ନୟନ ଫେରାଇ ଦେଖିବୁ ଥରେ
କିଏ ଅଛି ତୋର ଅସମୟରେ
ସକଳ ସାଥି ସୁଖରେ
ପଡ଼ିଲେ ସ୍ୱାର୍ଥରେ ପାଏ ଛାଡ଼ିକିଏ
ନ ବସି ମୁଖ ଗାଲରେ (୧୬)
ଅସମ୍ଭାଳ ଆଜ କୁଟୁମ୍ବ ଦାଉ
ବୃଥାଣ୍ଡେ ପେଟକୁ ନମିଳେ ଯାଉ
ଗନ୍ତାଘର ପୁର ରହିଚ ଯାଇ
ଦେବାକୁ ମୁଠାଏ କେତେଠ ବଗୁର
ହେଲେହେଁ ସନ୍ତାନହୀନ
କି ଯିବ ସାଥିରେ ଭାବୁଛୁ କି କିଏ
ଭବୁ ହେବ ଯେବେ ଲୀନ (୧୭)
ଭବ ରଙ୍ଗମଞ୍ଚ ବଡ଼ ବଚିତ୍ର
ଦେଖିବାକୁ ମିଳେ ବଭିନ୍ନ ଚିତ୍ର
ବବେକୀ ଯିନା ତା କରି ଚିନ୍ତନ
ଛୁଣ୍ଡାଇ ପାରୁଚ ଯେତେ ବନ୍ଧନ
ଯିବାକୁ ସହଜ ବାଟେ
ଅପନ୍ତରି ବାଟ ହେଉଚ ଓଳାଇ
ଦେଖୁଛି ଯା ଭବ ହାଟେ (୧୮)
ଆଗକୁ ପଛକୁ ଠିଆ ସକଳ
ଥିବାଯାଏ ନିଜ ବାହୁରେ ବଳ
ପଡ଼ିଗଲେ ବାହା ସବୁ ଅନ୍ଧାର
ଦୃଷ୍ଟି ପଡ଼େ ନାହିଁ ସୃଷ୍ଟିକ କା'ର
ସ୍ୱାର୍ଥ ନିଶା ଦିଏ ଘାରି
ଭାବୁନାହିଁ ଦିନେ କେଉଁ ଭକ୍ତି ଧରି
ଭବ ସିନ୍ଧୁ ହେବା ପାରି (୧୯)
ଜୀବ ଜଗତର ପ୍ରାଣ ଧାରଣେ
ବିବିଧ ପଦାର୍ଥ ସୃଜ ଲକ୍ଷଣେ
ଯୋଗାଉଚ ଯିଏ ଖଟି ସତତ
ଅଖିଳ ବ୍ରହ୍ମାଣ୍ଡ ଯା ଅନୁଗତ
ତା ନାମ କେବେ ନସ୍ମର
ଭବ ଜାଲେ ପଡ଼ ଛଟପଟ ଅବା
ଅସଲଟ ବାଟ ଧର (୨୦)

## କୋଇଲି

ଉଦୁଉଦିଆ ଖରାରେ
ଯାଚ ଖେଳୁଥିଲ ଆମ୍ବ ତୋଟାରେ
କଳା ପିକରେ, ପିଲା ଦିନେ ସରାଗରେ ।୧।
ଶୁଣି ତୋ ମଧୁର ସ୍ୱନ
ଆନନ୍ଦ ନହୁଏ କାହାର ମନ
କଳା ପିକରେ, ଜାଣୁ କି କାହା ସୃଜନ ।୨।
ବେଣୁଧର ବଂଶୀ ସ୍ୱନ
ସଙ୍ଗେ ମିଶାଇଲୁ ତୋ କୁହୁତାନ
କଳା ପିକରେ, ବଚିତ୍ର ବିଧିବିଧାନ ।୩।

ପକ୍ଷୀ ଜନମରୁ ପାର
ହେବା ଲାଗି ଅବା ଡ଼ାକୁ ମୁରାର
କଳା ପିକରେ, ଶୁଣିବେ ସେ ତୋ ଗୁହାରି
ସେତକ ପିଲା ଦାନର
ମନେ ଚଢ଼ିଗଲେ ଥରକୁ ଥର
କଳା ପିକରେ, ଗଡ଼ୁଚି ଲୋତକ ଝର ।୭।

ବର୍ଷକୁ ଆସି ଥରେ
ରସାଉ ମାନସ କୁହୁ ତାନରେ
କଳା ପିକରେ, କଳା ବୋଲା କଳେବରେ
ଆମ୍ବ ବଉଳକୁ ରସି
ପତ୍ର ଗହଳରେ ଲୁଚିଲୁ ବସି
କଳା ପିକରେ, ପଖାଳକୁ ଆମ୍ବ କସି ।୮।



# ସଂକୀର୍ଣ୍ଣତା

ଏହିକ ସେ ଗଣତନ୍ତ୍ର ବିଶୃଙ୍ଖଳା ଯହିଁ,
କରୁଚି ରାଜସ୍ୱ ଥୋଇ କଲ୍ ଦଣ୍ଡ ତହିଁ ।
ପ୍ରଜାଙ୍କର ହିତ ବାଣୀ ନପଡ଼େ କା କାନେ,
ଇଦେ ମନ ବ୍ୟସ୍ତ ସଦା ସ୍ୱାର୍ଥର ସନ୍ଧାନେ ।
ନ୍ୟାଯ୍ୟା ନ୍ୟାଯ୍ୟ ବିଚାରକୁ ନାହିଁ ଅବସର,
ଯେସା ତେସା ମତ ଧରି ନେତା ଆଗଭର ।
ଦେଖ ଦେଖ ଭାରତର ରାଜନୀତି ଖେଳ,
ବହୁଆନ୍ତି ବାଇଡ଼ଙ୍କ ହୋଇଛନ୍ତି ମେଳ ।
ଛକା ପଞ୍ଜା ମାତିଧରି ଯେ ଯାହା ସ୍ୱାର୍ଥରେ,
ରହିଛନ୍ତି ଅହରହ ଅତି ସଜାଗରେ ।
ମୃତ୍ୟୁର ପୂହିଁବ ହୀଡ଼ା ପରି ହୁଏ ମନେ,
ସହଜ କି ବିଚରିବା ରାଜନୀତି ବନେ ?
ଲଗିଛି ଯେତେକ ଲୀଳା ପ୍ରତ୍ୟହ ଏ ଭବେ,
ଶକତି ନାହିଁ କାହାର ବୁଝିବାକୁ ଲବେ ।
ଗ୍ରାମେ ଗ୍ରାମେ ସଢ଼ୁଛନ୍ତି ଏଣେ ଲୋକ ଶୋକେ,
କାହିଁ ବା ନ ପାନ୍ତି ପାଣି ପିଇବାକୁ ତୋକେ ।
ଭଙ୍ଗା ରୁଜା ନୀତି ଏବେ ହୋଇଅଛି ବଳ,
ହେଉଛି ପାଞ୍ଚଶ ପୋଡ଼ ଜାତିର ସମ୍ବଳ ।
ଅସାର କଥାରେ ସଦା ବଳୁଅଛି ମନ,
ଅସନ୍ତୋଷ ବହ୍ନି ଶିଖା ଉଠେ ଘନ ଘନ ।
ସ୍ୱାର୍ଥ ଅଟ୍ଟାଳିକା ତଳେ କୋଟି ଚକ୍ଷି ଥାଇ,
ଖେଳୁଅଛି ନାନା ଖେଳ କୌଶଳ ଭୁଆଇ ।
ପାଶ୍ଚାତ୍ୟ ପ୍ରଭାବ ପଡ଼ି ଏ ଦେଶ ଶିକ୍ଷାରେ,
ନ ରହିଲା ସୁସମ୍ପର୍କ ଗୁରୁ ଶିଷ୍ୟ ଠାରେ ।

ଫେସନ ଭାବରେ ଗୃହା ଆସି ବଡ଼ ଲୋକେ,
ସାରୁଛନ୍ତି କେତେ ଅର୍ଥ ପିଇ ଢୋକେ ଢୋକେ
ପ୍ରସରିଲା ଦିନୁଁ ଦିନ ଦେଶେ ସୁରାପାନ,
ରୋକିବାକୁ ତଳେ ହେଲେ ନକରେ କେ ଧ୍ୟାନ ।
ମିଛକୁ ନମଣି ପାପ ଗଢେ କୁହାଳିଆ,
ଝଳକୁ ଚାଳ କରାଇ ଲଗାଏ ଜଟିଆ ।
ହୋଇ ଅପବ୍ୟସ୍ତ କେତେ ପଡ଼ି ତା ଫାନ୍ଦରେ,
ମୁଣ୍ଡ ହାତ ଦେଇ ରହୁଛନ୍ତି ମଉନରେ ।
ନ ଥିବାରୁ ଲୋକଙ୍କର ନଜା କୁଡଆରେ,
ପାଉଛନ୍ତି କ୍ଳେଶ ଅତି ବୁଢ଼ ବରଷାରେ ।
କଣ୍ଟ୍ରୋଲ ହେଉଛି ବଢ଼ି ଚୋରା କାରବାର,
ଶୁଭୁଅଛି ଜନତାର ଉଡ଼ ହା ହା କାର ।
ଅଣ୍ଡା ଖୋଷା ପାଇବାରୁ ହାକିମ ନିକର,
ମୂଲବାନ କାଠ ବୋହି ନିଏ କଣ୍ଟ୍ରାକ୍ଟର ।
ହେଉଅଛି ଲୁଟି ଯେତେ ଠାକୁର ସମ୍ପତ୍ତି,
ନପଡ଼େ କାହାର ଦୃଷ୍ଟି ଟିକିଏ ତା ପ୍ରତି,
ପରନିନ୍ଦା କରିବାକୁ କେହି ବା ତତ୍ପର ,
ନ ପରଖି କେତେବେଳେ ଆପଣା ଅନ୍ତର ।
ହୁଗୁଳ ହେବାରୁ ଦେଶେ ଶାସନର ବଳ,
ବଢ଼ୁଅଛି କ୍ରମେ କ୍ରମେ ଗୁଣ୍ଡାମିର ବଳ ।
ହାତରେ ନଥିଲା କିଛି ହେଲା ଠିକାଦାର,
ବରଷ ପାଞ୍ଚୋଟା ମଧ୍ୟେ ଜମିଲା ଅପାର ।

ସମବାୟ ସମିତିଙ୍କୁ ପଶ ଯାଇ ଥରେ,
ବୁଝିବ ଯା କାରସାଦ ଦେଖି ସ୍ୱନେତ୍ରରେ ।
ତନଖି ହାକମ ଯାହା ଲେଖନ୍ତି କାଗଜେ,
ଧରାଧରି କରି ଦୋଷୀ ଫିଟଇ ସହଜେ ।
କଚେରିକି ଧାଇଁ ଧାଇଁ ପାଦ ଯାଏ ସରି,
ନ କହନ୍ତି କେହି କିଛି ହାକମଙ୍କୁ ଡରି ।
କୃଷି ପାଇଁ କୃଷୀ ମନେ ପାଉନାହିଁ ଜଳ,
ବରଷା ଅଭାବେ ଏଣେ ହେଉଛି ବିକଳ ।
ମୁଣ୍ଡେ ହାତେ ଦେଇ ବସି ଅଛନ୍ତି ବୁଣାଳୀ
ମିଲ୍‌ରୁ ବାହାରେ ଏଣେ ଲୁଗା ଭଲ ଭଲ ।
ଯୋଜନା ନାଆଁରେ ଦେଶୁ କୋଟି କୋଟି ଟଙ୍କା
ହୋଇଗଲା ପାଣି ପରି କଳୁ ସବୁ ବଙ୍କା ।
ଗରିବର ହୋଇ ନାହିଁ ଲବେ ଉପକାର
ବଢିଚି ଧନୀର ସିନା ସବୁ କାରବାର ।
ଏ ପଟୁ ସେ ପଟ ଖାଲି କଲମର ଘୃଷ
ଗିଳିବାରୁ ହାକମଙ୍କ ନାହିଁ ଅବକାଶ ।
ହଜାର ହଜାର ଟଙ୍କା ଉଡୁଚି ଗସ୍ତରେ
ହୋଇଛି କି କିଛି ଲାଭ ପରଖ ତ ଥରେ ।
ଗରିବ ଖର୍ଚ୍ଚରେ ଆଜ ବସି ଆସନରେ
ସେମାନଙ୍କ ପାଇଁ କେହି ନ ଭାବନ୍ତି ଥରେ ।
ନ ପାଉ ପନ୍ଥକେ ଧନ ମୁଠାଏ ପେଟକୁ
ଦିନ ମଜୁରିରୁ ଏଣେ ବାହୁଚି କଟକୁ ।
ସଜ ଦେଖି ନେତାଗଣ ଯେ ଯାହା ଫିକରେ
ଭାଷନ୍ତି ମୃଦୁ ବଚନ ଅତି ସରାଗରେ ।
ନରହେ କାହାରି ମନ ଭାଷଣରେ ଆଉ
ଯେଣୁ ବାଧା ଦିଏ ସଦା କୁଟ ମୁନ୍ଦର ଦାଉ ।
ବଢୁଅଛି ବେଳୁବେଳ ଜିନଷର ଦର
ରୋକିବାକୁ ଶକ୍ତି ନାହିଁ ଆମ ନେତାଙ୍କର ।
ସେବା ମନୋଭାବ ଛାଡ଼ି ଭୋଗାଦରେ ମନ
ବଳିବାରୁ ନେତାଙ୍କର ପ୍ରଜାଏ ଉଛନ୍ନ ।
ମନ ଯାର ବ୍ୟସ୍ତ ସଦା ପରସ୍ୱ ହରଣେ
ଧନ ଯାର ବଦଳିତ ଗଣିକା ଚରଣେ ।
ଅବିରତ ରଖେ ଲକ୍ଷ୍ୟ ପରେ ଠକିବାର
ବୋଲନ୍ତି ଏ ଯୁଗେ ତାକୁ ଧର୍ମ ଅବତାର ।

ସରଳତା ସ୍ଥାନେ ଆଜ ବସି ଆଡମ୍ବର
ଲଗାଇଚି ଦେଶ ମଧ୍ୟେ ବିବିଧ ଦ୍ୱନ୍ଦର ।
ଚିର ସ୍ରୋତା ନଦୀମାନ ଯହିଁ ବହ୍ୟମାନ
ପରକୁ ବତାଏ ହାତ ଆଜ ତା ସନ୍ତାନ ।
ଯେ ଦେଶ ଶିଳ୍ପୀ ଗଢ଼ିଲା କୋଣାର୍କ ମନ୍ଦିର
ତାହାରି ଦାୟାଦ ଆଜ ଦାଣ୍ଡର ଫକୀର ।
ବେକାର ସମସ୍ୟା ବଢ଼ୁଅଛି ଦିନୁଁ ଦିନ
କଲେଜରେ ପଢ଼ାସାରି ପିଲେ କର୍ମହୀନ ।
ଗଢ଼ା ହେଲା ଦିନୁ ଦେଶେ ଗ୍ରାମ ପଞ୍ଚାୟତ
ଆପଣା ଆପଣା ମଧ୍ୟେ କଳହ ସତତ ।
ପୂର୍ବ ନୈତିକତା କାହିଁ ଗଲା ଭାରତର
ଥକିଲା ଯା ଦେଖି ମହାଶକ୍ତି ବ୍ରିଟେନର ।
ରାଜନୀତି ଦିନୁଁ ଦିନ ଅତି କଳୁଷିତ
ତ୍ରାହି ତ୍ରାହି ଡାକଲେଣି ଦେଶର ଶାସିତ ।
ବଢ଼ୁଛି ସମାଜେ କ୍ରମେ ଦୁର୍ନୀତିର ବଳ
ଏଥିଲାଗି ଚୋରିଆଡେ ପଡ଼ୁଛି ଚହଳ ।
ନୋଟ ନେଇ ଭୋଟଦେବା ଦେଶୁ ହେଲା ଲୋପ
ଛୁଏଁ ଛୁଏଁ ପୁଞ୍ଜିପତି ଅମାପ ପ୍ରକୋପ ।
ଅର୍ଥହେତୁ ଗ୍ରାସି ଅଛି କ୍ଷମତାର ମୋହ
ଆପଣା ଆପଣା ମଧ୍ୟେ ଏଣୁ ଆଜ ଦ୍ରୋହ ।
କାହିଁ ଗାନ୍ଧିତ୍ୟାଗ କାହିଁ ପୂର୍ବ ସେବା ଧର୍ମ
ନ ବୁଝନ୍ତି କେହି ତଳେ ଏମନ୍ତ ମରମ ।
ଅହଂକାର ପଶି ପ୍ରତି ସ୍ତରେ ସମାଜର
କାଟି ପକାଉଚି ଏବେ ଏକତା ଦେଶର ।
ବଢ଼ୁଅଛି ଚୋରିଆଡେ ଅନ୍ୟାୟର ରୁଚି
କାହାରି ଇଚ୍ଛା ନ ବଳେ ହେବା ପାଇଁ ଶୁଚି ।
ନିଜ ସ୍ୱାର୍ଥ ଲାଗି ଏବେ ନେତାଏ କାଉଳ
ସନ୍ନିପାତ ମନ୍ତ୍ର ଭଳି ହୁଅନ୍ତି ବାଉଳ ।
ହୋଇଚି ଷାଠିଏ ହାତ ଭାରତେ ଯେ ସାନ
ଜାଣେ କି ସେ ତଳେ ହେଲେ ମାନ ଅପମାନ ।
ଜନମି ଏ ପୁଣ୍ୟ ଭୂମେ କେତେ ମହାଜନ
ଯୋଗ ବଳେ କରିଥିଲେ ଅସାଧ୍ୟ ସାଧନ ।
ଆତ୍ମ ବଳି ଦେବା ପାଇଁ ଅକୁଣ୍ଠିତ ଚିତ୍ତେ
ହୋଉଥିଲେ ଆଗଭର ସଦା ପର ହିତେ ।

ତାଙ୍କର ବାସ୍ତବବାଦ ହୋଇ ବାପୁଙ୍କ ଆମର ।
ଅହିଂସା ପ୍ରଦୀପ ଜାଳ ଦେଲେ ଘରେ ଘର ॥
ଆଜ ନାହିଁ ମନେ ତନେ ଥିଲେ ଯା ଶିଖାଇ ।
କାହା ହୃଦ ଘାଣ୍ଟି ହେବ ଗରିବଙ୍କ ପାଇଁ ?
ଦୂଷିତ ପତିତ ପୂର୍ବ ସଂସ୍କୃତି ଦେଶର ।
ସେଥି ପାଇଁ ଏବେ ଫେରି ଏତେ ହରବର ॥
ସ୍ୱର୍ଣ୍ଣ ପ୍ରସୂ ଏ ଭାରତ ଦୀନ ହୀନ ଆଜ ।
ଏଥିପାଇଁ ଦୋଷୀ କିଏ କହ ନେତା ରାଜ ?
ଆପଣାକୁ ବଡ଼ ବୋଲି ବୃଥା ଭାବନାରେ ।
ମାତ ନାହିଁ କେତେବେଳେ ମରି ଦୁନିଆଁରେ
ସଂଯମ ଶବ୍ଦଟି ସିନା ରହିଛି ଭାଷାରେ ।
ଅସଂଯତ ଆଜି ଲୋକ ସାମାନ୍ୟ କଥାରେ ॥
ତେଜ ହୃଦୟରୁ ନୀଚ ପ୍ରବୃତ୍ତି ନିକର ।
ମାତୃଭୂମି ସେବା ଲାଗି ହୁଅ ତତପର ॥
ଭଡ଼ାଟିଆ ନ କରିଲୁ ସଂଗ୍ରହ ଭୋଟର ।
ହେଉ ଦେଶ ଅନୁବର୍ତ୍ତୀ ବାପୁଙ୍କ ବାଦର ॥
ଗାନ୍ଧିବାଦ ପ୍ରଚାରରେ କିଛି ନାହିଁ ଲାଭ ।
ନ ପାରିଲେ ବଦଳାଇ ନିଜ ମନୋଭାବ ॥
ଜୀବନର ଧନ୍ଦା ସାରି ଯିବ ତ ବାହୁଡ଼ି ।
ଏ ନିମିତ୍ତ ଚେଷ୍ଟାର କମା ହୁଡ଼ା ହୁଡ଼ି ॥
ବସନ୍ତ ମାଧୁରୀ ପଛେ ତାପ ଗ୍ରୀଷ୍ମର ।
ଅନୁଭବ ହୁଏ ଭବେ ସଦା ମଣିଷର ॥
ମତି ଭ୍ରଷ୍ଟ ହୋଇ କଟାଇବ କେତେ କାଳ ।
ବିଷମ ବିଷମ ଭାରି ଧରଣୀ ଜଞ୍ଜାଳ ॥
କରିତ ସୁକର୍ମ ମନୁ ସଂକୀର୍ତ୍ତିତା ଗୁଡ଼ ।
ଭବ ବନ୍ଧନରୁ କରି ଦେଶ ନିଅ ଗଢ଼ ॥
ରଖିଲେ ହୃଦୟ ମଧ୍ୟେ କଳୁଷିତ ଲାଳସା ।
କେତେବେଳେ ନ ଘୁଞ୍ଚିବ ଏ ଦେଶୁ ଦୁର୍ଦ୍ଦଶା ॥
ସମସ୍ତ ରତନ ଧରି ଫେରୁଅ ନୟନ ।
ଗଣତନ୍ତ୍ର ଦୃଢ଼ ହେଉ ରକ୍ଷି ସୁଶାସନ ॥
କେତେଦିନ ଧନ ଭୋଗ ଯଶ ଆଉ ଭବେ ।
ନିଦ୍ରାବେଳେ ସ୍ଥିରମନେ ଚନ୍ଦ୍ରାଙ୍କର ଲଭେ ।
ପରଦ୍ରୋହ ଛାଡ଼ିବାକୁ ନ ବଳାଅ ମନ ॥
ବ୍ରତ ହେଉ ନିରନ୍ତର କର୍ତ୍ତବ୍ୟ ସାଧନ ।

କୁରୁକ୍ଷେତ୍ର ଆଡେ ଥରେ ଫେରାଇ ନୟନ ।
କି ଦଶା ଭୋଗିଲା ଦେଖ ଦୁଷ୍ଟ ଦୁର୍ଯ୍ୟୋଧନ ॥
ନଶୁଣି କାହାର କଥା ପଶିଲା ସମରେ ।
ମରାଇ ସବଂଶ ଆପେ ମରିଲା ଶେଷରେ ॥
ନ୍ୟାୟର ନିଷ୍ପତ୍ତି କଲା ସମର ଅଙ୍ଗନ ।
ଯେତେ ଥିଲେ କୁରୁପକ୍ଷ ଲଭିଲେ ନିଧନ ॥
ମୃତ୍ୟୁଠାରୁ ବଳି ଦୁଃଖ ନାହିଁଟି ସଂସାରେ ।
ଅନୁଭବୀ ବିନା ତାହା ବୁଝି କେ ନପାରେ ॥
ଲୋଭ ବଶେ କର୍ଣ୍ଣବୀର ଦେଇଥିଲେ ବଳ ।
ତାଙ୍କ ସଙ୍ଗେ ମିଶିଥିଲେ ଯେତେଥିଲେ ଖଳ ॥
ଜନକ ଜନନୀ ପୁଣି ଭୀଷ୍ମ ଦ୍ରୋଣସହ ।
ତୁଟାଇ ପାରିଲେ ନାହିଁ ସାମାନ୍ୟ କଳହ ॥
ପିତାମାତା ମହାଶୋକେ ପଡ଼ି ଘରକଣେ ।
କୁରଙ୍ଗୀ ପରାଏ ହେଉଛନ୍ତି ଅନୁକ୍ଷଣେ ॥
ନିଭିର ନୟନ ନାହିଁ ଶଠତା ଶଠଇ ।
କଲା ଚୂର୍ଣ୍ଣୀଭୂତ ସବୁ ପ୍ରହାର କାଳର ॥
ଅଧର୍ମର ପରାଜୟ ଧର୍ମର ବିଜୟ ।
ଏହି ମହାଶିକ୍ଷା ମନୁ ନ ହେଉ ବିଲୟ ॥
ବିବେକ ଲଗାମ ଧରି ଇନ୍ଦ୍ରିୟ ଘୋଟକ ।
ଚଳାଇ ପାରିଲେ ହେବ ଦେଶ ନିଷ୍କଣ୍ଟକ ॥
ମିଛକହି ଲୁଚି ନିନ୍ଦା ଅରଜ କପାଇଁ ।
ପରଧନ ଅପହରି ସଞ୍ଚୁଛ କା ପାଇଁ ?
ଲାଗିଛୁ ଯିବାଆସିବା ଦେଖ ଏ ମରତେ ।
କିଏ ରହେ କହୁଛନ କେ ବା ମୁହୂରତେ ॥
ହୁଅ ନାହିଁ ମହାମୋହେ ବଶବର୍ତ୍ତୀ ଆଉ ।
ହିତକର୍ମେ ମନଦିଅ ଜୀବ ଥାଉ ଥାଉ ॥
ଖଳ ଖୁସାମତିଆଙ୍କୁ ନ ମଡ଼ାଅ ପାଶ ।
ଯାହା ଯୋଗେ ମଣିଷର ଘଟେ ସର୍ବନାଶ ॥
ବାହାରେ ବାବାଜି ସାଜି ଭିତରେ ଶଠତା ।
ଆଚରିଲେ ନ ରହିବ ଆମ ସ୍ୱାଧୀନତା ॥
ନ ହୋଇ ଅର୍ଥରେ ବଶ କଲେ ତାଙ୍କୁ ଦାସ ।
ଅନତି ବିଳମ୍ବେ ହେବ ମହତ୍ତ୍ୱ ପ୍ରକାଶ ॥
ଅପର ହାତରେ କେବେଁ ନୋହି କ୍ରୀଡ଼ନକ ।
ଆପଣାକୁ ମଣ ସଦା ଦେଶର ସେବକ ।

# ଚିନ୍ତାମଣି

ପୁରାତନ କା'ର କେବେ ଅସାର କଳ୍ପନା
ନ ଦେଖୁଛି କଏ କେତେ ମରଣ ଯାତନା ?
ସଂସାରିକ ଭୋଗ ବିଳାସରେ ସଦା
ହୃଦୟ ରହିଛି ଯାର ।
ଅନ୍ଧକାରେ ତାର    ଫୋଟିବାକୁ ବେଳ
ଧାନର ଚଲିତକ ଧାର ?
ଅଚିନ୍ତ୍ୟ ଶକତି    କରୁଛି ରାଜତ୍ୱ
ସମଗ୍ର ଭୂ-ମଣ୍ଡଳରେ
ନ ଜାଣି ମଣିଷ    ଭ୍ରମି ହେଉଅଛି
ନିରନ୍ତର ଅନିତ୍ୟରେ ।
କିଏ କେତେବେଳେ ପଡ଼ୁଛି ଝଡ଼
ଏ ବିଷୟ କେବେ ଜଣା ନ ପଡ଼େ ।
ତେବେ ଲଢ଼ାଇରେ କି ଫଳ ପାଅ
ଈଶ୍ୱର ଚିନ୍ତାରେ ମନ ଲଗାଅ ।
ପାଇବ ସୁଖ ପଛରେ
ବିଷୟ ଜଞ୍ଜାଳ    ମହାକାଳ ଫଳ
ବୋଲି ଭାବ ହୃଦୟରେ ।
ବରଷ ବରଷ ଗଣୁଛି ବସି
ଦେଖି ଚଉଦିଗେ ଦୁନିଆଁ ଖସି ।

ନ ଶିଖିଲ ପଦେ କାହିଁରୁ କିଛି
"ମୋର ମୋର" ବୋଲି ସତତ ଇଚ୍ଛି ।
ଚିନ୍ତିଲ କି କେବେ ଥରେ
ଭବରଙ୍ଗ ଭୂମି    ଛାଡ଼ିଯିବ ଯେବେ
କି ଯେନି ଯିବ ସଙ୍ଗରେ ।
ଭେଦଭାବ ଭୁଲି ହୁଅରେ ଏକ
ତେବେ ଜନତାର ରହିବ ଟେକ ।
ଛଡ଼ିଆଡ଼ୁ ହିଂସା ନମାର କା'ର
ନିର୍ମଳ ହୃଦୟ କର ବିସ୍ତାର ।
ସ୍ୱାର୍ଥ ପାଇଁ ଲାଗି କାଳି,
ପୂରୁବ କାହାଣୀ    ପାସୋର ମନରୁ
ଦେଶକୁ ନଦିଅ ବଳି ।
ବୃଦ୍ଧାତ ଶାସନ ଲାଞ୍ଚ ମିଛରେ
ଉପୁଜଇ କୋହ ଦେଖି ହୃଦରେ
ଶିଖାଇବାକୁ କେ ନାହିଁ ତାହାର
କ୍ଷମତା ମୋହରେ ଦିଶେ ଅନ୍ଧାର ।
କାହାକୁ ଏବେ କହିବା
ରାଜନୀତି ଚକ୍ର    ଭେଦଭେଦନ ପାଇଁ
ବନ୍ଧୁର ତୁନି ରହିବା ।

ଗରିବଙ୍କ ସଂଖ୍ୟା କରି ତୁଳନା
ତାଙ୍କ ପାଇଁ ତୁମେ କର ଭାବନା ।
ପେଟକୁ ନପାଇ କେତେ ଉପାସ
କରି ଘେନ ପ୍ରାଣେ ଶେଷ ନିଶ୍ୱାସ,
ଧନୀବର ଭୂମ୍ୟାମଣା
ଜାଣିବାକୁ ଯୋଗୀ ହେଲ ସିନା ଧନ୍ଦ
ନ ପଡ଼ିଲା ତାଙ୍କେ ଜଣା ।
କେତେକ ବଡ଼ ବୈଷ୍ଣବ ସାଜ,
ବାର ବାର ଦେଲେ ଭାଷଣରାଜ ।
ଗରିବଙ୍କ ଲାଗି ଅବା ବ୍ୟାକୁଳ
ମଲେଣି ଦେଶର କୃଷକକୁଳ
ମାଗି ମାଗି ପାଣି ମନ୍ଦ
ପଥ ଭଡ଼ାଆରେ ଅଯଥା ଖରଚ
ଟୋପେ ପାଣି ନାହିଁ ଖନ୍ଦେ ।
କି ବୋଲନ୍ତି ଜନେ ତୋର ପଛରେ
କାନ ଦେଉଥିବୁ ନିଶିବାସରେ ।
ଅନ୍ୟର ସମ୍ପଦେ ନ ବଳ ଆଶା
ସନ୍ତୋଷରେ ନିଭ ମନର ପିପାସା
କାହିଁକି ଏ ଅହଂକାର
ହୃଦ କେଦାରରୁ ଉପାଡ଼ ଘାସକୁ
ଆନନ୍ଦ ମିଳୁ ଅପାର ।
ଭଲ ମନ୍ଦ ଯାହା ନିତି ଚଳିଲା
କରିଯାଅ କର୍ମ ସ୍ୱାର୍ଥକୁ ଭୁଲି
ଗୋଡ଼ାଣିଆ କେବେ ନହୁଅ କା'ର
ମଣିବ ସଂସାର ସଦା ଅସାର
ମିଛକୁ ଛାଡ଼ ଅନ୍ତରୁ
ଅବିନାଶୀ ବ୍ରହ୍ମ- ପଦେ ରଖି ଲୟ
ଫିଟିବ ମାୟା ଜାଲରୁ ।
ମଣିଷ ଭିତରେ ରହିବା ଲୋଭ
ତା ପ୍ରତି କିଏ କି ପ୍ରକାଶେ କ୍ଷୋଭ ?
ଯାପଡ଼େ ହାବୁଡ଼େ ଦିଅନ୍ତେ ଗିଳି
ପେଟ ଭିତରେ ତା ଯାଉଚି ମିଳି
ସକଳେ ପଡ଼ି ମୋହରେ
ଯାହା ଇଚ୍ଛା ତାହା କରି ଯାଉଛନ୍ତି
ନ ଭାବି ସ୍ଥିର ମନରେ ।

ଫିଟାଇ ଦିଅରେ ଲୋଭ ବନ୍ଧନ
ଜନ ସେବା କରି ଯାଉ ଜୀବନ
ଓଳିଏ ଉପାସ ଓଳିଏ ଜାଉ
ଖାଇ ସମ୍ଭାଳେ କେ ଉଦର ଦାଉ
ମେଲି ଆଖି ଦେଖ ଥରେ
କ୍ଷମତାରେ ରହି କହିଲେ ଗୁଡ଼ାଏ
ଶୁଣିବ କଥା ଘରରେ ।
କିବା କୋଟିପତି କିବା ପଣ୍ଡିତ
ନିମ୍ନ ନୀଚ୍ଚରେ ସର୍ବେ ଗୃହୀତ
ଲଟିନ୍ତି ତୁଚ୍ଛାକୁ ଆପଣା ପାଇଁ
ଧର୍ମ ଅଧର୍ମକୁ ପଛେ ପକାଇ
କା ଲାଗି ହୋଇଲ ବଡ଼
ଧନେ ହେଲେ ଲବେ ନଚାନ୍ତି ମାନସେ
ପାଖରୁ ତାହାକୁ ତଡ଼ ।
କାମନା ପୂରନ୍ତି ହୃଦୟ ଯା'ର
ସେ କାହୁଁ ଶିଖିବ ସାଧୁ ଆଚାର ?
ନିଜ ଙ୍କୁ ବଳି ଦେଇ ଜୀବନେ
ଅସୁର ସ୍ୱଭାବ ସନ୍ତତ ମନେ
କାହିଁକି ଟଣା ଓଟରା
ସଂସାର ଚକ୍ରରେ ଜନ୍ମ ଜରା ମୃତ୍ୟୁ
ଗୋଡ଼ାଗୋଡ଼ି ନିତ୍ୟ ପରା ।
ମିଥ୍ୟାକୁ ମଣିଲ ଅନିତ୍ୟ ବୋଲି
ନ କହିଲ ପଦେ ହୃଦୟ ଖୋଲି
ଅରପି ଚିତ୍ତକୁ ବ୍ରହ୍ମ ପଦରେ
ହୁଅ ଅଗ୍ରସର ମୁକ୍ତି ମାର୍ଗରେ
ହେଲେହେଁ କଣ୍ଟକମୟ
ଅଭ୍ୟାସ ବଶରେ ଫୋପାଡ଼ ଦେଲେ ତା
ତୁଟିବ ସକଳ ଭୟ ।
ତରିବ କିପରି ଭବ ସାଗରୁ
ନ ଶିଖି ଜୀବନେ ପଦେ ଗୁରୁରୁ
ହୃଦୟର ଯେତେ ଅଜ୍ଞାନ ଗଣ୍ଠି
ନ ଫିଟାଇ କଲ ଗଲାର କଣ୍ଠି
କେତେ ଧନ ପାଇଁ ଭବେ
ଶୋଷଣ ପ୍ରକୃତ ବହି ଅହରହ
ନ ଚିନ୍ତିଲ ଧନେ ଲବେ ।

ନକର ବିଶ୍ୱାସ ତାହାଙ୍କୁ ଭବେ
କୃତଜ୍ଞତା ଯାର ନଥାଏ ଲବେ
ଗୃହ କଥାରେ ସେ ହିଏ ଭୁଲଇ
ମାନ ମହାତ୍ମାଙ୍କୁ ସଦା ହରାଇ
ପାଉ ସେ ଯେତେ ସୁବିଧା
ଉଣ୍ଡି ବେଳକାଳ ନିର୍ଲଜ୍ଜ ଭାବରେ
ପଛରୁ ମାରୁଛି ବାଧା ।

ପାଳ ବେଦୋକ୍ତ ଅନବରତ
ଯାପିବ ଜୀବନ ହୋଇ ସଂଯତ
ନଥିଲେ ଆବିଳ କେବେ ହୃଦୟ
ହସିବ ଜଗତ ଈଶ୍ୱରମୟ
ନ ରହିବ ହିଂସା କ୍ଷଣେ
ହୃଦ କବାଟକୁ ଖୋଲ ଦେଇ ଭାଇ
ନଚଳ ଛଳଚଳଣେ ।

ପରମାତ୍ମାଙ୍କର ଅସ୍ତିତ୍ୱ ଜାଣି
ତାଙ୍କଠିକୁ ନେବ ହୃଦୟ ଟାଣି
ଅବିନାଶୀ ବ୍ରହ୍ମଜ୍ଞାନ ଅର୍ଜି
ଲଭ ଅମରତ୍ୱ ସ୍ୱାର୍ଥ ବର୍ଜି
ହୋଇ ମୁକତି ଭିକାରି
ବିଷୟ ସକଳ ତେଜି ମାନସରୁ
ହୁଅ ଭବସିନ୍ଧୁ ପାର ।

ବୁଡ଼ି ଗାଧି ଦାନେ ଅଛି କି ଫଳ
ଚଞ୍ଚଳ କି ମନ କର ନିର୍ମଳ
ନହୋଇ ପଥିକ ନ୍ୟାୟ ମାର୍ଗର
କୁଳଟା ବେଶରେ ପୂର୍ଣ୍ଣ ଅନ୍ତର
ସହିବ ନାହିଁ ଦଇବ
ଆଜ ଯେ ବସିଛି ରତ୍ନ ସିଂହାସନେ
କାଲି ସେ ଭିକ ମାଗିବ ।

ଏ ଦେଶର ବେଦ ଉପନିଷଦ
ନୁହେ କି ଜାତିର ଶ୍ରେଷ୍ଠ ସମ୍ପଦ ?
ଗୋଡରେ ଆଡ଼େଇ ଦେଉଛ କିଆଁ ?
କି ବୋଲିବ ଏହା ଦେଖି ଦୁନିଆଁ
ମରଣଧର୍ମା ମନୀଷ

ସବୁ କଥା ଦେଖି କାହିଁକି ସତୃଚ
କଲୁଷ ପଙ୍କେ ଅନିଶ ।
ଭୋଗ୍ୟବସ୍ତୁ ସଦା କ୍ଷଣ ଭଙ୍ଗୁର
ତା ନିମିତ୍ତ ଆହା ! କେତେ ଆତୁର
ବଢ଼ୁଅଛି ଆଶା ଉତ୍ତରୋତ୍ତର
ଆତ୍ମତୃପ୍ତି କାହିଁ କେବେ ମନର
ଆତ୍ମଜ୍ଞାନେ ରହୁ ମତ
ଜରା ମରଣର ଶରୀର ଧାରଣେ
ହେଉଛୁ ଦଗ୍ଧ [illegible] ।

ଅବଲମ୍ବି [1]ପ୍ରେୟ ମାର୍ଗ ଜୀବନେ
ନଡ଼ୁଚନ୍ତି ଲୋକେ କି ପ୍ରଲୋଭନେ !
ବିଷସ୍ୱାଦ ଗୃହଚର୍ଯ୍ୟରେ ଭୁଲି
କଥା କହୁଚନ୍ତି କି ଫୁଲି ଫୁଲି
[2]ଶ୍ରେୟକୁ କରି ବର୍ଜଣ
ଅସାଧ୍ୟ ସାଧନ କରିଥିଲେ ପରା
ଏ ଦେଶ ମହର୍ଷିଗଣ ।

ମାୟା ହେତୁ ହୃଦେ ନାନା କାମନା
ପୂରିତ ହୋଇ ତା ଦିଏ ଯାତନା
ସମୂଳେ ବିନଷ୍ଟ ହେବ ଯେପରି
କରିବ ସତତ କର୍ମ ସେପରି
ମନକୁ ଆୟତ୍ତ କରି
ନ ଚଳିଲେ ଭବେ ଅପଯଶ ପାଇ
କେତେବେଳେ ଯିବ ସରି ।

ଜୀବନର ବନ୍ଧୁ ପରମେଶ୍ୱର
ଜାଣୁଚନ୍ତି ତୋର ଯେତେ ହୃଦର
ତାଙ୍କୁ ଭୁଲାଇ କେ ପାରିବ ଭବେ ?
ବେଦ ବେଦାନ୍ତକୁ ନମାନି ଲବେ
ସଂସାରିକ ଜାଲେ ପଡି
ପରମାତ୍ମା ଚିନ୍ତା ନ କର ଜୀବନେ
କି ହେବ ଗୁଡ଼ିଲେ ଗଡ଼ି ।

ନିବୃତ୍ତି ମାର୍ଗର ପଥିକ ହୋଇ
ହୃଦୟରୁ ଦିଅ କପଟ ଧୋଇ

---

୧ ପ୍ରେୟ — ବିଷୟ [illegible] ଭୋଗରେ ସୁଖ
୨ ଶ୍ରେୟ — ବ୍ରହ୍ମ ସାକ୍ଷାତରେ ସୁଖ

ମନୁଷ୍ୟ ଜୀବନ ହେବ ସାର୍ଥକ
ବୋଇଲେ ଜନତା ଦେଶ ସେବକ
ଉପେକ୍ଷି ସଦା ଆସକ୍ତି
ବାଛୁ ଗୁଣ ଦୋଷ କରିଗଲେ କର୍ମ
ବଢ଼ିବ ଆପଣା ଶକ୍ତି ।
ଇନ୍ଦ୍ରିୟମାନଙ୍କୁ କର ସଂଯତ
କଳୁଷ କର୍ମରୁ ହୁଅ ବିରତ
ସାଂସାରିକ ମାୟା ଜାଲରେ ପଡ଼ି
ବଳୟ [illegible]
ମୁକ୍ତିକ ଲାଗି ପରି
ସୃଷ୍ଟିକାରୀମାନେ ଚଉପାଟଣି ବେଢି
କରନ୍ତି କେତେ ଠାପରି ।
ସର୍ବ ଶକ୍ତିମାନ ପରମେଶ୍ୱର
ଭକ୍ତମାପ୍ୟ ଅବିରାମ ମରର
ଆଜି ଯା ଦେଖୁଛ ନଥିବ କାଲି
ଭରତ ଭଣ୍ଡାର ହେଉଛି ଖାଲି
ଜନ୍ମ ଜରା ମୃତ୍ୟୁ ବରି
କି ସୁଖ ପାଉଛ ଶରୀରେ କି ଦିନେ
ନିତ୍ୟ ଅନିତ୍ୟ ଆଦରି ।
ଯେ ସଂସାରେ ସଦା ସର୍ବ ବ୍ୟାପକ
ଦେଖୁଛି ସେ ତୋର କରମଢକ
ତାଙ୍କୁ ଭଣ୍ଡାରି କେ ପାରିବ ଭବେ
ତା ନାମ କେବେ କି ଧରିଲୁ ଲବେ ?
ହେଉସିନା ଉଚ୍ଛୃଙ୍ଖଳ
ଆସିବ ତା ବେଳ ବେନି ନୟନରୁ
ବୋହିବ ଲୋତକ ଜଳ ।
କା ଘରେ ଶୁଭୁଛି କ୍ରନ୍ଦନ ରୋଳ
ଆମୋଦ ପ୍ରମୋଦ କିଏ ବା ଭୋଳ
ଭାବିବାକୁ ତର ଅଛି କି କା'ର
ଭାଙ୍ଗିଗଲା ସିନା ବଳ ଅଣ୍ଟାର
ଯେ ଯାହା ଧନ୍ଦାରେ ବ୍ୟସ୍ତ
ପରମେଶ ପଦେ ନ ରଖି ମାନସ
ହେଉଛି ଜୀବନ ଅସ୍ତ ।
ସମତା [illegible] ସକଳ
ଏଥିଲାଗି ଗୁରୁଆଡେ 'ଚହଳ

ଗରିବର ଦୁଃଖ ଶୁଣୁଛି କିଏ
ନିଜ ପାଇଁ ଭାବେ ଆଜି ସଭିଏଁ
ସ୍ୱାର୍ଥର କି କରାମତି
ନ ବସ୍ତୁର ଆନ ପଦାନତ ତାରି
ଅହରହ କୋଟିପତି ।
ନିଶକୁ ଫୁଲାଇ ବୁଲୁଛୁ କିଆଁ
ତୋ ଚଳଣି ଦେଖି ହସେ ଦୁନିଆଁ
ଦେଖିଛୁ କି କେବେ କା'ର ଗରବ
ରହିଅଛି ଲବେ ସାରା ସରବ ?
ଘୋସିଗଲେ ସ୍ୱାର୍ଥ ଜଳେ
ନଥିବ ନାଉରି ଉଦ୍ଧାରିବା ଲାଗି
ଜୀବନ ଯିବ ବିକଳେ ।
ସଞ୍ଚିଲେ ଗୁଡାଏ କି ହେବ ଫଳ
ତୋର ପଛେ ପଛେ ଯିବ ସକଳ
ଦେଖୁ ପ୍ରତିଦିନ ଦୁନିଆଁ ରୀତି
କାହିଁକି ଧନରେ ରଖିଛୁ ପ୍ରୀତି
ହେବ କି ଶେଷେ ତା ସାହା
ଅଜ୍ଞାତ ଭବିଷ୍ୟ ନ ଚିନ୍ତି ଜୀବନେ
ତୃଷ୍ଣାକୁ ପିଠୁଛୁ ବାହା ।
ଦାନ-ହେଉ ପଛେ କହିବୁ ସତ
ଆଚରିବୁ ସଦା ଅହିଂସା ବ୍ରତ
ମନକୁ ସନ୍ତୋଷ କିଏ ସଂସାରେ
କରି ପାରିଛି କି ବହୁ ଚେଷ୍ଟାରେ ?
ଅଯଥା କରି କାମନା
ଧନ ଲାଗି ନାନା ଅନୀତିରେ ପଶି
ନ ଭୋଗେ କିଏ ଯାତନା ?
ଆଗକୁ ପଛକୁ ବିଚାରି କରି
କରିଯିବୁ କର୍ମ ତିଳେ ନ ଡରି
କେତେବେଳେ କା'ର ଛାଡ଼ିବ ପ୍ରାଣ
ନ ଦେଖାଇ କେବେ ଜୀବନେ ଠାଣ
ପାଞ୍ଚିବୁ ପର ମଙ୍ଗଳ
ବିନମ୍ର ସ୍ୱଭାବ ଥିଲେ ଅବିରତ
କରିବେ ପୂଜା ସକଳ ।
ତୋ ପୂର୍ବ ପୁରୁଷେ କେତେ ସରଳେ
ଯାପୁଥିଲେ ଦିନ ଗାଆଁ ଗହଳେ

ମାଣ୍ଡିଆ ଜାଉରେ ପେଟ ପୂରାଇ
କରୁଥିଲେ କାମ ରାତି ପୁହାଇ
ନ ଥିଲା ଏ ଆଡ଼ମ୍ବର
କୋମଳ କଥାରେ ସକଳ ମାନସ
ତୋଷୁଥିଲେ ନିରନ୍ତର ।

କୋଠଘରେ ରଖି ଗାଆଁ ମଝିରେ
ଭାଗବତ ଶୁଣୁଥିଲେ ରାତିରେ
ନଥିଲା କପଟ ନ ଥିଲା ଛନ୍ଦ
ଖେଳୁଥିଲା ମୁଖେ ସଦା ଆନନ୍ଦ
କାହିଁ ସେ ସୁଖ ସମୟ ?
ନୈରାଶ୍ୟ ପବନ ବହୁ ବର୍ତ୍ତମାନ
ମାନସ କରେ ଅଥୟ ।

ପ୍ରଭୁ ନାମ ଧର ଉଠି ଶେଯରୁ
ଅବର୍ଜନା ପୋଛି ହୃଦ କନ୍ଦରୁ
ତାଙ୍କର ମହିମା କର କୀର୍ତ୍ତନ
ହସ ହସ ମୁଖେ ଯାଉ ଜୀବନ
ଧର୍ମପ୍ରାଣ ଏ ଭାରତ
ଅନ୍ୟାୟକୁ ତଳେ ନ ଦେଇ ପ୍ରଶ୍ରୟ
ଜନ ସେବା ହେଉ ବ୍ରତ ।

ମନ ଘୋଟକକୁ କର ଆୟତ୍ତ
ବିବେକ ଲଗାମ ଧର ସତତ
ସ୍ୱାର୍ଥ ଦେଖାଇବ ଯାହାକୁ ବାଟ
ଲାଗିଥିବ ତାର ଜୀବନେ ନାଟ
ବିବ୍ରତ ଚଳିବ ଭବେ
ନୋଇଁବାକୁ ମୁଣ୍ଡ ନପଡ଼ିବ କେବେ
ଆପଦ ନଥିବ ଲବେ ।

ନୀଚ କରମରୁ ଯାଅ ଓହରି
ପାଇବ ପ୍ରଶଂସା ପଛେ ଯେପରି
ଆଦର୍ଶ ମଣିଷ ହେବାକୁ ଭବେ
ଲୋଭ ହିଂସା ହୃଦେ ନରଖ ଲବେ
ଜୀବନ କର ସାର୍ଥକ
ଦୁଃଖୀରଙ୍କୀଙ୍କର ପେଟ ଚିନ୍ତି ସଦା
ସତ୍ୟର ହୋଇ ପୂଜକ ।

ମୋ ଦେଶର ବୁଦ୍ଧ ମୋ ଦେଶ ଗାନ୍ଧି
ସକଳ ମାନସ ରଖିଲେ ବାନ୍ଧି
ଶିଖାଇ ଥିଲେ ଯା ଗଲା ପାସୋରି
ଚଉଦିଗେ ଦେଖି ଦୁର୍ନୀତି ଭୂରି
ପ୍ରହୁଣା କଥାରେ ମନ
ନଦେଇ କାନ ଏସେ ନୂଆ ଫେସନରେ
ଅତିବାହିତ ଜୀବନ ।

ବିଳାସ ବ୍ୟସନେ ନ ଦେଇମନ
ଭକ୍ତିରସ ପାନେ ଯାପ ଜୀବନ
ଆପଦ ପଡ଼ିଲେ ନୋହି ବିବ୍ରତ
ଧୈର୍ଯ୍ୟ ଧରିଥିବ ଅନବରତ
ସଂଯମ ସଦା ଆଚରି
ଚଳିଲେ ଜୀବନ ହେବ ସୁଖମୟ
ନୀରୋଗରେ ଯିବ ତରି ।

ମଇଳା ଯେପରି ଧୁଅ ଦେହରୁ
ଠକାମି ଭଣ୍ଡାମି ପୋଛ ହୃଦରୁ
ଯା ନାମ ଧରିଲେ ମିଳେ ମୁକତି
ଶ୍ରୀଚରଣେ ତାର ରଖିବ ମତି
କଢ଼ାଇବ ବାଟ ଧର୍ମ
ଭବରଙ୍ଗ ଭୂମି ଛାଡ଼ି ଯିବ ଯେବେ
କର ସନ୍ତତ ସୁକର୍ମ ।

ନ ପୂରିଲେ ପେଟ ଉପୁଜେ କଳି
ଦେଶକୁ ଗଢିବ ଚିନ୍ତା କି ଭଳି
ପକ୍ଷପାତ ଭାବ ନରହୁ ଲବେ
ବିରାଜୁ ଏକତା ଦେଶରେ ଜବେ
ନ ରହୁ ସ୍ୱାର୍ଥ ମନରେ
ଏ ମାଟିରେ ବଢି ଏ ମାଟି ମହତ୍ତ୍ୱ
ଗାଅ ଅମୃତ କଣ୍ଠରେ ।

ଯୌବନ ତରଙ୍ଗେ ଭାସି ନଯାଇ
ଗଢ଼ିବ ଜୀବନ ହାତ ମିଶାଇ
ନମଣିବ କେବେ କାହାକୁ ସାନ
ସମାଜ କଲ୍ୟାଣେ ସର୍ବେ ସମାନ
ପାଦମୁଣ୍ଡ ନାହିଁ ଭିନ୍ନ

ତେବେ କାହିଁପାଇଁ ତୁମେ ଭାଇକି
ମଣୁଛ ତୁଚ୍ଛାକୁ ହୀନ ।
ଧରିଥିବ ଯେତେ ନ୍ୟାୟ ନୀତି
ନଥିବ କାହିଁରେ କାହାର ପ୍ରୀତି
କେବେ କେଉଁବାଟେ ଯାଏ ପରାଣ
ନପାଏ କେ ଜନେ ତାର ସନ୍ଧାନ
ତୁଚ୍ଛା ବୋଲ ମୋର ମୋର
ଯାଉଅଛି ସବୁ ମହତ ଜୀବନ
ବୁଡ଼ି କଳୁଷେ ଅଘୋର ।
ଜୀବନ ସମସ୍ୟା ଜଟିଳ ଅତି
ନୋହି ତତପର କର ନିଷ୍ପତ୍ତି
ଦିଶୁନାହିଁ ପିଠି କେବେ ନିଜକୁ
ଡେରିଥିବ କାନ ସଦା ଜଗତକୁ
ଆଗରେ ରହିଛି ଗାଡ଼
ଜୀବନ ପଥରେ ଚାଲି ନ ଜାଣିଲେ
ଭାଙ୍ଗିଯିବ ମେରୁ ହାଡ଼ ।
ଧନ ଲାଗି ତେଜ ମାନ ମହତ୍ତ୍ୱ
ଧାଉଁଛନ୍ତି ଲୋକେ ନବୁଝି ତତ୍ତ୍ୱ
ମିଛ କଲ ବସା ସଦା ତୁଣ୍ଡରେ
ଭଲ କଥା ପଶୁନାହିଁ ମୁଣ୍ଡରେ
ଧନ୍ୟ ଧନ୍ୟ ଯୁଗ ରୀତି
ଜଣକ ପିଠିରେ ବସିଲେ ପ୍ରହାରି
ଅନ୍ୟର ହୃଦୟେ ପ୍ରୀତି ।
ଜୀବନ ନୀରସ ନୁହଇ କା'ର
ଚିନ୍ତା ଛାଡ଼ିଦେଲେ ସୁଖ ଅପାର
ଅଳସୁଆ ହେଲେ ବୁଡ଼ିବ ଭେକ
ଶ୍ରମବଳେ ରହୁ ଦେଶର ଟେକ
ନରଖି ସ୍ୱାର୍ଥ ଚଉରେ
ରୋପି ଯାଅ ଗଛ ଯା ଫଳ ଖାଇବେ
ଭବିଷ୍ୟତ ବଂଶଧରେ ।
ଧରାଧରି ଜାଲେ କେବେ ନ ପଡ଼ି
ନ୍ୟାୟେ ନେଉଥିଲେ ଦେଶକୁ ଗଢ଼ି
ଲଭିବେ ସନ୍ତୋଷ ଲୋକ ସକଳ
ଦୂଷିତ ନହେବ ବାୟୁ ମଣ୍ଡଳ
ନିର୍ମଳ ଥାଉ ଅନ୍ତର
ଗୁରୁଜନ କଥା ନଶୁଣି ଜୀବନେ
ହୁଅ ନାହିଁ ହରବର ।
ଚାଲିଛି ଆଗରେ ମିଛ ସନ୍ତ୍ର
ପଶୁଛି ଅବାଟେ ନୋହି ବସ୍ତ୍ର
ଯା ଆସିଲା ତୁଣ୍ଡେ ଦେଉଛି କହି
ଫତୁଆ ହେଲେହେଁ ପାରୁଛି ସହି
ଲାଜକୁ ନଥିଲେ ଡର
କେତେବେଳେ ସେହି ଜୀବନେ କାହାକୁ
କରିବ ଅବା କାତର ।
କେତେ କବିଙ୍କର ପଢ଼ିଲା ଗୀତ
ଅକ୍ଷର ଯୋଡ଼ାରେ ସର୍ବେ ପଣ୍ଡିତ
ଥାଉ ବା ନ ଥାଉ ଭାବ ତହିଁରେ
ପୁରସ୍କୃତ ଆଜି ଧରାଧରିରେ
ନବଯୁଗ ଚୂଡ଼ାମଣି
ଜାଣିବାରୁ ଚଗା ବାଟରେ ଘାଟରେ
ବାଜୁଛି ନିତି ବାଜଣା ।
ସମବାୟ କଥା କହିବ କେତେ
ଚୋର ଆଡ଼େ ଲୁଟି ଚାଲିଛି ଯେତେ
ଆପଣ ବହିକି ଲେଉଟାଇଲେ
ଦେଖିବ ସୁବିଧା ଧନ ପାଇଲେ
କାଳମାଦ ହାକମର
ନ ବୁଝି ନେତାଏ କରନ୍ତି ମଞ୍ଜୁରି
ହାନି କରି ଗରିବର ।
ଦେଶଯାକ ଏବେ ହେଲାଣି ଲୁଟି
ଲୋକଙ୍କର ଆଖି ଗଲାଣି ଫୁଟି
ଦେଖି ସବୁ ଯେବେ ଫିଟାଇ ପାଟି
ନ କହିବା ପଦେ ବସିବ ଲାଠି
ଆସିବ ଯେବେ ତା ବେଳ
ସେତେବେଳେ କିଏ ପଡ଼ିବ ପିଠିରେ
ବନ୍ଧୁର ହେବାକୁ ମେଳ ?
ଘରଖଣ୍ଡେ ନାହିଁ ଦେଖ ଗାଆଁରେ
ଭୁଲଣିଆ କଥା ଶୁଭେ ସଭାରେ
ପିଆଣିଆ ବୋଲି ଭାବ ମନରେ

ଖୁଲିଛି ଖରଚ ଅକାତରରେ
ସମ୍ଭବ ନାହିଁ ଦଇବ
କେତେବେଳେ କଏ ଖଣାକୁ ପେଲିଲେ
ଆଖିରୁ ଲୁହ ଗଡ଼ିବ ।
ନକର ଯେବେନେ କାହାର ହାନି
ମିତ ନିୟମକୁ ଚଳିବ ମାନି
ଦିଏ ଯାହା କରୁ ପରିମାଣରେ
ଭୋଗିବ ତା ଫଳ ନିଃସନ୍ଦେହରେ
ଅଡ଼ୁଆ ଭିତରେ ପଶି
ଉଆଇଲେ କଳି କେତେବେଳେ ତୁମ
ମର୍ଯ୍ୟାଦା ଯିବଟି ଖସି ।
ଗୁଞ୍ଜିବାକୁ ମୁଣ୍ଡ ଥାନ ଟିକିଏ
ନାହିଁ ଗରିବର ଦେଖୁଛୁ କିଏ
ସହୁଛି ନିଦାଘ ବରଷା ଶୀତ
ଯାହା ମିଳେ ଖାଇ ହୁଅଇ ପ୍ରୀତ
ହେଉଛି କି ସମ୍ମାନ
ଏଦେର ଜନମ- ଯାକ ଭୋଗିଲେ ହେଁ
କରୁଛି କିଏ ସନ୍ଧାନ ।
ଗାଆଁ ଗହଳିର କୁଡ଼ିଆ ଦେଖି
ପୁରାଣେଠ ହେବ ବସିଲେ ଲେଖି
ମଣିଷ ଉଆଣ ଯେତେ କଥାରେ
ରୋକ ହେବ ତାକୁ କଲମଗାରେ
ଆଜିକି ଉଚ୍ଚ ଆସନ
ବୋଲି ନ ଭାବିଲେ ମଣିଷ ପଣିଆ
ନରହିବ କଦାଚନ ।
ଧିକ ଧିକ ଲୋଭ ତୋର ଫାନ୍ଦରେ
ପଡ଼ି ଲୋକଗଣ ଅଜାଣତରେ
ହୁଅନ୍ତି ସ୍ଥାନଭ୍ରଷ୍ଟ ବାଟଘାଟରେ
ସେ ଦୁଃଖ ପଡ଼ୁଛି କାହା କାନରେ
ଦୁନିଆଁର ଭଲମନ୍ଦ
ଖୋଜିଲେ ଜାଣିବ ତନ୍ନ ତନ୍ନ କରି
ହୃଦୟେ ନରଖି ଛନ୍ଦ ।
ନାଗରିକୁ ଯଥା ବାରବନିତା
ସଜ ସୁବଧାରେ କାଟୁଛି ଚିତା
ଆଜି କାଲି ତଥା ରାଜନୀତିରେ
ଖୁଲିଛି ଠକାମି ଅଧରାତିରେ
ବୁଝୁଛି କିଏ ଦେଶରେ
ପବନକୁ ଦେଖି ଛତା ଦେଖାଇଲେ
କି ହେବ ଶନ୍ତି ଶେଷରେ ।
କଉଳ ଖୁଲିଛି ରାଜନୀତିରେ
ଜାଣି ନ ପଶିଲେ ଥରେ ଏଥିରେ
ଟାଉଟର ସଙ୍ଗେ ବୁଲୁଥିବା ହା
ମିଶି କରୁଛନ୍ତି ସୁନାକୁ ଲୁହା
ଯାର ଅଛି ଟଙ୍କା ହାତେ
ଧର୍ମ ଅଧର୍ମକୁ ନକର ଖାତର
ପଛରୁ ମାରୁଛି ଲାତେ ।
ଜଗତେ ସରବେ ବଶ ଅର୍ଥରେ
ରହୁଅଛି ନ୍ୟାୟ ତାର ପଛରେ
ଦେଖିଲେ ବିକଳ ଲାଗୁଛି ସିନା
କେ ଅଛି ଯେବେନେ ସାଥି ତା ବିନା
କେତେ ବଳ ୧ଧର୍ମ ଦ୍ୱାରେ
କାଳଚକ୍ରେ ଚଢ଼ି ଠକାମି ଭଣ୍ଡାମି
ପରଜଳ ସବୁଠାରେ ।
ନକର ମନକୁ ସଦା ଚଞ୍ଚଳ
ତରଙ୍ଗ ଯେବେନେ ନ୍ୟାୟର ବଳ
ମୁହଁ ଦେଖାଣିଆ ବେଭାର ଖୁଲି
ସୁନାର ଦେଶଟା ହେଉଛି ଖାଲି
ଦେଖି ଅଭାବ ଜାଗଇ
କୁଚକ୍ର ଜାଲରେ ନ ପଡ଼ିବା ଲାଗି
ଖସିଲାଣି ନିଷ୍ଠାପର ।
କ୍ଷମତା ଲାଳସା ବିଷମ ବଡ଼
ଏଥିଲାଗି ଲୋକ କି ଧଡ଼ପଡ଼
ମିତ ନିୟମକୁ ପାଦରେ ଦଳି
ଆଚରଣ କରୁଛନ୍ତି କି ଛଳି
ପରିଣାମ ଉପୁଜିବ
ନକର ଆପୁରି ଆପଣା ମନକୁ
ସନ୍ତାପିତ ଅହରହ ।

୧ ଯମଦ୍ୱାରେ

ଭ୍ରଷ୍ଟ ହୋଇ ପଡ଼ୁଛି କ୍ରମେ ଶାସନ
ଦେଖି ସବୁ ଖିନ୍ନ ଛାନିଆଁ ମନ
ଧରୁଛି ଯେ ଯାହା ସୁବିଧା ବାଟ
ପଡିଗଲେ ଧରା ଲଗୁଛି ନାଟ
ଆଚ୍ଛାଦେଇ ଗଣତନ୍ତ୍ର
କ୍ଷମତା ଲୋଭରେ ଦିନରାତ ପରା
ଲାଗିଅଛି ତନ୍ତ୍ର ମନ୍ତ୍ର ।
ଅପବ୍ୟୟ ଏବେ ହୋଇଛି ବଢ଼ି
କନା ଖଣ୍ଡ ଯାଇ ରହିଛି ଧଡ଼ି
ଭିଖାରୀର ସଖା କେ ନାହିଁ ଭବେ
କାଳ ପ୍ରଭାବେ ତା ମିଳଇ ଯବେ
ଆଗରୁ ହୋଇ ସତର୍କ
କରିଯାଅ କାର୍ଯ୍ୟ ଲୋକମତ ଶୁଣି
ନ କର କିଛି ବିତର୍କ ।
ନ୍ୟାୟ ଅନ୍ୟାୟକୁ ପରଖି ଭାଇ
କରିଯାଅ କର୍ମ ଛାତି ଫୁଲାଇ
ଜୀବନ ଯୌବନ ଅଡ଼େଇ ଦିନ
ଦେଖୁନ୍ତୁ ସକଳ ଧୂଳିରେ ଲୀନ
ଛଟପଟ କା ନିମିତ୍ତ
ମୂଲ୍ୟହୀନ କଥା ହଜାଇ ସମୟ
ହେଉଛି ଅତିବାହିତ ।
ନିଜ ସୁବିଧାକୁ ଜଗି ଜୀବନେ
ଲାଗିଛନ୍ତି ଲୋକେ ସ୍ୱାର୍ଥ ସାଧନେ
ନମଣି ଜଗତ ଅସାତ୍ମ୍ୟମୟ
ଜଞ୍ଜାଳରେ ପଶି ନିତ ଅଥୟ
କାଳର କୁଟିଳ ଗତି
ଜାଣି ଜାଣି ସବୁ ଆଖି ବୁଜିଦେଲେ
ମିଳିବ କାହୁଁ ମୁକତି ।
ଗାଆଁ କନ୍ଦୋଳ ଗାଆଁରେ ଛୁଟୁ
ଆନନ୍ଦ ଉଲ୍ଲାସ ମୁହଁରେ ଫୁଟୁ
ଅଯଥା ପଇସା ଖରଚ କରି
ଅରଜିବା ଧନ ଯାଉଛି ସରି
ଓକିଲ ଭାଇର ଲାଭ
ଫିଶାଦ ଶିଖିଲେ ଦାବାରେ ପଶିବ
ଗତି ଉତ୍ତମ ସ୍ୱଭାବ ।
ନ ଚାହଁ ଅନିଷ୍ଟ କେବେ କାହାର
ଆସିଲାଣି କାଳ ନେବ ଓଟାର
ଯେ ଯାହା କରମ ଫଳ ଭୋଗିବ
ତେବେ କାହାଲାଗି ଚିନ୍ତା କରିବ
ହାଲଚାଲ ଦୁନିଆଁର
ଯେତେବେଳେ ଯାହା ଦେଖୁଛ ଶୁଣୁଛ
କାଲିକି ଦିନେ ବିସ୍ମର ।
ଯେତେବେଳେ ଯାର ପଡ଼ୁଛି ପାଳି
ସେତେବେଳେ ସେହି ମାରୁଛି ତାଳି
ଦିଶେ ଯିନା ରମ୍ୟ ଯୌବନ ଅଙ୍ଗ
ପରେ ପରେ ଆହା ! କେତେ ବିଭଙ୍ଗ
ଏହିତ ଦୁନିଆଁ ଗତି
ନ ପଡ଼ ମୋହରେ ଭାବ ବାର ବାର
କେତେ ଦିନ କା'ର ସ୍ଥିତି ।
କି ମତରେ ଚାଲିଅଛି ସଂସାର
ବିକଟେ କାହାର ନାହିଁ ବିଚାର
ଏ ଜୀବନ ସଦା ପାଣି ଫୋଟକା
ନିଶ୍ଚିନ୍ତରେ କେତେ ବାଜୁଛି ଧକ୍କା
ପଡ଼ି ଅନ୍ୟାୟ ମୋହରେ
କରୁଛ କୁକର୍ମ ନଜାଣିଲା ପରି
ଯା ଫଳ ଥୁଆ ଶେଷରେ ।
ତତ୍ତ୍ୱଜ୍ଞାନ ଯେବେ ପାଇବ ସ୍ଥାନ
ତେବେ ହୃଦୁଁ ଟଳିବ କଳୁଷମାନ
ନ ରହିବ ସତ୍ତା ମାୟା ମୋହର
ନିର୍ମଳ ଦିଶିବ ପୁଣି ଅନ୍ତର
ନ ବାଜିବ କେବେ କଣ୍ଟା
ନୋଇଁବ କି ମୁଣ୍ଡ କା ଆଗେ ଜୀବନେ
ରହିଥିବ ଆଣ୍ଠୁ ଅଣ୍ଟା ।
କେତେ ଲେଖି ଲେଖି ହେଲାଣି କବି
ନପଡ଼ ପେଟରେ ଟୋପାଏ ହବ (ପାଣି)
କରିଚ ମନକୁ ସଦା ଆପୂତ
ଆଦରି ଜୀବନେ ସଂଯତ ବ୍ରତ

ଦୁଃଖମୟ ଏ ସଂସାର
ନ ଚିନ୍ତି ମଣିଷ  କି ଘଟିବ କାଲି
ହେଉଅଛି ନାରଖାର ।

## ସ୍ତୁତି

ଶରଣ ରକ୍ଷକ ହରି  ତୁମେ ଉବସିନ୍ଧୁ ତରି
ଦୁଷ୍ଟଙ୍କୁ ଦମନ କରି ଅର୍ଜୁଛ ଯଶ
ଜୀବକୁ ଦେଇ ଜନମ  ଦେଉଅଛ ତ କରମ
ନଜାଣି ତଳେ ଅଧମ ଜୀବନ ରସ
ଉପଭୋଗେ ବଳାଏ ମନ
ଧିକ୍ ଧିକ ମଣିଷରେ, ଧିକ ଯୌବନ ।
ଡେରିଥାଉ କାନ  ଶୁଣିବାକୁ ଭକ୍ତିଗାନ
ନାହିଁ କା'ର କଚ୍ଛି ଜ୍ଞାନ ତୋ ଗତିଗୀତ
ଜାଣିବାକୁ କେବେ ଲୋଡେ  ତୁଚ୍ଛକୁ ଧନ ଗରବେ
ଭୁଆଉଛି ଗୋଳ ଜଗତ ଦେଖୁଛ ନିତି
କାହିଁ କା'ର ଜ୍ଞାନ ନୟନ
ଧିକ ଧିକ ମଣିଷରେ, ଧିକ ଯୌବନ ।
ଯା ନାମ କରୁଣା ସିନ୍ଧୁ  ତାହାଁରୁ ପାଇଲେ ବିନ୍ଦୁ
ଉଇଁବ ବା ହୃଦେ ଇନ୍ଦୁ ଭବଜଳରେ
ପଡଯାଉଅଛି ବୁଡି  ଅନ୍ତକୁ ଦେଇ ହୁଡି
ପ୍ରାଣପକ୍ଷୀ ଯିବ ଉଡ଼ି, କାହାସଙ୍ଗରେ
ଭେଟିବ କି କାହା ଜୀବନ
ଧିକ ଧିକ ମଣିଷରେ, ଧିକ ଯୌବନ
ଅନ୍ୟାୟକୁ ଲୋପ କରି  ଆହେ ! ପ୍ରଭୁ ଚକ୍ରଧର
ହେଲାଣି ପ୍ରବଳତର ମନ ଅଥୟ
ସ୍ୱାର୍ଥପାଇଁ ଲାଗି କଳି  ମହତ୍ତ୍ୱକୁ ଦେଇ ବଳି
ପଡ଼ିଲେଣି କେତେ ଉଳି ଲାଗୁଛି ଭୟ
ଭବ ଢଙ୍ଗ କରି ଦର୍ଶନ
ଧିକ ଧିକ ମଣିଷରେ, ଧିକ ଯୌବନ ।
ଜନ୍ମିଲେ ମାଟିରେ ପଡ଼ି  କୁଆଁ କୁଆଁ କରି ରଡ଼ି
ମାଆର କୋଳରେ ବଢି ହେଲୁ ମଣିଷ
ପିଲାଦିନର ସେକଥା  ଶୁଣୁନାହିଁ ତଳେ ମଥା
ଭାବିଲେ ଲାଗୁଛି ବ୍ୟଥା ଚିନ୍ତା ଅନାଶ
ଆପଣାର ସୁଖ ବର୍ଦ୍ଧନ
ଧିକ ଧିକ ମଣିଷରେ, ଧିକ ଯୌବନ ।
ଲୋଡିଲୁ ସଙ୍ଗ ଯାହାର  ଦେଖି ସେ ତୋର ଆଦର
ଡାଆଣିଲା ବାରି ବାର ନଦେଲୁ କାନ
ଧରିଲୁ ଆପଣା ବାଟ  ଭୁଆଇଲୁ ନାନା ନାଟ
ପଟ୍ଟକୁ ବଜାଇ ଗ୍ରନ୍ଥ କାହିଁ ସମ୍ମାନ
ଲୋଡ଼ିଲୁ ସତତ ବ୍ୟସନ
ଧିକ ଧିକ ମଣିଷରେ, ଧିକ ଯୌବନ ।
ହୃଦୟେ ଆସୁ ଉକତି  ଚପଳ ନ ହେଉ ମତି
ଉପୁଜୁ ଧୀରେ ଶକତି ଯାଉ ଜୀବନ
ତବନାମ ଧରି ଧରି  ତବ ପଦ ସେବା କରି
ଏତିକ ମାଗୁଣି ହରି ସବୁ ସ୍ୱପନେ
ଅନ୍ୟ ଯାହା ଦେଖେ ନୟନ
ଧିକ ଧିକ ମଣିଷରେ, ଧିକ ଯୌବନ ।

## ରାମ ଜନ୍ମ

[1]ଦନୁଜ [2]ଭୂରି [3]ଉର୍ବୀ ଭାର ହରଣ
ଲାଗି ପ୍ରତିବିଧାନେ ଦେବତାଗଣ ।
ପ୍ରବେଶିଲେ [4]ପ୍ରଣବ ପାଶେ ଦୁଃଖରେ
ଯେତେବେଳେ କମଳା ଥିଲେ ସଙ୍ଗରେ ।
ରାବଣ ଉପଦ୍ରବ କରେ ଅଥୟ
ବୋଲି କଲେ ଗୁହାରି ସୁରନିଚୟ ।
ପ୍ରସନ୍ନ ହୋଇ ହରି ହୃଦି ଅଂଶରେ
ଗର୍ବ ବିଧ୍ୱଂସୀ [5]ରବିବଂଶ କୁଳରେ ।
ଶତ୍ରୁଘ୍ନ ଭରତ ରାମ ଲକ୍ଷ୍ମଣ
ଦଶରଥ ଔରସେ ହେଲେ ଜନମ ।
ଶ୍ରୀରାମଚନ୍ଦ୍ର ରଘୁକୁଳ ତିଳକ
ସକଳ ଗୁଣନିଧି କାର୍ଯ୍ୟ ସାଧକ ।

---

୧ ଅସୁର ୨ ପରିପୂର୍ଣ୍ଣ ୩ ପୃଥିବୀ ୪ ବିଷ୍ଣୁ
୫ ସୂର୍ଯ୍ୟବଂଶରେ

କରନ୍ତେ ଲକ୍ଷ୍ମଣଙ୍କୁ ଅତି ଆଦର
ତାଙ୍କର ଅନୁଗାମୀ ସେ ନିରନ୍ତର ।
୧ସତ୍ୟବତୀକୁମାର ଆସିଲେ ଥରେ
ଦଶରଥ ୨ନିକଟା ଦୈତ୍ୟ ଭୟରେ ।
ନେବାକୁ ଶ୍ରୀରାମଙ୍କୁ ତାର ତାଡ଼ନେ
ଅର୍ପିଲେ ନରବର ବଶିଷ୍ଠମତନେ ।
୩ବଳାତିବଳା ବିଦ୍ୟା ତନ୍ତ୍ର ଶିଖାଇ
ଦେଲେ ମୁନିପୁଙ୍ଗବ ଆଶ୍ରମେ ଯାଇ ।
ଯଜ୍ଞ ଆରମ୍ଭ ଦେଖି ବିଶ୍ୱାମିତ୍ରର
ଆସନ୍ତେ ଆଶ୍ରମକୁ ଦୈତ୍ୟନିକର ।
ଗୋଟି ଗୋଟି ନାଶିଲେ ରଘୁପ୍ରବର
ବିଲୋକି ବିଶ୍ୱାମିତ୍ର ହରଷଭର ।

## ରାମଙ୍କ ମିଥିଳା ଗମନ

ରାମ ଲକ୍ଷ୍ମଣ ସଙ୍ଗରେ
ଗଲେ ବିଶ୍ୱାମିତ୍ର ମିଥିଳା ଖରେ
ଖଞ୍ଜଘାଟରେ, ଜନକ ଆମନ୍ତ୍ରଣରେ ।
ପ୍ରବେଶି ମିଥିଳା ପୁରେ
ଦେଖିଲେ ଜନକ ଅତ୍ୟନ୍ତ ଦୂରେ
ଖଞ୍ଜଘାଟରେ, ସମୀପେ କେତେ ଅସୁରେ ।
ଦଶରଥ ସୁତେ ଯାଇ
ଚଉଦଗେ ନେତ୍ର ଦେଲେ ବୁଲାଇ
ଖଞ୍ଜଘାଟରେ, ଆପଣା ଧନୁ ହଲାଇ ।
ସୀତାଙ୍କୁ କରି ଦର୍ଶନ
ଦଶାନନ ହେଲା କି ଛନ୍ନଛନ୍ନ
ଖଞ୍ଜଘାଟରେ, ପଣ ଶୁଣି ଅପ୍ରସନ୍ନ ।
ରଘୁଶ୍ରେଷ୍ଠ ପିନାକରେ
ଗୁଣ ଆରୋପଣ କରନ୍ତେ ଖରେ
ଖଞ୍ଜଘାଟରେ, ଅଷ୍ଟକ ରାବଣ ଡରେ !
ଜନକ କୁମାରୀ ମନ
ଆକର୍ଷଣ କଲା ରାମବଦନ
ଖଞ୍ଜଘାଟରେ, ୪ଭାର୍ଗବ ଗର୍ବଗଞ୍ଜନ ।

ନୃପତିଏ ଲଜ ପାଇ
ଦଶମୁଣ୍ଡ ସହ ଗଲେ ପଳାଇ
ଖଞ୍ଜଘାଟରେ, ଆପଣା ମାନ ହରାଇ ।
ପିନାକ ଭଙ୍ଗ ଶବ୍ଦରେ
୫ହେଳ ୬ହୟାନୀକ ମେଘ ଭିତରେ .
ଖଞ୍ଜଘାଟରେ, ପଶିଗଲେ ଡରବରେ ।

## ସୀତା ବିବାହ

ଜାନକୀ ବିବାହ ଦେଖିବା ପାଇଁ
ପୁରବାସୀ ଲୋକେ ଆସିଲେ ଧାଇଁ ।
ବାଜୁଅଛି ବାଜା ନାନା ପ୍ରକାର
କେତେ ରାଜା ଆସି ଦେଲେ ବେଭାର ।
ବିଷ୍ଣୁରୂପୀ ରାମ ବସି ବେଦିରେ
ଦେଉଥିଲେ କାନ ପୁରୋଧା ଗୀତରେ ।
ହୁଳହୁଳି ଧ୍ୱନେ ଫାଟୁଛି କାନ
ପାଉଥିଲେ ବିପ୍ରେ ୭ଭୂରିଶ ଦାନ ।
ହାତଗଣ୍ଠି ବେଳେ ସୀତାଙ୍କୁ ଆଣି
ଛନ୍ଦିଲେ ପୁରୋଧା ଦୁହିଁଙ୍କ ପାଣି ।
ବେଦଶାସ୍ତ୍ର ବୋଲା ତୋର୍ଣ୍ଣି ସକଳ
ଧରିଲେ ଦକ୍ଷିଣା ଇଚ୍ଛି ମଙ୍ଗଳ ।
ଜ୍ଞାତିଙ୍କୁ ଡାକିବ କିଏ ହସାରେ
କିଏ କେତେ କଥା କହେ ଥଟ୍ଟାରେ ।
ବସିଥିଲେ ସୀତା ପୋତି ମୁଣ୍ଡକୁ
ଚୁମ୍ବିଁ ଦେଲେ ଥରେ ରାମ ମୁହଁକୁ ।
ଅଗ୍ନି ସାକ୍ଷୀ କରି ବନ୍ଧାଣ ସାରି
ବରକନ୍ୟା ନେଲା ଦାସୀ ବାହାରି ।
ନଅର ଭିତରେ କଉଡ଼ି ଖେଳ
ଲାଗିଲା କୌତୁକେ ବହୁତ ବେଳ ।
ବିଶୁଅଛି ମୁହଁ ବଡ ଶୁଖିଲା
ବିନମ୍ରକ ରହି ଦୁହେଁ ଭେଟିଲା ।
ବିତାହେଲା ଅନ୍ନ କରି ଭକ୍ଷଣ
ନିଦ୍ରାଦେବୀ ପାଶେ ନେଲେ ଶରଣ ।

୧ ବିଶ୍ୱାମିତ୍ର ୨ ନିକଟ ୩ ବଳା + ଅତିବଳା
୪ ପର୍ଶୁରାମ

୫ ସୂର୍ଯ୍ୟ ୬ ହୟ + ଆନୀକ = ଅଶ୍ୱସମୂହ
୭ ବହୁତ

## କନ୍ୟାଧର ରାମ ଅଯୋଧ୍ୟା ଫେରିବା

ପୂର୍ବ ଦିଗରେ      ନଳିନୀ ବାନ୍ଧବ
ବୋବାଳି ଶୁଣି କାକର
ଡରବର ହୋଇ      ପ୍ରତିବଶୀ ଧରାରେ
ଚୁମ୍ବିଲେ ଅବ୍ଜ କର ।
[1]ତମସ୍ତୋମ କ୍ରମେ      ଅପସରି ଯାନ୍ତେ
ନିଜ କାର୍ଯ୍ୟେ ସର୍ବେ ବ୍ୟସ୍ତ
[2]କୈରବମାନଙ୍କୁ      [3]ସିନ୍ଧୁଯୁନ ଦୁଃଖ
ଦେଇ ଅସ୍ତାଚଳେ ଅସ୍ତ ।
ଆନନ୍ଦେ ଜନକ      ଯଉତୁକମାନ
ବରକନ୍ୟା ସଙ୍ଗେ ଦେଇ
ବିଦା କରିବାରୁ      ବିଶ୍ୱାମିତ୍ର ମୁନି
ଗଲେ ସେମାନଙ୍କୁ ନେଇ ।

## ପର୍ଶୁରାମ ଭେଟ

ପରଶୁ ଧରି ହାତରେ
ଠିଆ ହେଲେ ଆସି ରାମ ଆଗରେ
ଖଞ୍ଜଘାଟରେ, ପରଶୁରାମ ଗର୍ବରେ ।
ତାଙ୍କୁ ଦେଖି ସୀତା ଡରି
ପଛଆଡେ ଆସି ଅତ୍ୟନ୍ତ ଥରି
ଖଞ୍ଜଘାଟରେ, ରହିଲେ ପଲକ ଧରି ।
ରେ ରାମ, ବଳ ଦେଖାଇ
ତ୍ରିଲୋକରେ କୋଳାହଳ ପକାଇ
ଖଞ୍ଜଘାଟରେ, ଭାଙ୍ଗିଲୁ ଧନୁ ଉଠାଇ ।
ହେବାରୁ ମୁନି କୁମାର
କ୍ଷତ୍ରିୟକୁଳକୁ କଲି ସଂହାର
ଦାଶରଥିରେ, ଯୁଦ୍ଧ କରି ବାର ବାର ।
କାମାରି ଶିବ କୋଦଣ୍ଡ
କରିଅଛୁ ବୋଲି ତାକୁ ଦ୍ୱିଖଣ୍ଡ
ଦାଶରଥିରେ, ପାଇବୁ ମୋ ହାତେ ଦଣ୍ଡ ।
କହନ୍ତି ରାମ ବିନୟେ
କ୍ଷମାକୁ କରୁଛ ରାଗ ହୃଦୟେ
ପର୍ଶୁରାମହେ, ସମର କି ଏ ସମୟେ ।
ଆପଣ କୁଠାରହସ୍ତ
ବାଟୋଇ ଯିବାକୁ ଘରକୁ ବ୍ୟସ୍ତ
ପର୍ଶୁରାମ ହେ, କରନ୍ତୁ ଚାରି ପ୍ରଶସ୍ତ ।
ଯଜ୍ଞୋପବୀତ ଧାରଣ
କରି ବ୍ରତଧର କରିଚ ରଣ
ପର୍ଶୁରାମ ହେ, କପାଁ ଏ ପାପାଚରଣ ?
ନକର ଦୁଃଖାନୁଭବ
ଜନନୀକି ମାରି ପୁଣି ଗରବ
ପର୍ଶୁରାମ ହେ, ଧିକ ଧିକ ଏ ଗୌରବ ।
ପର୍ଶୁରାମ ରୋଷଭରେ
ଏହି ଧନୁ ଭାଙ୍ଗ ବୋଲି ହାତରେ
ଦାଶରଥି ରେ, ବଢ଼ାଇଲେ ଡରବରେ ।
ଭୁକ୍ଷାକୁ ଧରି ବାଟରେ
ବୋଲି ଦାଶରଥି ଶାନ୍ତ ହୃଦରେ
ଖଞ୍ଜଘାଟରେ, ଭାଙ୍ଗିଲେ ତା କ୍ଷଣକରେ ।
ପରଶୁରାମ ଲଜରେ
ଅବତାର ବୋଲି ମଣି ମନରେ
ଖଞ୍ଜଘାଟରେ, ନମିଲେ ରାମ ପାଦରେ ।
ବାଟର ବିପତ୍ତି      ଖଣ୍ଡି ସୀତାପତି
ବାହାରିଲେ ଆନନ୍ଦରେ
ସାୟଂକାଳ ବେଳେ      ପହଞ୍ଚିଲେ ପୁରେ
ଭାଇ ଭରଯା ସଙ୍ଗରେ ।
ଆନନ୍ଦବିଭୋର      ଦଶରଥ ପୁର
ରାମର ପ୍ରତ୍ୟାବର୍ତ୍ତନେ
ପୁରବଧୂମାନେ      ଗଲେ ନବରକୁ
ଅତି ପ୍ରମୋଦିତ ମନେ ।
ତନୁଜକୁ ଦେବାକୁ ରାଜ୍ୟ ଶାସନ
ଜରାଗ୍ରସ୍ତ ନୃପତି କଲେଣି ମନେ ।
ପୁରୋଧା ବଶିଷ୍ଠଙ୍କୁ ଡାକି ସତ୍ୱର
"ଯୋଗ ଦେଖନ୍ତୁ" ବୋଲି ନୃପତିବର ।
କହି ରାମଙ୍କୁ ଜଣାଇଲେ ତକ୍ଷଣେ
ଯେତେବେଳେ ସେ ଖେଳୁଥିଲେ ପ୍ରାଙ୍ଗଣେ ।

---

୧ ଅନ୍ଧାରରାଶି ୨ କଇଁଫୁଲ ୩ ଚନ୍ଦ୍ର
୪ କାମ+ଅରି

ଦହଳ ପଡ଼ିଗଲା ରାଜ୍ୟ ଭିତରେ
ଏଣେ ଗୁଣ ଖେଳିଲା କୁଜା ହୃଦରେ
କିଛିକ୍ଷଣ ପରେ ମନ୍ଥରା ବୋଲରେ
କୁଟିଳା କୈକେୟୀ ନୃପ ପାଶରେ
କହିଲା "ରାମଙ୍କୁ ପଠାଇ ବଣକୁ
ଭରତଙ୍କୁ କର ରାଜା ଦେଶରେ" ।
ଦେଇଅଛ ପୂର୍ବେ ବର ହେତୁ କରି
ଏ କାର୍ଯ୍ୟ ନକଲେ ତେଜିବ ପ୍ରାଣ
ନ ଲଙ୍ଘି ବଚନ ଆହେ, ନରରାଣ
କର ଆଗେ ସତ୍ୟ ନରଖି ଗୁଣ ।
ପରର ବୋଲରେ ପଡ଼ୁଅଛୁ ଯିଏ
ନ ଶୁଣେ ସେ କେବେ କାହା ବଚନ
ଅଜସୁତ କଥା ଶୁଣିବ କପଟର
ଧରି ବସିଲେ ସେ ପାଇ ନନ୍ଦନ ।
ପିତୃସତ୍ୟ ପାଳି ଗଲେ ରାମ ବନ
କରି ପରିଧାନ ବକ୍‌ଳ ବସନ
ତଥା ହେଜି ହେଜି ଚିନ୍ତା କରି କରି
ଦଶରଥ ପ୍ରାଣଗଲା ବହନ ।
ଅଳି କରି ସୀତା ସୁମିତ୍ରା ନନ୍ଦନ
ଗଲେ ଅରଣ୍ୟକୁ ରାମ ପଛରେ
ପଞ୍ଚବଟୀ ବନେ କୁଡ଼ିଆ ନିର୍ମାଣି
ରହିଲେ ତିନିହେଁ ମହା ସୁଖରେ ।
ଜାନକୀ ହରଣ ପାଇଁ ଦଶାନନ
ଚତୁର ମାରୀଚକୁ ଦେଲା ପଠାଇ
ମାୟାବୀ ଦଇତ ସ୍ୱର୍ଣ୍ଣମୃଗ ବେଶେ
କୁଡ଼ିଆ ଚୌହଦେ ଡେଇଁଲା ଯାଇ ।
ତାକୁ ଦେଖି ସୀତା ଧରିବା ନିମିତ୍ତ
କହନ୍ତେ ରାମଙ୍କୁ କଉତୁକରେ
ତକ୍ଷଣେ କୋଦଣ୍ଡ ଧରି ଗୋଡ଼ାଇଲେ
ପଛେ ପଛେ ତାର ବଣ ଭିତରେ ।
ବଣ ମଧ୍ୟେ ଯାଇ ସେ ମାୟାବୀ ଦୈତ୍ୟ
ରଖହେ, ଲକ୍ଷ୍ମଣ ବୋଲି ଡାକିଲା
ଶୁଣି ଏ ବଚନ ସୀତା ହୋଇ ଛନ୍ନ
ସୁମିତ୍ରା ସୁତଙ୍କୁ ତ୍ୱରେ ପ୍ରେରିଲା ।

ଲକ୍ଷ୍ମଣ ଯିବାର ବିଶ୍ରବା କୁମାର
ଦେଖି ପ୍ରବେଶିଲା କୁଟୀର ପାଶେ
ଭିକ ଦେବାଲାଗି ସୀତାକୁ ଡାକନ୍ତେ
କିଏ ତୁମେ ବୋଲି ପୁଚ୍ଛିଲେ ତ୍ରାସେ ।
ଚମ୍ଚୁ ଚମ୍ଚୁ ପାପୀ ଦଶମୁଖ
ଟେକି ନେଇ ତାକୁ ରଥେ ବସାଇ
ନିଅନ୍ତେ ଲଙ୍କାକୁ କାହାକୁ ନକହି
ରଖିଲା ଅଶୋକ ବନେ ଲୁଚାଇ ।

## ଅଶୋକ ବନରେ ସୀତା

ଅଶୋକ ବନରେ ସୀତା
ଅସୁରୁଣୀ ମାନେ ହେଲେଣି ଚିନ୍ତା
ଦଶାନନରେ, ହରିଲୁ ରାମ ବନିତା ।
ଭଣ୍ଡ ତପସ୍ୱୀ ବେଶରେ
ପ୍ରବେଶିଲୁ ଯାଇ କୁଡ଼ିଆ ଘରେ
ଦଶାନନରେ, ବସାଇ ନେଲୁ ରଥରେ ।
କଲୁ ତୁ କେଡ଼େ ସାହସ
ବିଷ୍ଣୁରୂପୀ ରାମ ଦାନବ ବଂଶ
ଦଶାନନରେ, କରିବେ ଜବେ ବିଧ୍ୱଂସ ।
ନ ପଶି ରାମ ଶରଣ
ପର ରମଣୀକି କଲୁ ହରଣ
ଦଶାନନରେ, ଆଣିଲୁ ଡାକି ମରଣ ।
ପତିବ୍ରତା ସୀତାସତୀ
ଘଟାଇଲୁ ବହୁ ଏଡ଼େ ବିପତ୍ତି
ଦଶାନନରେ, କେଡ଼େ ତୁ ନିଷ୍ଠୁର ମତି ।
ଋଷିର ହୋଇ ନନ୍ଦନ
ପାପ କରମରେ ବଳାଇ ମନ
ଦଶାନନରେ, ନିଜକୁ କଲୁ ନିଧନ ।
ଡିଣ୍ଡିମ ଚଉହଦରେ
ନାରୀ ଚୋର ବୋଲି ବାଜିଲା ଭେରେ
ଦଶାନନରେ, ଲାଜ ନାହିଁ ତୋ ମୁହଁରେ ।
ନିଜଙ୍କ ରାଜ କୁଳରେ
ଯୁଗେ ଯୁଗେ ରହିଥିବ ଶାସ୍ତ୍ରରେ
ଦଶାନନରେ, ପଡ଼ିଲୁ କି ହରବରେ ।

ଲଙ୍କା ହେଲେ ଛାରଖାର
ଜାଇଁଥିଲେ ହେବୁ କି ନାରଖାର
ଦଶାନନରେ, ଭାବିଲୁ କି ବାର ବାର ।
ଖାଇଲୁ ତୋତେ ଗରବ
ତ୍ରିପୁର ବିଜୟୀ ନାମ ଗୌରବ
ଦଶାନନରେ, ହରାଇ ଦେଲୁ ସରବ ।
ଥିଲେ ତୋତେ ଭଲ ଗତି
ଫେରାଇବୁ ନେଇ ଜାନକୀ ସତୀ
ଦଶାନନରେ; ରାମ ପଦେ ରଖି ମତି ।

## ମୃଗମାରି ରାମ ଫେରିବା

ମିରଗ ବଧି କାନ୍ଧରେ
ଲକ୍ଷ୍ମଣ ସହିତ ରାମ ମୋଦରେ
ମନ୍ଦବହ୍ନିରେ, ବାହୁଡ଼ିଲେ ଧରି ତ୍ୱରେ ।
ହୋଇଛି ମେଲି ଦୁଆର
ନ ଦେଖିଲେ କାହିଁ ସୀତା ଥିବାର
ମନ୍ଦବହ୍ନିରେ, ଗଡ଼ିଲା ଲୋତକ ଧାର ।
ବହ୍ନିଶର୍ଗ ଅଭ୍ୟନ୍ତର
କୁଡଆର ଦେଖି ରାମ କାତର
ଖଞ୍ଜରୀଟରେ, କି ବହୁରି ଦଇବର ।
ସୀତା ବିରହ ବାଧାରେ
ଶୋକ କରି ରାମ ପଡି ଧରାରେ
ମନ୍ଦବହ୍ନିରେ, ଅସମର୍ଥ ଚାଲିବାରେ ।
ସୁମିତ୍ରା ସୁତ ଉଠାଇ
ହାତ ଧରି ନେଲେ ବାଟ ଦେଖାଇ
ମନ୍ଦବହ୍ନିରେ, ଜଟାୟୁ ଭେଟିଲେ ଯାଇ ।
ପକ୍ଷୀନ୍ଦ୍ର କହେ ଦୁଃଖରେ
"ରାବଣ ସୀତାକୁ ନେଲା ରଥରେ
ମନ୍ଦବହ୍ନିରେ, ମୃତପ୍ରାୟ ତା ମାଡ଼ରେ" ।
ବୋଲନ୍ତି ରଘୁପ୍ରବର
ସ୍ୱର୍ଗଧାମେ ଯାଇ ବସତି କର
ପକ୍ଷୀରାଜ ହେ, ମଙ୍ଗଳ ହେଉ ତୁମର ।
ଦେଖିଲେ ମୋର ପିତାଙ୍କୁ
ରାବଣ ଚୋରାଇ ନେଲା ସୀତାଙ୍କୁ
ପକ୍ଷୀରାଜ ହେ, ବୋଲି ନ କହିବ ତାଙ୍କୁ" ।
ବିରୂପ ତନୁ ସୁନ୍ଦର
କେତେ କଥା ହେଲା ବୋଲି ଅନ୍ତର
ମନ୍ଦବହ୍ନିରେ, ଦଗ୍ଧ ହେଲା ନିରନ୍ତର ।
ଦେଖି ବାତାହାରୀ ସାପ
ତା ପାଶରେ ବସି କଲେ ଆଳାପ
ମନ୍ଦବହ୍ନିରେ, ନ ତୁଟିଲା ମନସ୍ତାପ ।
ପଶି କିଷ୍କିନ୍ଧ୍ୟା ବନରେ
ପବନ ସୁତକୁ ଦେଖି ବାଟରେ
ମନ୍ଦବହ୍ନିରେ, ଫେରିଲେ ବନପୁରେ ।
ଶୁଣ ହେ, ବାୟୁ ନନ୍ଦନ
ଦେଖିଛ କି ମୋର ନାରୀ ରତନ
ହନୁମାନ ହେ, ଯାଠାରେ ରହିଛି ମନ ।
ଗଗନ ମାର୍ଗେ ରାବଣ
ନେଉଥିଲା ଏକ ନାରୀ ରତନ
ଦାଶରଥି ହେ, ଏ ତାର ଅଙ୍ଗଭୂଷଣ" ।
ଏ ସବୁ ଦେଖି ଅଙ୍ଗର
ଜାନକୀର ବୋଲି ଜାଣି ନିକର
ମନ୍ଦବହ୍ନିରେ, ଗଡ଼ିଲା ଲୋତକ ଝର ।
ସମ୍ବୋଧି ବାୟୁ ନନ୍ଦନ
ବୋଇଲେ "ନ ଦେଖି ସୀତା ବଦନ
ହନୁମାନ ହେ, ଯାଉନାହିଁ ଏ ଜୀବନ ।
ଉତ୍ତରିଲ ହନୁମାନ
"ତେଜ ହୃଦୟରୁ ଶୋକବିତାନ
ଦାଶରଥି ହେ, କରିବ ସୀତା ସନ୍ଧାନ" ।

କପିପତି ସୁଗ୍ରୀବର ପାଇଲେ ଆଦେଶ
ତତକ୍ଷଣେ ଆଣିବ ଯାଇ ଜାନକୀ ସନ୍ଦେଶ ।

କରନ୍ତୁ ଆପଣ ଆଗେ ସୁଗ୍ରୀବ ଦର୍ଶନ
ମିତ୍ରତା ସୂତ୍ରରେ ଦୁହେଁ ହୁଅନ୍ତୁ ବନ୍ଧନ ।

ନ ସରୁଣୁ କଥା ସୁଗ୍ରୀ ହୋଇ ଉପସ୍ଥିତ
ଗୋଟି ଗୋଟି କହିଥିଲ ବାଳୀର ଚରିତ ।

ଶୁଣିବା କ୍ଷଣି ଶ୍ରୀରାମ ଦୁଷ୍ଟାମି ବାଳୀର
ତାକୁ ବଧିବାକୁ ଚିନ୍ତା ହେଲେ ସେ ଅଧୀର ।

ଏଥୁଅନ୍ତେ କପିପତି ବାସବ ନନ୍ଦନ
ଇଚ୍ଛାକଲା ସୁଗ୍ରୀ ସଙ୍ଗେ କରିବାକୁ ରଣ ।
ଦୁହିଁଙ୍କ ହୁଂକାର ଶୁଣି କୌଶଲ୍ୟା ନନ୍ଦନ
ନାରାୟଣ ବାଣେ ନେଲେ ବାଳୀର ଜୀବନ ।
ଭୂମିଶାୟୀ କପିପତି ଭାଷିଲା ରାମକୁ
ନିରପରାଧକୁ ବଧି ଅର୍ଜିଲ ପାପକୁ ।
ଯେଉଁ କାର୍ଯ୍ୟ କରିବାକୁ ନେଲ ମୋ ଜୀବନ
ସେହି କାର୍ଯ୍ୟ କରିଥାନ୍ତା ବାସବ ନନ୍ଦନ ।
ଏତିକରେ ପ୍ରାଣବାୟୁ ଉଡ଼ିଗଲା ତାର
କଲେ ଏବେ କପିବୃନ୍ଦ ଶବର ସଂସ୍କାର ।
ସ୍ତ୍ରୀ ହରଣ ଠାରୁ ବଳି ନାହିଁ ପରାଭବ
ବୋଲି ବାନର ମାନଙ୍କୁ କହିଲେ ରାଘବ ।
କିଷ୍କିନ୍ଧ୍ୟାରେ ସୂର୍ଯ୍ୟସୁତ ହେଲେ ଅଭିଷିକ୍ତ
ଯୁବରାଜ ପଦେ ହେଲେ ଅଙ୍ଗଦ ଭୂଷିତ ।

## ହନୁମାନର ଲଙ୍କା ଗମନ

ବରଷା ଆସିଲା ଶାଗୁଆ ଦିଶିଲା
ଝାଙ୍ଗର ବନ ପ୍ରାନ୍ତର
୧କଦମ୍ବ କଦମ୍ବ ଫୁଟି ଗୁରୁଆଡ଼େ
ଦିଶେ ଧବ ମନୋହର ।
ଖାଇବାକୁ ବେଳ ନପାଇ କୃଷକ
ହଳସାଙ୍ଗ ଲଗେ ଚଲେ
ମାଛ ଖାଇବାକୁ ଗୁରୁଆଡ଼ୁ ଆସି
ଉଡ଼ିଲେ ଆକାଶେ ଚଲେ ।
ଦୁଇଭାଇ ଯାଇ ସୀତା ଗୁଣ ଗାଇ
ରହିଲେ ମାଲ୍ୟବନ୍ତରେ
ବରଷା ଅନ୍ତର ହେବାରୁ ଧରାରୁ
ଆସିଲେ ସବୁ ବାନରେ ।
ପଡ଼ିଲା ଭରେଣି ସୀତା ଠାବ କରି
ଆସିବ କିଏ ସେ ଖରେ ?
'ବୋଲି ପରୁରନ୍ତେ ବାହାରିଲା ହନୁ
ମୋହଦ ଆକାଶ ମାର୍ଗରେ ।

---
୧ କଦମ୍ବ ସମୂହ

ଗଲାବେଳେ ଦେଇ ସ୍ୱହସ୍ତ ମୁଦ୍ରିକା
କହିଲେ ରାମ ବୁଝାଇ
"ମୋର ଦୂତ ବୋଲି ବୁଝିବ ଜାନକୀ
ମୁଦିଟି ଦେଲେ ଦେଖାଇ ।

## ହନୁ ଅଶୋକ ବନରେ

ଅଶୋକ ଗଛରେ ହନୁ
କରିଦେଲା କ୍ଷୀଣ ତଷ୍ଟାରେ ତନୁ
ମନ୍ଦ ବହିରେ, ସମୀର ଭୁଣ୍ଡାଇ ମନୁ ।
ଅସୁରୁଣୀଙ୍କ ସଙ୍ଗରେ
ଯେତେକ କଥା ସୀତା ହେଲେ ରାସରେ
ମନ୍ଦ ବହିରେ, ଶୁଣୁଥିଲା ମରୁନରେ ।
ପାଇବାରୁ ଏଣେ ରାତି
ବୋବାଇଲେ କାକ କଜଳପାନ୍ତି
ମନ୍ଦ ବହିରେ, ଫୁଲାଇଲା ହନୁ ଛାତି ।
ବଢ଼ାଇ ନିଜ ଶରୀର
ଦାନବୀମାନଙ୍କୁ କଲା ଅସ୍ଥିର
ମନ୍ଦ ବହିରେ, ନ ଫିଟିଲା କାହାର ଗୀର ।
ତନ୍ଦ୍ରା ହୋଇ ଜଣେ ଜଣେ
ଶୋଇ ଲୁଚିଲେ ଭୟରେ ବାଣୀ
ମନ୍ଦ ବହିରେ, ସୁବିଧା ହେଲା ସେକ୍ଷଣେ ।
ଗଛରୁ ହନୁ ଓହ୍ଲାଇ
ରାମ ଦେଇଥିବା ମୁଦି ଦେଖାଇ
ମନ୍ଦ ବହିରେ, ସୀତାକୁ ଦେଲା ବଢ଼ାଇ ।
ମୁଦି ପାଇ ମୋଦଭରେ
ମଥାମଣି ମୁଣ୍ଡୁ ହନୁ ହାତରେ
ମନ୍ଦ ବହିରେ, ମଇଥିଳୀ ଦେଲେ ଖରେ ।
ଏଥୁଅନ୍ତେ ପରସ୍ପର
କଥା ଭାଷା ହେଲେ ରାମ ଖବର
ମନ୍ଦ ବହିରେ, ବୋହୁଛି ଲୋତକ ଝର ।
ଦୁଃଖ ଶୁଣି ଜାନକୀର
ରାଗେ ଭାଙ୍ଗିଲା ବାନର ବାର
ମନ୍ଦ ବହିରେ, ଶୋଭା ସେହି ଅନ୍ଧାର ।

ବନର ଦେଖି ଏ ଦଶା
ଶୁର ନେଇ ବାର୍ତ୍ତା ଦେଲ ସହସା
ମନ୍ଦ ବନ୍ଧରେ, କପାଳେ ଭଗାଣ ହସା ।
କବ କହେ ଯୋଡ଼ ହାତ
ଉପୁଜ ଏଥିରୁ ନାନା ବଜ୍ରପାତ
ମନ୍ଦ ବନ୍ଧରେ, ହେବ ସବୁ ଧୂଳିସାତ ।

## ହନୁ ରାବଣ ସମ୍ବାଦରେ

ଯେତେବେଳେ ହନୁମାନ ଅଶୋକ ବନରେ
ଭାଙ୍ଗୁଥିଲ ପୁଷ୍ପୋଦ୍ୟାନ ଅତି କ୍ରୋଧଭରେ ।
ମେଘନାଦ ଆସି ଧରିନେଇ ତାକୁ ଖରେ
ଠିଆ କଲ୍ ସଭା ମଧ୍ୟେ ଜନକ ଆଗରେ ।
ମାଗିବାରୁ ପରିଚୟ କହେ ହନୁମାନ
"ଆସିଥିଲି କରିବାକୁ ଜାନକୀ ସନ୍ଧାନ ।
ପଞ୍ଚବଟୀ ବନେ ଯାଇ ପାପିଷ୍ଠ ରାବଣ
ଏକୁଟିଆ ଦେଖି ସୀତା କରିଚ ହରଣ ।
ଭବେ କିଏ କରିନାହିଁ ଏପରି ଅନ୍ୟାୟ
କିଷ୍କିନ୍ଧ୍ୟା ରାଜନ ଏବେ ରାଘବ ସହାୟ ।
ତାଙ୍କପାଶେ ଦଶମୁଣ୍ଡ ନପଶି ଶରଣ
ଦେଖାଉଚ ଆପଣାର ଏବେ ବଡ଼ପଣ ।
ଏ ବାରତା ଦେଲେ ମୁହିଁ ଶ୍ରୀରାମ ପାଶରେ
ପଶିବେ ସେ ସେତୁବାନ୍ଧି ଏ ଲଙ୍କା ଗଡ଼ରେ ।
ଗର୍ବ ଅହଂକାର ତେଜ ଫେରାଇ ସୀତାକୁ
ନକଲେ ସେ ଭସ୍ମୀଭୂତ କରିବେ ଲଙ୍କାକୁ" ।

## ରାବଣର ଉତ୍ତର

ହନୁମାନ ଠାରୁ ଶୁଣି ଏମନ୍ତ ବଚନ
ଦାନ୍ତ କଡ଼ମଡ଼ କରି କହେ ଦଶାନନ ।
"କିଏ ଅଛ ବାନ୍ଧ ଆଗୁ ଦମ୍ଭ ନ ଦେଖାଇ
ଶିଖାଉଚ ବୁଦ୍ଧି ମୋତେ କପିଜନ୍ମ ପାଇ ।
ତ୍ରିପୁର ବଜୟୀ ଯେହୁ ସେ ପୁଣି ଶରଣ
ପଶି ରାମଠାରେ ସୀତା କରିବ ଅର୍ପଣ ।
ଧିକ ବାହୁବଳ ମୋର, ଧିକ ଏ ମର୍କଟ
ପୋଡ଼ିଦିଅ ଯା ଲାଙ୍ଗୁଳ ହେଉ ଛଟପଟ ।

ଶୁର କର୍ମ କରିବାକୁ ଆସିଅଛୁ ଲଙ୍କା
ଏ ଗ୍ରାମ୍ୟ ବାନର ମନେ ନାହିଁ ଲବେ ଶଙ୍କା ।
ଦଶାସ୍ୟର ବଳ କିଏ ନଜାଣେ ଭବରେ
ଫୋପାଡ଼ି ଦେଲେ ପଡ଼ିବ ସାଗର ଗର୍ଭରେ ।

## ହନୁର ପ୍ରତ୍ୟୁତ୍ତର

ଏ ବଚନମାନ ଶୁଣି ହସେ ହନୁମାନ
"ମଣିମା ଶୁଣିମା ହେଉ ହୋଇ ସାବଧାନ,
ଗୁଡ଼ାଇ ମୋ ଲାଙ୍ଗୁଳରେ ଯେତେ ଲୁଗାପଟା
ନିଆଁ ଜାଳ ପୁଡ଼ିଯିବ ନଥିବ ଏ ହଟା ।
ଏକଥା ବୋଲନ୍ତେ ହନୁ ପାଇଲା ମନକୁ
ଲୁଗା ଆଣିବାକୁ ଗଲେ ଅସୁରେ ଘରକୁ ।
ଅଗଣିତ ଲୁଗା ଅଣାହେଲ ସେହିକ୍ଷଣି
ଗୁଡ଼ାଇଲେ ତା ଲାଞ୍ଜରେ କୁମାର ରାବଣି ।
ଯେତେବେଳେ ଲୁଗାତକ ସରିଗଲା ଠୁଳ
କେ ଜାଣି ନଥିଲେ ବଢ଼ୁଥିବା ତା ଲାଙ୍ଗୁଳ ।
ଚତୁର୍ଥାଂଶ ଗୁଡ଼ା ହେଲାବେଳେ ଲାଙ୍ଗୁଳର
ଲୁଗା ସରିଗଲା ବୋଲି କହେ କପିବର ।
"ଆଉ ଲୁଗା ଆଉ ଲୁଗା" ବୋଲି ଡାକ ହନୁ
ଧୀରେ ଧୀରେ ବଢ଼ାଉଚି ଏଣେ ତାର ତନୁ ।
ଯେ ଯାହା ଘରୁ ଯେତେକ ଆଣିଲେ ବସନ
ନିଅଣ୍ଟ ହେବା ଅସୁରେ ଜାଣି ହେଲେ ଛନ୍ନ ।
ବିପଦ ପଡ଼ିଲେ ଲୋକ ହୁଅଇ ଯେପରି
ଲଙ୍କାଗଡ଼ ଅଧିବାସୀ ହେଲେଣି ସେପରି ।
ଯେତେକ ନୂଆଁ ପୁରୁଣା ବହୁମୂଲ୍ୟ ବାସ
ଗୁଡ଼ାଇ ଗୁଡ଼ାଇ ଲାଞ୍ଜେ ପାଉଅଛୁ ହ୍ରାସ ।
ଅସୁରଙ୍କ ବୁଦ୍ଧି ବଣା ପବନ କୁମାର
ଦେଖି କହେ ରାବଣକୁ କରି ତିରସ୍କାର ।
ମୋ ଲାଙ୍ଗୁଳେ ବାନ୍ଧିବାକୁ ତୋ ଘରେ ବାସ
ନାହିଁ ଯେବେ ତୁ ରାମକୁ କପଟ ସନ୍ଦେଶ ।
କରିବୁ ବୋଲି ପାଞ୍ଚୁ ଅରେ ଦଶାନନ
ତାଙ୍କ ବାଣେ ଦେଖିବୁ ତୁ କଣ ପରିଣମନ ।
ବାକ୍ୟ ବାଣ ବାନରର ବାଜନ୍ତେ କାନରେ
କାଢ଼ିଲା ଯେତେକ ଥିଲା ଆପଣା ନବରେ ।

ହନୁର ମାୟାରେ ପଶି ନପାରି ରାବଣ
ଗୁଡାଇ ଗୁଡାଇ ହେଲା କଥା ଅଘଟଣ ।
ଅର୍ଦ୍ଧାଂଶ ଲାଙ୍ଗୁଳେ ଗୁଡ଼ା ହୋଇଛି ବସନ
ଲୁଚା ଆଣ ବୋଲି କହେ ଦୁଃଖେ ଦଶାନନ
କ୍ରୋଧେ କହେ କପି ଏବେ ଆଣ ହୁତାଶନ
ତୁମ ଆଗେ ଲାଙ୍ଗୁଳର ସରିବ ଦହନ ।
ହନୁ ତୁଣ୍ଡୁ ଶୁଣି ଦୈତ୍ୟେ ତଇଳ ଅଜାଡ଼ି
ନିଆଁ ଲଗାଇ ତହିଁରେ ଦେଇଥିଲେ ଛାଡ଼ି ।

## ଲଙ୍କା ପୋଡ଼ି

ହନୁ ଗଲା ହସି ହସି
ଅସୁରମାନଙ୍କ ମୁଣ୍ଡରେ ବସି
ଖଞ୍ଜଣିଟରେ, ଦେଉଥିଲା ଲଞ୍ଜ ଘଷି ।
ମାଙ୍କଡ଼ ହେଲାଣି କାଳ
ମରିଲେଣି କେତେ [୧]ରାକ୍ଷସଜାଳ
ଖଞ୍ଜଣିଟରେ, ଡେଇଁଲା ଚୂଳକୁ ଚୂଳ ।
ଲଙ୍କାରେ ଲାଗିଛି ନିଆଁ
ଦେଖି ହନୁମାନ ମାଇଲା ଡିଆଁ
ଖଞ୍ଜଣିଟରେ, ଅସୁରୁଣୀଏ ଗ୍ଲନିଆଁ ।
ଶୁଭେ ରଡ଼ି ହାହାକାର
ତା ଭିତରେ ପୁଣି ହନୁ ହୁଙ୍କାର
ଖଞ୍ଜଣିଟରେ, ଦେଖ ଲଙ୍କା ଛାରଖାର ।
କେତେ ଦୈତ୍ୟ ଗଲେ ମରି
କଏ ବା କପିକି ରହିଲେ ଡ଼ରି
ଖଞ୍ଜଣିଟରେ, ପାପକର୍ମ ଏତେ ସରି ।
ଏ କର୍ମ ଦେଖି ପୂଅରି
ବହି ପ୍ରଭଞ୍ଜନ ଥରକୁ ଥର
ଖଞ୍ଜଣିଟରେ, ଜାଳି ଦେଲା ବହୁ ଘର ।
ଭୁଡ଼ ଭୁଡ଼ ଶବ୍ଦ ପଡ଼ି
ବାହାରୁଛି ଗନ୍ଧ ଘଡ଼ିକ ଘଡ଼ି
ମନ୍ଦ ବହିରେ, ଶୁଭୁଛି [୨]ଶିବାଳ ରଡ଼ି ।

୧ ସମୂହ   ୨ ବିଲୁଆ ସମୂହ

ହରିଆଡ଼ ଶ୍ମଶାନରେ
ହେଲା ପରିଣତ ମୁହୂର୍ତ୍ତକରେ
ମନ୍ଦ ବହିରେ, ଜାନକୀ ଅଭିଶାପରେ ।
ପହଞ୍ଚି ସିନ୍ଧୁ ତଟରେ
ବୁଡ଼ାଇ ଲାଙ୍ଗୁଳ ପାଣି ଭିତରେ
ମନ୍ଦ ବହିରେ, ଗାଧୁଏ ହନୁ ମୋଦରେ ।
ଚଞ୍ଚଳ ଗାଧୁଆ ସାରି
ଗଗନ ମାର୍ଗରେ ଗଲା ବାହାରି
ମନ୍ଦ ବହିରେ, ହେଲା [୩]ଜବେ ସିନ୍ଧୁପାରି ।
ପ୍ରବେଶି ମାଲ୍ୟବାନରେ
ଜୁହାରି ରାମକୁ ଭକତିଭରେ
ମନ୍ଦ ବହିରେ, ମଥାମଣି ଦେଲା କରେ ।
ଅଳଙ୍କାର ରାମ ପାଇ
କହିଲେ ହନୁକୁ ଲୁହ ଗଡ଼ାଇ
ମନ୍ଦ ବହିରେ, ରହିଛି ପ୍ରାଣ ନ ଯାଇ ।
ଅସୁର କୁଳ ବିନାଶ
ନ କଲେ ଦେବଙ୍କ ମନରୁ ତ୍ରାସ
ମନ୍ଦ ବହିରେ, ହେବ ନାହିଁ କେବେ ହ୍ରାସ ।
କପିବଳକୁ ଡକାଇ
ବାହାରିଲେ ଲଙ୍କା ସେ ବେନି ଭାଇ
ମନ୍ଦ ବହିରେ, ସୀତାକୁ ମନେ ପକାଇ ।
ବନ୍ଧ ବାନ୍ଧି ବାରିଧିରେ
ପହଞ୍ଚିଲେ ଲଙ୍କା ସର୍ବେ ଅଚିରେ
ମନ୍ଦ ବହିରେ, କମ୍ପିଲା [୪]ଉର୍ବୀ ରଡ଼ିରେ ।

## ଲଙ୍କା ପ୍ରବେଶ

ଲଙ୍କାରେ ପ୍ରବେଶ କରନ୍ତେ ରାମ
ରାବଣର ଆଉ ନାହିଁ ବିଶ୍ରାମ
ମୁହଁରେ ଫୁଟାଣି ଭିତରେ ଦାହ
ବୁଡାଇ ଦେଲାଣି ଚିନ୍ତା ପ୍ରବାହ
ବିଭୀଷଣ କହେ ରାଜ ସଭାରେ
"ଭକ୍ତି ରଖ ଭାଇ, ଶ୍ରୀରାମ ଠାରେ

୩ ଶୀଘ୍ର   ୪ ପୃଥିବୀ

ଜନ୍ମିଛନ୍ତି ସେହି ବିଷ୍ଣୁ ଅଂଶରେ
ଫେରାଅ ଜାନକୀ ଅବଲମ୍ବରେ ।
କରୁଛି ପ୍ରାର୍ଥନା ମୋହି ତାମସ
ଚିରକାଳ ରଖ ବଂଶର ଯଶ ।
ଶୁଣୁ ଶୁଣୁ ଦଶାନନ ରାଗରେ
ପିଟିଲା ଭାଇକୁ ବାମ ପାଦରେ ।
ବିଭୀଷଣ ଏହା ସହି ନ ପାରି
ଶ୍ରୀରାମ ୧ନିକଟ ଗଲା ବାହାରି" ।
ହେବାରୁ ରାମଙ୍କ ଶରଣାପନ୍ନ
ପ୍ରଫୁଲ୍ଲ ହେଲା ସକଳ ମନ ।
ଯାହା ଅଛି ଯାର ୨ପିନାକ ପାଣି
ସେ କପାଁ ଶୁଣିବ କାହାର ବାଣୀ ।
ଏତକ ରାବଣ କହେ ସଭାରେ
ନ ଫିଟିଲା ପାଟି କା'ର ସେଠାରେ ।

## ଅଙ୍ଗଦ ରାବଣ ନିକଟକୁ ଆସିବା

ଅଙ୍ଗଦ ଦୂତ ଭାବରେ
ଯାଇ ପ୍ରବେଶିଲା ଲଙ୍କା ଗଡରେ
ଝଞ୍ଜଘାଟରେ, ରାବଣକୁ ଡାକେ ଖରେ ।
ଉଚ୍ଚସ୍ୱନ ବାନରର
କମ୍ପାଇଲା ଅବା ଲଙ୍କା ନଗର
ଖଞ୍ଜଘାଟରେ, ଦୈତ୍ୟ ଶୁଣି ଥରହର ।
ଛଳେ ନାହିଁ ତାର ଡର
କଲା ଆଡମ୍ବରେ ବିକୃତ ସ୍ୱର
ଖଞ୍ଜଘାଟରେ, କି ସାହସ ବାନରର ।
ଯାଇଅଛି ଏକୁଟିଆ
ଆଡମ୍ବର ଦେଖି ମୋହି ଘ୍ଳନଆଁ
ଖଞ୍ଜଘାଟରେ, ଦଶାସ୍ୟ ଆଗରେ ଠିଆ ।
ରାବଣ ତା ପରିଚୟ
ମାଗିବାରୁ କହେ ବାଳି ତନୟ
ଦଶାନନରେ, ନାହିଁକି ତୋ ମୃତ୍ୟୁଭୟ ।
ଦେଉଛୁ ଝାସ ନଆଁରେ

କପିବଳ ସହ ରାମ ଲଙ୍କାରେ
ଦଶାନନରେ, ପଶି ଜଗିଲେଣି ଦ୍ୱାରେ ।
ଅବଜ୍ଞାରେ ଦଶାନନ
ପଚାରୁଛି କେଉଁ ବାଳୀନନ୍ଦନ
ମନ୍ଦ ବହ୍ନରେ, ଥରାଇ ତା ଅପଘନ ।
ଅଙ୍ଗଦ କହେ ରାଗରେ
ଯେଉଁ ବାଳୀ ତୋତେ ଯାକି କାଖରେ
ଦଶାନନରେ, ଭ୍ରମୁଥିଲା ମୋଦଭରେ ।
ରେ ୩ରକ୍ଷବଂଶ ଘାତକ
ରାମବାଣେ ହେବୁ ଛିନ୍ନ ମସ୍ତକ
ଦଶାନନରେ, ନଥିବ କେ ତୋ ରକ୍ଷକ ।
ପରଦାରା ହରଣରେ
ବଢିଛି ତୋ ନାମ ଭୂମଣ୍ଡଳରେ,
ଦଶାନନରେ, ଅଛୁକି ଲାଜ ମୁହଁରେ ।
ତପସ୍ୱୀ କୁଳେ ଜନମ
ହୋଇ ନାରୀ ପ୍ରେମ କଲା ବିଭ୍ରମ
ଦଶାନନରେ, ଗୁଡ଼ିଲା ତୋତେ ଧରମ ।
ରାବଣ ଅଟ୍ଟହାସରେ
ଭାଷିଲାରେ କପି ମୋର ଆଗରେ
ଖଞ୍ଜଘାଟରେ, ନକହ କଥା ଗର୍ବରେ ।
ଆରେ କଟୁଭାଷୀ କପି
ରାମ ଲଙ୍କାଗଡ଼ ପଶେ ଯଦ୍ୟପି
ଖଞ୍ଜଘାଟରେ, ମାରିବ ଆକାଶେ ଛପି ।
୪ଶକ୍ର ଯାର ମାଳାକର
ମାୟାରେ ପାରଗ ଯା ପରିବାର
ଖଞ୍ଜଘାଟରେ, ଭୟ ନାହିଁ କେବେ ତାର ।
କହିଗଲୁ ତୋ ବଡ଼ପା
ଶୁଭ ନାହିଁ ଯେତେ ତୋର କାଳମା
ଦଶାନନରେ, ନ ଜାଣୁ ରାମ ମହିମା ।
ରାମ ରମଣୀ ଫେରାଇ
ନଦେଇ ଦେଖାଉ ଏତେ ବଡ଼ାଇ
ଦଶାନନରେ, ତ୍ରିଲୋଚନ ବରପାଇ ।
କହିଲି ଏତେ ବୁଝାଇ

୧ ନିକଟକୁ ୨ ଶିବ
୩ ଅସୁର ୪ ଇନ୍ଦ୍ର

ନ ଶୁଣିଲ ପରେ ରତ୍ନ କପାଇ
ଦଶାନନରେ, ମରିବୁ ଚପେଟ ଖାଇ ।
ଏତେ କହି ରାବଣକୁ
ଅଙ୍ଗଦ ଫେରିଲ ରାମ ପାଶକୁ
ମନ୍ଦ ବହିରେ, ଆସିଲେ ସଂଗେ ଇଣକୁ ।

## ମନ୍ଦୋଦରୀ ପ୍ରବେଶ

ସୁନ୍ଦରୀ ମନ୍ଦୋଦରୀ ଏ ଅନ୍ତେ ଆସି
ଝାଡ଼ି ହେଲ ପତିଙ୍କ ଏମନ୍ତ ଭାଷି ।
"ବୃନ୍ଦାରକ ବୃନ୍ଦଙ୍କ ମନ୍ଦାରଚୟ
ମକରନ୍ଦ ବନ୍ଦୁଛେ ଚରଣଦ୍ୱୟ ।
ଯେଉଁ ମନ୍ଦୋଦରୀର ହେଉଛ ଧୂଆ
ସେ ଆସି ଜଣାଉଛି ସାର ଗାଧୂଆ ।
ପରନାରୀକ ଆଣି ରଖିଲ ବନେ
ଅଯଥା ପୀଡ଼ା ଦେଇ ରାଖିଛ ମନେ ।
ଜାଣି ନଥିବ କିବେ ତାଙ୍କର ବଳ
ଫେରାଇ ଦିଅ ପରପଦ୍ନୀ ଚଞ୍ଚଳ ।
ଅକୀର୍ତ୍ତି ବାନା ଉଡ଼େ ଚଉଦିଗରେ
କପାଳ ଧୂଅ ରାମ ପଦରାଜରେ ।
ନୋହିଲେ ନୈଶ୍ଚିନ୍ତ୍ୟ ପାଇବେ ଧ୍ୱଂସ
ତୁମ ସ୍ୱଭାବ ହେତୁ ବୁଡ଼ିବ ବଂଶ ।
ଉତ୍କଟ କାଳକୂଟ ବିଷ ଗ୍ରାସରେ
ଜର୍ଜ୍ଜର ଧରିବି କେ ମନ୍ତ୍ରୀ ମଧ୍ୟରେ ।
ଦେବରାଜ ଦମ୍ଭୋଳି ପଡ଼ି ବକ୍ଷରେ
ଚୂର୍ଣ୍ଣ ହୁଅଇ ସିନା, କ୍ଷତ ନ କରେ ।
କହିଲ ଦଶାନନ ଏହା ପରୀକ
ନ କହ ଫେରାଇବା କଥା ଏଣିକ ।

## ରାଗ

ଦକଣ ଭଡରେ ଲାଗିଲେ ଜଳ
ସର୍ଜ୍ଜରି ହୃଦପୂ ସାଜିଚ ଜଳ ।

୧ ଭୃପୃତା ୨ ବଜ୍ର

ବାହାରୁଛି ଶୁଣ୍ଡ କଥା ଅଡ଼ୁଆ
ମାଡ଼ ନାହିଁ ଲଜ ହେଲେ ପଡ଼ୁଆ ।
ମୁହଁ ଫଣ ଫଣ ନୟନ ରଙ୍ଗ
ଶରୀର ଗୋଟାକ ଦଶେ ବିଭଙ୍ଗ ।
ଦେଖାଇ ହୁଅନ୍ତି ପାର ଆପଣ
ରହିଚ କ କା'ର ଆପଣା ପଣ ।
ନ କରି ସ୍ୱଭାବ ପରିବର୍ତ୍ତନ
ନ ଦେଖାଅ ଆଉ ନାସା କୁଞ୍ଚନ ।

## କୁମ୍ଭକର୍ଣ୍ଣଙ୍କୁ ଉଠାଇବା

ଶୋଇଛି କୁମ୍ଭକର୍ଣ୍ଣ କିଛି ନଜାଣି
ଉଠାଇଲେ ମନ୍ତ୍ରୀଏ ବାଡ଼ିଲୁ ଟାଣି ।
ଶୟନୁ ଉଠି ମାଂସ କରି ଭକ୍ଷଣ
ମଦ୍ୟପାନରେ କଲା ତୃଷ୍ଣା ହରଣ ।
ପଶି ଲଙ୍କେଶ ପାଶେ ବୁଝିଲ କାରଣ
ଘଟିଥିଲ ଯାହା ତା କହିଲେ ରାବଣ ।
ଏ ଅନ୍ତେ କୁମ୍ଭକର୍ଣ୍ଣ ରାବଣ ବାଣୀ
ଶୁଣି ରଣକୁ ଗଲ ରଥକୁ ଆଣି ।
ଅବତରଣ କରି ଯୁଦ୍ଧ ଭୂମିରେ
ଆପଣା ବଡ଼ପଣ କହିଲ ଗୀତରେ ।
କହିଲ ଯେତେବେଳେ, ଟୁଳିବଗପତି
ନାକ କାନ ଛିଣ୍ଡାଇ ଦେଲ ଝଟତି ।
କୁମ୍ଭକର୍ଣ୍ଣ ଲଜରେ ଧରି ତ୍ରିଶୂଳ
ତତକ୍ଷଣେ ବାହିନୀକ କରିଲ ଠୂଳ ।
ତାକୁ ଦେଖି ବାନରେ ଗିରି କନ୍ଦରେ
ଛପିଲେ ଯାଇ ସେକ୍ଷଣି ଭୟରେ ।
କୋଧାଗ୍ନି ଯେତେବେଳେ ଉଠିଲ ଜଳି
ହାବୁଡ଼େ ଯା ପଡ଼ିଲ ଦେଲ ସେ ଦଳି ।
କପୀନ୍ଦ୍ର ସୁଗ୍ରୀବକୁ ଦେଖି ରାକ୍ଷସ
ମୁଦ୍‌ଗର ପ୍ରହାରିଲ ଆସି ଲଭସ (ଶୀଘ୍ର)
ସଙ୍ଗେ ସଙ୍ଗେ ଶ୍ରୀରାମ ନାରାଚ ମାରି
ବାହୁ ତାହାର ପ୍ରାଣ ଗଲ ବାହାରି ।
କଏ ହେଲ ଆନନ୍ଦ କିଏ କାନ୍ଦରେ
ପୁହାଇଲେ ରଜନୀ ଦୈତ୍ୟ ବଧରେ ।

## ମେଘନାଦ ବଧ

ଭାଇର ମରଣ ଦାରୁଣ କଷଣ
ଦେଲେହେଁ ରାବଣ ମନେ
ନ ଚିହ୍ନି ମାରବ ଦେଲା ପରାଭବ
ସୀତାକୁ ଅଶୋକ ବନେ ।
ଡାକି ମେଘନାଦ ବଦନ ବିଷାଦ
ରଖି କହଇ ଏସନ
ହେଉଚି ବିପତ୍ତି ଅଥୟ ମୋ ମତି
କରି ଯୁଦ୍ଧକୁ ଗମନ ।
କପିବଳ ସହ ଦଇତ ନିବହ
ଯୁଝିଲୁ ଯୁଦ୍ଧ କ୍ଷେତ୍ରରେ
ଶ୍ରୀରାମ ଲକ୍ଷ୍ମଣ ସଙ୍ଗେ ଭୁଝି ରଣ
କରିବୁ ଅବଲମ୍ବରେ ।
ଅସ୍ତ୍ର ଶସ୍ତ୍ର ଭରି ଭଣ୍ଡାର ମୋହର
କାହାରିକି ନାହିଁ ଡର
ଯାର ସାହା ଶିବ ତାହାର ୧ଅଶିବ
ନହେବ କେବେ ମାତର ।
ବାପର ବଚନ ଶୁଣି ତା ନନ୍ଦନ
ଆଣିଲା ସ୍ୟନ୍ଦନ ଜବେ
ଅଭ୍ରେଦୀ ରଥର ବାନର ନିକର
ଦେଖି ନ ଡରିଲେ ଲବେ ।
ଆଗରେ ତାହାର ସୁମିତ୍ରା କୁମାର
ଠିଆ ହେଲେ ଧନୁ ଧରି
ପଚ୍ଛ କାହିଁ ରାମ ହେବ ମୋ ସଂଗ୍ରାମ
ଆସିଛୁ ମନସ୍ଥ କରି ।
ଭୁହତ ମେଅଜ ହେଲୁ ଧଉଡ଼ଡ଼
ମେଘନାଦ ସଙ୍ଗେ ରଣ
କରିବାକୁ ପରା ସହିବ କି ଧରା
ହେଲେ ଏଠାରେ ମରଣ ।
ଦୈତ୍ୟ ଏହା କହି ବିହାୟସେ ରହି
ଦୁହିଁଙ୍କ ନାଗପାଶରେ
କରିଣ ବନ୍ଧନ କଲା ଆର୍ଲୋଡ଼ନ
ସ୍ମୃଷ୍ଟି ତକ୍ଷଣେ ଗରୁଡ଼େ ।
କ୍ରୋଧରେ ଅଥୟ ହୋଇ ୨ବୈନତେୟ
ପ୍ରବେଶି ରଣ ଅଙ୍ଗନେ
କଲା ସଚେତନ ଦୁହିଁଙ୍କ ବହନ
ଅମୃତ ସିଞ୍ଚି ବଦନେ ।
କ୍ରୋଧରେ ଲକ୍ଷ୍ମଣ ଧରି ଧନୁବାଣ
ନିକ୍ଷେପି ଇନ୍ଦ୍ରଜିତକୁ
ମସ୍ତକ ଛିଣ୍ଡାଇ ତା ତଳେ ପକାଇ
ପ୍ରେରିଲେ ଯମଲୋକକୁ ।
ମେଘନାଦ ବଧେ ଦଶାନନ କ୍ରୋଧେ
ଏକଘ୍ନୀ ଶକତି କାଢ଼ି
ନିକ୍ଷେପନ୍ତେ, ହନୁ ବିସ୍ତାରି ତା ତନୁ
ତତକ୍ଷଣେ ଦେଲା ଫୋପାଡ଼ି ।

୧ ଅମଙ୍ଗଳ

## ନାରଦଙ୍କ ଦ୍ୱାରା ହନୁ ଅନ୍ୟତ୍ର ପ୍ରେରିତ

ଏକଥା ଦର୍ଶନ କରି ଦୁଷ୍ଟ ଦଶାନନ
ବ୍ରହ୍ମାଙ୍କ ମରଣ ପାଇଁ କଲା ଆୟୋଜନ ।
ଜାଣିପାରି ପୁତ୍ରକୁ ସେ ସ୍ମରନ୍ତେ ବହନ
ନାରଦ ତକ୍ଷଣେ ତହିଁ କରି ଆଗମନ ।
ଧୁକ୍ଷାନ୍ତ କାରଣେ, ପିତା କହିଲେ ବୁଝାଇ
"ମୁଦନ୍ତଶ୍ରେଷ୍ଠ ହନୁକୁ ଦେଲ ଯୁଦ୍ଧୁ ନିବର୍ତ୍ତାଇ ।
ରହିବ ଚରଣ ମୋର, କୋହିଲେ ରାବଣ
ଚନ୍ଦ୍ରଲିଙ୍ଗ ସେନବାକୁ ଏକ୍ଷୀ ମୋ ପ୍ରାଣ ।
ଥିବାଯାଏ ହନୁମାନ ସମର ପ୍ରାଙ୍ଗଣେ
ଘଟାଇବ ନାନା ବାଧା ଶକତି କ୍ଷେପଣେ ।
ଯାଇ ସ୍ଥାନାନ୍ତର କର ତାହାକୁ ସେଠାରୁ
ରାବଣ ଏକଘ୍ନୀ ଶକ୍ତି ଲକ୍ଷ୍ମଣକୁ ମାରୁ" ।
ଶିରୋଧାର୍ଯ୍ୟ କରି ପୁତ୍ର ପିତାଙ୍କ ବଚନ
ଅନ୍ୟତ୍ର ହନୁକୁ ପ୍ରେରି ଫେରିଲେ ବହନ ।
ଲକ୍ଷ୍ମଣକୁ ଲକ୍ଷ୍ୟ କରି ଏକଘ୍ନୀ ଶକତି
ଫୋପାଡ଼ନ୍ତେ ଆଉ ଥରେ ଦୈତ୍ୟ ମୂଢ଼ମତି ।

୨ ଗରୁଡ଼

ଆସି ଜବେ ତା ଭେଦିଲା ଲକ୍ଷ୍ମଣ ବକ୍ଷରେ
ଯୁଦ୍ଧ ଗୁଡ଼ ଚଳାଇଲେ ଅନେକ ଉପୁରେ ।

## ଲକ୍ଷ୍ମଣ ମୂର୍ଚ୍ଛିତ

ମୂର୍ଚ୍ଛିତ ହୁଅନ୍ତେ ଲକ୍ଷ୍ମଣ ରାମ କଲେ କ୍ରନ୍ଦନ
ଏ ସମୟେ ହନୁ ପ୍ରବେଶି କହେ ଧୈର୍ଯ୍ୟବଚନ ।
ସୁଷେଣକୁ ଡ଼ାକି ଆଣିବା ଲାଗି ଭାଷନ୍ତେ ରାମ
ହନୁମାନ ମାନି ଆଦେଶ ତ୍ୱରେ କଲା ଏ କାମ ।
"ବ୍ରହ୍ମାଙ୍କ ପର୍ବତୁଁ ବିଶଲ୍ୟ ଲତା ରାତ୍ରି ଭିତରେ
ଆଣି ଲଗାଇଲେ ବଞ୍ଚିବେ ଭାଇ ନିଃସନ୍ଦେହରେ" ।
ବୋଲି କହିବାରୁ ସୁଷେଣ ଗଲା ବାନରବୀର
ହନୁମାନ ନଭମାର୍ଗରେ କ୍ଷୀଣ କରି ଶରୀର ।
ଆଗେ ସୁଷେଣକୁ ଲଙ୍କାରେ ଛାଡ଼ି ଗଲା ବହନ
ପର୍ବତ ଉପାଡ଼ି ଫେରିଲା ସ୍ମରି ପିତା ପବନ ।
ଏକାକେ କୈକେୟୀନନ୍ଦନ ଦେଖି ହନୁମାନଙ୍କୁ
ପାଖେ ଥିବା ଥିବା ୧ଶିଳୀମୁଖକୁ ନିକ୍ଷେପିଲେ ଊର୍ଦ୍ଧ୍ୱକୁ
ମୂର୍ଚ୍ଛାହୋଇ ହନୁ ପଡ଼ିଲା ଲକ୍ଷେ ରଖି ପର୍ବତ
ହା ରାମ ଲକ୍ଷ୍ମଣ ଉଚ୍ଚାରି ଶୁଣିଲେ ତା ଭରତ ।
ଶ୍ରୀରାମ ଲକ୍ଷ୍ମଣ ନାମକୁ ଶୁଣି ଗଲେ ସଜଳ
ମୂର୍ଚ୍ଛା ଦୂର କଲେ ବଶିଷ୍ଠ ମନ୍ତ୍ର ଦେଇ ତତ୍କାଳ ।
ଭରତଙ୍କୁ ହନୁ ଭଣିଲା, "ନେଇ ଗିରି ତୁରିତ
ପହଞ୍ଚିବି ରାମ ସମୀପେ ଯେଣୁ ମୁହିଁ ପୀଡ଼ିତ" ।
ହନୁମାନ କଥା ଶ୍ରବଣେ ଶରାଗ୍ରେ ଭରତ
ଉଠାଇବାକୁ ସେ ପର୍ବତ ହୋଇଥିଲେ ଉଦ୍ୟତ ।
ହନୁମାନ ହୋଇ ପ୍ରସନ୍ନ କରି ପ୍ରଶଂସା ତାଙ୍କୁ
ଆକାଶ ମାର୍ଗରେ ପର୍ବତ ଧରି ଗଲା ଲଙ୍କାକୁ ।
ଏଣେ ରାମଚନ୍ଦ୍ର ଉଠାଉଛନ୍ତି ଶୋକେ ଲକ୍ଷ୍ମଣ
"ଉଠ, ଉଠ ବାବୁ ଉଠରେ ଧନୁ କରି ଧାରଣ ।
ହେ ମାତ ! କୈକେୟୀ ହେମାତ ! ଆଜି ପୁତ୍ରବଧରେ
ତୁମେ ମଧ୍ୟ ହୁଅ କୃତାର୍ଥ ସୁଖେ ରହି ନଗରେ" ।
ତୁମ ଯୋଗୁଁ ସ୍ୱାମୀ ତୁମରି ଝୁରି ଝୁରି ରାମକୁ
ଦୁଃଖେ ତେଜି ଶେଷ ନିଃଶ୍ୱାସ ଗଲେ ସ୍ୱର୍ଗଧାମକୁ ।

ମନ୍ଥରା ମନ୍ତ୍ରଣା ଗ୍ରହଣ କରି ନିନ୍ଦା ଶୁଣିଲ
ସିନ୍ଦୂର ଲିଭାଇ କପାଳୁଁ କରୁ କାଚ କାଢିଲ ।
ଏ ସମୟେ ଦ୍ରୋଣ ପର୍ବତ ହସ୍ତେ କରି ଧାରଣ
ଅର୍ଦ୍ଧରାତ୍ର ବେଳେ ମାରୁତି କଲା ଅବତରଣ ।
ପ୍ରଜ୍ୱଳିତ ଗିରି ତେଜକୁ ଭ୍ରମେ ମଣି ପ୍ରଭାତ
କାନ୍ଦୁଥିଲେ ବସି ସମସ୍ତେ ଦେଇ ମସ୍ତକେ ହାତ ।
ଅନନ୍ତର ହନୁ ପ୍ରବେଶ କଲା ରାମ ନିକଟ
ଆନନ୍ଦ ହୃଦୟେ ଚରଣେ ଥୋଇ ଲଲାଟପଟ ।
ବିଶଲ୍ୟକରଣୀ ଲଗାଇ ଦେବା ମୁହୂର୍ତ୍ତକରେ
ସଚେତନ ହୋଇ ଲକ୍ଷ୍ମଣ ଉଠି ବସିଲେ ଖଟେ ।
ପୁଲକିତ ହୋଇ ଶ୍ରୀରାମ ଲକ୍ଷ୍ମଣଙ୍କୁ କୁଣ୍ଢାଇ
ଗାଢ ଆଲିଙ୍ଗନ ପୂର୍ବକ କୋଳେ ଦେଲେ ଶୁଆଇ ।
ରାତ୍ରି ପାହିବାରୁ ଉଠି ରାବଣ
ଲଙ୍କାଗଡ଼ ମଧ୍ୟେ କଲା ଭ୍ରମଣ ।
ଶୁଣିଲା ଲକ୍ଷ୍ମଣ ଗଲାଣି ଜିଇଁ
ବିଶଲ୍ୟକରଣୀ ରାତରେ ପିଇ ।
ଡ଼କାଇ ଆଣିଲା ଲୋହିତାକ୍ଷକୁ
କହି ପଠାଇଲା ରାମ ପାଖକୁ ।
"ଦେବ ଯେବେ ସେହି ଶିବ ପରଶୁ
ଫେରାଇବ ନେଇ ଜାନକୀ ୨ଆଶୁ" ।
ଏକଥା କହନ୍ତେ ରାମକୁ ଯାଇ
ଫେରିଲା ଯଥାର୍ଥ ଉତ୍ତର ପାଇ ।
ପଠାଇଲେ ଶିବ ରଥ ନିଜର
ଆରୋହିଲେ ତହିଁ ରଘୁ ପ୍ରବର ।
ହନୁକୁ ବସାଇ ରଥ ଆଗରେ
ସମର ଭୂଇଁକି ଗଲେ ବ୍ୟଗ୍ରରେ ।
ଦଶାନନ ଦେଖି ଲୋହିତାକ୍ଷକୁ
ପୁଚ୍ଛେ, କେ ବସିଛି ଧ୍ୱଜ ପାଖକୁ ?
ଯେ ଦ୍ରୋଣ ପର୍ବତ ଆଣିଲା ଧରି
ଫେରିଥିଲା ଲଙ୍କା ଦହନ କରି ।
ସେହି କପିବର ଧ୍ୱଜ ପାଖରେ
ବସିଛି ବୋଲି ସେ ଉତ୍ତର କରେ ।

୧ ଶର

୨ ଶୀଘ୍ର

## ରାବଣ ବଧ

ମନ୍ଦୋଦରୀ ଗୃହେ ପ୍ରବେଶ କରି ରାବଣ ଲାଜେ
"ଅର୍ପିବି କି ସୀତା ରାମଙ୍କୁ ବୋଲି ଦୂରେରେ ବ୍ୟାଜେ
ଅବା ରାମ ବାଣେ ସ୍ୱର୍ଗକୁ ଯିବି କରି ସମର
ତୁମ ଅଭିମତ ଜାଣିମା ଲାଗି ଆସିଛି ଘର ।
ବଂଶ ଧ୍ୱଂସ ପରେ ଏପରି ହେଲା ଜ୍ଞାନ ଉଦୟ
ବୋଲି ମନ୍ଦୋଦରୀ ଭର୍ତ୍ସିଲା ତେଜି ସକଳ ଭୟ ।
ଏଣେ ରାମାଙ୍କରେ କପିଏ ଲଙ୍କା ଉତ୍ତର ଦ୍ୱାର
ଅବରୋଧ କରି ଦେଲେଣି କରି ଉଡ଼ ହୁଁକାର ।
"ଆହେ ପ୍ରାଣେଶ୍ୱରୀ ସ୍ୱସ୍ୱାମୀଠାରେ ଥାଉ କରୁଣା
ରାମଠାରୁ ପରାକ୍ରମରେ ମୁଁ ତ ନୁହଇ ଊଣା ।
ଦୈବ ପ୍ରେରଣାରେ ରାବଣ ଆଗଭର ଯୁଦ୍ଧକୁ
ବାହାରିଲା ରଥ ଉପରେ ନମି ତ୍ରିଲୋଚନକୁ ।
ରେ ମାନବ ରାମ, ମୋ ଆଗେ କର ଧନୁ ଟଙ୍କାର
ବାନର ଗୁଡ଼ାଏ ତୁଚ୍ଛାକୁ କରୁଛନ୍ତି ହୁଁକାର ।
ତୋ ପୂର୍ବ ପୁରୁଷ ଜାଣିଛି, ଜାଣିଅଛି ତୋ ବଳ
ଆସିଛୁ ଏଠାକୁ ନଜାଣି ମୋର ରଣ କୌଶଳ ।
ଏମନ୍ତ ଭାଷାରେ ରାବଣ ତୁଚ୍ଛ କରି ରାମଙ୍କୁ
ବୋଲନ୍ତେ ରାଘବ ଧିକ୍କାର କଲେ ତାର ବଳକୁ
ମହାଦେବ ଏକ ପାଦରେ ଠିଆ ହୋଇ ସାଗରେ
ପୁଣି ଦେବତାଏ ଦେଖନ୍ତି ଯୁଦ୍ଧ ବହୁ ଆୟସରେ ।
କଳ୍ପାନ୍ତ କାଳୀନ କୃତାନ୍ତ ସମ ଦିଶିଲେ ରାମ
ଏକାଳେ ଦୁହିଁଙ୍କ ମଧ୍ୟରେ ଲାଗିବାରୁ ସଂଗ୍ରାମ ।
ନବ ମୁଣ୍ଡ ଏକା ବେଳକେ ଛିଡ଼ି ପଡ଼ନ୍ତେ ତଳେ
ଆଉଥରେ ହେବା ଉତ୍ପନ୍ନ ଦେଖୁଥିଲେ ସକଳେ ।
ଏ ଅନ୍ତେ ବ୍ରହ୍ମାସ୍ତ୍ର ଶ୍ରୀରାମ ହୃଦୟରେ ପ୍ରହାରି
କରିବାରୁ ନିମିଷକରେ ଗଲା ପରାଣ ତାରି ।

## ଯୁଦ୍ଧ ଭୂଇଁର ଦୃଶ୍ୟ

ମେଳତାର ବଂଶଙ୍କର    ପଡ଼ିଅଛି ଲଙ୍କେଶ୍ୱର
ଦେଖିଲେ ମାଡ଼ୁଛି ଡର ଆହା ! ଦଇବ
ହୋଇଥିଲା କୁହାଳିଆ    ପୁଣି ଅତି ଅମାନିଆ
ଦଶେ ଭଲ ନପୁଛିଆ କିଏ ସହିବ
ଘରରୁ ବଳକା ହୋଇଲେ
ଅବା କ୍ରୋଧ ଅହଂକାର ହୃଦ ମନ୍ଥିଲେ ।
ଯାଉଥିଲା ଦିନ ଯାର    କରି ସ୍ୱଚ୍ଛନ୍ଦ ବିହାର
ସବୁଠାରେ ବଳାତ୍କାର ତା ଭୁଜବଳେ
ଯା ନାମ ଶୁଣିଲେ ସୁରେ    ଲୁଚନ୍ତି ଭୟରେ ଦୂରେ
ଖଟନ୍ତି ଇନ୍ଦ୍ର ଯା ପୁରେ, ସେ ଗଡ଼େ ତଳେ
ପରନାରୀ ଧର୍ଷଣ କରି
କେତେ ଦିନ ରହିବ କେ ଜୀବନ ଧରି ।
ଭାଗ୍ୟହୀନା ମନ୍ଦୋଦରୀ    କାନ୍ଦୁଛି ଚରଣ ଧରି
ଭବଲୀଳା ତ ଏପରି ଜାଣି ସକଳ
ତୁଚ୍ଛାକୁ ବଣା ମୋହରେ    କିଏ କାହାର ଭବରେ
ଏକଥା ନାରୁ ହୃଦରେ ନୁହ ବିକଳ
ବିହ୍ୱର କେ ଛନ୍ଦ ବୁଝିବ
ପୂର୍ବକୃତ ଫଳ ନିଶ୍ଚେ ଭୋଗିବ ଜୀବ ।
ଯା ମୁଣ୍ଡ ୧କୁଣ୍ଡ ମଧ୍ୟରେ    ଢାଳିଥିଲେ ଆନନ୍ଦରେ
ଆଜି ତା ଗୃଧ୍ର ପାଦରେ ହେଉଛି ଦଳା
ଦେବଙ୍କୁ ଯେ ଟାଣି ଟାଣି    ଖଟାଇଲା ଘରେ ଆଣି
ଅକାମୀ ସେ ବଂଶପାଣି ଦେଉଚ ଗଲା
ବିହ୍ୱର କେ ଛନ୍ଦ ବୁଝିବ
ପୂର୍ବକୃତ ଫଳ ନିଶ୍ଚେ ଭୋଗିବ ଜୀବ ।
ହେଲାଣି ଲଙ୍କା ଶ୍ମଶାନ    ପଡ଼ିଅଛି ଶବମାନ
ମନ୍ଦୋଦରୀ ଧନମାନ ହେଲା ଶେଷକୁ
ଦିନରେ ଶକୁନି କାକ    ରାତିଯାକ ଶିବା ଡାକ
ସହୁ ନାହିଁ କାନ ନାକ ଉଡ଼ ଗନ୍ଧକୁ
ବିହ୍ୱର କେ ଛନ୍ଦ ବୁଝିବ
ପୂର୍ବକୃତ ଫଳ ନିଶ୍ଚେ ଭୋଗିବ ଜୀବ ।

## ସୀତାଙ୍କୁ ଅଣାଇବା

ଆସିଲେ ଜାନକୀ ବିମାନେ ଚଢ଼ି
ଗଲେଣି କପିଏ ଆନନ୍ଦେ ଗଡ଼ି ।
ଅଶ୍ରୁପୂର୍ଣ୍ଣ ନେତ୍ର ଦିଶେ ତାଙ୍କରି
ନ କହିଲେ କଥା ରଘୁ ପ୍ରବରି ।

୧ ଜୀବ

ବହୁକାଳ ସୀତା ପର ଗୃହରେ
ଥିବାରୁ ସନ୍ଦେହ ଜାତ ମନରେ ।
ପରୀକ୍ଷା କରି ମୁଁ ନେବି ସୀତାକୁ
ବୋଲନ୍ତି ରାଘବ ଡ଼ରି ନିନ୍ଦାକୁ ।
ବ୍ରହ୍ମାଦି ଦେବତା ଆସି ଆକାଶୁ
ଲଗାଇଲେ ଅଗ୍ନି ଜନକଝିଅ ଆଶୁ ।

## ସୀତାଙ୍କର ଅଗ୍ନି ପ୍ରବେଶ

ରାମ ବିନା ଅନ୍ୟ ପୁରୁଷ ଠାରେ ଥିଲେ ମୋ ମନ
ଅବିଳମ୍ବେ ମୋର ଶରୀର ତୁମେ କର ଦହନ ।
କହି ସୀତା ଦେବୀ ଅଗ୍ନି କୁ ପ୍ରବେଶି ତା ଭିତରେ
ପ୍ରଜ୍ୱଳିତ ହୁତାଶନରୁ ବାହାରିଲେ ସେ ଖରେ ।
ଉତ୍ଫୁଲ୍ଲ କମଳ ସଦୃଶ ହସୁଥିଲା ବଦନ
ଭକ୍ତିଭରେ ରାମ ଚରଣ କଲେ ସେ ଆଲିଙ୍ଗନ ।
ପତିବ୍ରତା ଏ ବୋଲି କହନ୍ତେ ବ୍ରହ୍ମା ଦେଖି ଆନନ
ଆକାଶ ମଣ୍ଡଳ ବ୍ୟାପିଲା କର୍ଣ୍ଣି ଫୁତ୍କାର ଧ୍ୱନି
ସମସ୍ତେ ତୁଷ୍ଟନ୍ତେ ରାମଚନ୍ଦ୍ର ସୀତା ଗ୍ରହଣ କରି
ଦେଖାଇଲେ ଯୁଦ୍ଧ ଭୂମିକି ତାଙ୍କୁ ସଙ୍ଗରେ ନେଇ ।

## ବିଭୀଷଣର ରାଜ୍ୟ ଲାଭ

ବିଭୀଷଣ ରାଜା ହୋଇଲା ଲଙ୍କାରେ
ନାନା ଆଡ଼ମ୍ବର ହେଲା ସେଠାରେ ।
ଅଙ୍ଗଦ ବାହାରି ରାମ ଆଗରେ
ଏମନ୍ତ ବଚନ କହେ କ୍ରୋଧରେ ।
ନିର୍ଦ୍ଦୋଷ ମୋ ପିତା ତୁମ ହାତରେ
ଲଭିଲେ ମରଣ ଅଛି ମନରେ ।
ତେଣୁ ଏକୁଟିଆ କରିବି ରଣ
ହୃଦୟ ଜର୍ଜ୍ଜରିତ କରି ସ୍ମରଣେ ।
ତା ବଚନ ସବୁ କରି ଶ୍ରବଣ
କୃତାଞ୍ଜଳି ହୋଇ ଠିଆ ଲକ୍ଷ୍ମଣ ।
ଆକାଶରୁ ବାଣୀ ଶୁଭେ ଏମନ୍ତ,
"କୃଷ୍ଣ ଅବତାରେ ହେ ବଳବନ୍ତ
ବ୍ୟାଧ ବେଶୀ ବାଳୀ ତୁମେ ବଧିବ
ଏକଥା ଅନ୍ୟଥା କେବେ ନୋହିବ ।"

ଶ୍ରବଣେ ଅଙ୍ଗଦ ଯୁଦ୍ଧୁ ବିରତ
ଅଯୋଧ୍ୟା ଯିବାକୁ ରାମ ଉଦ୍ୟତ ।

## ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ

ବନବାସନ ବାସ ଚଉଦ ବରଷ
ପୁରିବାରୁ ରାମ ସୀତା ଲକ୍ଷ୍ମଣ
ରାକ୍ଷସ କୁଳର ଘଟାଇ ନିଧନ
ଫେରିଲେ ଅଯୋଧ୍ୟା ପାଇ କଷଣ ।
ଦୈତ୍ୟ ବିଭୀଷଣ କପିକୁଳ ସହ
ଅଛନ୍ତି ସଙ୍ଗରେ ସେମାନଙ୍କର
ଘଣ୍ଟ କାହାଳୀର ଘନ ଘନ ସ୍ୱନ
ବୁଜି ଦେଲା କିରେ ? କର୍ଣ୍ଣ କୁହର ।
କିଏ ନିଆଁ ହୁକା କିଏ ବା ମଶାଲ
ଜଳାଇ କଲେଣି ଆଲୁଅ ଦାଣ୍ଡ
ଦୁଇ ଭାଇଙ୍କର କାନ୍ଧରେ ଝୁଲୁଚି
୧ରକ୍ଷେ ରକ୍ତ ପିଆ କୋଦଣ୍ଡ କାଣ୍ଡ ।
ଦ୍ୱାରର ଦ୍ୱାରେ କୁମ୍ଭ ବଡ଼ା ହୋଇ ଅଛି
ଦାଣ୍ଡ ଶୋଭା ବଢାଉଚି ତୋରଣ
ଛତ୍ର ଚାମର ଧରି ଭରତ ବଶିଷ୍ଠ
ଆସିଲେଣି କରିବାକୁ ବରଣ ।
ଆପଣା ଆପଣା ଭିଡ଼ କରି କରି
ଓଟ ହାତୀ ଘୋଡ଼ା ଲୋକ ଭିତରେ
ଦୋହଲା ଦୋହଲି ମୋଦେ ଯାଉଛନ୍ତି
ନ ଜନ୍ମାଇ ଭୟ କାହା ମନରେ ।
କେତେ ନରନାରୀ କେତେ ଆଡ଼ୁ ଆସି
ହୋଇଛନ୍ତି ରୁଣ୍ଡ ରାମ ଦର୍ଶନେ
ଗୃହ ରମଣୀଏ ହୁଳହୁଳି ଦେଇ
ବୁଲନ୍ତି ଦାଣ୍ଡରେ ଆନନ୍ଦ ମନେ ।
ଜଟାଧାରୀ ରାମ ବଶିଷ୍ଠଙ୍କ ଆଗେ
ନମି ଭରତଙ୍କୁ ସ୍ନେହେ କୁଣ୍ଢାଇ
ପଶିଲେ ନଗରେ ପ୍ରଶାନ୍ତ ଚିତ୍ତରେ
ଜନନୀମାନଙ୍କୁ ଦେଖିବା ପାଇଁ ।

---

୧ ରାକ୍ଷସ

ବକ୍ଳଧାରୀ ରାମ ଜାନକୀ ଲକ୍ଷ୍ମଣ
ଜନନୀମାନଙ୍କୁ ନମି ହରଷେ
ବନବାସ ଦୁଃଖ ଭୁଧାଇ ଭୁହାଇ
କହିଥିଲେ ଯାହା ଥିଲା ମାନସେ ।
ସନ୍ତପ୍ତା କୈକେୟୀ ଲୋତକ ବୁହାଇ
ଯୋଗାଡ଼ିଲେ ଜବେ ଖିଆପିଆକୁ
ସୁଗ୍ରୀବ ମାରୁତି ବିଭୀଷଣ ଆଦି
ଦେଖିବାକୁ ଗଲେ ପାକଶାଳକୁ ।
ମହକ ଉଠୁଚି ସୁଗନ୍ଧେ ନଅଇ
ପୁଲକିତ ଆଗନ୍ତୁକ ସକଳ
ଖାଦ୍ୟପାନ ସାରି ବାଛି ନେଲେ ଆସି
ଆପଣା ଆପଣା ଶୟନ ସ୍ଥଳ ।
ପୁହାଇ ରଜନୀ ଆମୋଦ ପ୍ରମୋଦେ
ରାମ ଅଭିଷେକ ଲାଗି ଭରତ

ଆଦେଶିଲେ ଖରେ ବଶିଷ୍ଠାଗ୍ରମନେ
ଶୁଭ ଯୋଗ କାଢ଼ିବାକୁ ତୁରିତ ।
ଲଗ୍ନ ବାଛି ମୁନି ଦିଅନ୍ତେ ଭରତ
ଯୋଗାଡ଼ିଲେ ସବୁ ଅବଲମ୍ବେ
ରାଜ୍ୟରେ ଚହଲ ପଡ଼ନ୍ତେ ଚଞ୍ଚଳ
ଦେଖିବାକୁ ଲୋକେ ଜମିଲେ ଖରେ ।
କରନ୍ତି ବଶିଷ୍ଠ ବେଦ ମନ୍ତ୍ର ପାଠ
ବସିଚନ୍ତି ରାମ ସିଂହାସନରେ
ଶତ୍ରୁଘ୍ନ ଭରତ ଲକ୍ଷ୍ମଣ ସହିତ
ହୋଇଚନ୍ତି ଠିଆ ଦୁଇ ପାର୍ଶ୍ୱରେ ।
ଅସରନ୍ତି ରମ୍ଭା ହୋଇଚି ଯୋଗାଡ଼
ଚଳନ୍ତି ଗୀତନାଚ ଅନବରତ
ବାଦ୍ୟ ବାଜଣାରେ କମ୍ପୁଚି ଅଯୋଧ୍ୟା
କିଏ ଅଭିଷେକ ଦର୍ଶନେ ରତ ।



